ବୈଷ୍ଣବ କବି ଦାଶରଥିଦାସଙ୍କ ବିରଚିତ

# ବ୍ରଜବିହାର



ପ୍ରକାଶକ
ଶ୍ରୀ ହରିସଂକୀର୍ତ୍ତନ ପ୍ରକାଶନୀ
ଓଡ଼ିଆ ବଜାର, କଟକ-୧
୧୯୮୩

ଶ୍ରୀହରି ସଂକୀର୍ତ୍ତନ ଗ୍ରନ୍ଥମାଳା—୧୪

ବୈଷ୍ଣବ କବି ଦାଶରଥିଦାସଙ୍କ ବିରଚିତ

# ବ୍ରଜବିହାର

ଦ୍ୱିତୀୟ ଭାଗ



ପ୍ରକାଶକ

ଶ୍ରୀହରିସଂକୀର୍ତ୍ତନ ପ୍ରକାଶନୀ
ଓଡ଼ିଆ ବଜାର, କଟକ-୧
୧୯୮୩

ନୂତନ ସଂସ୍କରଣ

ଭିକ୍ଷା—ପନ୍ଦରଟଙ୍କା ମାତ୍ର

# ନମ୍ର ନିବେଦନ

ଚଉଅଶି ବର୍ଷ ପରେ ଶ୍ରୀଲ ଦାଶରଥି ଦାସଙ୍କ ବ୍ରଜବିହାର ଭକ୍ତମାନଙ୍କର ଏକାନ୍ତ ପ୍ରାର୍ଥନାରେ ଓ ପରମାରାଧିତମ ଦେବ ଶ୍ରୀଶ୍ରୀ ମୋହନଗୋପାଳଙ୍କ କୃପାରୁ ପୁନର୍ବାର ପ୍ରକାଶ ଲାଭ କଲେ । ସେତେବେଳେ ଏହି ଗ୍ରନ୍ଥ ପ୍ରକାଶ ଲାଭ କରିଥିଲେ ଓଡ଼ିଶାର ଏକ ବିଶିଷ୍ଟ ସାହିତ୍ୟିକ ତଥା ପରମ ବୈଷ୍ଣବ ଢେଙ୍କାନାଳର ଆସିଷ୍ଟାଣ୍ଟ ଦେୱାନ ଶ୍ରୀଯୁକ୍ତ ପାର୍ବତୀଚରଣ ଦାସ ( ବାବାଜୀ ପଦ୍ମଚରଣ ଦାସ )ଙ୍କ ଦ୍ୱାରା ୧୯୦୯ ଖ୍ରୀଷ୍ଟାବ୍ଦରେ, ଏବେ କିନ୍ତୁ ପ୍ରକାଶ ଲାଭ କଲେ ବିଦ୍ୟାବୁଦ୍ଧି ଭକ୍ତିହୀନ ଜଣେ ଅନର୍ଥ-ଗ୍ରସ୍ତ ଫକୀର ଦ୍ୱାରା ।

ସେ ଯାହାହେଉ ୧୯୮୨ ମସିହା ରଥଯାତ୍ରା ସମୟରେ ପୁଣ୍ୟପୀଠ ପୁରୀର ଶ୍ରୀଲ ହରିଦାସ ସମାଧି ମଠରେ ଗଞ୍ଜାମର କେତେକ ଭକ୍ତ ଏଇ ଗ୍ରନ୍ଥର ଅଭାବ ବୋଧ କରି ବାବାଜୀ ବୈଷ୍ଣବଚରଣ ଦାସଙ୍କ ନିକଟରେ ନିବେଦନ କରିଥିଲେ । ସେତେବେଳେ ମୁଁ ସେଠାରେ ଉପସ୍ଥିତ ଥିବାରୁ ବାବାଜୀ ମହାଶୟ ସେ ଭାର ମୋତେ ଗ୍ରହଣ କରିବା ପାଇଁ କୃପା ଆଦେଶ ଦେଲେ । ଗ୍ରନ୍ଥଟିଏ ସଂଗ୍ରହ କରିବା ପାଇଁ ମୁଁ ପୁରୀର ସାଧ୍ୱୀ ପରମ ବୈଷ୍ଣବୀ ହେମଲତା ଦାସୀ ( ହେମ ଅପା )ଙ୍କ ନିକଟକୁ ଗଲି । ସେ ପ୍ରତିବର୍ଷ କାର୍ତ୍ତିକମାସରେ ଶ୍ରୀମନ୍ଦିରରେ ଏଇ ବ୍ରଜବିହାର ଗ୍ରନ୍ଥ ଭକ୍ତମାନଙ୍କ ସହିତ ନିୟମିତ ପାଠ ଆଲୋଚନା କରନ୍ତି—ଗ୍ରନ୍ଥଟି ପ୍ରକାଶ ପାଇଁ ତାଙ୍କ-ମନରେ ମଧ୍ୟ ପ୍ରବଳ ଆଶା ଥିଲା—ବହୁ ଚେଷ୍ଟା ମଧ୍ୟ କରିଥିଲେ । ମୋଠାରୁ ସମ୍ବାଦ ପାଇ ବ୍ରଜବିହାର ଗ୍ରନ୍ଥ ଏକଶହ ମୁଦ୍ରା ସହ ପ୍ରଥମ ଭିକ୍ଷା ରୂପେ ପ୍ରଦାନ କଲେ । [illegible] ଫକୀରାର ଏକ ବିରାଟ ଗ୍ରନ୍ଥ କିପରି ମୁଁ ପ୍ରକାଶ କରିବି ଏହା କେବଳ ଗୁରୁ ବୈଷ୍ଣବଙ୍କ ନିକଟରେ ଅନବରତ କାତର ପ୍ରାର୍ଥନା କରୁଥାଏ । ଭଗବାନ କରୁଣାମୟ ଦୀନମାନଙ୍କର ଡାକ ଶୁଣନ୍ତି—ଏହିପରି ଏକ ବିପଦ ମୁହୂର୍ତ୍ତରେ ପୁରୀ ଶ୍ୟାମସୁନ୍ଦରଟାଳି ନିବାସୀ ଶ୍ରୀଲ ମଦନମୋହନ ପଣ୍ଡିତ ମହାଶୟଙ୍କର ଜନୈକ ଶିଷ୍ୟ ମୋତେ ବହୁ ଭାବରେ ସାହାଯ୍ୟ-ପ୍ରଦାନ କରି ଏଁ ଦିଗରେ ଦ୍ରୁତ ଆଗେଇ ନେଲେ । ହେମ ଅପାଙ୍କ ପ୍ରଚେଷ୍ଟା ଓ ଉକ୍ତ ଭକ୍ତ ମହାଶୟଙ୍କ ସାହାଯ୍ୟ ବ୍ୟତୀତ ଏ କାର୍ଯ୍ୟ କଦାପି ସମ୍ଭବ ହୋଇ ପାରି ନ ଥାନ୍ତା—ସେଥିପାଇଁ ସେମାନଙ୍କ ନିକଟରେ ମୁଁ ଚିର କୃତଜ୍ଞ । ଏଇ ଗ୍ରନ୍ଥ ପ୍ରକାଶନ ସେବାରେ ଯେଉଁମାନେ ଯେପରି ଭାବରେ ଏ ଦୀନହୀନକୁ ସାହାଯ୍ୟ କରିଛନ୍ତି ସେମାନଙ୍କୁ ଶ୍ରୀଶ୍ରୀଗୌର ସୁନ୍ଦର ଅଜସ୍ର କୃପା ବିତରଣ କରନ୍ତୁ ଏଇ ପ୍ରାର୍ଥନା । ପରିଶେଷରେ ସୁଧୀପାଠକବୃନ୍ଦ ଏଇ ଗ୍ରନ୍ଥ ପାଠ କରିବା ସମୟରେ ଗ୍ରନ୍ଥକର୍ତ୍ତା ଶ୍ରୀଲ ଦାଶରଥି ଦାସ ଓ ପ୍ରଥମ ପ୍ରକାଶକ ବାବାଜୀ ପଦ୍ମଚରଣ ଦାସଙ୍କୁ ସ୍ମରଣ ରଖିବାପାଇଁ ଅନୁରୋଧ କରୁଛି ।

ଶ୍ରୀ ଗୌର ଜୟନ୍ତୀ
୨୮, ମାର୍ଚ୍ଚ ୧୯୮୩

ପ୍ରଣତଃ
ଶ୍ରୀ ଫକୀରମୋହନ ଦାସ

ଶ୍ରୀଗଣେଶାୟ ନମଃ—ଶ୍ରୀରାଧାକୃଷ୍ଣାଭ୍ୟାଂ ନମଃ

# ଶ୍ରୀ ବ୍ରଜବିହାର

## ଷଷ୍ଠ ବୋଲ

ଗୋବର୍ଦ୍ଧନଚନ୍ଦ୍ର ବାଣୀରେ ଗାଇବ

ନମୋ ନମଃ ଶ୍ରୀକୃଷ୍ଣ ଚୈତନ୍ୟ ଗଉର ବିଗ୍ରହ ।
ନମୋ ରାଧାକୃଷ୍ଣ ଭକ୍ତ ଜନ ସ୍ୱଭାବ ସଗ୍ରହ ॥
ନମଃ ସୁବର୍ଣ୍ଣବର୍ଣ୍ଣ ହେମାଙ୍ଗ ଶଚୀଙ୍କ ନନ୍ଦନ ।
ନମୋ ବରାଙ୍ଗ ଚନ୍ଦନାଙ୍ଗଦ ଜଗତ ବନ୍ଦନ ॥
ନମୋ ନମସ୍ତେ ସନ୍ନ୍ୟାସକୃତ ଶମ ଶାନ୍ତ ପ୍ରଭେ ।
ନମୋ ନମୋ ନିଷ୍ଠାଶାନ୍ତିପରାୟଣ ଭକ୍ତବଭେ ॥
ସ୍ୱୟଂ କୃଷ୍ଣ ଚଇତନ୍ୟ ରୂପେ ପୁରାଣେ ପ୍ରମାଣ ।
ବିଶେଷରେ ଭକ୍ତିରସକୋଷ ଜଳନିଧି ବର୍ଣ୍ଣନ ।
କଳି ଆଗମେ ଧରଣୀ କଲା ପ୍ରଭୁଙ୍କୁ ଗୁହାରି ।
ମହାପାତକୀ ଚରଣଭେର ସହିତ ନପାରି ॥
ତେଣୁ କୃଷ୍ଣ ଅବତରି ଭକ୍ତିମାର୍ଗ ବିସ୍ତାରିଲେ ।
ପୃଥ୍ୱୀଭାର ଉଶ୍ୱାସିଣ ସର୍ବଜନ ନିସ୍ତାରିଲେ ॥
କଳିକଳ୍ମଷ ଅଶେଷ ବିନାଶନେ ହରିବୋଲେ ।
ଯେସନ୍ତେ ମେରୁ ସମ ତୁଳା ବହ୍ନି କଣିକାରେ ଜଳେ ॥
ଭାଗବତ ଭକ୍ତିଯୋଗ ସୂର୍ଯ୍ୟ ଉଦୟ କରାଏ ।
କ୍ଷୁଦ୍ରପକ୍ଷୀ ଖଦ୍ୟୋତକ ତମଃ ପାଷଣ୍ଡ ପଳାଏ ॥
ହେତେ ଦ୍ୱିଜ ରୂପେ ନବଦ୍ୱୀପେ ନଦିଆ ନଗରେ ।
ନିଜ ପାରିଷଦ ଦେବଗଣ ନେଇ ସଙ୍ଗତରେ ।
କେହୁ ବୋଲନ୍ତି ସର୍ବଦା କୃଷ୍ଣ ଗୋଲୋକେ ନିଶ୍ଚଳ ।
କେ ବୋଲନ୍ତି ବୃନ୍ଦାବନ ପଦେ ନ ଯାନ୍ତି ବିଚଳି ॥
କଳିଯୁଗ ଜନେ ବର୍ତ୍ତମାନ ଦେଖିଲେ ଲୋଚନେ ।
ସର୍ବ ପ୍ରମାଣ କେ ଆନ କରେ ସ୍ମୃତିର ବଚନେ ॥
ଶାସ୍ତ୍ର ଅନୁମାନରେ ଦୃଷ୍ଟାନ୍ତ ଦ୍ୱାରେଣ ଜାଣିବା ।
ନିତ୍ୟାନନ୍ଦ ଚଇତନ୍ୟ ଜଣି ତପନ ଚନ୍ଦ୍ରମା ॥
ନିଜ ମଣ୍ଡଳରେ ସ୍ଥିତ ପାରିଷଦଙ୍କ ସଙ୍ଗରେ ।
କେତେବେଳେ ପ୍ରାଚୀ କେତେବେଳେ ପଶ୍ଚିମ ଦିଗରେ ॥

ଲୋକ ପାଳନ ନିମିତ୍ତ କରି ପୃଥ୍ୱୀ ପର୍ଯ୍ୟଟନ ।
କଲେ ପୂର୍ବ ସନ୍ଧ୍ୟାରେଣ ପୁଷ୍ପବନ୍ତ ଦରଶନ ॥
ଭକ୍ତ ଜ୍ୟୋତିଷ୍ଟନ୍ଦ ବଳେ ସର୍ବ ସଙ୍ଗରେ ଗୋଡ଼ାଇ ।
ସୁମନସ ପ୍ରେମସମୁଦ୍ରର ମଧ୍ୟରେ ବୁଡ଼ାଇ ॥
ଏହି ଭାବେ ହରି ଜନ ତାରଣ ନିମନ୍ତେ
ନିଜ ସ୍ଥଳେ ପାରିଷଦମାନେ ଉଦେ ଇଚ୍ଛାମତେ ॥
ଯହିଁ କୃଷ୍ଣ ତହିଁ ବୃନ୍ଦାବନେ ଗୋଲୋକହିଁ ତହିଁ ।
ଯେସନ୍ତେ ଅଙ୍ଗ ଅନ ଯଶ ସଙ୍ଗେ ସଙ୍ଗେ ରହେ ଥାଇ ॥
ନିଜ ପାରିଷଦଗଣ କୃଷ୍ଣସେବା ପରମାଣେ ।
ଯହିଁତହିଁ କୃଷ୍ଣ ସେବେ କେବଳ ନିଶ୍ଚଳ ନଜାଣେ ॥
ଯେସନ୍ତେ ବୋଇତରେ ଥିଲେ ତଟ ନିଶ୍ଚଳ ନଜାଣି ॥
ପରିଜନ ନାନା ଦେଶେ ମୋହନ୍ତ ଧର୍ମ ସେବା ଜାଣି ॥
ସେହି ରୂପେ କୃଷ୍ଣ ଚଇତନ୍ୟ ସଂସାର ସାଗରେ ।
ନିଜମଣ୍ଡଳ ବୋଇତେ ମାନବଙ୍କ ସଙ୍ଗରେ ॥
ସେହି ଭକତିଭଣ୍ଡାର ଭାବଧନ ଦେଖିହଏ ।
ନିର୍ଦ୍ଧନଙ୍କୁ ହରିନାମ ଧନ ନିରନ୍ତର ବିଏ ॥
କଳିଯୁଗେ ଜନ ଭକ୍ତି ନ ଶରଣ୍ୟ ହୋଇଥିଲେ ।
ଚଇତନ୍ୟ ବୋଇତାଳ ମାଧବରେ ପର ହେ ହେଲେ ॥
ପ୍ରଥମେ ମଣ୍ଡଳ ସଞ୍ଚରଣ ସେ ନଦିଆ ନବଦ୍ୱୀପ ।
ତହୁଁ ପୁଣ ଚଳେ ନୀଳାଚଳ ଉତ୍କଳ କଳାପେ ॥
ପୁଣ ଦକ୍ଷିଣ ଗମନ୍ତ ସେତୁବନ୍ଧ ପରିଯନ୍ତେ ।
ଦୀନଜନ ତାରେ କୃଷ୍ଣନାମାମୃତ ସଦାବ୍ରତେ ॥
ତହୁଁ ଶ୍ରୀପୁରୁଷୋତ୍ତମ ଆସି ଚଳେ ବୃନ୍ଦାବନ ।
ଯେସନ୍ତେ ବ୍ରଜବାସୀ ଜନେ ଦେଲେ ବହୁଭକ୍ତି ଧନ ॥
ନୀଳାଚଳରେ ନିଶ୍ଚଳେ ରହେ ଜନମ ବଚନେ ।
ଧନ୍ୟ ଧନ୍ୟ କଳିଯୁଗଜନେ ଦେଖିଲେ ଲୋଚନେ ॥

ଏହୁ ବୋଇଲାକ ସାଧୁବର ଚରଣ ଶ୍ରୀତଲେ ।
ଭବସାଗର ଅଗାଧ ଏ କଣ୍ଟନେ ଲଙ୍ଘିଗଲେ ॥
ଜୟ ଜୟ ଚୈତନ୍ୟ ଜୟ ଜୟ ନିତ୍ୟାନନ୍ଦ ।
ଜୟ ଅଦ୍ୱୈତ ଆଚାର୍ଯ୍ୟ ଜୟ ଗୌରଭକ୍ତବୃନ୍ଦ ॥
ଜୟ ଶଚୀ ଜଗନ୍ନାଥମିଶ୍ର ମହେଶାବନ୍ତୀ ନନ୍ଦ ।
ଯାର ନନ୍ଦନ ଶଙ୍କର୍ଷଣ ଶ୍ରୀଗୌରଚନ୍ଦ୍ର ॥
ଜୟ ହାଡ଼ାଇପଣ୍ଡିତ ପଦ୍ମାବତୀଙ୍କ ରମଣ ।
ନିତ୍ୟାନନ୍ଦରୂପେ ବଳରାମ ଯାହାଙ୍କ ନନ୍ଦନ ॥
ବସୁଦେବ ଓ ଦେବକୀ ଦେବନ ଅବତାର ଆସି ।
ବନ୍ଦ ଈଶ୍ୱରପୁରୀ ଯେ ଯୋଗମାୟା ପୌର୍ଣ୍ଣମାସୀ ॥
ବନ୍ଦ ଗଦାଧରସ୍ୱାମୀ ଯେ ସ୍ୱରୂପ ମହିମା ।
ବନ୍ଦ ଲକ୍ଷ୍ମୀ ବିଷ୍ଣୁପ୍ରିୟା ଏ ରୁକ୍ମିଣୀ ସତ୍ୟଭାମା ॥
ବନ୍ଦ ବସୁଧା ଜାହ୍ନବୀ ଏହୁ ରେବତୀ ସାକ୍ଷାତ ।
ବୀରଭଦ୍ର ପୁନ ମହିମା ଯେ ଜଗତେ ବିଖ୍ୟାତ ॥
ବନ୍ଦ ଶେଶବାଚ ସଜନୀ ମଞ୍ଜରୀ ସଖୀଗଣ ।
ଅଷ୍ଟ ଚତୁଃଷଷ୍ଠୀ ନାନଶାଦ ମହାନ୍ତ ତେଣ ॥
ବନ୍ଦ ସ୍ୱରୂପ ଦାମୋଦର ଯେ ବସୁ ରାମାନନ୍ଦ ।
ଶିବାନନ୍ଦ ବସୁ ବ୍ରହ୍ମାନନ୍ଦ ଶ୍ରୀଘୋଷ ଗୋବିନ୍ଦ ॥
ବାସୁଦେବ ଘୋଷ ବକ୍ରେଶ୍ୱର ପଣ୍ଡିତ ଗୋସ୍ୱାମୀ ।
ଦାସ ମୁକୁନ୍ଦ ଲଳିତା ଆଦି ସଖୀପାଦେ ନମି ॥
ବନ୍ଦ ଅଷ୍ଟ ଚତୁଃଷଷ୍ଠୀ ମହାନ୍ତଙ୍କ ଶ୍ରୀଚରଣ ।
ସର୍ବତୀର୍ଥମୟ ଭବଭୟ ପୟୋଧି ତାରଣ ॥
ରତ୍ନାଚାର୍ଯ୍ୟ ରତ୍ନଗର୍ଭ ଚନ୍ଦ୍ରଶେଖର ଆଚାର୍ଯ୍ୟ ।
ଦାସ ଗୋବିନ୍ଦ ଗରୁଡ଼ଦତ୍ତ ମୁକୁନ୍ଦ ଆଚାର୍ଯ୍ୟ ॥
ବନ୍ଦ ଦାମୋଦର ପଣ୍ଡିତ ଶ୍ରୀକୃଷ୍ଣାନନ୍ଦ ଦାସ ।
ବନ୍ଦ କୃଷ୍ଣାନନ୍ଦାଚାର୍ଯ୍ୟ ଆଦି ସ୍ୱରୂପେ ବିଶ୍ୱାସ ॥
ବନ୍ଦ ମାଧବ ଆଚାର୍ଯ୍ୟ ନୀଳାମ୍ବର ଚକ୍ରବର୍ତ୍ତୀ ।
ରାମଚନ୍ଦ୍ର ଦତ୍ତ ବାସୁଦେବଦତ୍ତ ପାଦେ ମତି ॥
ବନ୍ଦ ନନ୍ଦନାଚାର୍ଯ୍ୟ ଶ୍ରୀବୃନ୍ଦାବନନ୍ଦ ଠାକୁର ।
ବନ୍ଦ ସୁବୁଦ୍ଧି ମିଶ୍ରାଦି ଅଷ୍ଟବଏ ଅନୁଚର ॥
ବନ୍ଦ ଶ୍ରୀରାମ ପଣ୍ଡିତ ଗୋପୀନାଥଭଟ୍ଟାଚାର୍ଯ୍ୟ ।
ବନ୍ଦ ଗଦାଧର ସ୍ୱାମୀ ସଦାଶିବ କବିରାଜ ॥
ବଏ ମୁକୁନ୍ଦାନନ୍ଦ ଯେ ପୁରୁଷୋତ୍ତମ ଆଚାର୍ଯ୍ୟ ।
ନାରାୟଣ ବାଚସ୍ପତି ଶିବାନନ୍ଦ ପାଦାମ୍ବୁଜ ॥

ବନ୍ଦ ମକର ପଣ୍ଡିତ ଦାସଦ୍ୱିଜ ରଘୁନାଥ ।
ମଧୁସୂଦନ ପଣ୍ଡିତ ବିଷ୍ଣୁଦାସ ପ୍ରାଣନାଥ ॥
ବନ୍ଦ ପୁରନ୍ଦର ମିଶ୍ର ବନ୍ଦ ଆଚାର୍ଯ୍ୟ ଗୋବିନ୍ଦ ।
ପରମାନନ୍ଦ ଗୁପତ ବଳରାମ ଦାସପଦ ॥
ଏହୁ ବସୁରାମାନନ୍ଦ ଅବଲମ୍ବ ପ୍ରଭୁ ଭାବ ।
ଭବବନ୍ଧ ବିମୁକ୍ତ ଜନ ଏହାଙ୍କୁ ଯେ ସେବ ॥
କାଶୀମିଶ୍ର ଶିଖିମାହାନ୍ତି ଯେ କାଳିଦାସ ଆଦି ।
ବନ୍ଦ ଶ୍ରୀରାମ ପଣ୍ଡିତ ପଦୁ କବି ଚନ୍ଦ୍ର ବନ୍ଦି ॥
ବନ୍ଦ ହିରଣ୍ୟଗର୍ଭ ଠାକୁର ଜଗନ୍ନାଥ ସେନ ।
ବନ୍ଦ ଦ୍ୱିଜ ପୀତାମ୍ବର ଦ୍ୱିଜ ଗୋବିନ୍ଦ ଘୋଷ ଗଣ
ବନ୍ଦ ରାଘବପଣ୍ଡିତ ବନ୍ଦ ନରସିଂହାନନ୍ଦ ।
ବନ୍ଦ ପୀତାମ୍ବର ପଣ୍ଡିତ କଂସାରିସେନ ପାଦ ॥
ଦ୍ୱିଜ ମୁକୁନ୍ଦ ପଣ୍ଡିତ କବିରାଜ ହରିଦାସ ।
ରାମଚନ୍ଦ୍ର କବିରାଜ ଆଦି ବାସୁଦେବ ଘୋଷ ॥
ବନ୍ଦ ଶ୍ରୀରଙ୍ଗ ପାଳ ଗୁରୁସ୍ୱାମୀ ଯେବେ ଶ୍ରୁତିକର ।
ବଳରାମ ଶ୍ରୀଗୋବିନ୍ଦ ନାମ କବିକର୍ଣ୍ଣପୂର
ବନ୍ଦ ଶ୍ରୀକାନ୍ତ ପଣ୍ଡିତ ବନ୍ଦ ଗୋପାଳପଣ୍ଡିତ ।
ବନ୍ଦ ପ୍ରବୋଧାନନ୍ଦ ଏସରସ୍ୱତୀ ପାଦଗତ ॥
ବଳରାମ ଭଟ୍ଟାଚାର୍ଯ୍ୟ ଆଦି ବନ୍ଦଇ ଚରଣ ।
ସପତ୍ନମ ସଖୀ ବକ୍ରେଶ୍ୱର ସ୍ୱାମୀଙ୍କ ଚରଣ ।
ପରମାନନ୍ଦ ଗୁପ୍ତ ବଳଭଦ୍ରସେନ ଆଦି ॥
ଜଗଦୀଶ ପଣ୍ଡିତଯେ ବନମାଳୀ ଦାସବନ୍ଦ ।
ବନ୍ଦ ଶ୍ରୀକର ପଣ୍ଡିତ ବନ୍ଦ ଦାସ ଶ୍ରୀପ୍ରାଣନାଥ ॥
ବନ୍ଦ ଲକ୍ଷ୍ମଣ ଆଚାର୍ଯ୍ୟ ପୁରୁଷୋତ୍ତମ ପଣ୍ଡିତ ।
ଏହୁ ଚନ୍ଦ୍ରରେଖା ମୁକୁନ୍ଦ ଦାସ ଗୋସ୍ୱାମୀ ଗଣ ।
ଅଷ୍ଟ ଚତୁଃଷଷ୍ଠୀ ମହାନ୍ତ ଶ୍ରୀଚରଣେ ଶରଣ ॥
ବନ୍ଦ କୃଷ୍ଣ କବିରାଜ ସ୍ୱାମୀ କସ୍ତୁରିକା ଏହି ।
ଶ୍ରୀଚୈତନ୍ୟ ଚରିତାମୃତ ନଦୀକ ବୁହାଇ ॥
ବନ୍ଦ ରୂପ ସନାତନ ରଘୁନାଥ ଭଟ୍ଟ ପାଦେ ।
ବନ୍ଦ ଗୋପାଳଭଟ୍ଟ ଶ୍ରୀଲୋକନାଥ ଦାସ ମୋଦେ ॥
ବନ୍ଦ ଦ୍ୱିଜ ଦାସଙ୍କୁ ଆଦି ସିଦ୍ଧ ମଞ୍ଜରୀ ଗଣଙ୍କୁ ।
କୋଟି କୋଟି ଦଣ୍ଡବତ ଏକ ଏକଇ ଜଣଙ୍କୁ ॥
ସିଦ୍ଧ ସୁଦାମାଦି ଦ୍ୱାଦଶ ସଖାଗଣଙ୍କୁ ବନ୍ଦେ ।
ଅଭିରାମ ଶ୍ରୀ ସୁନ୍ଦରାନନ୍ଦ ଚରଣାରବିନ୍ଦ ॥

ବନ୍ଦେ ଧନଞ୍ଜୟ ପଣ୍ଡିତ କମଳାକର ଆର ।
ଦତ୍ତ ଉଦ୍ଧବ ପୁରୁଷୋତ୍ତମ ଦାସ କାଶୀଶ୍ୱର ॥
ବନ୍ଦେ ଗଉରୀଦାସ ଆଦି ପଣ୍ଡିତ ମହେଶ ପଣ୍ଡିତ ।
ଓଷ୍ଟା ବନମାଳୀ ନର୍ତ୍ତକ ଗୋପାଳ ପ୍ରଭୁ ଭକ୍ତ ॥
ବନ୍ଦେ ନରହରିଦାସ ଆଦି ଦ୍ୱାଦଶ ମହାନ୍ତ ।
ପ୍ରଭୁ ଅନନ୍ତ ଭକତ ଗଣ କେ କରିବ ଅନ୍ତ ॥
ବନ୍ଦେ ସାରଙ୍ଗ ସ୍ୱଭାବ ପ୍ରହଲାଦ ଦାସ ଗଣେଶ ।
ରାଧାକୃଷ୍ଣ ପରିବାର ଯେତେ ବନ୍ଦେ ଜଣେ ଜଣେ ॥
ବନ୍ଦେ ଅଦ୍ୱୈତ ଆଚାର୍ଯ୍ୟ ମହାବିଷ୍ଣୁ ଅବତାର ।
ବନ୍ଦେ ହରିଦାସ ଠାକୁର ଯେ ସ୍ୱୟଂ ବେଦବର ॥
ବନ୍ଦେ ପ୍ରତାପରୁଦ୍ର ଯେ ଦେବରାଜ ବିଦ୍ୟମାନେ ॥
ଷଡ଼ଭୁଜ ପ୍ରଭୁ ଧରିଲେ ଯାହାର ଦରଶନେ ॥
ବନ୍ଦେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଜାତ ବୃହସ୍ପତି ।
ବନ୍ଦେ ଜଗଦାନନ୍ଦ ପଣ୍ଡିତ ସ୍ୱୟଂ ସରସ୍ୱତୀ ॥
ବନ୍ଦେ ବୃନ୍ଦାବନ ଦାସ ସ୍ୱାମୀ ବେଦବ୍ୟାସ ସେହୁ ।
ବନ୍ଦେ ବିଦ୍ୟାନିଧି ପଣ୍ଡିତ ଶ୍ରୀ ଶୁକଦେବ ଏହୁ ॥
ବନ୍ଦେ ଶ୍ରୀନିବାସ ପଣ୍ଡିତ ନାରଦ ଭକ୍ତସାର ।
ବନ୍ଦେ କେଶବ ଭାରତୀ ଗର୍ଗ ମୁନି ଅବତାର ॥
ପ୍ରଭୁ ଅନେକ ଭକତଗଣ ଜଗତେ ଅଶେଷ ।
ଶାନ୍ତ ଦାସ୍ୟ ସଖ୍ୟ ବାତ୍ସଲ୍ୟ ମଧୁର ପଞ୍ଚରସ ॥
କଳି କଳୁଷ ନାଶନେ ଗଉରଙ୍ଗ ରୂପ ସାଜେ ।
ଭକ୍ତ ଦେବଗଣେ ସେନାପତି ପୃଥ୍ୱୀ ପୃଥା ପାବନ ॥
ବୃନ୍ଦାବନ ଦାସ କୃଷ୍ଣ କବିରାଜ ଦୁଇ ରଥୀ ।
ବର୍ତ୍ତମାନ ଲୀଳା ଚନ୍ଦ୍ରନେ ପାଷଣ୍ଡ ଦଳନ୍ତି ॥
ମହାପ୍ରଭୁ ଆଜ୍ଞା ପରମାଣେ ପ୍ରଭୁ ସନାତନ ।
ଭାଗବତ ଭକ୍ତି ଗ୍ରନ୍ଥ ଲେଖି ଜୟ ତ୍ରିଭୁବନ ॥
ଅତି ପରମ ଗୁମନ୍ତ ବାଳକ ରସ ବର୍ଣ୍ଣିଛି ।
ବ୍ୟାସଦେବ ଅନ୍ତରେ ଥିଲେ ଯେ ରସ ଲୁଚାଇ ॥
ମହା ଦୟାଳୁ ଚୈତନ୍ୟ ପ୍ରଭୁ ଜଗତେ ବିଳାଇଛି ।
ରୂପ ସନାତନ ହୃଦେ ରହି ବଦନେ କୁହାଏ ॥
ଗୁପତ ବ୍ରଜ ଚରିତ ଏହି କହେ କୃଷ୍ଣଲୀଳା ।
ଭକ୍ତ ଜନ ହୃଦୟର ଘାଟଳାରେ କରେ ମାଳା ॥
ଲକ୍ଷ ଲକ୍ଷ ଭକ୍ତ ଚୈତନ୍ୟ ଲେଖି ଅଛନ୍ତି ରଖି ।
ଏଣୁକରି କଳିଯୁଗଜନେ ଦୟାକରେ ଦେଖି ॥

ବ୍ରଜ ବିହାର ଚରିତ ରସ ଆସ୍ୱାଦନ କାଳେ ।
ମୋର ନିମିତ୍ତ ସେ ରୂପ ସନାତନ ଥୋଇଗଲେ ॥
ହରି ଭକତ ସେ ଦୀନ ହୀନ ଦେଖି ଦୟାକରେ ।
ଏହୁ ଅବଶେଷ ଆସ୍ୱାଦନରେ ଏ ରସ ଉଚ୍ଚାରେ ॥
ସାଧୁଜନ ଏଣୁକରି ମୋର ନ ଦେଖିବ ଦୋଷ ।
ତୁମ୍ଭ ପ୍ରଭୁଙ୍କର ଭକ୍ତ ତୁମ୍ଭ ଦାସର ମୁଁ ଦାସ ॥
ବ୍ରଜବିହାର ଷଡ଼ୁବୋଲି ଯେ ମଧୁର ଲଳିତ ।
ଷୋଡ଼ଶାକ୍ଷରେ ଭାଗବତର ଦଶମ ଚରିତ ॥
କୃଷ୍ଣ ଅଙ୍ଗେ ଗୁଞ୍ଜା ଦେଖି ରାଧା ଆଦି ସଖୀ ଛଳ ।
ବାହୁଡ଼ାନ୍ତି ହରି ସ୍ପର୍ଶ ମୁଖ ନପାରନ୍ତି ବଳ ॥
ଶ୍ୱେତ ଗୁଞ୍ଜା ବୀଜାଙ୍କୁର ମାଳା ଗୁନ୍ଥି ରାଧା ବହେ ।
କୃଷ୍ଣ ଦେଖି ପୁଚ୍ଛନ୍ତେଣ ଆମ୍ଭ ବନେ ଅଛି କହେ ॥
ଆମ୍ଭ ବଜ ଭାଗ ହେବ ବୋଲେ ବୃନ୍ଦାବନେଶ୍ୱର ।
ଶୁଣି ଅବଜ୍ଞା କଲେ ରାଧା ପରମ ଆଦର ॥
ଭୃକୁଭଙ୍ଗ ମନ୍ତ୍ର ପାଲଟି ହରିଙ୍କି କୋଳକରେ ।
ଅଳି ନିବାରି ନାଗର ରଖି ବାନ୍ଧି ବନ୍ଧନରେ ॥
ଦଣ୍ଡ ଭେଦ ଶାମ ଉପାୟେ ନ ପାରେ ସଖୀ ଫେଡ଼ି ।
ବୃନ୍ଦାଦେବୀ ଶିଖ ବଚନେ ଶାଖୀ ଶୁକ ପଢ଼ି ॥
ମାର୍ଗଶୀର ଅମାବାସ୍ୟା ଉଦୟେ ରାଧିକାରେ ।
ଏହି ସମୟରେ ଶୁକ ସ୍ୱରେ ମହା ମହନ୍ତରେ ॥
ଯୋଗ ଅର୍ଦ୍ଧଯୋଗ ମହାଯୋଗ ଉପମା ରୂପକେ ।
ମୁଞ୍ଚଦେରେ ବସି ଶୁଣେ ରାଧା କୃଷ୍ଣ କଉତୁକେ ॥
ରାଜା ପରଜା ଅନ୍ୟାୟ ରହ କହାଁ ଉଠିଲେ ।
ଏମନ୍ତେଣ ରାଜ ସୂର୍ଯ୍ୟ ପରଜା ସାରି ଲେଉଟିଲେ ॥
କୃଷ୍ଣ ଟାଙ୍ଗି ରସନାର୍ଥେ କେ କନ୍ଦର୍ପର କାଳେ ।
ସ୍ୱଜନ ପାନେ ମଣାଇ ଦେଖିଲେ ସକଳେ ॥
ଏକ ଏକ ମନ ବାଦନି କଳାନ କରେ ହରି ।
ମଧୁମଙ୍ଗଳ ସୁବଳ ବୋଲେ ନାରଦ ନାଗ ॥
ବୃନ୍ଦେ ଅମୃତ-ଲୋଚନ ଚାନ୍ଦ ନୋପାଳ ଛାଇଛି ।
ବ୍ରଜବାସୀ ଜନେ ମହା ସୁଖ ସମ୍ପତ୍ତି ଦିଆଇ ॥
ଦେବ ମାଇ ଚନ୍ଦ୍ରାବଳୀ କୃଷ୍ଣ ଶ୍ୱେତ-ଗୁଞ୍ଜା ମାଗେ ।
ବୃନ୍ଦା କହେଁ ଗୁଞ୍ଜ ଶୁଣି ମହାତମ ମାନଭଙ୍ଗେ ॥
ହରିପାଦ ଚନ୍ଦ୍ର ନିରମାଣି ଗୁଞ୍ଜ ହରି ନେଲେ ।
ସତନରେ ମାଳ ଲମ୍ବାଇଣ ରାଧା-ସୂତାର ଗଲେ ॥

ଗଉରବ ପାଇ କୁଶଳ ହୁଅନ୍ତି କୁହା କୁହି ।
କୃଷ୍ଣ କହିବା ସମସ୍ୟା ବଢ଼ମାରେ ପଦ୍ମା କହି ॥
ଗୁଞ୍ଜି ଦେଖି ସଖୀ ପୁଚ୍ଛନ୍ତେଣ ହରି ଦେଲ କହି ।
ପଦ୍ମି ରତ୍ନ-ହିଣ୍ଡି ଆଣି ତହିଁ ଏକା କେନ୍ଦ୍ର ବହି ॥
ରାଧା ମାନ ଜାତକରେ ପଦ୍ମା କହିବା ଛନ୍ଦରେ ।
ଗୁଞ୍ଜି-ଶ୍ଳେଷ ଜଣାଗଲା କୃଷ୍ଣ-ସମସ୍ୟା ବନ୍ଧରେ ॥
ଗାଢ଼ ଅନୁରାଗ ରାଧିକାରେ ସେହି ସମସ୍ୟାରେ ।
ଯତନରେ ସଖୀ ପଠାଇଲେ ତାହାଙ୍କ ମୁଖରେ ॥
ଲଜପାଇ ଆସି ଚନ୍ଦ୍ରାବଳୀ ଦୁଃଖକୁ ଘେନାଇ ।
ଦୂତିକି ପେଶି କୃଷ୍ଣ ସିଦ୍ଧ ବି ଆତ୍ମରେ ଜଣାଇ ॥
କଂସର ଶ୍ରୀମୁଖେ ଘେନି ଜଣେ ଆସେ ଗୋପପୁର ।
କାଳିନ୍ଦୀକୁ ପଦ୍ମ ତୋଳି ଦେବସହସେକ ଭାର ॥
ଶୁଣି ନନ୍ଦ ଆଦି ଯେତେ ଗୋପେ ଆରତ ଚିତ୍ତରେ ।
ଏହି ହେତୁ ହରି କାଳୀ ଦଳି ବହୁତ ହିତରେ ॥
ଗୋପ ବିକଳେ ଜଳୁ ବାହାରି କାଳୀକ ଘଉଡ଼ ।
ନିଶା ହୁଅନ୍ତେ ସେ କୂଳେ ରହି ହୁଏ ବନ ପୋଡ଼ ॥
ଦାବାନଳ ଉଡ଼ାଇଣ ହରି ଯୋଗମାୟା ବଳେ ।
ରାଧାସଙ୍ଗ ଇଚ୍ଛିଁ ବନ ଅନ୍ଧକାର ଘନମାଳେ ॥
ଗୀତ ଗୋବିନ୍ଦ ପ୍ରଥମ ଶ୍ଳୋକେ ଜୟଦେବ କହେ ।
ଏହି ଦିନ ନନ୍ଦ ରାଧା ସଙ୍ଗେ କୃଷ୍ଣ ପେଷେ ଗୃହେ ॥
କାଳୀପତ୍ନୀ ଦେବା ରତ୍ନହାର ଦେଇ ରାଧାଗଲେ ।
ଚନ୍ଦ୍ରାବଳୀ ଆଳୀକୁଳ ଦର୍ପ ଦଳି ପଛେ ମିଳେ ॥

କୁଞ୍ଜେ ବିହାର କରିଣ ନନ୍ଦୀଶ୍ୱରେ କୃଷ୍ଣ ଘେନି ।
ନନ୍ଦଯଶୋଦା ଗଉରି ସବୁ ନାରୀ ମଧ୍ୟେ ଧନୀ ॥
ସପତ୍ନୀ ଅସହଣୀ ଶୈବ୍ୟା ଜଟିଳା ଭୁବନେ ।
ବାଡ଼ି ଲେଖି ପଦ୍ୟାବଳୀ ରାଧାକୃଷ୍ଣ ରାସବନେ ॥
ବୃନ୍ଦୀ ପଡ଼ି ତର୍ଜନାରେ ମୁଖରା ଆଣି ଗଲା ।
ରାଧା ସିଦ୍ଧୀ ଜାଣି ଅନୁସ୍ୱାର ଦେଲେ ଆନ ହେଲା ॥
ରାମକୃଷ୍ଣ ସଖା ସଙ୍ଗେ ରଙ୍ଗେ ବନେ ବିଳସି ।
ଫଳ ଜଗାଇ ନେଲାଟି ଭ୍ରମ ଧ୍ରୁଲମ୍ବା ବିନାଶି ॥
ଏହି ସବୁ ଅନୁକ୍ରମେ ଗୀତ ହୋଇବ ବିସ୍ତାର ।
ଯେ ଶୁଣିବ ଏହି ରସ ସେ ହୋଇବ ନିସ୍ତାର ॥
ମୁନିଙ୍କ ବର ପୁଚ୍ଛି ନାରଦେ ପୁଣ ପ୍ରଶ୍ନବନ୍ଧେ ।
ନନ୍ଦ ମନ୍ଦିରେ ରାଧାକୃଷ୍ଣ ମିଳାଣିକ ସମ୍ବାଦ ॥

ଏଥି ଉତ୍ତାରୁ ଗୋପ ଚରିତ ସାବଧାନ ହୋଇ ।
ବୃଷ ରୂପେ ଥିଲା ଅଇଲ ଜାଣିବ ମୁଁ କାହିଁ ॥
ଶୁଣି ମୁନିବର ଗଦଗଦେ ପ୍ରେମଭାବ ବହି ।
ତନୁ ପୁଲକ ଲୋଚନ ଅଶ୍ରୁଧାର ଯାଏ ବହି ॥
ଶୁଣି ଧନପତି ପୁନ ମହାଭାବ ଗୂଢ଼ରସ ।
ତୁମ୍ଭ ପ୍ରଶ୍ନେଣ ହରି ମୋହୁଦେ କରନ୍ତୁ ପ୍ରକାଶ ॥
ପାକ ଭୋଜନ ବନ୍ଧାଇ ରାଇ ଉଦବେଗ ମନ ।
ଧେନୁ ବୃନ୍ଦ ଘେନି ଯହୁଁ କୃଷ୍ଣ ବିଜେ ବୃନ୍ଦାବନ ॥
ଦୃଶ୍ୟହେବା ପରଯନ୍ତେ ନେତ୍ର ନିଶ୍ଚଳରେ ରହି ।
ମନ ଗମେ ସଙ୍ଗେ ନୟନ ଦୁଃଖିତ ଲୁହ ବୋହି ॥
ଛନ ଛନ ଉଦବେଗ କୃଷ୍ଣସଙ୍ଗେ କେଳି ରଙ୍ଗେ ।
କୁନ୍ଦଲତା ସଙ୍ଗେ ଯିବ ଯଶୋଦାଙ୍କୁ ଆଜ୍ଞା ମାଗେ ॥
କୋଳେ ବସାଇ ଯଶୋଦା ଶିରକୁ ଆଘ୍ରାଣକରି ।
ନେତ୍ର ଥନ ଥନ ପୁଣ କହେ ରାଧା ଉଷ୍ଣ ଧରି ॥
ଆମ୍ଭ ତୁମ୍ଭର ଏ ଘର ସିନା ଆସୁଥିବ ନିତ୍ୟ ।
ମୋର ବାଳୁତ ତୁମ୍ଭର ପାକ ଅନ୍ନରେ ତୃପତ ॥
ପୁଷ୍ପ ଚନ୍ଦନ ତାମ୍ବୁଳ ଅଳଙ୍କାର ଆଦି ଦେଲେ ।
କୃଷ୍ଣ ବିଭାକୁ ଆଗହୁଁ ଯାହା ସଞ୍ଚ ରଖିଥିଲେ ॥
ଲଳିତାଦି ସଖୀଜନେ ତୋଷି ମଧୁର ବଚନେ ।
କୁନ୍ଦଲତା ରାଧା ସଙ୍ଗେ ଦେଇ ପେଶିଲେ ସଦନେ ॥
ଜଟିଳାର ଶ୍ରୀମୁଖରେ ନେତ୍ର-ବଧୂ ସମର୍ପିଲେ ।
ବ୍ରଜେଶ୍ୱରୀ ପ୍ରୀତି ପୁରୁଷାର୍ଥ ସମସ୍ତ କହିଲେ ॥
ମତ୍ତ୍ୟ ଜାଣିଣ ଜଟିଳାକୁନ୍ଦଲତାକୁ ପ୍ରଶଂସି ।
ଧନ୍ୟ ଧନ୍ୟ ସତ୍ୟଶିରୋମଣି ପରମ ବିଶ୍ୱାସୀ ॥
ରାଧାପାକ ସରାଧାକୁ ସେବେ ନେବ ଏହି ମତ ।
ଆନ ସଙ୍ଗେ ନ ପେଶିବ ମୋର ତୁମ୍ଭଙ୍କୁ ପରତେ ॥
ବାସ ଅଳଙ୍କାର ଦେଖିଣ ବହୁତ ହେଲା ତୋଷି ।
ସୂର୍ଯ୍ୟ ପୂଜିବାକୁ ବଧୂମାନଙ୍କ କୁନ୍ଦଲତା ପେଷି ॥
ଜଟିଳାର ଆଜ୍ଞା ମାଗି କୁନ୍ଦଲତା ରାଧା ସଙ୍ଗେ ।
ସଖୀଗଣ ଘେନି ମୂର୍ଯ୍ୟସ୍ଥଳେ ଚଳେ ନାନା ରଙ୍ଗେ ॥
କୁଣ୍ଡବନେ କୃଷ୍ଣ ଦରଶନେ ବିକଳ ପ୍ରକାର ।
ଅଙ୍ଗ ଭୂଷିତ ହୋଇଣ ସୁର ସଙ୍ଗ ମନୋହର ॥
ନାନା କେଳି ରସ ବିଳାସ ମନୋଜ କୁନ୍ଦେ ଚିତ୍ତ ।
କୃଷ୍ଣ ରାଧାଙ୍କ ସେମନ୍ତ ରାଧା କୃଷ୍ଣଙ୍କ ସେମନ୍ତ ॥

ହରି ଅଙ୍ଗେ ରଙ୍ଗ ଗୁଞ୍ଜମାଳା ଦେଖି ପୁଚ୍ଛେ ଧନୀ ।
ରତ୍ନହାର ଥୁଇ କେବଣ ଗୁଣରେ ଅଛ ଘେନି ॥
କୃଷ୍ଣ ବୋଲନ୍ତି ଏ ଗୁଞ୍ଜ ତୁମ୍ଭ ଭାବ ଅନୁସରି ।
ମୁଖେ କୁଟିଳ ଶରୀର ଅନୁରାଗେ ଥାଏ ପୂରି ॥
ଚେତ୍ତୁକର ତୁମ୍ଭଭାବେ ହୃଦେ ବନ୍ଧନ ଅଛଇ ।
ଏହି ମାଳା ଦେଖୁଛୁ ମଦନ ଧାତୁରୁ ବଞ୍ଚଇ
ବୋଲେ ଲଳିତା ଶୁଣ ସଖି ଏ ଗୋପାଳ ... ।
ନୀଳ ପ୍ରବାଳ ଏକଇ ... ଣି କରନ୍ତି ଧାରଣ ।
ବୋଲେ ବିଶାଖା ଏ ମୋତିହାର ଶ୍ରବଣ୍ଡି ... ।
ଚନ୍ଦ୍ରାବଳୀ ଅଙ୍ଗ ଯାବକ ଅଞ୍ଜନ ଲାଗିଛି ॥
ଶ୍ୟାମା କହେ ତମ ଅରୁଣକୁ ଏକ ସଙ୍ଗେ ଧରେ ।
ଚନ୍ଦ୍ରାବଳୀ ଝୁଣ୍ଟି ଉଜ୍ଜ୍ୱଳ ରସକୁ ଉଦେ କରେ ॥
ଚମ୍ପାଲତା ବୋଲେ ଚନ୍ଦ୍ରାବଳୀ ଲଲାଟ ଶନରେ ।
ଧରି ସିନ୍ଦୂର କସ୍ତୁରୀ ହରି ହୃଦୟ ପାଶରେ ॥
ବୋଲେ ଧୃନ୍ଦେଶୀ ସେ ଚନ୍ଦ୍ରାବଳୀ ନିମନ୍ତ୍ରଣ କଲେ ।
ସନ୍ଧ୍ୟା ନିଶାମିଳନକୁ ଏ ସଙ୍କେତ ମାଳା ଦେଲେ ॥
ରଙ୍ଗଦେବୀ ଭାଷେ ଚନ୍ଦ୍ରାବଳୀ କୁରଙ୍ଗ ଲାଞ୍ଛନ ।
ଅନୁରାଗେ ହୃଦେ ଧରି ହରି ବୋଇଲେ ଭୂଷଣ ॥
ତୁଙ୍ଗବିଦ୍ୟା ଭଣେ ସାଲକୋକନଦେ ଅଳି ଭ୍ରମେ ।
ରଙ୍ଗବତୀ ମାଳ ଆନନ ନାଗର କାହ୍ନୁ ରମେ ॥
ଚନ୍ଦ୍ରରେଖା କହେ ଉଭୟ ଭାବରେ ବର୍ଣ୍ଣେ ମାଳା ।
ଚନ୍ଦ୍ରାବଳୀ ଗଣେ ଅନୁରାଗ-ଆମୋଦେ କୁଟିଳା ॥
ପ୍ରିୟସଖୀ ନିକର ବଚନାନ୍ତରେ କହେ ହରି ।
ମନ୍ଦହାସେ ମଜ୍ଜନରେ ଗାଧ ... ଣ କୃଶୋଦରୀ ॥
ମୁହିଁ ତୁମ୍ଭ ଭାବେ ଗୁଞ୍ଜା ଦେହେ ନାନାର୍ଥ ଲଗାଅ ।
ବିଦଗଧ ବଚନେ ପ୍ରମାଣୁ ଯେ ବଚନ ଭଙ୍ଗାଅ ॥
ଆମ୍ଭ ବେଶରେ ଗୋପାଳ ବନ ଫୁଲ ଫଳ ନାହିଁ ।
ଚେତ୍ର ଆଭରଣ ଇଚ୍ଛା କରେ ରାଜଜେମା ଯେ ... ॥
ଏହି ସ୍ୱଭାବେ ଗୁଞ୍ଜରେ ଯେ ଖଣ୍ଡି ... ମଣ୍ଡି ... ।
ଏହି ଫଳ ଯେବେ ... ଦେଖାଅ ... ॥
କଥାରସେ ଛଳବଳେ କୃଷ୍ଣ ବିଳାସରେ ବା... ।
ନା...କୁଳ କୁଞ୍ଜ ମଞ୍ଜୁଳ ବଞ୍ଜୁଳ ବନେ ... ॥
ଜନ ଆତଯାତ ... ଭୟେ ବାହୁଡ଼ିଲେ ।
ନିଜକୁଞ୍ଜେ କେଳିବନେ କୃଷ୍ଣ ଘେନି ବିଳସିଲେ ॥

ଶାଶୂ ଜଟିଳାର ଭୟେ ବନ ଛନ ଚନ୍ଦ୍ର ହୋଇ ।
ସୂର୍ଯ୍ୟ ପୂଜା ମଧ୍ୟାହ୍ନରେ ବାମନାର ପୁରେ ଯାଇ ॥
ଗୁରୁଜନ ପ୍ର...ଜନ ମ... ମଳ ଦର୍ଶନ ।
ପ୍ରୀତି ମାନସେ ... ବନସ୍ଥ ବଚନେ ॥
କାନ୍ତ ଗୋସ୍ୱରା... ରଚେ ଉପହାର ।
ଦଧି ଶାକର କଦଳୀ ... ଖିରଣୀ ସାର ॥
ଏମନ୍ତେ କୃଷ୍ଣ ସାୟଂ ସମୟରେ ବନୁ ଆସେ ।
ସମ ବୟସ କୁମର ସଙ୍ଗେ ବେଣୁନାଦ ଘୋଷେ ॥
ହେମା ଗାବରେ ଗୋଧନପଥ ପୂରଣ ଅଇଲେ ।
ଗୋପ ବିଚ୍ଛେଦାନଳ ଶୀତଳ ଗଙ୍ଗା କି ବହିଲେ ॥
ଆଗେ ଗାବ ପଛେ ସଖା ସଙ୍ଗେ ରାମକୃଷ୍ଣ ନେନି ।
...ମ ହାର ମଧ୍ୟେ ଯେସନେ ଶୋଭେ ହୀର ନୀଳାମଣି ॥
ଧାଇ ଅଟ୍ଟାଳୀ ଆରୋହେ କୃଷ୍ଣ ମୁଖ ନିରୀକ୍ଷଣେ ।
ସଙ୍ଗ ବିଚ୍ଛେଦ ବିପଦ ମହାଦୁଃଖ ଉପେକ୍ଷଣେ ॥
କାନ୍ତ ଶ୍ରାନ୍ତ ନିମନ୍ତେ ଯେଉଁ ପକ୍ୱାନ୍ନ ସମ୍ବାଦ ।
ଦ୍ରବ୍ୟ ଅମୃତ କର୍ପୂରକେଳି ଲଡ଼ୁ ନାନା ସ୍ୱାଦ ॥
ଅଷ୍ଟସଖୀ ପାଶେ ପୂରାଇ ଚନ୍ଦନ ମୁଦ ଦେଇ ।
ଚମ୍ପା ଲତିକାର ହସ୍ତେ ଦିଏ ପ୍ରେମଭର ହୋଇ ॥
ଧନିଷ୍ଠାର ସଙ୍ଗେ ବ୍ରଜେଶ୍ୱରୀ ସମୀପେ ପ୍ରେରନ୍ତି ।
ଉପହାର ଘେନି ବେନି ବାଳୀ ହରଷେ ଆସନ୍ତି ॥
ଯଶୋବନ୍ତୀ ଆଗେ ଥୋଇ ଟିଇ ନିବେଦନ କହି ।
ବୃଦ୍ଧା ଆନନ୍ଦରେ ବୋଲନ୍ତି କଲ୍ୟାଣ ହେଉ ଗାଇ ॥
ଯବେ ରଖି ଉଦବେଗ ଆସେ କୃଷ୍ଣ ଆଗମନେ ।
ପୁତ୍ର ଦେଖି ସ୍ନେହେ ଅଶ୍ରୁ ନେତ୍ର କ୍ଷୀରମୟେ ସ୍ତନେ ॥
ନନ୍ଦ ଉପନନ୍ଦ ବସୁନନ୍ଦ ଆଦି ଗୋପା ଯେତେ ।
ପନ୍ଥ ଅଗୋଣି ... କୃଷ୍ଣ ଦେଖିବା ନିମନ୍ତେ ॥
କୁଳବଧୂ ଗୃହେ ... ପଥ ଦେଖି ।
ଧଳର୍ଯ୍ୟ ଧରି ... ଚିଳ ପାଖେ ପାଖେ ॥
କୃଷ୍ଣ ଅଙ୍ଗରେ ମୁ... ମଣ୍ଡଳେ ରହିଲେ ।
ସଖୀମାନେ ସଙ୍ଗେ ପୁରଦ୍ୱାରେ ପ୍ରବେଶ ହୋଇଲେ ॥
ମାତା ଯଶୋଦା ନେତ୍ରହନ୍ତ୍ରୀ ଅଙ୍ଗ ନଉଛି ଥାଳେ ।
କେତେ କହୁ ବ୍ରଜରାଜ ନନ୍ଦନନ୍ଦନ ସମ୍ପତ୍ତି ।
ଶ୍ରମ ଜଳରେ ଯୋଗଧୂଳି ତନୁ ଯଶୋମତୀ ପୋଛିଲେ ॥
ମୁଖ ଚୁମ୍ବନ ଦେଇ କୋଳକରି ପୁରେ ପଶିଲେ

ଯେଝା କୁମରଙ୍କୁ ଜନନୀ ମନ୍ଦିରେ ଗଲେ ଘେନି ।
ସ୍ନାନ ସୁବେଶ ଭୋଜନ କରେ ରାମ କୃଷ୍ଣ ବେନି ॥
ରାଇ କର ପରଶ ଅଶନ ସ୍ୱାଦ ସଉରଭ ।
କୃଷ୍ଣ ମନ୍ତ ଅଭିରୁଚ ଭୁଞ୍ଜି ପୂର୍ଣ୍ଣ କରେ ଗର୍ଭ ॥
ମାଏ ରାଣୀ ଦେଇଣ ଭୁଞ୍ଜାନ୍ତି ପଦାର୍ଥ ଶହ୍ଲାଇ ।
ବାବୁ ଅତି ଯତ୍ନେ ବୃଷଭାନୁ ଜେମା ଅଛୁ ଦେଇ ॥
ମାଏ ଅତି କହିଲେନ୍ତି ଅଧେ ଭୁଞ୍ଜି ଅଧେ ମୁଞ୍ଚେ ।
ରାଇ ଆଶାକୁ ଜାଣି ଧନିଷ୍ଠା ଯତ୍ନେ ନେଇ ସଞ୍ଚେ ॥
ଭୋଜନର ଅନ୍ତେ ଆଚମନ ସୁବାସିତ ନୀରେ ।
ତଥି ଆସନରେ ଜନ୍ମିଲ ତାମ୍ବୂଳ ଲାଗି କରେ ॥
ଚମ୍ପା ଲତିକା କୃଷ୍ଣ ଅଧରାମୃତ ଘେନି ଚଳି ।
ଛୁରିତରେ ଯାବଟରେ ଯାଇ ରାଧା ପାଶେ ମିଳି ॥
ଦେଖି ଆସନ ତ୍ରୁଡ଼ି ବସନ ପାତି ଗଉରବେ ।
ଅତି ଲାଳସ ମାନସ ଅବଶେଷ ସଉରଭେ ॥
ମହା ଆନନ୍ଦ ଭକ୍ଷଣ ସେବା କରି ହୁଏ ତୋଷୀ ।
ଏହା ବିନା ଅନ୍ନପାନ ନକରଇ ଶୁଭ୍ରକେଶୀ ॥
ପ୍ରାତଃ କାଳ ପରି କୃଷ୍ଣ ସଖା ସଙ୍ଗ ଗାଈ ଦୁହେଁ ।
ଦୁଧଭାର ଘେନାଇଣ ସେ ପ୍ରବେଶ ନିଜ ଗୃହେ ॥
ପିତା ସଙ୍ଗେ ଷଡ଼ରସାନ୍ନ ଭୁଞ୍ଜନ୍ତି ବେନି ଭାଇ ।
ପ୍ରଦୋଷରେ ଗୋପ ସଭାରେ ପ୍ରବେଶ ହେଲେ ଯାଇଁ ॥
ଗୁଣୀଗଣ ନୃତ୍ୟ ଗୀତ ବାଦ୍ୟେ ସାବଧାନ ହୁଏ ।
ନିଦ୍ରା ଆଳସ୍ୟ ଜନନୀ ଭୃତ୍ୟ ପେଷିଣ ଅଣାଏ ॥
ସୁଗନ୍ଧିକା ସ୍ୱାଦୁ ଗାବ ଦୁଗ୍ଧ ଯତ୍ନେଣ ରଖାଇ ।
ରାଣୀ ଦେଇ ଅଙ୍ଗ ଆଉଁସିଣ ଲଳତେ ପିଆଇ ॥
କୃଷ୍ଣ ପଲଙ୍କେ ଶୁଆଇ ପୁର ଚହଲ ନିଷେଧି ।
ନିଦ୍ରାଭଙ୍ଗ ଭୟେ ଜଣେ ଜଣେ କହିଣ ପ୍ରବୋଧି ॥
ଏଣେ ରାଇ ବେଶ ହୁଏ ଶୁକ୍ଳ ପକ୍ଷ ଅଭିସାରେ ।
କେଶ ସାଞ୍ଜୋଇଣ ଗନ୍ଧମଣ୍ଡି ମଲ୍ଲିକା ପୁଷ୍ପରେ ॥
ଚନ୍ଦ୍ରରଶ୍ମି ମୋତି ସିମନ୍ତୀ ଖଞ୍ଜନ୍ତେ ମହାଶୋଭା ।
ନବ ନୀରଦେ ଆଚ୍ଛାଦେ କି ସେ ପୂର୍ଣ୍ଣଚନ୍ଦ୍ର ପ୍ରଭା ॥
ଭାଲ ପିଣ୍ଡରେ ଚନ୍ଦନ ବିନ୍ଦୁ ଇନ୍ଦୁ ପରେ ଇନ୍ଦୁ ।
ଦେଖି ମୁଖ କଳା ପଡ଼ିଲା ଓସ ଗଗନର ବିଧୁ ॥
ଷୋଳ କଳାହୀନ ମୁଁ ତ ଏତ ସହସ୍ର କଳାରେ ।
ଲାଜ ପାଇ ଲୁଚି ଯାଇ ଭୟେ ମେରୁ ଉହାଡ଼ରେ ।
ନେନେ ଘନଶ୍ୟାମାଞ୍ଜନ ଧରେ କର୍ପୂର ତାମ୍ବୂଳ ।
ମନ୍ଦହାସେ କୁନ୍ଦଦଶନର ବିକାଶେ ଉଜ୍ଜ୍ୱଳ ॥
କଣ୍ଠେ ହୀରାରତ୍ନଚାଟଙ୍କ କଣ୍ଠରେ ମୋତିହାର ।
ଭୁଜେ ଅଙ୍ଗଦ କଙ୍କଣ ଚୂଡ଼ି ମୁଦି ସୁବର୍ଣ୍ଣର ॥
ସୂକ୍ଷ୍ମ ସରୁ ଶ୍ୱେତ ବସନ ଅଙ୍ଗରେ ଆଚ୍ଛାଦନ ।
ସର୍ବାଙ୍ଗରେ ବୋଳ ସମରାଗେ କର୍ପୂର ଚନ୍ଦନ ॥
ପାଦେ ନୂପୁର ଖଞ୍ଜିଣ ବେଗେ ବେଶ ବଢ଼ାଇଲେ ।
ବୃନ୍ଦା ଶ୍ୱେତ ପଦ୍ମ କରେ ଦେଇ ପଥ କଢ଼ାଇଲେ ॥
ଗତ ମତ୍ତ ସଖୀ ସଙ୍ଗତେ ଚଳଇ ହଂସଗାମୀ ।
ପ୍ରାଣନାଥ ନ ଦେଖିଣ ଶଙ୍କ ଛନ ଛନ ଭ୍ରମି ॥
କୃଷ୍ଣ ବାଖାର ଶୟନ ପୂର୍ବ ପଶ୍ଚିମ ଦୁଆରେ ।
ଲୋକଭୟେ ଗମେ ପଥେ ଚତୁ ଆବୃତ ଜ୍ୟୋତ୍ସ୍ନାରେ ॥
ଯମୁନାର ତଟ ନିଭୃତ କୁଞ୍ଜରେ ରାଇ ଭେଟି ।
ବେନି ଜଣଙ୍କର ଆନନ୍ଦ ବିଚ୍ଛେଦ ଗଲା ତୁଟି ॥
ନାସାପୁଥ ସଙ୍ଗ ମନ୍ମଥ ରଙ୍ଗେ ବିଳସଇ ।
ଜାମ୍ବୁନଦ ମଧ୍ୟେ ନୀଳମଣି ଯେମନ୍ତ ଦିଶଇ ॥
ନବ ନିଭୃତ କୁଞ୍ଜରେ ପୁଷ୍ପଶଯ୍ୟା ଏକ ସଙ୍ଗେ ।
ରସେ ରସିକ ସେ ରସବନ୍ଧ ରତିରଣ ରଙ୍ଗେ ॥
ଝାଳେ କର୍ପୂର ଚନ୍ଦନ ଘନନାର ଅଙ୍ଗୁ ଖସି ।
ଗୁଞ୍ଜହାର ଛିଡ଼ି ଏକ ଗୋଟି ଅଲ୍ପ ତନ୍ତି ମିଶି ॥
ଏମନ୍ତେଣ ମହାନିଶା କାଳେ ଶ୍ରମରେ ନୟନ ।
ନିଶା ଶେଷ ଦେଖି ବୃନ୍ଦାଦେବୀ ଉଦବେଗୀ ମନ ॥
ଶୁକ ଶାରିକ ଯତନରେ ପଢ଼ାଇଣ ପଦ୍ୟାବଳୀ ।
ସଖୀଗଣ ଜାଣି ଜାଗ୍ରତେ ହୋଇଣ ଏକମେଳ ॥
ରାଧା କୃଷ୍ଣଙ୍କ ଶୟନ ଶୋଭା ଦେଖେ ଲତା ଭେଦେ
ମୁଖେ ମୁଖ ଉରେ ଉର ବାହୁ ପାଦେ ପାଦ ଛନ୍ଦେ
ପକ୍ଷୀ କୋଳାହଳ ଶୁଣିଣ ଜାଗ୍ରତ ହୋଇ ବସି ।
ହାଇମାରି ଅଙ୍ଗମୋଡ଼ି ଏକ ଗୁହ୍ୟ ହସା ହସି ॥
ବୁଝେ କକ୍ଷଟି ଜଣାଏ ବନେ ଜଟିଳ ଆଗମ ।
ସର୍ବେ ଉଦବେଗ ମନ ଖେଳ ଯିବାକୁ ଉଦ୍ୟମ ॥
ସୁଖ ମନ ରଖି ଦୁଃଖ ମନେ କୁଞ୍ଜରୁ ଆସନ୍ତି ।
ବେନି ଅଙ୍ଗ ଭୋଗ ଯେତେ ସଖୀ ସମ୍ଭାଳି ଆଣନ୍ତି ॥
ଦେଖି ଶ୍ରୀଅଙ୍ଗ ଉଲଗି ଗନ୍ଧ ଚନ୍ଦନ ପଙ୍କରେ ।
ଗୁଞ୍ଜ ଅଙ୍କୁର ହୋଇଛି ମୃଦୁ ଏକ ଆଭକରେ ॥

ଦେଖି ସଖି ଏ ଉଜ୍ଜ୍ୱଳ ରସ ଅଙ୍କୁର ହୋଇଛି ।
ଫୁଲବନେ ଲଗାଇବା ବୋଲି ଘେନିଲେ ମୃଗାକ୍ଷୀ ॥
ଗୁରୁଜନ ଭୟେ ନିଜ ମନ୍ଦିରେ ପ୍ରବେଶ ହେଲେ ।
ନିଶି ନିଶି ମତେ ଯେଝା ପଲଙ୍କେ ଶୟନ କଲେ ॥
ପାହାନ୍ତି ଗଙ୍ଗାକୂଳେ ମିଳେ ସ୍ନାନ ନିମିତ୍ତରେ ।
ନବ ଗୁଞ୍ଜାଙ୍କୁର ରୋପିବାକୁ ଶରଧା ଚିତ୍ତରେ ॥
ଯେଉଁ ତଟେ ରୋପିଛନ୍ତି ନାନା କୁସୁମ ବନିକା ।
ଅତି ଶରଧାରେ ନିତି ପ୍ରତି ପାଳେ ଯା ରାଧିକା ।
ସଖୀବୃନ୍ଦ ଘେନି ସେହି ବନେ ପ୍ରବେଶ ହୋଇଲେ ।
ଶୁଭଲଗ୍ନ ଜାଣି ରଙ୍ଗଦେବୀ ଅନୁକୂଳ ହେଲେ ॥
ଭୂମି ଶୋଧିଣ ଲଳିତା ମନ୍ଦା ଗର୍ଭରେ ଭୁଲାଇ ।
ଗନ୍ଧ ଚନ୍ଦନ କର୍ପୂରପଙ୍କ ବିଶାଖା ପୂରାଇ ॥
ଗୁଞ୍ଜାଙ୍କୁର ରୂପମଞ୍ଜରୀ ରାଧିକା କରେ ଦେଲେ ।
କୃଷ୍ଣ ପ୍ରୀତି ରାଇ ଭାଷି ମନ୍ଦହାସ ଲଗାଇଲେ ॥
ଚିତ୍ରା ରଚିତା ଆଳବାଳରେ ଚୂନ କଙ୍କଣରେ ।
ରଙ୍ଗଦେବୀ ରବି କରଣକୁ ପଟ ଗୁହି କରେ ॥
ସୁଶୀତଳ ଜଳ ମୂଳରେ ସୁଦେବୀ ଦେଇ ସିଞ୍ଚି ।
ଚମ୍ପାଲତିକା କୋମଳ ପଦେ ଧୀରେ ଧୀରେ ବଞ୍ଚି ॥
ଇନ୍ଦୁରେଖା ଅବଲମ୍ବନେ ଚନ୍ଦନ ଶାଖା ରୋପେ ।
ସଖୀଗଣ ହୁଳହୁଳି ଦେଇ ମଙ୍ଗଳ ଆଳାପେ ॥
ଏହି ଫୁଲବନେ ନର୍ମଦା ମାଳୁଣୀ ଅଧିକାରୀ ।
ନିତି ଅତିଯତ୍ନେ ଆଣି ଢାଳଇ ଯତ୍ନକରି ॥
ରାଇ ଶ୍ରୀକର ସ୍ପର୍ଶରୁ ଲତା ଧୀରେ ଧୀରେ ବଢ଼େ ।
ଚୂନି ଚଉରି ଚନ୍ଦନ ଡାଳ ଉପରେଣ ମାଡ଼େ ॥
ନିତି ନିତି ଦେଖେ ଯେମା ଅତି ଶରଧା ଚିତ୍ତରେ ।
ନବ ପଲ୍ଲବିତ କୁସୁମିତ ଫଳ ଏମନ୍ତରେ ।
କେଣ୍ଡି କେଣ୍ଡି ସ୍ତବକରେ ଲତା ସୁନ୍ଦର ଦିଶିଲେ ।
ଶ୍ୱେତ ଗୁଞ୍ଜା ବୀଜ ଗୁମ୍ଫି ରାଇ ଚିତ୍ତକୁ ତୋଷିଲେ ॥
କଳା ପାଟସୂତାରେଣ ଗୁନ୍ଥି ମାଳ ମାଳ କରି ।
ସଖୀଜନ ହେଲେ ଗଲେ ନାଏ ଶ୍ରୀକୃଷ୍ଣ ସୁମରି ॥
କୃଷ୍ଣ ମିଳନେ ଦେଖିଣ ପୁଚ୍ଛେ ଶୁଣସି ଗୋ ପ୍ରିୟେ ।
କାହୁଁ ପାଇଲ ଏ କଥ ମାଳା ଧବଳ ଗୁଞ୍ଜା ପ୍ରାୟେ ॥
ରାଗ କୁଟିଳ ଗୁଞ୍ଜିଣ ଅତି ଉଜ୍ଜ୍ୱଳ ମଞ୍ଜୁଳ ।
ଯେସାନେ ଗୋପ ଘଷି ମୋ ମନ ତୁମ୍ଭଠାରେ ନିର୍ମଳ ।

କେଉଁ ବନେ ଅଛି କେ ଦେଲା ପାଇଲ ତୁମ୍ଭେ କାହୁଁ ।
ନାନା ବନେ ବୁଲୁଁ ଏରୂପେଣ ଗୁଞ୍ଜା ଦେଖି ନାହୁଁ ॥
ମୋର ସ୍ୱନ୍ଦନେ ଉଜ୍ଜ୍ୱଳ ରସଫଳ ହୃଦେ ଧର ।
ହେମଗିରି ଶିରରେ ଯେସନେ ସୁରନଦୀ ଧାର ॥
ସଖୀ ଆମ୍ଭଙ୍କୁ ପାଲଟ କରି ଏକମାଳା ଦିଅ ।
ଆମ୍ଭ ଠାରୁଁ ଗଜ ମୁକୁତା ହାରକୁ ତୁମ୍ଭେ ନିଅ ॥
ରାଇ କହେ ଚନ୍ଦ୍ରାବଳୀ ପ୍ରାୟେ ଯେଉଁ ମୋତି ମାଳ ।
ତାହା ଦେଇ ପାଲଟାଇ ନେବ ଏହି ବନ ଫଳ ॥
କୃଷ୍ଣ କହେ ରଙ୍ଗ ଗୁଞ୍ଜାରେ ଖଣ୍ଡିତା ଭାବ ବହ ।
ଶ୍ୱେତ ଗୁଞ୍ଜାରେ ଶୋଭା ହୋଇବ ଆମ୍ଭ ଶ୍ୟାମ ଦେହ ॥
ଯେବେ ପାଲଟ ନ ଦେଲ ତେବେ ରାଜଭୋଗ ଦିଅ ।
ଏହି ବନେ ଫଳଜାତ କରି ଆଗେ ଅଙ୍ଗେ ନାଅ ॥
କାମରାଜା ବନେ ଆମ୍ଭଙ୍କୁ ଦେଇଛି ଅଧିକାର ।
ଫଳଭୋଗ ନ ଦେଇଣ ଇଚ୍ଛା ସୁଖେ ଭୋଗକର ॥
ଏହି ଘେନି କାମରାଜନ ପାଖକୁ ଘେନିଯିବା ।
ନବ ଫଳ ଅଙ୍ଗେ ବହିଲ ଉଚିତ ଦଣ୍ଡ ଦେବା ॥
ରାଇ କହେ କାମରାଜା ବୋଲି ଆମ୍ଭେ ନ ଜାଣୁଁ ।
କେଉଁ ଦିନ ବନପାଳୀ ହେଲ ତୁମ୍ଭ ଠାରୁଁ ଶୁଣୁଁ ॥
ଏତ ଅବଳା ବିହାର ବନ କାହା ପଣ ନାହିଁ ।
ଚଳ ଅଚଳ ସକଳ ଏ ଯୁବତୀ ଗୁଣ ବହି ॥
ଆମ୍ଭର ହୋଇ ପୁରୁଷ ଗଣତାରେ ତୁମ୍ଭେ ଅଛ ।
ଏବେ ମନସିଜ ରାଜାର ପୁରୁଷ କହୁଅଛ ॥
ଏମନ୍ତ ବୋଲିଣ ଅବଜ୍ଞା କରି ଚଳେ କୃଶୋଦରୀ ।
ନାଗେଶ୍ୱର ତୋଳେ ଶ୍ରୀକରେ ନୁଆଇ ଡାଳ ଧରି ।
ତହିଁ ଭ୍ରମରି ନିକର ମକରନ୍ଦ ଲୁଭିଥିଲେ ।
ରାଇ ମୁଖପଦ୍ମ ଗନ୍ଧ ପାଇ ଝାମ୍ପିଣ ପଡ଼ିଲେ ॥
ଭୟେ ପଛ ପାଲଟିଣ ପ୍ରାଣନାଥ କୋଳକରି ।
ଦେଖି ହୃଦେ ଉଡ଼ିବ ମାନେ ଅଳି ଦୂର କରି ॥
ଅଳନ୍ତରେ କୋଟିମନ୍ମଥ ଦର୍ପ ଧରେ ପଟି ।
ରାଇ ଚିବୁକରେ କର ଦେଇ ହାଣିତରି ହସି ॥
ରାଇ ଲାଜ ପାଇ ବାହାର ହେବାକୁ କରେ ମନ ।
ଫେଡ଼ି ନପାରେ ନାଗର ଶ୍ରୀକର ପ୍ରେମବନ୍ଧନ ॥
ରୋଷ ତର୍ଜନା କରିଣ ନାନା ଭର୍ତ୍ସନାରେ କହି ।
ପରନାରୀ ବଳେ ଧର ମନେ କଂସ ଭୟ ନାହିଁ ॥

ଆନ ଗୋପତରୁଣୀ ନୁହେଁ ମୁହିଁ ବନରେ ଧରିବ ।
ଚନ୍ଦ୍ରାବଳୀ ପ୍ରାୟୁ ମତିଳଙ୍କ ମହତ ସରିବ ॥
ଗୋପେ ଏତେ ବଳୀୟାର ହେଲ କଂସ ମଲ୍ଲ ମାରି ।
ଦିବସରେ ଯମୁନାର କୂଳେ ଏତେ ହର ଘୂରି ॥
ନାନା ଉପାୟ କରି ବାନ୍ଧି ଖସାଇ ଲେଉଡ଼ଇ ।
ଭୋକୀ ହସ୍ତରେ ଅମୃତ ଲଡ୍ଡୁ ପାଇଲ ଛାଡ଼ଇ ।
କୃଷ୍ଣ ତାନ୍ଦି ଲୋଚନେଣ ମୁଖ କମଳ କମ୍ପାଏ ।
ବାନ୍ତ ମତ୍ତ ଭୃଙ୍ଗ ପଦ୍ମେ ବସିତ ନ ଦିଏ ॥
ନବ ତପତାନଳ ଭର୍ତ୍ସନା କରଣରେ ଭେଦେ ।
ଶୁଣି ଗୋବିନ୍ଦ ହୃଦୟାନନ୍ଦ ପ୍ରଫୁଲ୍ଲେ ପ୍ରମୋଦେ ॥
ସୁବର୍ଣ୍ଣ ଲତାକୁ ବେଢ଼ି କଏ ନୀଳମଣି ବାଡ଼ ।
ନବଘନ କୋଳେ ପ୍ରକଟକ ତଡ଼ିତ ନିବଡ଼ ॥
କାଳନ୍ଦୀର ମଧ୍ୟେ ସରସ୍ୱତୀ ରହେ କି ଗୁପତେ ।
କି ଅବା ଏ ଜାମ୍ବୁନଦ ନଦୀ ଏ ନୀଳପର୍ବତେ ॥
ସଖୀଜନେ ତର୍ଜ୍ଜନା କରି ବୋଲନ୍ତି ଛାଡ଼ ଛାଡ଼ ।
ବାହୁଯୁଗ୍ମେ ବଡ କର୍କଶ ତୁମ୍ଭର ଭୁଜଦଣ୍ଡ ॥
ସଖୀ ଶିରୀଷ ସୁକୁମାରୀ ପାଇବ ବଡ଼ ବ୍ୟଥା ।
ପରନାରୀ ବଳେ କରି ନେଉ ଏକି ଭଲ କଥା ॥
ବାହୁ ପ୍ରସାରି ଲଳିତା ବୋଲେ ଛାଡ଼ ଛାଡ଼ ଧୂର୍ତ୍ତ ।
ମହା ପ୍ରଗଲ୍ଭ ଯୁବତୀ ମୁହିଁ ତୁମ୍ଭେ ହେ ଜାଣତ ॥
ସୂର୍ଯ୍ୟ ପୂଜାକୁ ଯାଆନ୍ତେ ଛୁଇଁ ଅଶୁଦ୍ଧ ଯେ କର ।
ଶାଶୁ ଜଟିଳା ଜାଣିଲେ କଥା ନୋହିବଟି ଭଲ ॥
କାମେ ଭୋଳ ହୋଇ କୋଳ କର ଏ ପରବନିତା ।
ତୁମ୍ଭ କେଳିକି ଭାଜନ ଏ ଭାଉଜ କୁନ୍ଦଲତା ॥
କୁନ୍ଦଲତା କହେ ହରି ଛାଡ଼ ନବବଧୂ ବାଳା ।
ସୂର୍ଯ୍ୟ ପୂଜାରେ ଜଗିଆ ମୋତେ କରିଛି ଜଟିଳା ॥
ରାଧା ରୂପେ ଅନୁରାଧା ତୁମ୍ଭ କାମ ବାଧା ହରୁ ।
ଗଇ ଛାଡ଼ିଦିଅ ସ୍ନାନ କରି ସୂର୍ଯ୍ୟ ପୂଜା ସାରୁ ॥
ବୋଲେ କଙ୍କାଖୀ ତୁମ୍ଭେ ଗୋପାଳେ ଏଡ଼େବଳୀୟାର ।
ଏତେ ଯୁବତୀ ମଧ୍ୟରେ ରାଜ ଜେମା କୋଳକର ॥
ନାନା ତର୍ଜ୍ଜନା କରି କର ଫିଟାଇ ଲେଉଡ଼ଇ ।
ପ୍ରେମ ଭରେ ଲୀଳା ପଦ୍ମ କୃଷ୍ଣ ହୃଦରେ ତାଡ଼ଇ ॥

କୃଷ୍ଣ ବୋଲନ୍ତି ଯେ ତୁମ୍ଭେମାନେ ବୁଝି କର ଗୋଳ ।
ନାରୀ ପୁରୁଷ ମଧ୍ୟ ଆଗେ ଆସି କେହ୍ନୁ କଲ କୋଳ ॥
ରାଧା କହେ ତୁମ୍ଭେ ବେନି ହୋଇବ ଏକଠାବେ ବସ ।
ନ୍ୟାୟ କରି ସଭାରେ ବୁଝିବା କାହାର ଦୋଷ ॥
ନାଗରୀ ସେ କଥା କହି ବସେ ମାଧବୀର ତଳ ।
ସଖୀ ସର୍ବ ସୁଖୀ ଦେଖି ରାଧା ମାଧବ ଯୁଗଳ ॥
ସେବାପର ସଖୀ ସେବା ଦେଉଛନ୍ତି ସନ୍ନିଧିରେ ।
ଅତି ନିର୍ମଳ ପ୍ରଣୟ ପ୍ରେମ କହିତ ନକପାରେ ॥
ବୃନ୍ଦାଦେବୀଙ୍କି ଲଳିତା ଗୁହିଁ ମୃଦୁ ମୃଦୁ ଭାଷେ ।
ସାରୀ ଶୁକଙ୍କେ ଆଜ୍ଞା ଦିଅ ଏ ପଢ଼ନ୍ତୁ ବେନି ରସେ ॥
ଲଳିତାର ବଚନରେ ବୃନ୍ଦା ବୋଲେ ଗୋ-ସାରିକା ।
ଏହି ସମସ୍ତ ସ୍ୱରୂପେ ଭାଷ ରସ ବଚନିକା ॥
ମହାଯୋଗେ ପୁଣ୍ୟକାଳ ହୋଇଅଛି ବର୍ତ୍ତମାନ ।
ଶୁଣି ଯେମନ୍ତେଣ ସଖୀସର୍ବ ହେବ ଦ୍ରବ ମାନ ॥
ବନଦେବୀ ଆଜ୍ଞା ପାଇ ସାରୀ ବନ୍ଦଇ ସଭାରେ ।
ପକ୍ଷୀ ଜୀବ କି କହିବ ମେରୁ ସାଗର ସଭାରେ ॥
ଜୟ ଜୟ ଗାନ୍ଧର୍ବିକେ ଜୟ ମୋହନ ମୋହିନୀ ।
ଜୟ ବୃଷଭାନୁସୁତେ କୃଷ୍ଣ ମନ ପ୍ରମୋଦିନୀ ॥
ରାଧା ପ୍ରତିପଦ୍ଦର୍ଶିନୀ ବଦନେ ମହାମାର୍ଗ ମଧ୍ୟେ ।
ଭାଲ ଇନ୍ଦୁରେ ସିନ୍ଦୂର ବିନ୍ଦୁ ପ୍ରାତଃ ମିହିର ଉଦେ ॥
ଏକାସନେ ରବି ଶଶୀ ବେଶେ କୃଷ୍ଣ ରାହୁ ମିଶେ ।
ପୂର୍ବ ହେତୁ ମୁଖେମୁଖ ଦେଇ ସୁଧା ଲୋଭେ ଗ୍ରାସେ ॥
ଦେଖି ପିକ ବୃତ୍ତଫଳେ କୁହୁ ନାମେ କୁହୁ ଗାଏ ।
ଧ୍ୱନି ବନ ପଲ୍ଲବିତ କରେ ଏଣୁ ବନପ୍ରିୟେ ॥
କାକ ଡାକେ ମୁଖରିକା କୃଷ୍ଣଚନ୍ଦ୍ର ତମ ଗ୍ରାସେ ।
ଦୁଇ କୂଳେ ଅନ୍ୟୋନ୍ୟେ ବାଦ୍ୟ ଦିଅନ୍ତି ପୁଣ ଶେଷେ ॥
ଶୁକ୍ଳ ଆଦି ଦ୍ୱିଜ ଭାଷେ ଇନ୍ଦୁ କୋଟିର ସାଦୃଶ୍ୟ ।
କାକ ହାରି କନୁ ଲୋଇ ପାଳଇ ପିକ ଶିଷ୍ୟ ॥
ରାଧାକୃଷ୍ଣ ମୁଖ ସଙ୍ଗେ ଗଲେ ଉପରାଗ କାଳେ ।
ବାକ୍ୟ ପଢ଼ିଣ ସ୍ନାନ କରନ୍ତି ଲାବଣ୍ୟ ସଲିଳେ ॥

( ଶ୍ଲୋକଃ )

ନିଶ୍ଚିତେ ଗମ୍ୟତାଂ କୃଷ୍ଣ ତେ ଯେନ ମିଥସଙ୍ଗମଃ । କାମରୂଣ୍ଡାଲଯୋର୍ନସ୍ତଂ ସ୍ମର ଦୁଃଖଂ ନସ୍ତଂ କୁରୁ ॥

ଏହି ବାକ୍ୟ ଉଚ୍ଚାରଣ କୃଷ୍ଣ ଲାବଣ୍ୟ ସଲିଳେ ।
କାମ କଳୁଷ ବିନାଶ କର ମାନସ ନିର୍ମଳେ ॥
ବିଶ୍ୱକର୍ମା ଦ୍ୱିଜବର ଭାବେ କରସି ବରଣ ।
ଉର ମଣ୍ଡଳେ ଲଗାଅ ତାଙ୍କ କମଳ ଚରଣ ॥
ଜାନୁ ଆସନେ ବସାଇ ପ୍ରେମଜଳେ ପାଦ ଧୁଅ ।
ଯଜବନ ହେମପୂର୍ଣ୍ଣ-କୁମ୍ଭେ ପଦାବଳୀ ଲିହ ॥
ଶୁଭଫଳେ କୃଷ୍ଣ କର ଦେଇ ସଂକଳ୍ପ ଉଚ୍ଚର ।
ମନ ନିର୍ମଳରେ କାମ ପୂର୍ଣ୍ଣ ତୀର୍ଥକୁ ସମର ॥
ପାତାଳଜ ଗଙ୍ଗେ ଯମୁନେ ମାନସ କାଳୀ ହ୍ରଦ ।
ରାଧାକୁଣ୍ଡ ଶ୍ୟାମକୁଣ୍ଡ ବେଣୁ-କୂପ ପୁଣ୍ୟପ୍ରଦ ॥
"କୃଷ୍ଣ କୃଷ୍ଣ କୃଷ୍ଣ ପୀତାମ୍ବରଧର କୃଷ୍ଣ ମେଘ-।
ବର୍ଣ୍ଣ ଦ୍ୱିଭୁଜ ପ୍ରସନ୍ନବଦନ ଧ୍ୟାୟେ ଅନଘ ॥
ସର୍ବ-ବିଘ୍ନୋପଶାନ୍ତ୍ୟେ ସ୍ମରଣେ ସକଳ-କଲ୍ୟାଣଂ-।
ଭଜନ ଯସ୍ୟ ଜାୟତେ" ବୋଲେ ହଅସି ରମଣ ॥
ପୁରୁଷୋତ୍ତମଜଂ ନିତ୍ୟଂ ବ୍ରଜାମି ଶରଣଂ ହରିଂ ।
ବେଣୁପାଣେ କୁଞ୍ଜଳସ୍ମାର୍ଚ୍ଚିତ ଗୋବିନ୍ଦ ସୁମର ॥

ପ୍ରଣବାଦି ଅଷ୍ଟ ରଷ୍ଟ ମୋତେ ଶରଣ୍ୟର ଗତି ।
ତନୁ ମନ ଦାନ ଦେଇ ଖଣ୍ଡ ରତିପତି ଖ୍ୟାତି ॥
କାମ ବୀଜ ମନ୍ତ୍ର ଜପି ହରିପ୍ରିୟେ ପ୍ରୀତି ହୁଅ ।
ସଦା ଏହି ବୃନ୍ଦାବନେ କୃଷ୍ଣ ସଙ୍ଗେ ଭଜ ନିଅ ॥
ଶୁଣି ସଖୀ ପ୍ରମୋଦିନୀ ରାଧାକୃଷ୍ଣ ଅତି ସୁଖେ ।
ସ୍ନେହଭର ହୋଇ ସେ ଶାରୀ କି ପୁଛନ୍ତି ବିଶାଖେ ॥
ସ୍ନାନବିଧି ବାକ୍ୟ ପଢ଼ିଲ ମୁକତି ବିଧି ବାକ୍ୟ ପଢ଼ ।
ଶାରୀ ବୋଲେ ଦେଖୁ ନାହିଁ କୃଷ୍ଣ ରାହୁଗ୍ରାସ ଗାଢ଼ ॥
ଏଥି ବିମୁକ୍ତ ହୋଇଲେ ସେ ବିମୁକ୍ତି ବାକ୍ୟ କହି ।
ମୁକ୍ତ ନୋହୁଣ ପଢ଼ିଲେ ଗ୍ରାସଭଙ୍ଗ ଦୋଷ ପାଇ ॥
ଶୁଣି ସଜନୀ ନିକର କୃଷ୍ଣେ ପ୍ରାର୍ଥନା କରନ୍ତି ।
କ୍ଷଣେ ସ୍ୱଚ୍ଛନ୍ଦେଣ ବସ ଶାରୀକ ବାକ୍ୟ ବୋଲନ୍ତି ॥
ସଖୀ ବିନୟରେ କୃଷ୍ଣ ରାଧା ଆଗ୍ରହଣ ଛାଡ଼ି ।
ଦେଖି ସୁଜାଣ ସାରିକା ହସେ ମୁକ୍ତ ବାକ୍ୟ ପଢ଼ି ॥

( ଶ୍ଳୋକ )

ରାଧାପାଦବିମୁକ୍ତାସ୍ତି କୃଷ୍ଣବଦନଶଙ୍କଟାତ୍ ।
ତଥାହଂ ରାଧିକାନାଥମୁରଦୁଃଖାଦ୍ ବିମୁଞ୍ଚସ୍ୱ ॥

ଗୁରୁ ଶବ ବଚନିକା ଶୁଣି ସର୍ବେ ପ୍ରେମେ ଭାସେ ।
ଭାବେ ଉଲ୍ଲସିତ ତନୁ ସଖୀ ଶାରୀକ ପ୍ରଶଂସେ ॥
ବୋଲ ବୋଲ ବନଦେବୀ ଏବେ ବିରଜା ପଢ଼ି ।
ନବ ପ୍ରେମଲତା ଉପରେ ଅମୃତ ରସ ଏଡ଼ି ।
ସଖୀଗଣ ଶରଧାରେ କୃଷ୍ଣ ନେତ୍ରାନ୍ତ ଇଙ୍ଗିତେ ।
ବୃନ୍ଦା ବୋଲେ ପଢ଼ ପଢ଼ ଶୁକ ସହୃଷ ସଙ୍ଗୀତେ ॥
ବାର ତିଥି ଚନ୍ଦ୍ର ତାରା ଯୋଗ ମାସ ପ୍ରତ୍ୟକ୍ଷରେ ।
ପୁଣ୍ୟକ୍ଷେତ୍ର ତୀର୍ଥ ଅଧିଯୋଗ ଭାବ ରୂପକରେ ॥

ଶୁଣି ଶୁକ ପଢ଼େ ଜୟ ବୃନ୍ଦାବନ ମୂର୍ତ୍ତି ବିଧୁ ।
ଜୟ ଇନ୍ଦ୍ରନୀଳମଣି ତନୁ ରାଧା ପ୍ରାଣବନ୍ଧୁ ॥
ଶାରୀ କହିଲେ ଯେ ଉପରାଗ ସମସ୍ତ ସ୍ୱରୂପେ ।
ଏହିକ୍ଷଣ ମହାମହତ୍ତ୍ୱ ଯୋଗଙ୍କ ଅନୁରୂପେ ॥
ବିଧିବାରେ ସୂର୍ଯ୍ୟେନ୍ଦୁ ସଙ୍ଗମେ ରାଧା ପୂର୍ଣ୍ଣରାଶି ।
ବିଧି ଶୁଭ କର୍ମ ଯୋଗେ ଯେ କରଣେ ମିଳେ ଆସି ॥
କୃଷ୍ଣପ୍ରୀତି ମହାମହତ୍ତ୍ୱ ଏ ଯୋଗାଧିକ୍ଷେତ୍ରରେ ।
ସ୍ନାନ ଦକ୍ଷିଣ ପୁରୁଷୋତ୍ତମ ଲାବଣ୍ୟ ସାଗରେ ॥

ପ୍ରାର୍ଥନା ବାକ୍ୟଂ

ଜନ୍ମଶତସହସ୍ରାଣି କୃଷ୍ଣପ୍ରଣୟପ୍ରେୟସୀ ।
ସ୍ମରଦୁଃଖବିନାଶାୟ ସ୍ନାତ୍ୱା ତୁ ଲବଣ୍ୟାମ୍ବୁଧି ॥

ମହତ୍ତ୍ୱ ପ୍ରାର୍ଥନା

ମହାମାର୍ଗେ ଉଧୋବାରେ ରାଧାସୂର୍ଯ୍ୟେନ୍ଦୁସଙ୍ଗମଃ ।
ମହାମହତ୍ତ୍ୱ ବିଖ୍ୟାତ ମମ କାମତପ୍ତଂ ହର ॥

ସ୍ମର ଶାନ୍ତେ ବିଚକ୍ଷଣ କୃଷ୍ଣ ଦ୍ୱିଜରାଜେ ଦାନ ।
ରତି କୁଚ ହେମ ଦକ୍ଷିଣା ଅଧର ସୁଧା ପାନ ॥
ରତି ମନ୍ତ୍ର ଜପ କରି ଏହିରୂପେ ଧ୍ୟାନେ ଧରି ।
ଶ୍ୟାମ ଦର୍ଶନେ ପ୍ରସନ୍ନ କାମ କଳୁଷରୁ ତରି ॥

ବର୍ତ୍ତମାନ ଶାରୀ ଶୁକ ବାର୍ତ୍ତା ସର୍ବ ମଧ୍ୟେ ଶୁଣି ।
ରସେ ଢଳ ଢଳ ରାଧା କୃଷ୍ଣ ସକଳ ତରୁଣୀ ॥
ପକ୍ୱ ଦାଡ଼ିମ୍ବ ଦାରାକ୍ଷା ଶାରୀ ଶୁକଙ୍କୁ ଦିଆଇ ।
ରାଧା କୃଷ୍ଣ ବେଢ଼ି ସଜନୀ ନିକର ତୋଷପାଇ ॥

ଏମନ୍ତେଣ ସଭ୍ର ନ୍ୟାୟେଣ ଲଳିତା କଥା ବାଡ଼ି ।
ଏକ ପ୍ରସଙ୍ଗ ପୁଚ୍ଛେ କୃଷ୍ଣ କହ ସଂଶୟ ଫେଡ଼ି ॥
ରଜା ଭୟେଣ ପରଜା ସ୍ଥାନ ଛାଡ଼ିଣ ପଳାନ୍ତେ ।
ପଥେ ମିଳି ତସ୍କରଗଣ ପଦାର୍ଥ ଲୁଟନ୍ତେ ॥
ଭୟ ପାଳନ୍ତି ବାହୁଡ଼ି ସେହୁ ରଜା ଆଗ୍ରେ ରହେ ।
ସେହୁ ରଜା ବନ୍ଧନରେ ରଖେ ଧର୍ମ କେହ୍ନେ ସହେ ॥
ଲଳିତାଙ୍କ ବଚନ ଶୁଣି କହେ ବେଣୁଧର ।
ରଜା ଅବଜ୍ଞା କରି ପରଜା ଯାଏ ଦୂରନ୍ତର ॥
ଧର୍ମେ ତସ୍କରେ ପରାଜୟ ପାଇ ଲେଉଟଇ ।
ଦଣ୍ଡ ଉଚିତ ତାହାକୁ ଯେବେ ଦଇବେ ଭେଟଇ ॥
ରାଜ ଭୋଗ ନଦେଇଣ ନବଫଳ ଭୋଗକରେ ।
ବଡ଼ଦୋଷ ଜେମା ବୃନ୍ଦାବନ ଶୋଭାଧନ ହରେ ॥
କୃଷ୍ଣ ଚାମରରୁ ବଳି କେଶଅଳି ସୁଅଳକା ।
ନୀଳୋତ୍ପଳ ନେତ୍ର ତିଳଫୁଲ ଶୋଭା ନାସିକା ॥
ବିକଶିତ ପଦ୍ମ ସୁଗନ୍ଧ ବଦନ କୁନ୍ଦରଦ ।
ପିକ ବାଣୀ ରଙ୍ଗ ବିମ୍ବାଧର ଯେହ୍ନ ଶ୍ରୀସମ୍ପଦ ॥
କଞ୍ଜ ମୃଣାଳ ଭୁଜ ଯୁଗଳ କଳି ଚମ୍ପାଙ୍ଗୁଳି ।
ଗର୍ବ କେତକୀ ଗଉର କାନ୍ତି ହରେ ରଖେ ଧୂଳି ॥
ଜାତିଫୁଲ ଜ୍ୟୋତି ନଖପନ୍ତି ଶିରୀଷ କୋମଳ ।
ମୃଗମଦଗନ୍ଧ ତନୁ ଚନ୍ଦ୍ର ଚନ୍ଦନ ଶୀତଳ ॥
ତାଳ ଶ୍ରୀଫଳ କୁଚ ଯୁଗଳ ବନପତି କଟି ।
ତୁମ୍ବୀ ନିତମ୍ବ ତୁଙ୍ଗ ଜଘନ କଦଳୀ ଉଲଟି ॥
କୋକନଦ ଭୃଙ୍ଗପଦ ମରାଳ ଗମନ ।
ଶୋଭା ବହି ଅଙ୍ଗେ ସର୍ବଧନ କଳଙ୍କ ନିଧାନ ॥
ପୁଣି କାମ ରଜା ଅଛି ନେତ୍ର ଭ୍ରୂଲତାରେ ଧରେ ।
ତେଣୁ ଗୃହିଁଲେ ସକଳେ ବଶ ହିବାର ନପାରେ ॥
ଭୃଙ୍ଗ ଭୟେ ମୁଖେ ହସ୍ତ ଆସି ଯୋଗେ ପଡ଼ି ବନ୍ଧ ।
ବାଙ୍କ ନୟନ ନାରାଚ ଝଲକଇ ହୃଦେ ଭେଦ ॥
ଘାଉ ପାଇ ତହୁଁ ବାହୁବନ୍ଧ ନ ପାରଇ ଫେଡ଼ି ॥
ଆଜି କାମ ରଜା ଧାଡ଼ିରେ ପଡ଼ିଛୁ କେହ୍ନେ ଛାଡ଼ି ।
ରୋଷ ବହିଣ ବିଶାଖା ବୋଲେ କୃଷ୍ଣକୁ ସୁହାଇ ।
କାମରାଜା କାମରାଜା ବୋଲି ହେଉଛ କୁହାଇ ॥
ସେତ ବେଭାରେ ଅନଙ୍ଗ ତାର ଅଙ୍ଗ ହେଲା କାହିଁ ।
ଆମ୍ଭ ସଖୀ ସ୍ମିତ ଅପାଙ୍ଗ ଆଶ୍ରିତ ଅଛି ଯେହୁ ॥
ତାର ବଶ ହୋଇ ଯଶ କହି ଏ ବନେ ବଞ୍ଚିତ ।
ମହାରାଜ ଜେମା କୋଳକର ଏ କେଉଁ ଉଚିତ ॥
କୃଷ୍ଣ ବୋଲେ କାମ ବୋଲି ସେହୁ ପ୍ରତ୍ୟକ୍ଷଟି ମୁହିଁ ।
ଗୋପେ ନଜାଣି କି ମଦନ ଗୋପାଳ ନାମ ବହି ॥
କେହୁ ବୋଲନ୍ତି ଅନଙ୍ଗ ନବ ଅଙ୍ଗେ ବହେ ଏଥି ।
କେହୁ ବୋଲନ୍ତି ଏ ମନମଥ ପରେ ମନମଥ ॥
ତୁମ୍ଭେମାନେହେଁ ତ ରତିପତି ବୋଲି ଜାଣ ।
କାମେ ବଶ ବୋଲି କହ ଦେଖି କିସ ଅବଗୁଣ ॥
ଚିତ୍ରା କହେ ଯେବେ କାମ ତୁମ୍ଭ ଧନୁଶର କାହିଁ ।
କୃଷ୍ଣ କହେ ଯାହା କହିଲହିଁ ହରି ଅଛି ରଇ ॥
ଗୃହୁ ଭ୍ରୂଲତା କୋଦଣ୍ଡ ନୟନର ପଞ୍ଚଶର ।
ଏଣୁ ଅଳପ ଗୃହିଁାନ୍ତେ ସେ ପାଷାଣ ଜର ଜର ॥
ଚମ୍ପାଲତା ବୋଲେ ସ୍ୱରୂପ ମୋ ତହିଁ ଶୁଣ ହରି ।
ଅନ୍ୟ ନାରୀ ସଙ୍ଗେ ତୁମ୍ଭେ ମନସିଜ ବଶକାରୀ ॥
ରଇ ପରଶରେ ମଦନମୋହନ ରୂପ ଧର ।
ଅତି ଦୁର୍ଲ୍ଲଭ ଏ ରାଧା ଧବ ଯୁବତୀଙ୍କ ସାର ॥
କୃଷ୍ଣ କହେ ଚମ୍ପକଲତିକା କହିଲ ସତ୍ୟ ବାଣୀ ।
ଅନ୍ୟ ଦେଶେ ରଜା ଦର୍ଶନରେ ବଶକାରୀ ଜାଣି ॥
ନିଜ ଦେଶ ନିଜ ଧନାୟୁଧ ପାଇଣ ବିରାଜେ ।
ଯେହ୍ନେ ଦିବସେ ଆକାଶେ ଶଶୀ ନିଶି ଶୋଭା ରାଜେ ।
କହେ ସୁଦେବୀ ଏ ବୃନ୍ଦାବନେ ତୁମ୍ଭେ ଯେବେ ରଜା ।
କ୍ଷମା କରିବା ଉଚିତ ଦ୍ରୋହ କରିଲେ ପରଜା ।
ଭୟ ତାପ ହରି ସୁଖେ ପାଳ ନିଜ ରାଜ୍ୟ କରି ॥
ନୁହେ ଉଚିତ ତୁମ୍ଭର ପରଧନ ବଳେ ହରି ॥
କୃଷ୍ଣ କହେ ଆମ୍ଭେ କାହାର ହରିଛୁଁ ବଳେ କିସ ।
ରଙ୍ଗଦେବୀ କହେ କୁଳବତୀ ହୃଦୟ ମାନସ ॥
ବ୍ରତ ଦୃଢ଼ବାଡ଼ି ଭାଙ୍ଗି ବଳେ ନେଣାକୁଣେ ନିଅ ।
ରୂପ ଭେଳକି ଲଗାଇ କାମାନଳେ ଜାଳିଦିଅ ॥
କୃଷ୍ଣ କହେ ସଦା ସେବ ଯେବେ ରଜା ମାନି ଥିବ ।
ମନ ବାମତା କୁଟିଳ ତେଜ ସାତ୍ତ୍ୱିକ ବହିବ ।
ତେବେ କିଛି କ୍ଷତି ନ ଲଗିବ ନୋହିବ ସେ ହାନି ।
ରଜା ଅନୁଗ୍ରହେ ପରଜା ସଂସାରେ ହୁଏ ଧନୀ ॥
ତୁଙ୍ଗବିଦ୍ୟା କହେ ଆମ୍ଭ ରଜା ବଡ଼ଇ ଲମ୍ପଟି ।
ସନ୍ନିଧିକ ଗଲେ ଅଙ୍ଗ ଶୋଭା ସର୍ବକରେ ଲୁଟି ॥

ମଧୁକର ପ୍ରାୟେ ବିଧୁଙ୍କ ଅଧରୁ ମଧୁ ହରେ ।
ଗଣ୍ଡ ଦର୍ପଣ ନରେଖି ତାହିଁ ଦନ୍ତଘାତ କରେ ॥
ଆପଣାର ଅଙ୍ଗେ ଧରେ କୁଚ ଚିହ୍ନ ପତ୍ରାବଳୀ ।
ରତିରଣେ ହାରପଣେ ଦେଖି କର୍କଶକୁ ଦଳି ॥
ତୀକ୍ଷ୍ଣ ନଖେ ବିଦାରଣ ଅଙ୍ଗେ ଅଙ୍ଗେ କରେ ବନ୍ଦୀ ।
ମାର ହାତେ ଦଣ୍ଡ ଦେଇ ହରେ ବିବେକ ଯେ ବୁଦ୍ଧି ॥
କୃଷ୍ଣ କହେ ରାଜା ନିମନ୍ତେଣ ଯାହା ସଜ୍ଜ ଥାଏ ।
ତାହା ପିନ୍ଧା ରାଜା ବିଳସଇ ଖେଦ କମ୍ପା ପାଏ ॥
ରାଜା ପଦାର୍ଥ ବହ୍ନ ପରଜା ନିତ୍ୟ ଶାନ୍ତିପାଇ ।
ରାଜା ଯେବେ ଦସ୍ୟୁ କରେ ତେବେ ପ୍ରଜା ସୁଖପାଇ ॥
ପାଶେ ଆସି ଯାଚି ଦେଲାବେଳେ ଯେବେହେଁ ନେବା
ତେବେ ଅନ୍ତେ ଲୋଡ଼ିଲେକ ଆଉ ସେ ଫଳ ପାଇବା ॥
ଇନ୍ଦୁରେଖା କହେ ମାର ବରଗଣିଆ ଭ୍ରମର ॥
ଅନୁକ୍ଷଣ ସଙ୍ଗେ ଲାଗି ରଖି ନଦଅଇ ଘର ॥
ଭ୍ରମ ଗୁହାରିକି ଆସନ୍ତେଣ ସର୍ବ ଜ୍ୱର କର ।
ଏବେ କି କରିବୁ ଆଜ୍ଞାଦିଅ ବୃନ୍ଦାବନେଶ୍ୱର ॥
କୃଷ୍ଣ କହେ ସ୍ମର ଶାସ୍ତ୍ର ପାଇ ପ୍ରମାଣରେ ବୁଝି ।
ଯେତେ ମଧୁର ରସ ଲଗୁଡ଼ି ଆଜ ପିବ ସୁଝି ॥
ପତ୍ରାବଳୀ କୁଚେ ଆମ୍ଭ ତୀକ୍ଷ୍ଣ ନଖରେ ଲେଖାଅ ।
କାମ ନିର୍ଭୟରେ ଚନ୍ଦ୍ର ଚିହ୍ନ ସଙ୍କେତ ଦେଖାଅ ॥
ଏମନ୍ତେଣ ଅଷ୍ଟ ଶ୍ରେଷ୍ଠସଖୀ ଦଣ୍ଡ ଭେଦ ଶାମେ ।
କୃଷ୍ଣ ବିଦଗଧ ପ୍ରତିଭାବ ହାସ ରସ ପ୍ରେମେ ॥
କହେ କୁନ୍ଦଲତା କଥା ଦେଖାଇଣ ବେନିଭାବେ ।
ଆମ୍ଭେ ବୃନ୍ଦାବନଚନ୍ଦ୍ର ରାଇ ଦୋଷ କଲୁ ଯେବେ ॥
ଏବେ ନିର୍ଦ୍ଦୋଷୀ କେମନ୍ତେ ହେବ କହସି ବିସ୍ତର ।
କୁନ୍ଦଲତା ସାଧୁବାଣୀ ଶୁଣି ଆନନ୍ଦିତ ହରି ॥
ରାଇ ନିର୍ଦ୍ଦୋଷୀ ହୋଇବ ଯେବେ ଅଛଇ ବିସ୍ତର ।
ଆମ୍ଭେ କହିବା କରିବ ଠିକ ଦୃଢ଼େଣ ପସ୍ତର ॥
ରାଜା ନିମିତ୍ତ ଅର୍ପିତ ଯେଉଁ ଉରଦେଶ ଧନ ।
ହେମବର୍ଣ୍ଣ ପୂର୍ଣ୍ଣକୁମ୍ଭେ ରଖି କରିଛ ଗୋପନ ।
ଇଚ୍ଛା ସୁଖେଣ ଆପଣେ ଫେଡ଼ି ରାଜାକରେ ଦେଉ ।
ମନସିଜ ପ୍ରିୟବନ୍ଧୁ ପ୍ରୀତିରସେ ଦାନ ନେଉ ॥
ବୃନ୍ଦାବନେ କୁଞ୍ଜ ସଦନରେ ଦେବୀ ରସବନ୍ଧେ ।
ପିଇ ବିମ୍ବାଧର ସୁଧାପାନ କରନ୍ତୁ ସ୍ୱଚ୍ଛନ୍ଦେ ॥

କୁନ୍ଦଲତା କହେ ରାଧେ କୃଷ୍ଣ କହିଲେ ତୋ ସାଉ ।
ଭୟ ଯାଉ ଦିଅ ଉରଦେଶ ଭାଗ ରାଜ କର ॥
ରାଜ ଅମାନିଆ ହୋଇକି ରାଜ୍ୟରେ ରହିପାରି ।
ସୂର୍ଯ୍ୟ ପୂଜିବ ନିଶ୍ଚିନ୍ତେ ଆଗେ ରାଜା ବୋଧ କରି ॥
ରାଧା କହେ କୁନ୍ଦଲତା ଅନ୍ୟେ ଶୋଭିତା ନପାଅ ।
ଛାଡ଼ ତମାଳ ତରୁକୁ ମାଡ଼ ଯାହିଁ ତାହିଁ ଥାଅ ॥
ଏମନ୍ତେଣ କଥା ଉଠାଇଣ ନାନା ରସ ଛଳେ ।
କୃଷ୍ଣ ସଙ୍ଗେ ରଙ୍ଗେ ବିହରନ୍ତି ନିଜ କୁଣ୍ଡ କୂଳେ ॥
ମନସିଜ ଯଜ୍ଞ ଆରମ୍ଭ ବିବିଧ ବନ୍ଧେ ଲୀଳା ।
ମଧୁପାନ ଜଳକେଳି ଶଯ୍ୟା କୁଞ୍ଜେ ପଶାଖେଳା ॥
ଦିନେ ଦିନେ ଆନ ଆନ ନବତନ ରସ ବଢ଼େ ।
ଏମନ୍ତେଣ ସୂର୍ଯ୍ୟ ପୂଜି ରାଇ ସଦନେ ବାହୁଡ଼େ ॥
କୃଷ୍ଣ ଯମୁନା କୂଳରେ ଧେନୁ ରଖିବାକୁ ଚଳେ ।
ସଙ୍ଗେ ସୁବଳ ମଧୁମଙ୍ଗଳ ବେଗେ ଆସି ମିଳେ ।
ବେଶାନ୍ତରେଣ ଜ୍ୟେଷ୍ଠମ ସ ମହା ଗ୍ରୀଷ୍ମର କାଳ ।
ଗୋରୁ ଗୋପାଳେ କାନନେ ଅତି ତୃଷାରେ ଆକୁଳ ॥
କାଳୀ ହ୍ରଦ ଜଳ ବିଷବାତେ ଟେକିଣ ଉଜାଣି ।
ଯମୁନାର ଜଳ ମିଶିଣ ବହଇ ବିଷପାଣି ॥
ଜାଣି ନପାରି କୁମାରେ ସେହି ଜଳ ପାନ କଲେ ।
ଅଙ୍ଗେ ଗରଳ ଘାରିଲା ଢଳି ପଡ଼ିଲେ ସକଳେ ॥
ଧେନୁ ବୃନ୍ଦ ଜଳ ପାନକରି ପଡ଼ିଲେକ ଢଳି ।
ଏମନ୍ତେଣ ତହିଁ ମିଳେ ବେନି ସଖା ସଙ୍ଗେ ହରି ॥
ଗାବ ଗୋପାଳ ଦେଖିଲେ ତହିଁ ମରି ଶୋଇଛନ୍ତି ।
କାଏ ଚରିତ ଏମିତି ଏକ ଆରେକ ପୁଚ୍ଛନ୍ତି ॥
ପାଦ ଚିହ୍ନ ପଡ଼ିଅଛି ଅନୁସରି ଗୃହେ ଚଳେ ।
ନିଶ୍ଚେ ଜାଣିଲେ କୁମାରେ ବିଷଜଳ ଖାଇ ମଲେ ॥
ଏକ ଏକ ଗୁଣ ସୁମରି କରନ୍ତି ଶୋକ ଚିନ୍ତା ।
ଗୋପ ନଗରେ କେବୋଲି କହିବ ଯାଇଁ ବାରତା ॥
ଯେଣ୍ଟା ଜନନୀ ଦେଖିଣ ମୋତେ ପଚାରିଲେ ବେଢ଼ି ।
ଆଜ ଏକାକୀ ଅଇଲୁ ଆମ୍ଭ ପୁତ୍ର କାହିଁ ଛାଡ଼ି ॥
ଦେହ ଧରିବେକି ? ପୁତ୍ର ମଲା ଶୁଣି ମୋ ବଦନୁଁ ।
କୃଷ୍ଣ କହନ୍ତେ ଲୋତକ ନଈ ବହଇ ଲୋଚନୁଁ ॥
ଏକ ଏକ ମୁଖ ନିରେଖିଣ ଗୁଣକୁ ବାହୁନି ।
ଆହା ପ୍ରାଣସଖା ଅଚେଷ୍ଟାରେ ଶୁଇଲ ଅବନୀ ॥

ତୁମ୍ଭ ଉପକାର କୋଟି କୋଟି ଯୁଗେ ସୁଝି ନୋହି ।
ମନେ ଆକୁଳିତ ହୁଅ ମୋର ଶ୍ରମ ବନେ ଚାହିଁ ॥
ତରୁ ନନ୍ଦନ ଛାୟାରେ ନବଦଳ ଶଯ୍ୟା ରଚ ।
ମୋତେ ଶୁଆଇ ପାଦ ମନ୍ଦାକ ଧୀରେ ଧୀରେ ଚଞ୍ଚ ॥
ଚନ୍ଦ୍ର ଚନ୍ଦନ ପଙ୍କରେ ଗୋଳ ଅଙ୍ଗେ ମୋର ବୋଳ ।
ସ୍ୱାଦୁ ସରସ ଫଳ ଭୁଞ୍ଜାଇ କରାଅ ଶୀତଳ ॥
ବୁଲି ନପାରନ୍ତେ କେତେଦୂର ନିଅ କାନ୍ଧେ ବହି ।
ବେଶକରି ମୋତେ ଶତ୍ରୁ ତୋଷ ହେଉଥାଅ ଚାହିଁ ॥
ମୋର ସଙ୍ଗ ପାଇ ନାଚ ମାତ ମଦନ ଉପେଖ ।
ହୀନ ଅନ୍ଧ ଧନ ନୟନ ପାଇଲା ପ୍ରାୟେ ଦେଖ ॥
ମୋର କ୍ଷଣକ ବିଚ୍ଛେଦ କୋଟି ଯୁଗ ପରି ମଣ ।
ଏକ ମୁଖେ କେତେ କହିବି ତୁମ୍ଭର ଯେତେ ଗୁଣ ॥
ଆହେ ଶ୍ରୀଦାମ ସୁଦାମ ବସୁଦାମ ମହାବଳ ।
ଆହେ କିଙ୍କିଣୀ ହେସ୍ତୋକକୃଷ୍ଣ ବସନ୍ତକୋକିଳ ॥
ଆହେ ଅର୍ଜୁନ ଉଜ୍ଜଳ ଆହେ ସୁବାହୁ ଲବଙ୍ଗ ।
ବିମ୍ବା ଅକାରଣେ ଅବମାରେ ଶୁତ ଧୂଳିକର ଅଙ୍ଗ ॥
ମୋତେ ନ ଚାହିଁ ନ କହ କିଛି କିସ ଦୋଷ ହେଲା ।
ଦଶ ଦିଶ ଶୂନ୍ୟ ତୁମ୍ଭ ବିନୁ ଉଆଁସ ରଜନୀ ॥
ପୁଣି ସୁରଭୀ ପଲକୁ ଚାହିଁ ବେଦନ ବଖାଣି ।
ବନେ ଭଲ ରଖି ପାଳିଲ ପିତାଙ୍କୁ କହି ଆଣି ॥
ଗଙ୍ଗା ଯମୁନା ନର୍ମଦା ସରସ୍ୱତୀ ଗୋଦାବରୀ ।
କାଳୀ କସ୍ତୁରୀ ଧବଳୀ ତୁମ୍ଭ ଦୁହିଁ । ସିନ୍ଧୁପରି ॥
କାଳୀ ବିଷ ଜଳ ପାନ କରି ଅଚେଷ୍ଟ ହୋଇଲ ।
ତୁମ୍ଭ ପୁତ୍ର ମୁହିଁ ମୋମାତ କାହାକୁ ଦେଇଗଲ ॥
କୃଷ୍ଣ ବିଷାଦେ କାରୁଣ୍ୟ ବାଣୀ ଶୁଣି ଚେତା ବସେ ।
ଅନ୍ତେ ଜାଣିଲେ ସେ କୃଷ୍ଣ କାନ୍ଦେ ଆମ୍ଭର ଅବଶେ ॥
କର ଚରଣ ନ ଚଳେ ପ୍ରାଣ ଅଛି ରହି ।
ସ୍ଥାନେ ସ୍ଥାନେ ବୁଲି କୃଷ୍ଣ ଲୋଟି ଶୋକଭର ହୋଇ ॥
ତୁମ୍ଭ ବିହୀନେ କି ଆଜ ମୁହିଁ ଗୋପପୁର ଯିବି ।
ପ୍ରାଣେ ଆଶା ନାହିଁ ଏହି କାଳିନ୍ଦୀରେ ଝାସ ଦେବି ॥
ଶୋକଭର ହୋଇ ଉଠି ଧାଏଁ କାଳିନ୍ଦୀ ହ୍ରଦକୁ ।
ଧାଇଁ ଧରି ଦୁଇ ମିତ କହେ ବଚନ ବୋଧକୁ ॥
ସର୍ପ ଦଂଶିଲେ ବିଷ ଆପ୍ୟାନ କଲେହେଁ ନ ମରି ।
ଝାଡ଼ି ଜାଣି ଜନ ହିତେ ପଦ ଗଦ ଅଛି କରି ॥
ସିନ୍ଧୁ ମନ୍ଥନରୁ ଶିବ ଧରେ ବିଷ କଣ୍ଠଗତେ ।
ସେହି ନାମ ଧରି ଜନ ତରେ ସର୍ପ ଅପଘାତେ ॥
ଏବେ ଆମ୍ଭେ ଗୋପେଶ୍ୱରଙ୍କୁ ସୁମରି ବିଚାରିବା ।
ପଦ ଗଦ ମନ୍ତ୍ର ଝାଡ଼ିଣ ଗାରଡ଼ି ଉଚାରିବା ॥
ଗୋବର୍ଦ୍ଧନ ମଲ୍ଲ ଦତ୍ତ ବିଷ ହରଣ ପାଦୁକା ।
ପୂର୍ବୁ ଗାରଡ଼ି ବିଦ୍ୟାକୁ ହରି କରିଅଛି ଶିକ୍ଷା ॥
କୃଷ୍ଣ ମିତ୍ର ବାକ୍ୟ ସୁମରି ସେ ପାଦୁକା ସୁମରେ ।
ତତକ୍ଷଣେ ଆସି ଲଗିଲା ସେ ଶ୍ରୀକୃଷ୍ଣ ପୟରେ ॥
ପୂର୍ବୁଁ ଭଗବତୀ ଦେଇଲେ ଗାରଡ଼ି ମନ୍ତ୍ର ପଢି ।
ସାତ ବାର ପରିକ୍ରମା ସେ କରନ୍ତି ଗୋଷ୍ଠବେଢି ॥
ଚାହିଁ ଅମୃତ ଲୋଚନେ ଉଠବୋଲି ଦେଲେ ଡାକ ।
ନିଦ୍ରା ତେଜିଲା ପରାୟେ ଉଠେ ସୁରଭୀ ବାଳକ ॥
ଏକ ମେଳ ହୋଇ ଚାହିଁ କୃଷ୍ଣ ନୟନ ପୂରାଇ ।
ପୁଏ କରେ କରଛନ୍ଦ ଗାବ ଅଙ୍ଗେ ଘସି ହୋଇ ॥
ଦେଖି ଚକ୍ରବାକୀ ନମଇଁ ସେ କୃଷ୍ଣ ଚରଣ ।
କହେ ବନ୍ଧୁ ପକ୍ଷୀ ବିନତି କେବଣ କାରଣ ॥
ବନ୍ଧୁ କହେ ହରି ବିଚ୍ଛେଦ ଏ କାନ୍ତା କାନ୍ତ ବେନି ।
ନଦୀ ବେନି କୂଳେ ରହିଣ ଏ ବଞ୍ଚନ୍ତି ରଜନୀ ॥
ହେବା ପ୍ରବେଶ ହୁଅନ୍ତେ ଚକ୍ରବାକ ଉଦବେଗେ ।
ବିଷ ଜଳେ ପଡ଼ି ମଲା ଉଡ଼ିଯାଉଁ ଶୂନ୍ୟମାର୍ଗେ ॥
ମୃତଭର୍ତ୍ତା ହୋଇବାରୁ ଚକ୍ରବାକୀ ଯେ ନମଇଁ ।
ଗାବ ଗୋପାଳେ ପ୍ରାଣ ପାଇଲେ ଆଚମ୍ବିତେ ଚାହିଁ ॥
କାନ୍ତ ଜଳରୁ କଢ଼ାଇ ଦେବ ପ୍ରାର୍ଥନା କରୁଛି ।
ଅଶ୍ରୁ ନୟନେ ଚଞ୍ଚୁରେ ଦେଖ ଚରଣ ଧରୁଛି ॥
କୃଷ୍ଣ ଆଶ୍ୱାସି କହନ୍ତି କାନ୍ତ ନିକଟେ ଯାଇବୁ ।
ଏହି କାଳିନ୍ଦୀ କୂଳରେ ହେନି ସୁଖରେ ରମିବୁ ॥
ମନେ ବିଚାରନ୍ତି ଏ କାଳୀୟ କାଳିନ୍ଦୀରେ ଥିଲେ ।
ବୃନ୍ଦାବନ ଜୀବ ଜନ୍ତୁଙ୍କର ସୁଖ ନାହିଁ ଭଲେ ॥
ଯେବେ ଜଳରୁ ଏହାକୁ ଘଉଡ଼ି ଦେଇ ପାରି ।
ତେବେ ସୁଖେ ବିହରିବେ ଜୀବେ ଜଳ ତୃଣ ଚରି ॥
ଏହି ହ୍ରଦ କୂଳ କୁଞ୍ଜେ କେଳି କରିବା ନିର୍ଭୟେ ।
ରାଧା ପ୍ରାଣଧନୀ ନ ରମଇ ବିଷବାତ ଭୟେ ॥
ପୁଏ ପୁଚ୍ଛନ୍ତି ହେ ତୁମ୍ଭେ ତିନି ଜଣ ଥିଲ କାହିଁ ।
ଆମ୍ଭେ ଗାବ ରଖିଣ ବନେ ବହୁତ ଦୁଃଖ ପାଇ ॥

ତୃଷା ଆରତରେ ଆସି ଏଥି ଜଳପାନ କଲୁଁ ।
ଶ୍ରମେ ଆସି କଦମ୍ବ ଛାୟାରେ ଡ଼ୋଳେଇ ଶୋଇଲୁଁ ॥
ସୁଖେ ନିଦ୍ରା ଯାଇଥିଲୁଁ ତୁମ୍ଭେ ଉଠାଇଲ ଆସି ।
କୁମରଙ୍କ କଥା ଶୁଣି ତିନି ଜଣ ହସାହସି ॥
ମଧୁମଙ୍ଗଳ ସୁବଳ ସବୁ କହିଲେ ମଣାଇଁ ।
ଶୁଣି ଭୁମରେ ଚକିତ କୃଷ୍ଣ ମୁଖକୁ ଅନାଇଁ ॥
ହରି ଗାରୋଡ଼ ବିଦ୍ୟା ତୁ ଯେ ଶିଖିଲୁ କେଉଁ ଦିନ ।
ଏତେ ଗୋରୁ ଗୋପାଳଙ୍କୁ ଆଜ ଦେଲୁ ଜୀବଦାନ ॥
କେହୁ ଆଲିଙ୍ଗନ କରେ କେହୁ ପାଦଧୂଳି ନେନେ ।
ଗାଭ ଚଳାଇ ଗୋକୁଳେ ଆସେ ଦିବା ଅବସାନେ ॥
ସ୍ନାନି ସୁବେଶ ଭୋଜନ କରେ ଯେ ଯାହା ମନ୍ଦିରେ ।
ଯେତେ ଚରିତ କହନ୍ତି ମାତା ପିତା ସନ୍ନିଧିରେ ॥
ଆଜ ମରୁଥିଲୁଁ ବିଷ ଖାଇ ଜିଆଇଲା କାହ୍ନୁ ।
ମହାଗାରୋଡ଼ ପଢ଼ିଣ ସେ ଝଡ଼ିଲା ଆମ୍ଭ ତନୁ ॥
ଶୁଣି ଗୋକୁଳେ ସକଳ ଜନ ଆଶ୍ଚର୍ଯ୍ୟ ପାଇଲେ ।
ନନ୍ଦ ନନ୍ଦନ କଲ୍ୟାଣ ହେଉ ସମସ୍ତେ ବୋଇଲେ ॥
ଗାଈ ଦୋହନ ଭୋଜନ ସାରି ସଭାରେଣ ବସି ।
ଏକ ଆରେକ କୃଷ୍ଣର ମହିମାକୁ ପରଶଂସି ॥
ପୁଣ ରଜନୀରେ ରାଧା କୃଷ୍ଣ ବିପିନେ ବିଳାସ ।
ପ୍ରତ୍ୟକ୍ଷରେ ଚନ୍ଦ୍ରାବଳୀଗଣ ହୋଇଣ ନିରାଶ ॥
ରାଧାକୃଷ୍ଣ ପ୍ରୀତି ସଙ୍ଗ ଭଙ୍ଗ କରିବାକୁ ପାଇଁ ।
ଶଠ ସୁହୃଦ ଭେଦରେ ନାନା ଉପାୟକୁ ରଚି ॥
ନବଶ୍ୱେତ ଗୁଞ୍ଜମାଳା ଅଙ୍ଗ ଆଭରଣ ରାଇ ।
କୃଷ୍ଣ ମାଗନ୍ତି ନଦେଲେ ଜାଣି ହୃଦ୍ଦ୍ୱୈଭେଦ ପାଇ ॥
ହନେ ଚନ୍ଦ୍ରାବଳୀ ଶ୍ରୀକୃଷ୍ଣ ମିଳନ ଅନୁରାଗେ ।
ବୃନ୍ଦାବନଚନ୍ଦ୍ର ନିମନ୍ତେ ଶ୍ୱେତ ଗୁଞ୍ଜା ହିଅ ମାଗେ ॥
କୃଷ୍ଣ ବୋଲନ୍ତି ଦ୍ୱାଦଶ ବନେ ଆମ୍ଭେ ପାଇନାହୁଁ ।
ରାଧା ହୃଦୟରେ ଦେଖିଲୁ ସେ ଆଣିଥିଲେ କାହୁଁ ॥
କେତେ ବିନୟମତେ ମାଗିଲୁଁ କେବେହେଁ ନଦେଲେ ।
ଗଜମୋତି ହୀର ପାଲଟ ଯାଚନ୍ତି ହାସ୍ୟକଲେ ॥
ଚନ୍ଦ୍ରାବଳୀ ବୋଲେ ହରି ମିଥ୍ୟା କହିଲ କପାଇଁ ।
ଯାହା ବୃନ୍ଦାବନେ ନାହିଁ ସେକି ଆନ ବନେ ଥାଇ ॥
ଗୁଞ୍ଜାଫଳ କବ ଦ୍ରବ୍ୟ ସେଠି ନଦେଲେ ତୁମ୍ଭରେ ।
ଏତେ ପ୍ରୀତି ବୋଲି ହସି କଉତାକ ପଦ୍ମା କରେ ॥

କୃଷ୍ଣ କହେ କୋଟି ରତ୍ନ ସେହୁ ଦର୍ଶନେ ମୁଞ୍ଚଇ ।
ସେକି ଗୁଞ୍ଜଫଳେ ଲୋଭକରି ଆମ୍ଭକୁ ବଞ୍ଚାଇ ॥
ଚନ୍ଦ୍ରାବଳୀ କହେ ବଡ କହ ସେ ଗୁଞ୍ଜ ମହିମା ।
ବେନି କପର୍ଦ୍ଦ ନୋହିବ ମୂଲ୍ୟ କରୁଣ ଜାଣିବା ॥
କୃଷ୍ଣ କହେ ନୁହେ ଗୋଚର ତା ବୃନ୍ଦାଙ୍କୁ ପଚ୍ଛର ।
ଚନ୍ଦ୍ରାବଳୀ ବୋଲେ ବୃନ୍ଦା କହ ଗୁଞ୍ଜାର ବିସ୍ତର ॥
କୃଷ୍ଣ ନେହାନ୍ତି ଇଙ୍ଗିତେ ବୃନ୍ଦା ଭାଷେ ପଉରୁଛେ ।
ଶୁଣ ମାହେନ୍ଦ୍ର ନନ୍ଦନୀ ରସ କହିବ ବିଶ୍ୱାସେ ॥
କୃଷ୍ଣ ବୃନ୍ଦାବନ ବିଳାସ ଉଜ୍ଜ୍ୱଳ ରସ କୀର୍ତ୍ତି ।
ଦଶ ଦିଶରେ ପୂରି ରହନ୍ତେ ଶାସ୍ତ୍ର ବେଦପଢି ॥
ଭାଗ ଭାଗ କରି ସର୍ଜିଲ ସେ ଜଗତ କାରଣେ ॥
କ୍ଷୀର ସାଗର ମଧୁରସ ପୃଥ୍ୱୀଆବରଣେ ॥
ଅନ୍ତ ନପାଇ ମନ୍ଥନ୍ତେ ନାନାରସ ହୁଏ ଜାତ ।
ସେ ଅମୃତ ଆସ୍ୱାଦନେଣ ଦେବେ ଅମର ନିଶ୍ଚିନ୍ତ ॥
ବିନଶଡରେ ଦେଖି ତହୁଁ ଦଧି ଉଦଧି କ ରଚେ ।
ଶେଷ ନୁହନ୍ତେଣ ତହୁଁ ପୁଣ ଘୃତସିନ୍ଧୁ ସଞ୍ଚେ ॥
ତେବେ କୃଷ୍ଣ ଯଶସାରକୁ ନପାଇ ବେଦବର ।
ତହୁଁ ପୁଣ ସ୍ଥଳେ ରଞ୍ଜି କଇଳାସ ମହୀଧର ।
ପୁଣ ସ୍ଥାନେ ସ୍ଥାନେ ନଭେ ସୂରଚନ୍ଦ୍ର ତାରକାଦି ।
ଚତୁର୍ଦ୍ଦଶ ଲୋକ ଭେଦ ବହେ ଗଙ୍ଗା ନାମେ ନଦୀ ॥
ଯେତେ ଶ୍ୱେତବର୍ଣ୍ଣ କୃଷ୍ଣ ଯଶ ଅଟେ ଏ ଜାଣିମା ।
ଏତେ ଯଶ ମୂଳବୀଜ ଧରେ ବୃଷଭାନୁଜେମା ॥
ରସ ମାଧୁର୍ଯ୍ୟର ଯଶ ମୂଳ ସ୍ଥାନ ଏଣୁ ରାଧା ।
ଯେତେ ଗୋପନାରୀ ହରି ନୁହେ କୃଷ୍ଣ କାମ ବାଧା ॥
ଶୁଣି ଚନ୍ଦ୍ରାବଳୀ ଗହଳି ମାନଭରେ ଗଲେ ।
ନିଜ ସଖୀ ସଙ୍ଗେ ପୁରେ ପାଞ୍ଚ ଉପାୟ ରଞ୍ଚିଲେ ।
କୃଷ୍ଣ ପାଦ ପଦ୍ମ ଚିହ୍ନ ଅଷ୍ଟାଦଶ ନିରମାଣି ।
ଯେଣି ରାଧା ପୁଷ୍ପବନେ ମିଳେ ନିଶାନେ ତରୁଣୀ ॥
ଶ୍ୱେତ ଗୁଞ୍ଜ ତୋଳେ କୃଷ୍ଣ ପାଦ ଚିହ୍ନକୁ ବସାଇ ।
ଅସହଣୀ ସପତ୍ନୀ ସଖୀ ବଡ଼ାଇ ହିଂସାହିଁ ॥
ବୃତ୍ତି ଭିତରେ ବୋଳନ୍ତେ ଲତା କୁସୁମ ଛିନାଇଁ ।
କୃଷ୍ଣ ପାଦଚିହ୍ନ ଆପି ନିଜ ପାଦ ଚିହ୍ନକୁ ଲିଭାଇ ॥
ପୁରେ ଆଣି ଯତନରେ ଗୁନ୍ଥି ମାଳ ନିର୍ମାଣିଲେ ।
ପ୍ରାତଃକାଳେ ଉଠରେ ଲମ୍ବାଇଣ ପାବଟକୁ ଗଲେ ॥

ପତନରେ ଯମୁନାର କୂଳ କୃଷ୍ଣଚନ୍ଦ୍ର ଭେଟେ ।
ରହି ପୁଛନ୍ତି କହିଲେ ପଦ୍ମା ଯାଉଛୁଁ ଯାବଟେ ॥
ଏହି ଚୈତ୍ର ଗୃହେ ନନ୍ଦନ ରାଧା ସଖୀ ଆସିଥିଲେ ।
ପ୍ରୀତ ହୋଇ ଆମ୍ଭ ମାନଙ୍କୁ ଅପର୍ବ ବୋଲ ଦେଲେ ॥
ତେଣୁ କବଣ ଶନ୍ଖୋଳ ତାଙ୍କୁ ଯାଉ ଅଛୁଁ ଆମ୍ଭେ ।
କେଉଁ କାରଣେ ଏଠାରେ ବିଜେ କରଅଛ ତୁମ୍ଭେ ॥
କୃଷ୍ଣ ଚତୁର ଶେଖର ତାଙ୍କୁ ଦେଖନ୍ତେ ଜାଣିଲେ ।
ଧୀରେ ଦକ୍ଷିଣ ନାୟକ ତାଙ୍କୁ ସ୍ତବଣ ଭଣିଲେ ॥
ନବରଙ୍ଗ ବନେ ବସି ବହେ ମୋ ନୟନ ଧାର ।
ନ ଦେଖେ କୁଞ୍ଜ ଗୁରୁହ ଚନ୍ଦ୍ରାବଳୀ ନକର ॥
ଗଲାମ ଲୀ ଚନ୍ଦ୍ରାବଳୀକୁ ମୋ ସମସ୍ୟ କହିବ ।
ରାଧା ସଜନୀ ଜାଣିଲେ କଥା ବିଷମ ହୋଇବ ॥
ହଉବୋଲି ପଦ୍ମା ଶୋଭିବା ଆହ ବୃଷରେ ଆସନ୍ତି ।
ଏମନ୍ତେଣ ରାଧା ସନ୍ନିଧିରେ ନର୍ମଦା ଭାଷନ୍ତି ॥
ଆଜ ରଜନୀରେ ଆମ୍ଭ ବନ୍ଧୁ ଗୁଞ୍ଜ ଗଲା ଚୋରି ।
କୃଷ୍ଣ ନେଲେ ମୁଁ ଚିହ୍ନିଲି ପାଦ ଚିହ୍ନ ଅନୁସରି ॥
ମୀତୁ ପରୁବାଳି ତଉପାଶେ ଚରଣ ଝୁଲାଇ ।
ଯିବା ଆସିବା ଚରଣ ଚିହ୍ନ ଚିହ୍ନିଲି ଅନାଇ ॥
ଶୁଣି ସଜନୀ ବୋଲନ୍ତି ସେଣୁ ମାଗି ନ ପାଇଲେ ।
ଗୋପ ନଗର ଲବଣୀ ଚୋରି ଚୋରି କରିନେଲେ ॥
କଣ୍ଠରେ ଯାହିଁ ହୃଦରୁ ସେ ଚିତ୍ତ କରେ ଚୋରି ॥
କିସ ଶତ ତାଙ୍କୁ ବନ୍ଧୁ ଗୁଞ୍ଜାଫଳ ନେବ ହରି ॥
ଚାଲ ଦେଖିବା ଗୋ ବୋଲି ଜେମା ସଜନୀ ସଙ୍ଗରେ ।
ଫୁଲବନେ ମିଳେ ପାଦପଦ୍ମ ଦର୍ଶନ ନିମନ୍ତେ ॥
କୃଷ୍ଣ ଚରଣ ଚିହ୍ନକୁ ଚାହିଁ ପୁଲକିତ ରଙ୍ଗ ।
ଗୁଞ୍ଜାଲତାକୁ ପ୍ରଶଂସେ ପୁନି ପୁନି ସ୍ନେହ ବହି ॥
ତୁମ୍ଭ ଆରାଧାନ ପୁଣ୍ୟ ପାଦ ଚିହ୍ନ ଦରଶନ ।
ଧନ୍ୟ ଧନ୍ୟ ପାତାଳଜ ଗଙ୍ଗା ଏହୁ ବନ ॥
ଛିନ୍ନ ଭିନ୍ନ ଚାହିଁ ଜେମା କରେ ଆଶ୍ୱାସିଲେ ଲତା ।
ଗଭୁଁ ଶତଗୁଣେ ପଲ୍ଲବିତ ହସିଲେ ଶୋଭିତ ।
ଚିହ୍ନ ଅନୁସରି କହେ ଏତ କୃଷ୍ଣ ପାଦ ନୁହେ ।
କୃଷ୍ଣ ପଦେ ପଦେ ନବ ନବ ଚିହ୍ନ ସମେ ସୋହେ ॥
ଏତ ବିଷମରେ ଅଷ୍ଟାଦଶ ଲକ୍ଷଣ ବିଛନ୍ଦ ।
ଭୂମି ଉଲ୍ଲସିତ ହୋଉଛୁ ନାହିଁଟି ପଦ୍ମଗନ୍ଧ ॥

କୃଷ୍ଣ ଆସିଥିଲେ ଅଙ୍ଗଗନ୍ଧ ହୁଅନ୍ତା ଚହଟ ।
ଏଣୁ ଜାଣିଲେଟି ଚନ୍ଦ୍ରାବଳୀଗଣର କପଟ ॥
କଥା ଜାଣି ବନଭୂମି ପାତାଳ ଗଙ୍ଗା ଜଳେ ।
ସ୍ନାନ ସୁବେଶ ହୋଇଣ ସଖୀ ସଙ୍ଗ ପୁରେ ମିଳେ ॥
ନୈର୍ଯ୍ୟ ପୂଜା ଛଳେ ରଚେ କୃଷ୍ଣ ଯୋଗ୍ୟ ଉପହାର ।
ଏମନ୍ତେଣ ଚନ୍ଦ୍ରାବଳୀ ମଞ୍ଜୀଗଣ ମିଳେ ପୁରେ ॥
ଦେଖି ଗଉରବ କରି ସଖୀ ବସାଇ ମଧ୍ୟରେ ॥
ପୁଷ୍ପ ଚନ୍ଦନ ତାମ୍ବୁଳ ଦେଇ କୁଶଳ ପଚାରେ ।
ପଦ୍ମା ବୋଇଲା ସର୍ବ ମଙ୍ଗଳ ମାଧବ ପରସାଦେ ।
ଶଙ୍ଖନିଧି ପଦ୍ମନିଧି ସିରୋଧି ଯା ଅନୁବାଦେ ॥
ଏକା ଆମ୍ଭଙ୍କୁ କ୍ଷଣେହେଁ ତହିଁ ଅବକାଶ ନାହିଁ ।
ସଖୀ ପୁଛନ୍ତି ତୁମ୍ଭଙ୍କୁ ଏତେ ଜଞ୍ଜାଳ କମାଇ ॥
ପଦ୍ମା କହେ କୃଷ୍ଣ ଚନ୍ଦ୍ରାବଳୀ ସଙ୍ଗେ ରଙ୍ଗ ରସେ ।
ନେବଶ ମଜନରେ ସୁବେଶ ସେ କର ଅନୁସନ୍ଧେ ।
ରାଜ କୁମାରୀ ଆଜନ୍ମ ସୁକୁମାରୀ ଶିରୋମଣି ।
ପୁଷ୍ପ ତାମ୍ବୁଳ ସଞ୍ଚୟ କରି ସର୍ବ ପରମାଣି ॥
କହ ତୁମ୍ଭ କୁଶଳ ଶୁଣିବାକୁ ଆମ୍ଭର ଶରଧା ।
ଏକ ଆର ମୁଖ ଚାହିଁ ତହିଁ କହେ ଅନୁରାଧା ॥
କୃଷ୍ଣ ପଦ୍ମପାଦ ଚିହ୍ନରେ ସର୍ବଦା ଶୋଭେ ସ୍ଥଳ ।
ଲକ୍ଷ୍ମୀ ଆଶ୍ରିତ ହୋଇଣ କରେ ଯେହ୍ନ ପ୍ରତିପାଳ ॥
ଅସୀମାନ୍ତ ଦେଖ ତରୁଲତା ଯେତେ ଏ ଅଛନ୍ତି ।
କୃଷ୍ଣ ମନୋରଥ ପୂର୍ଣ୍ଣ କରିବାକୁ ଯେ ବାଞ୍ଛନ୍ତି ॥
ପୁର ପ୍ରାଙ୍ଗଣ ପାବଚ୍ଛ ଯେତେ ଶିଳା ଚିନ୍ତାମଣି ।
ଗୋଷ୍ଠପଲ ସର୍ବେ କାମଧେନୁ ଅଧିକ କି ଜାଣି ॥
ଶଙ୍ଖନିଧି ସ୍ମରବ୍ୟାଧି ଔଷଧି ରାଧା ହସ୍ତେ ।
ଏଣୁ ଜରି ହରି ସଦା ରାଇ ଚରଣ ଧରନ୍ତେ ॥
ଲଭୁ ଯାଚନ୍ତି ମଞ୍ଜୁ ଯାବକ ସେ ପୁନି ପୁନି ରଞ୍ଜୁ ।
କ୍ଷଣେ ଅବକାଶ ନାହିଁ ସଦା ଏହି ରଙ୍ଗେ ମଞ୍ଜୁ ॥
କୃଷ୍ଣ କରସ୍ଥଳ ସୁରଙ୍ଗ ଦେଖିଣ ଥିବ ଜାଣି ।
ପଦ୍ମା ଗର୍ବ ଚୂର୍ଣ୍ଣ ହେଲା ଲଳିତାର ବାଣୀ ଶୁଣି ॥
ପୁଣ ବେଳେ ଆସନ୍ତି ଦେଖିଲୁଁ କୃଷ୍ଣ ନଦୀ ବନ ।
ପୁଚ୍ଛା କରନ୍ତେ କହିଲୁଁ ତୁମ୍ଭ ପୁର ଆଗମନ ॥
ଚନ୍ଦ୍ରାବଳୀଙ୍କର ଈଶ୍ୱରହେ କି ସମସ୍ୟା କହିଲେ ।
ତୁମ୍ଭ ଆଗ ନ କହିବାକୁ ସେ ଦୃଢ଼ କରାଇଲେ ॥

ବୋଲେ ବିଶାଖା ସେକ ବୋଇଲେ କିପାଇଁ ଗୁପତ ।
ପଦ୍ମା ବୋଇଲେ କହିଲେ ଏହା ଚନ୍ଦ୍ରାବଳୀ କାନ୍ତ ॥
ନବ ରକ୍ତ ବନେ ବସି ବନ୍ଦେ ମୋ ନୟନ ଧାରା ।
ନ ଦେଖେ କୁଞ୍ଜ ଗୁରହ ଚନ୍ଦ୍ରାବଳୀ ନିକର ॥
ଶୁଣି ଏକ ମୁଖ ଗୃହିଁଣ ଆରକ ହସା ହସି ।
ଏହୁ ଗୁଞ୍ଜ କାହିଁ ପାଇଲ ଶଙ୍ଖା ଚହିଁ ହସି ॥
ଶୈବା ବୋଲେ କୃଷ୍ଣ କାଲି ଦେଇଥିଲେ କାହିଁ ନେଇ;
ଏହୁ ଅପୂର୍ବ ଫୁଲ ବୋଲି ଗଲ ରେ ଅଛୁ ଲାଇ ॥
ବିଷ ଦେଲେ ସୁଧା ବୋଲି ଘେନ ଯହିଁ ପ୍ରୀତି କରି ।
ମୋତିହାର ତେଜି ଉରେ ଲହୁଁ ତାଙ୍କ ସ୍ନେହ ଧରି ॥
ତାହ୍ନୁ ବଡ଼ ପଦାର୍ଥ ଏ କାର୍ଯ୍ୟ କହାକରେ ।
ଦେଇ ବୋଲେ ନ ଦେଖାଅ ଏହା ଯାବନ୍ତ ଜନରେ ॥
ଶୁଣି ପ୍ରାଣ ପାଇ ସଜନୀ ଶ୍ରବଣ ଭୁଇଁ ଛୁଇଁ ।
ଚମ୍ପାଲତା ବୋଲେ କହିବାରୁ ସବୁ ଜଣାପାଇଁ ॥
ଶୈବ୍ୟାବାଳୀ ବୋଲେ କହିବାରୁ କଅବା ଜାଣିଲ ।
କୃଷ୍ଣ ସମସ୍ୟା କହନ୍ତେ ପଦ୍ମା ହସା ହସି ହେଲ ॥
ବୋଲେ ସୁଦେବୀ ମେ ସମସ୍ୟା ଆପଣା ଗ୍ରନ୍ଥେ ଲିହ ।
ବିଦଗ୍ଧ ବାଣୀ ପଢ଼ିଲେ ଜାଣିବ ଅଭିପ୍ରାୟ ॥
ଛଳ ବନ୍ଧ ପଦ୍ମା ଲିଖି ତନସ୍ଥଳେ ମୃଗମଦେ ।
ପଢ଼ି ବୋଲେ କୃଷ୍ଣ ବିଚ୍ଛେଦ ମୋ ସଜନୀ ବିଚ୍ଛେଦେ ॥
ଏଥୁ କିସ ହେତୁ ଜାଣିଲୁ ତୁମ୍ଭେ ହେ କହ କନା ।
ରଙ୍ଗଦେବୀ କହେ ବିଚାର କର ଗୋ ଧୀର ମନା ॥
ପଦ୍ମା ଆଦି କୃଷ୍ଣ ସମସ୍ୟାକୁ ପୁଣ ପୁଣ ଛଳ ।
ନାନା ଭେଦେ ଲିପିବନ୍ଧେ କୃଷ୍ଣ ସର୍ବେ ଚନ୍ଦ୍ରାବଳୀ ॥
ନବରକ୍ତ ବନେ ବସି ବନ୍ଦେ ମୋ ନୟନ ଧାରା ।
ନ ଦେଖେ କୁଞ୍ଜ ଗୁରିହ ଚନ୍ଦ୍ରାବଳୀ ନିକର ॥
ଭୃଙ୍ଗବିଦ୍ୟା ବୋଲେ ଏହି ପାଦ ଆଦ୍ୟବର୍ଣ୍ଣମେର ।
ପ୍ରାନ୍ତ ପାଦ ମଧ୍ୟଲୋମ ପଙ୍କ୍ତି କ ଭାଷା ଉଚ୍ଚାରେ ॥
ରାଧା ନୟନ ମୋହେ ବଂଶୀ ବନବିହାର ବନ ।
ଚନ୍ଦ୍ରାବଳୀ ନିକରା ହର ଗୁଞ୍ଜକୁ ଦେଖଦେନ ॥
ପଢ଼ନ୍ତେଣ ସେ ଏମନ୍ତ ମୂର୍ଖ ଉଚ୍ଚାରିଲ ସହି ।
ପଦ୍ମା ଆଦି ସଖୀ ଲଜ୍ଜାରେ ନମ୍ରତା ମୁଖ ତନ୍ ॥
ଚନ୍ଦ୍ରରେଖା କହେ ବିଦଗ୍ଧ ଛନ୍ଦରେ ପଢ଼ିଲ ।
କଥ ବିଚାର ନ କର ଆସି ଏଠାରେ ବାହିଲ ॥

ତୁମ୍ଭେ ଆମ୍ଭେ ଏକ ପଦାର୍ଥ କେବେହେଁ ନୁହେଁ ଭିନ୍ନ ।
ଯେଣୁ ସଂଗୁଣ ଆମ୍ଭର କୃଷ୍ଣ ପ୍ରକଟ ଜୀବନ ॥
ଚନ୍ଦ୍ରାବଳୀ ସଖୀ ଲଜ୍ଜାଭରେ ମାନରେ ଆସିଲେ ।
ସେହି ପାଦ ପାଦକରେ କୋଣ ସହସ୍ର ହୋଇଲେ ॥
ତାଙ୍କ ଆସନ୍ତେ ଲଳିତାଦି ହସନ୍ତି କଥା ବାବେ ।
ବୃନ୍ଦା ବୁଝିଲ କେମନ୍ତ ଛନ୍ଦ ପ୍ରୀତି-ଭଙ୍ଗ ଭେଦେ ॥
କୃଷ୍ଣ ମଧୁର ପୀରତି ରହେ ଗରଳ ଭେଦରେ ।
ମିଶାନ୍ତେଣ ସେ ଅମିୟ ହୁଏ ପ୍ରଣୟ ଗହରେ ॥
ବୃନ୍ଦାବତୀ ବୋଲେ ଧୀର ମତି ଏହା ସେ ଜାଣନ୍ତି ।
ଅବିବେକ ଜନ ଖଳ ବଚନରେ ନାଶ ଯାନ୍ତି ॥
ଖଳ କରୁଣ କୁଠାର ଏକ କରନ୍ତି ସେ ଭିନ୍ନ ଭିନ୍ନ ।
ଭିନ୍ନ ଏକଇ କରନ୍ତି ସୂଚୀ ଟାଙ୍ଗଣା ସଜ୍ଜନ ।
କୁନ୍ଦଲତା କହେ କୃଷ୍ଣର ଦେଖିଲ ଅନୁରାଗ ॥
କଥା ଛନ୍ଦରେ ସ୍ନେହ ପ୍ରକାଶ କଲେ ତୁମ୍ଭ ଆଗ ।
ଭୃଙ୍ଗବିଦ୍ୟା କହେ କୃଷ୍ଣ ଗର୍ଭ ହୃଦୟ ସାଗର ।
ଆନ ବଳବତୀ କାହିଁ ତହିଁ ରାଇ ସେ ମନ୍ଦର ॥
କାମଦେବ ବଳେ ମନ୍ଥି ନାନା ରସ ଜାତ କରେ ।
ସେହି ସୁଧା ପାନ କରି ସୁଖ ନିସ୍ତଳ ନେତ୍ରରେ ॥
ଏବେ ବୃନ୍ଦା ତୁମ୍ଭେ ନିଜ ବନେ ବେଗ ହୋଇ ଚଳ ।
ରାଧା ପ୍ରତିଆସେଣ ବସିଥିବ ମଦନ ଗୋପାଳ ॥
ଚନ୍ଦ୍ରାବଳୀର ସଜନୀ ଜାଣି ପାଇଛନ୍ତି ଆଜ ।
ବନେ ଅଭିସାର କରିବା ନୋହିବା କିଛି କାର୍ଯ୍ୟ ॥
ଅଭିମନ୍ୟୁ ତହିଁ ରାବ ରଖେ ଏଣୁ ବଡ଼ଶଙ୍କା ।
ଦଇବେ ଦେଖା ନ ହେଲ ସିନା ମନେ ହୁଏ ଦଙ୍କା ॥
ଶୁଣି ବୃନ୍ଦା ବେଗ ବେଗ ଆସେ ମାଧବ ନିକଟେ ।
ଦେଖେ ବସିଛନ୍ତି ନାଗର ଯମୁନା ବନ ତଟେ ॥
କୃଷ୍ଣ ପୁଛନ୍ତି ମନେ ଏତେ ତ ଅଇଲ ରାଧା କାହିଁ ।
ବୃନ୍ଦା କହେ ହେ ନାଗର କାଲିକଥା ମନେ ନାହିଁ ॥
ପ୍ରିୟା ଗୁଞ୍ଜ ହାର ଚନ୍ଦ୍ରାବଳୀ ଗଳାର ଦେଇଛ ।
ତାଙ୍କୁ ସମସ୍ୟା ଦେଇଣ ସେପରି ଆସିବେ ରହିଛ ॥
ଆଜ୍ଞା କେକିପୁଚ୍ଛ କାମ୍ୟା ବନକୁ ନଇଲେ ।
ବୃନ୍ଦାବାଣୀ ବଜ୍ରବାଣୀ ଶୁଣି ଚକିତ ହୋଇଲେ ॥
ମୃଦୁ ଭାଷେ ହରି ବନେଶ୍ୱରୀ ନ ଜାଣ କି ତୁମ୍ଭେ ।
ସଖୀ ବିଚାର ନ କଲେ ଯାହା କହିଥିଲୁ ଆମ୍ଭେ ॥

ବୃନ୍ଦା ବୋଲେ ମୁହିଁ ଜାଣଇ ବସ୍ତୁର ଜାଣେ ସଖୀ ।
ଗୁଞ୍ଜଲତା ନେଲ ତୁମ୍ଭ ପାଦପଦ୍ମ ଚିହ୍ନ ଦେଖି ॥
ବଡ଼ ଦୋଷୀ ହୋଇଅଛ ଭେଟ ଆଜ ନ ନୋହିବ ।
କୃଷ୍ଣ ବୋଲନ୍ତି ମଦନାନଳ ବାଣ କେ ସହିବ ॥
ମନେ ରୋଷ କରି ଦୋଷ ଏ ହେଉଛନ୍ତି ନଇଲେ ।
ନିଷ୍ଟେ ନିର୍ଦ୍ଦୋଷୀ ହୋଇବା କାଳିନ୍ଦୀରେ ଝାସଦେଲେ ॥
ଶୁଦ୍ଧ ହୋଇ ଆସିଲେଣ ଉର ଶମ୍ଭୁଙ୍କୁ ଛୁଇଁବ ।
ବୃନ୍ଦା ସତ୍ୟ ଏହି ନିୟମକୁ ଅବଶ୍ୟ କରିବା ॥
କୃଷ୍ଣ ଦୂତୀ ବାକ୍ୟ ଶୁଣି ସୂର୍ଯ୍ୟତନୟା ଆନନ୍ଦେ ।
କୂଳ ଲଙ୍ଘିଣ ଲାଗଇ ହରି ଚରଣାରବିନ୍ଦେ ॥
ଜଳଚର ଜୀବ କାଳୀ ନାଗପତ୍ନୀ ଦେଖି ଇଚ୍ଛା ।
ଟେକ ଉଜାଣିରେ ଆସନ୍ତେଣ ନଦୀ ହୁଏ ତୁଚ୍ଛା ॥
ପରିମଳ ମନ୍ଦଗନ୍ଧ ଶୀତେ ବହେ ଗନ୍ଧବହ ।
ଲତା ତରୁ କମ୍ପମାନେ ଗଳେ କୁସୁମ ସମୂହ ॥
କୃଷ୍ଣ ବୋଲେ ବୃନ୍ଦେ ରାଧା ବିନୁ ମୋର ଅମଙ୍ଗଳ ।
ନଦୀ କାନନ ପବନ କିଏ ଶୁଭ ଅନୁକୂଳ ॥
ବୃନ୍ଦା ବୋଲେ କାଳୀନାଗ ବିଷଜଳେ ସର୍ବେ ନାଶ ।
ନିଷ୍ଟେ କାଳୀ ନାଶଯିବ ଯେବେ କୃଷ୍ଣେ ଦେବ ଝାସ ॥
ସ୍ୱାଦୁ ପବିତ୍ର ଏ ଜଳ ବିଷଜଳେ ନାଶଗଲେ ।
ପ୍ରୀତି ମଧୁରେ ଯେସନ ଖଳ ଗରଳ ମିଶିଲେ ॥
ଯନ୍ତ୍ର ଦୂତୀ ବାଣୀ ଜାଣି ତେଣୁ ଶୁଭ ପ୍ରକାଶନ୍ତି ।
କୃଷ୍ଣ ବୃନ୍ଦାର ବଚନ ଶୁଣି ଅଳପ ହସନ୍ତି ॥
ଏମନ୍ତେଣ ପଦ୍ମା ଶୈବ୍ୟା ତହୁଁ ଅପମାନେ ଗଲେ ।
ସବୁ ଚରିତ ମଣାଇ ଚନ୍ଦ୍ରାବଳୀଙ୍କି କହିଲେ ॥
କୃଷ୍ଣ ଶଠ ବଚନକୁ ସଖୀ ମୁଖୁ ଶୁଣି ତାପେ ।
ରତ୍ନ ଆନ୍ମିକ ସୁନ୍ଦରୀ ପେଶେ କୃଷ୍ଣର ସମୀପେ ॥
ଏହି ସମୟରେ ଚନ୍ଦ୍ରାବଳୀ ଦୂତୀ ଆମ୍ବ ଘେନି ।
କୃଷ୍ଣ କରେ ଦେଇ ଅଧୋମୁଖେ ରହିଲା କାମିନୀ ॥
କାଲି ଦେଖିବ ବୋଲିଣ ହରି ତହୁଁ ଚଳିଗଲେ ।
ଏକେ ଏକେଣ କୃଷ୍ଣର ବାଣୀ ବିଗୂଢ଼ ଜାଣିଲେ ॥
ମଧୁମଙ୍ଗଳ ସୁବଳେ ହରି କହିଲେ ବୃତ୍ତାନ୍ତ ।
ଚନ୍ଦ୍ରାବଳୀ ଏ ରସାଳ ଦେଲେ କେଉଁ ନିମିତ୍ତ ॥
ବଟୁ କହେ କଟୁହୁଏ ତାକୁ ଲଳିତାର ବାଣୀ ।
ବିଶେଷରେ ହରି ତୁମ୍ଭ ଶଠହୃଦ ଗଲେ ଜାଣି ॥
ଆମ୍ବ ଦେଇ ଜଣାଇଲା ଦୂତୀ ଦେଖି ବୃନ୍ଦାସଙ୍ଗ ।
ନବ ଗଉର ପୂରିତରସ କୋପେ ମୁଖରଙ୍ଗ ॥
ବୋଲେ ସୁବଳ ତୁମ୍ଭ ପୀରତି ଚୂତ ଉପଲକ୍ଷି ।
ଅନ୍ତେ କର୍କଶ ବାହ୍ୟେ ସରସ ଅନୁରାଗମୁଖୀ ॥
ଶୁଣି କୃଷ୍ଣ ବେନି କରେ ବେନି ସଖା ଆଲିଙ୍ଗନ ।
ଏବେ କେଉଁ ଉପାୟେ ହେବ ବେନି ସମାଧାନ ॥
ବଟୁ ବୋଲେ ରସ ଶାସ୍ତ୍ରେଣ ଅଛନ୍ତି ମୁନି ଲେଖି ।
ଗୁରୁମାନ ଉପେକ୍ଷନ୍ତି ନାରୀ କାନ୍ତ ବଶ ଦେଖି ॥
ବୋଲେ ସୁବଳ ଅମୂଲ୍ୟ ଅଳଙ୍କାର ଯେବେ ପାଇ ।
ସପତ୍ନୀ ବଶ ଦେଖିଲେ ତହୁଁଣ ମାନ ଯାଇ ॥
କୃଷ୍ଣ ବେନିମିତ ହିତବାଣୀ ଘେନିଣ ଚିତ୍ତରେ ।
ଧେନୁ ଚରାଇ ଗୋକୁଳେ ମିଳେ ସାୟଂ ସମୟରେ ॥
ସ୍ନାନ ସୁବେଶ ଭୋଜନ ଗୋଦୋହନ କୁତୂହଳ ।
ପ୍ରଦୋଷରେ ଗୋପ ସଭାରେ ହୋଇଲେ ସର୍ବେ ଠୁଳ ॥
କୃଷ୍ଣ ଆଗମେ ରାଧିକା ପୁର ଅଟ୍ଟାଳ ଆରୋହି ।
ସଖୀସଙ୍ଗେ ସହିଁ ଯେଉଁ ଲୀଳା ସଖୀ ସଙ୍ଗେ ରହି ॥
ଦୂର ତମଘୋରେ ନେତ୍ର ପଦ୍ମ ଗମିଣ ନପାରେ ।
ଏମନ୍ତେଣ ନାନ୍ଦୀମୁଖୀ ଯାଇ ମିଳେ ସନ୍ନିଧିରେ ॥
ଶ୍ୟାମ ମୋହନ ଅଞ୍ଜନପାତ୍ର ଭଗବତୀ ଦେଇ ।
ରାଧା ଆଦରେଣ ଉଠି ନିଜ ମୂର୍ଦ୍ଧ୍ନି ଲଗାଇ ॥
ସେହି ଅଞ୍ଜନର ମହିମା ଯେ କହେ ନାନ୍ଦୀମୁଖୀ ।
ଘେନି ନୟନ ଗୃହାନ୍ତେ ଦୂର ନିକଟରେ ଦେଖି ॥
ବଶ ସର୍ବଜନ ଦିବସ ପ୍ରାୟକ ହରେ ନିଶି ।
ଅତି ସ୍ନେହରେ ତୁମ୍ଭଙ୍କୁ ଦେଇଛନ୍ତି ପୌର୍ଣ୍ଣମାସୀ ॥
ଶୁଣି କୃତ୍ୟ କୃତ୍ୟ ହୋଇ ରାଣୀ ମଧୁର ବଚନେ ।
ସେହି ପରମହଂସିଙ୍କ ମତେ କୃପା ପ୍ରତିଦିନେ ॥
ତତକାଳରେ ବିଶାଖା ଘେନି ଦଳିତ ଅଞ୍ଜନ ।
ଅନାମିକାଙ୍ଗୁଳି ଅଗ୍ରେ ରଞ୍ଜି ରାଧିକା ନୟନ ॥
ସେହି ଅଞ୍ଜିବ ପ୍ରଭାବେ ଦିଗ ମହା ଉଜ୍ଜ୍ୱଳ ଦିଶେ ।
ଗୋପ ସଭାରେଣ ପ୍ରାଣନାଥ ଦେଖାଇ ହରଷେ ॥
ଏମନ୍ତେଣ କଂସ ରାଜାର ଶ୍ରୀମୁଖ ଘେନି ଜଣେ ।
ସଭା ମଧ୍ୟରେଣ ପ୍ରବେଶ କଂସ ଆଜ୍ଞା ପ୍ରମାଣେ ॥
ଦେଖି ନନ୍ଦ ଉଠି ହସ୍ତ ପାତି ଶ୍ରୀମୁଖେ ଘେନିଗଲେ ।
ତତକାଳେ ଉପନନ୍ଦ ଫେଡ଼ି ପଢ଼ି ଶୁଣାଇଲେ ॥

ନନ୍ଦ ରାଜାଙ୍କୁ ଉଲୁର ଆଜ୍ଞା ପ୍ରମାଣେ କରିବ ।
କାଳୀ ହ୍ରଦରେ ପଶି ସହସ୍ରେ କମଳ ତୋଳିବ ॥
ସହସ୍ରକ ଭାର ନେଇଣ ଆସିବ ତ୍ୱରିତ ।
ଆଜ୍ଞା ଭ୍ରଷ୍ଟ ହେଲେ ନାଶ ଯିବ ଗୋପାଳ ସମସ୍ତ ॥
ଶୁଣି ମହାଜନେ ବିଷର୍ଣ୍ଣ ନନ୍ଦର ଜ୍ଞାନ ନାହିଁ ।
ଏକା ପଦ୍ମକୁ ସହସ୍ର ନାଗ ଜଗିଥାଏ ସେ ଯହିଁ ॥
ଦେବାସୁରେ ଯେହୁ ଦୁର୍ଲ୍ଲଭ ସେ ଆମ୍ଭେ କି ହୁଏ ।
ଯେଉଁ ବାତେ ମୃତ୍ୟୁ ହୁଏ ତହିଁ ପଶି ପ୍ରାଣ ରହେ ॥
ଦୂତ ବୋଲେ ଦେବମାନେ ଅଜସ୍ର ଯେଉଁ ମଲେ ।
ଖେଳ କଉତୁକେ ତୁମ୍ଭର ବାଳକ ନାଶ କଲେ ॥
ଗୀଳ ଜର୍ଜ୍ଜରିଲେ କଣ୍ଠେ ଧେନୁକାସୁର ନାଶି ।
ତୁମ୍ଭ ମହିମା ଶୁଣିଣ ମହାମହାବୀରେ ହାସି ॥
ପଦ୍ମ ତୋଳାଇ ହିଅ କେତେ ହେଉଛ ସନ୍ତାପି ।
ରାଜା ଆଜ୍ଞା ନମାନିଲେ ଗୋପେ ଥିବକି ଅଦ୍ୟାପି ॥
ନନ୍ଦ ବୋଧ କରିଣ ଦୂତକୁ ବିନୟ ଭାବରେ ।
କୁଳବୃଦ୍ଧ ଘେନି ସେ ବିଚାର କରନ୍ତି ସଭାରେ ॥
ପଦ୍ମ ତୋଳିବାକୁ ଅଛି ସେ କାହାର କିସ ବୁଦ୍ଧି ।
ନଷ୍ଟେ ଆଜ୍ଞା ନମାନିଲେ ମାରିବ ସେ ବର୍ଗ ଶୋଧି ॥
ଅଭିନନ୍ଦ କହେ ମାତୋଆର କରି ଆଣି ହିଅ ।
ଟଷାଳଘରେ ପଦ୍ମଭାରେ ଦେବେ ଘୋଷଣା ହିଆଅ ॥
ଯାର ଯେମନ୍ତ ବୁଦ୍ଧି ବଳ ତେମନ୍ତେ ଆଣନ୍ତୁ ।
ଆଣି ନପାରି ପଳାଇଗଲେ ରାଜାହିଁ ଜାଣନ୍ତୁ ।
ବସୁନନ୍ଦ ବୋଲେ ଗୋପେ ଯେତେ ସମସ୍ତେ ଆତୁର ।
ମନେ ଅଭରସା ପାଇବେ ନୁହନ୍ତି ଓକିହି ପର ॥
କାଲି ପ୍ରାତଃ କାଳେ ସକଳେ କାଳିନ୍ଦୀ କୂଳେ ଯିବା ।
କାଳୀନାଗ ବୋଧ କରି ଭରି ବଳ ସେନା ଦେବା ॥
ସବେ ଭରଜାଇ ମାଗିବା ପଦ୍ମ ସହସ୍ର ଭାର ।
ନଗ୍ରେ ଘୋଷଣ ଦେଇ ଦୋସାଧ କହନ୍ତି ଘରଘର ॥
ଆଜ୍ଞାପାଇ ନଶୋପାଳ ନଗ୍ରେ ଡେଙ୍ଗୁରା ହିଆଏ ।
ଉଜାଗରେ ସାହି ସାହି ବୁଲି ଆକଟ କରଏ ॥
ଜଣେ ଲେଖାଏଁ ଘରକେ ଯିବ କାଳିନ୍ଦୀ କୂଳକୁ ।
କାଳୀନାଗେ ବଳ ଦେଇ ତୋଳ କମଳ ଫୁଲକୁ ॥
ଶୁଣି ଗୋପଜନେ ଚିନ୍ତାମନେ ନିଦ୍ରାହିଁ ନଗଲେ ।
ଦଶବଂଶ ଶତସହସ୍ରେ କୁଦାକୁଦା ହେଲେ ॥

କେହୁ ବୋଲନ୍ତି ନୃପତି କୋପଦୃଷ୍ଟି ଦେଲା ଏଥେଁ ।
ଜାଣୁ ଜାଣୁ ବିଷଜଳେ ପଶି ମରିବା କେମନ୍ତେ ॥
ଆଜ୍ଞା ମାନୁଁ ଅବା ନମାନୁଁ ଜୀବନେ ନାହିଁ ଆଶ ॥
ନିରନ୍ତର ଏ ଗୋପକୁ କୋପ କଲା ଏ ନୃପତି କଂସ ।
କେହୁବୋଲେ ଦୁର୍ଗା କହିଲେ ତୋ ଶପୂ ଜାତ ଏଥି ।
ଗୋପେ ପୂତନା ମଲା ଦିନରୁ ହୋଇଲା ଅନର୍ଥ ।
କେହୁବୋଲେ ବଛା ଅଘା ବକା ନିଜ ପ୍ରାଣରେ ମଲେ
କୃଷ୍ଣ ମାଇଲେ ବୋଲି ଜଗତେ ଅପଖ୍ୟାତି ହେଲେ ॥
କେହୁବୋଲେ ସେହି ଯୋଗୁଁ ସିନା କଂସକରେ ରୋଷ ।
ନନ୍ଦନନ୍ଦନ ଯୋଗୁଁ ଲାଗିଲା ସମସ୍ତଙ୍କୁ ଦୋଷ ॥
କେହୁ ବୋଲେ ଯାକୁ ରାଜା ରୋଷ କରେ ନିରନ୍ତର ।
କେବେ ନରହିବ ତାର ପାଶେ ଦେଶ ସୀମାନ୍ତର ॥
ଏବେ ଆମ୍ଭଙ୍କୁ ଜଗାଏ କଂପା ପଦ୍ମ ସେହୁ ଦେଉ ।
କୃଷ୍ଣ ଅନ୍ତରେ ଏମନ୍ତ ଶୁଣି ବୋଲେ ହଉହଉ ॥
କେହୁ ବୋଲନ୍ତି କୃଷ୍ଣରୁ ବଳୀୟାର ନାହିଁ କେହି ।
ପ୍ରୀତିକରି ପଦ୍ମଫୁଲ ମାଗିଲେ ଦେବ କାଳୀ ଅହି ॥
କେହୁ ବୋଲେ ହରି ଦୁଷ୍ଟଜନେ ପ୍ରୀତି ନକରଇ ।
ମନେ କଲେ ପଦ୍ମ ତୋଳି କାଳୀ ଦେବ ଘଉଡ଼ାଇ ॥
କେହୁ ବୋଲେ ଏହୁ ପୂତନାର କ୍ଷୀର ପାନ ନୁହେଁ ।
ପଥ ଚେଜନ୍ତି ଖଗେରେ ଯେଉଁ ବିଷବାତ ଭୟେ ॥
ଅଘା ଅହି ପ୍ରାୟେ ମଣିଲକ ତାକୁ ସିଦ ଫୁଟି ।
ବାସୁକିର ଭାଇ କାଳଦଣ୍ଡ ତ୍ରିଭୁବନ ଘୋଟି ॥
କେହୁ ବୋଲେ ତୁମ୍ଭ ପ୍ରତ୍ୟକ୍ଷରେ ଦେଖ ଯିନା ।
ସେହୁ ନ ତୋଳିଲେ ଅନ୍ୟ ତୋଳିବ ତା ବିନା ॥
କେହୁ ବୋଲଇ ବାଳକ ତହିଁ କି କରି ପାରଇ ।
ଦେଖ ଜଗତେ ଅଜସ୍ର କଂସ କାଳୀକି ଡରଇ ॥
ଆମ୍ଭେମାନେ ତହିଁକି ଯାଇ କିସବା କରିବା ।
ବାବୁ ବିଧାତା କରିଛି ଏକାବେଳେକେ ମରିବ ॥
ବୃଦ୍ଧ ପିତା ପୁତ୍ର ସମୀପେ ବସାଇ ଡାଆରଇ ।
କାଲି ମୁହିଁ ପଦ୍ମ ତୋଳିଯିବି ଆମ୍ଭ ଘର ପାଇଁ ॥
ଆମ୍ଭେ ପାରଇ ବା ନ ପାରଇ ଚିନ୍ତା ନ କରିବୁ ।
ରାଜକ ଯେଁ ମଲେ ମୁହିଁ କରଛଡ଼ା ତୁହି ହେବୁ ॥
ପୁତ୍ର ବୋଲଇ ହେ ତାତ ଏହା ନୁହଇ ଉଚିତ ।
ମରଣକୁ ଯେଣି ପିତା ପୁତ୍ର ମଧ୍ୟରେ ନିଶ୍ଚିନ୍ତ

ଇହପର ଲୋକେ ନିନ୍ଦା ମୁହିଁ ଯିବି ପଦ୍ମ ତୋଳି ।
ଘରଘରକେ ଯେତେ ପ୍ରାଣୀ ଏହି ରୂପେ ଭଳି ॥
କାହା ପୁତ୍ର ଆଗମନ ନ ଦେଖି ପିତାମାତା ଦୁଃଖୀ ।
କେଉଁ ବୃଦ୍ଧ ଯିବା ସଜ ହୁଏ ଘରର ପୁତ୍ର ରଖି ॥
କେଉଁ ବୁଢ଼ୀ ବଧୂ ବୋଧି ପଦ୍ମ ପାଇଁ ଅଗ୍ରସର ।
ବୋହୂ ବୋଲେ ମାଏ ତୁମ୍ଭ ଯିବ ନ ହୁଇ ବେଭାର ॥
ସାନଭାଇ ସ୍ନେହ ରଖି ବଡ଼ଭାଇ ଯିବା ସଜ ।
ଜ୍ୟେଷ୍ଠଭ୍ରାତା ରଖି ସାନଭାଇ ଯିବାପାଇଁ ସଜ ॥
ଏହିରୂପେ ଏକ ଆରକୁ ସେନେହ ଭାବରେ ।
ଜଣେ ଜଣେ ସେ ବାହାର ଶୋକମରଣ ବିଗ୍ରହରେ ॥
ଭୋଜ୍ୟ ସାମଗ୍ରୀ ଭିଆଇ ଯେ ଯାହାର ଭାର ଘେନି ।
ସର୍ବେ ସଂଯୋଗାଇ ନନ୍ଦ ବସି ଉନ୍ନିଦ୍ରେ ରଜନୀ ॥
କୃଷ୍ଣ ବେନି ସଖା ଘେନି ରଜନୀରେ ଗୁପତରେ ।
ସାହି ସାହି ବୁଲିଆସନ୍ତି ଶୁଣନ୍ତି ଉଚାଟରେ ॥
ଗୋପୀ ଗୋପାଳ ଆରତ ଚିନ୍ତା ଜାଣି ହରି ।
କାଲି କାଳୀ ଦଳ ପଦ୍ମ ତୋଳିଦେବା ଦଣ୍ଡଧାରୀ ॥
ନିଜ ଶୟନ ମନ୍ଦିରେ ଯାଇ ପଲଙ୍କେ ପହୁଡ଼ି ।
ନିଶି ପାହିଲା କି ପରିଜନେ ପୁଚ୍ଛନ୍ତି ଘଡ଼ି ଘଡ଼ି ॥
ରାଧା ବିଚ୍ଛେଦ ବିରହ ବାଧା କାଳୀ ଉପତାପେ ।
କଂସ ନୃପତି ପ୍ରତାପେ ଗୋପଜନଙ୍କ ସନ୍ତାପେ ॥
ଏତେ ଚିନ୍ତିତ ଖେଦମନ୍ତ ନିଦ୍ରା ହିଁ ନ ଗଲେ ।
ପଦ୍ମ ତୋଳିବାକୁ ନେତ୍ରପଦ୍ମ ମୁଦ୍ରିତ ନୋହିଲେ ॥
ଏମନ୍ତେଣ ନିଶି ପାହି ପୂର୍ବେ ଅରୁଣ ଉଦୟେ ।
କୃଷ୍ଣ ସଖାଘେନି ଗୋ ଧନ ଚଳାଇ ନିଯାଏ ॥
ନଦୀ କୂଳେ ଗାବ ଚରାଇ କାଳନ୍ଦୀ ହ୍ରଦେ ମିଳେ ।
ନିକଟକୁ ପଶି ନ ପାରନ୍ତି ମହାବିଷ ଜାଳେ ॥
ତଟ ନିକଟରେ ବିଶାଳ କଦମ୍ବ ମହାତରୁ ।
ଚଉଦିଗେ ଶାଖାମେଲି ଶୋଭା କେହୁ କହି ପାରୁ ॥
ପୂର୍ବେ ଗରୁଡ଼ ଅମୃତ ଆଣି ତହିଁରେ ଥୋଇଲେ ।
ତେଣୁ ଶ୍ୱେତ ବର୍ଣ୍ଣ ହୁଏ ନାଶ ନୋହେ ବିଷଜାଳେ ॥
ସଦା ନବୀନ ପଲ୍ଲବ ଘନ କୁସୁମ ବିକଶେ ।
ମଧୁ ଲୋଭେ ମତ୍ତ ମଧୁକର ବେଢ଼ି ଚଉପାଶେ ॥
ପିକ ଡାକେ କୁହୁ କୁହୁ କଳା ଡୋକେ କେତେ ।
ଲୋକ ବାକ୍ୟେ ଶୁକ ଡାକେ ରାଧାପ୍ରାଣନାଥ ଏଥେ ॥

ମୂଳବେଢ଼ି କମନୀୟ ମଣିମୟ ଚଉସମେ ।
ଡାଳ ଓହୋଳା ଡାଙ୍କିଣି ରହେ ଅତି ମନେ ରମେ ॥
କୃଷ୍ଣ ଦେଖିଣ ଶ୍ରଦ୍ଧାରେ ତହୁଁ ଏକ ଫୁଲ ତୋଳି ।
ବୋଲେ ମୋର ମିଳନରେ ଯେହୋଇଲି ରୋମାବଳି ॥
ସଖାମାନଙ୍କୁ ବୋଲନ୍ତି ତୁମ୍ଭେ ତଳେ ଥାଅ ରହି ।
ପଦ୍ମ କେତେ ଦୂରେ ଅଛି ମୁହିଁ ଏଥେ ଉଠି ଚାହିଁ ॥
ଏତେ କହି ହରି ନୀପତରୁ ପ୍ରଦକ୍ଷିଣ କରି ।
ତହିଁ ଉପରେ ଉଠିଲେ ଯାଇ ସଖା କର ଧରି ॥
କେତେଦୂରେ ଦିଶେ ରାଧା ସୂର୍ଯ୍ୟ ପୂଜା ଆଗମନେ ।
କୃଷ୍ଣ ଉଦ୍ଦେଶିଣ କୁସୁମ ତୋଳନ୍ତି ବନେ ବନେ ॥
ଚନ୍ଦ୍ରାବଳୀ ଗଣ ଦେଖି ପୁଣ ଗଉରୀ ତୀର୍ଥରେ ।
ନଗ୍ର ନରନାରୀ ଯୂଥ ଯୂଥ ଯମୁନା ପଥରେ ॥
ଆକାଶରେ ଦେବଗଣ ଛନ୍ତି ବିମାନ ଆରୋହି ।
ବନମାଳୀ କାଳୀ ଦଳ ଘଉଡ଼ାଇ ଦିଅ କହି ॥
କୃଷ୍ଣ ଦେବଙ୍କ ବଚନେ ଅତି ପ୍ରଚଣ୍ଡ ଶରୀର ।
ବାହୁ ବିସ୍ତାରି ବିକ୍ରମି ଡେଇଁ ପଡ଼ିଲେ ହ୍ରଦର ॥
ଅତି ଅଗାଧ କାଳନ୍ଦୀ ଜଳ ଊର୍ଦ୍ଧ୍ୱକୁ ଉଠିଲା ।
କୂଳ କାନନ ଲଙ୍ଘିଣ ବିଷ ଅନଳ ଘୋଟିଲା ॥
ମହା ପ୍ରଳୟ ଅନଳ ଜାଣି ଯାଉଅଛି ପୋଡ଼ି ।
ଖଗ ମୃଗ ପଳାନ୍ତି ଯେଝା ବସାମାନ ଛାଡ଼ି ॥
ଗୋରୁ ଗୋପାଳେ ସେ କଦମ୍ବ ମୂଳକୁ ଆଶ୍ରାକଲେ ।
କୃଷ୍ଣ ଜଳରେ ପଡ଼ିବା ଦେଖି ଜ୍ଞାନ ହରାଇଲେ ॥
ଦଶଦିଗ ଧୂମମୟ ଉଠେ ଗଗନେ ହୁତାଶ ।
ଶ୍ୟାମସୁନ୍ଦର ବିହୀନେ ସୁଏ ମନେ ମହାତ୍ରାସ ॥
ଆହେ କୃଷ୍ଣ ଆହେ କୃଷ୍ଣ ବୋଲି ଉଚ୍ଚରେ ଡାକନ୍ତି ॥
ନବଘନ ନିରେକ୍ଷିଣ କହୁଁ କହୁଁ ମୋହ ଯାନ୍ତି ॥
ଗାବ ଖଗ ମୃଗ ଶୋକେ ନେତ୍ରଲୋତକେ ଅନାଇ ।
ତରୁ ତୃଣ ଲତା ମଉଳାଇ ଅଶ୍ରୁଧାରା ବହି ।
ଏମନ୍ତେଣ ଗୋପଜନେ ପଦ୍ମ ତୋଳିବା ନିମନ୍ତେ ।
କାଳୀବଳ ଭୋଜ୍ୟ ସାମଗ୍ରୀ ଘେନାଇ ଯେଝାମତେ ॥
ବାଟେ ବାରତା ପାଇଲେ କୃଷ୍ଣ ହ୍ରଦେ ଡେଇଁପଡ଼ି ।
ଶୁଣିମାତ୍ରେଣ ନ ଦିଶଇ ବିଷଜଳେ ଗଲେ ବୁଡ଼ି
ଶୁଣି ମୂର୍ଚ୍ଛାଗତ ମହୀରେ ଲୋଟି ମହାଶୋକ ଭରେ ।
ହା ହା କୃଷ୍ଣ ବୋଲି ରୋଦନ କରନ୍ତି ଉଚ୍ଚସ୍ୱରେ ॥

ଏକ ଚନ୍ଦୁଁ ଆରେକ ଶୁଣିଣ ହୁଏ ମୁଣ୍ଡକୋଡ଼ ।
କେହୁ ବୋଲଇ ଉଦଣ୍ଡ ହେଲ ଧାଏଁ ଉଠିପଡ଼ ॥
କେହୁ ବୋଲଇରେ ବାବୁ ଧାଆଁ ସରିଲ ସମ୍ପଦ ।
ନିଶ୍ଚେ ଏତେଦିନେ ଆସି ଗୋପେ ପଡ଼ିଲା ପ୍ରମାଦ ॥
ଏରୂପେଣ ଗୋପେ ପାଷାଣ ରୁଧିର ଉପୂବୃଷ୍ଟି ।
ନନ୍ଦ ଆଦି ବୃଦ୍ଧେ ଆତଙ୍କ ସେ ଦେଖିଣ ଅରିଷ୍ଟି ॥
ପୁତ୍ର କାହିଁ ବୋଲି ମନ ଛନ ଛନରେ ଲୋଡ଼ଇ ।
କହୁଁ କହୁଁଣ ବାରତା ଗୋପେ ଉଛୁଳି ପଡ଼ଇ ॥
ଉଚ୍ଚସ୍ୱରେଣ ରୋଦନ ପୁଣି ପୁଣି ପୁରେ ପୁରେ ।
ଶୁଣି ନନ୍ଦଆଦି ପିତାଗଣ ପଡ଼ି ଜ୍ଞାନହରେ ॥
ଯଶୋବନ୍ତୀ ଆଦି ଯେତେ ମାତା ଅବନୀରେ ଲୋଟି ।
ଗୋପ ଭୁବନରେ ଉଚ୍ଛଳଇ ଶୋକସିନ୍ଧୁ ଘୋଟି ॥
ଶ୍ୟାମ ଲାବଣ୍ୟ ଅମିୟରୂପ ନେତ୍ର ଅଛୁ ରହିଁ ।
କୃଷ୍ଣ ମଧୁର ବଚନାମୃତ କର୍ଣ୍ଣ ଅଛୁ ପିଇ ।
ତେଣୁ ଜୀବନ ନ ଯାଇ ଶୋକ ସନ୍ତାପରେ ରହେ ।
କୃଷ୍ଣ ବିନା ପ୍ରାଣ ରହିବାର ଆରହିଁ ଦୁଃସହେ ॥
କେଶବାପ ଅତି ଅସମ୍ଭାଳେ ଧାଆନ୍ତି ସକଳେ ।
ନନ୍ଦ ଉପନନ୍ଦ ବସୁନନ୍ଦ ଅଭିନନ୍ଦ ମେଳେ ॥
ପିତାମହ ମାତାମହ ସେ ବରିଷ୍ଠ ସମାକୁଳି ।
ମାମୁ ଯଶୋଧର ଯଶୋଦେବ ଭୁଚର୍ତ୍ତ ପହଣ୍ଡ ॥
ରାମ ସୁଭଦ୍ର କୁଣ୍ଡଳ ସ୍ତୋକ ଭ୍ରାତୃଗଣ ଧାଁଏ ।
ମାତ ଯଶୋଦା ରୋହିଣୀ ଭୁଲି ଡକା ପଡ଼ଯାଏ ॥
ପିତା ଭଗିନୀ ନନ୍ଦନୀ ମାତାଭଗ୍ନୀ ଯଶସ୍ୱିନୀ ।
ଶୋକେ ଅମ୍ବିକା କଳମ୍ବା ଏ କୃଷ୍ଣଙ୍କର ଧାଇବେନି ॥
ଭ୍ରାତା ପତ୍ନୀ କୁନ୍ଦଲତା ଆଦି ସହିତେ ଗୋଡ଼ାଇ ।
କୃଷ୍ଣ ଅପଘାତେ ଶତ ଶୋକସମୁଦ୍ରେ ବୁଡ଼ାଇ ॥
ହା ହା କାରୁ କରି ଧାଆନ୍ତି ସେ ବନ୍ଧୁବର୍ଗ ଯେତେ ।
ଗୁଣି ବାହୁନି ନଗର ଜନ ଆସନ୍ତି ସମସ୍ତେ ॥
ଅତି ଆରତରେ ବାଳବୃଦ୍ଧ ସମସ୍ତେ ଧାଆନ୍ତି ।
ଗୋପେ ଲୁଣୁଆ ଯେ ଆସିଥିଲେ ସଙ୍ଗେଣ ଗମନ୍ତି ॥
ଘରଦ୍ୱାର ଛାଡ଼ି ମାଡ଼ିଣ ଚଳନ୍ତି ବନ ପଥେ ।
ଚେତନା ନାହିଁ ନଈ ପ୍ରାୟେ ବହିଯାନ୍ତି ଯୂଥେ ଯୂଥେ ॥
ଦେଖି ଦେଖି ଭୁଞ୍ଜା କରି ଗୋକୁଳ ନଗର ।
କେହୁ ପଛେ କେହୁ ମଧ୍ୟେ କେହୁ ଗମଇ ଆଗର ॥

ଯାଉଁ ଯାଉଁ ଉଚ୍ଚସ୍ୱରେ ରୋଦନ କରୁ କରୁ ।
ଏତେ ଦୁଃଖ ଦେଲା କଂସ ଜଗତ୍ରୁ ପଡ଼ିମରୁ ॥
ଶୂନ୍ୟେ ବିହରନ୍ତା ପୁରୁଷ ଶୁଣି ଅପୂର୍ବ ହୋଇ ବୋଲେ ।
ଏମନ୍ତେଣ ଯାଇ ମିଳିଲେ ସେ କାଳୀ ହ୍ରଦ କୂଳେ ॥
ଲୋକଶୋକ ଜଳ ବହ୍ନି ବନ ଅନଳ ଲଭନ୍ତି ।
ସଙ୍ଗ କୁମରଙ୍କୁ ଦେଖି ବେଢ଼ି ବାରତା ପୁଛନ୍ତି ॥
ପୁଏ କହନ୍ତି ହରି ଉଠି ଏ କଦମ୍ବ ଉପରେ ।
ଡଲେ ଥାଅ ପଦ୍ମ ଦେଖଇ ଅଛୁ କେତେ ଦୂରରେ ।
ଏତେ କହି ଶିଖେ କ କ ଶବ୍ଦର ଡେଇଁଣ ପଡ଼ିଲା ।
ବିଷଜଳ ଉଚ୍ଛୁଳିଣ କୂଳକାନନ ପୋଡ଼ିଲା ॥
ଶୁଣି ଯଶୋବନ୍ତୀ ନନ୍ଦଆଦି ଅବନୀ ଲୋଟିଲେ ।
କୋଡ଼ କରୁଣ୍ଡି ହୁଅନ୍ତେ ତନୁ ମୂର୍ଦ୍ଧନା ଫାଟିଲେ ॥
କାହା ଦେହରେ ଚେତନା ଅଛି ଧରିବ କେ କାହାରେ
ଶିରେ କର ତାଡ଼ି ଭୂମି ପଡ଼ି ଗଡ଼ି ସେ ଯାହାରେ ॥
ଅତି ଅସମ୍ଭାଳେ ଯଶୋବନ୍ତୀ ଶୋକ ଗୁରୁତର ।
ଶ୍ୟାମସୁନ୍ଦର ମୋ ଲୁଚିଅଛ ଏ ଜଳ ଭିତର ॥
ତବ ଲାବଣ୍ୟ ଶରୀର ଗୋଟି କେଣେ ଥିବବୁଡ଼ି ।
ମୂର୍ଚ୍ଛି ଅଣ୍ଟାଳ ଆଣିବ ପଶି ଧାଏଁ ଝାସି ଲୋଡ଼ି ॥
ଧାଇ ପରିଜନେ ବୋଧି କହନ୍ତି ମଣାଇ ।
କୃଷ୍ଣ ଆସନ୍ତି ବୋଲନ୍ତେ ନିଶ୍ଚଳେ ଅନାଇ ॥
କାହ୍ନୁ କାନ୍ତି କଳା କଳାପେ କାଳିନ୍ଦୀ ଜଳ ଦିଶେ ।
ମୁଖପଦ୍ମ ନୀଳୋତ୍ପଳ କଇରବ ମୃଦୁ ହାସେ ॥
କୋକନଦ ଧରି ମୃଣାଳ ସୁବାହୁ ସ୍ପର୍ଶ ରଙ୍ଗେ ।
ନୃତ୍ୟ ରଙ୍ଗେ ପୀତାମ୍ବର ଛବି କମଳ ପରାଗେ ॥
କୃଷ୍ଣ ପ୍ରାୟେ ମଣି ପ୍ରାଣକୁ ସେ ଧରଇ ଶରୀରେ ।
ଆସ ଆସ ମୋର କହ୍ନାଇ ରୋଦଇ ଉଚ୍ଚସ୍ୱରେ ॥
ବାଳକାଳେ ମାଟି ଖାଇଲୁ ଡରାଇ ତଜି ଗ୍ରାନ୍ତେ ।
ଗୋପେ ଉଦଣ୍ଡ ହେବାର ବାନ୍ଧି ଯାମଳା ନିକଟେ ॥
କ୍ଷୀରପୁତା ମାରି ଦଧିଦୁଗ୍ଧଭଣ୍ଡ କଲୁ ନାଶ ।
ମୁହିଁ ନିଲକ୍ଷଣୀ ସେକାଳେ ଯା କରିଛୁ ଝିଙ୍ଗାସ ॥
ଏହି ଅଭିମାନେ ଗୋପବନ୍ଧୁ ଏବେକ ଝାସିଲୁ ।
ବୃଦ୍ଧ ପିତାମାତାଦି ଶୋକ ସମୁଦ୍ରେ ଭସାଇଲୁ ॥
ତୋର ବିନୁ ପଡ଼ିଅଛୁ ଶିରେ ଅଚଳ ପଥର ।
ପଦ୍ମମୁଖ ଦେଖାଇଣ ବାରେ ଉଦ୍ଧାରଣ କର ॥

ମୋର କହ୍ନାଇ କହ୍ନାଇ ବୋଲି ଉଚେ ବାହୁ କୋଡ଼ି ।
କେଣେ ଗଲୁ ପ୍ରାଣଧନ ବୋଲି ମୂର୍ଚ୍ଛାଯାଇ ପଡ଼ି ॥
ନନ୍ଦ କାନ୍ଦଇ ନନ୍ଦନ ଗୁଣେ ଲୋଟି ମହୀତଳେ ।
କାହିଁ ନୀଳମଣି ତନୁ ଗୋଟି ଦେଖିବଇଁ ଡୋଳେ ॥
ବାଳକାନ୍ତୁ ଗାଈରଖି ମୋତେ କରଇ ଅଚିନ୍ତା ।
ଏକାବେଳେ ମୋ ଉପରେ ଦେଲୁ ମହା ଘୋରଚିନ୍ତା ॥
ବନେ ଯାଉଁ ଯେବେ ଶୂନ୍ୟବାସୀ ହୁଏ ମୋ ଜୀବନ ।
ତୋତେ ଯେତେବେଳେ ଦେଖଇ ପିଣ୍ଡରେ ପଶେ ପ୍ରାଣ ॥
ଏତେ ଅରିଷ୍ଟି ମେଣ୍ଟିଣ କଷ୍ଟ ମେଣ୍ଟିଣ ନଗଲା ।
ବୃଦ୍ଧକାଳେ ପୁତ୍ର ନୋହି ହୋଇ ଦୁଃଖ ଦେଇଗଲା ॥
ଗାବ ଦୋହନ ସ୍ଥାନକୁ ମୋତେ ଯିବାକୁ ନଦେଉ ।
କେ ଗାଈ ଦୁହିଁବ ମୋର ବାପ ହାଇ ଆଉ ॥
ମୋର ଶପଥ କାଣିଣ ଯାଇ ଚରଣ ମଞ୍ଜାକୁ ।
ଜାଣି କୋଳକରି ଶୁଆନ୍ତେଣ ପଣିହିଁ ଘଞ୍ଜାକୁ ॥
ତୋ ପାରିବା ବନ୍ ସହପରୁ ନଦେଉ ଓହ୍ଲାଇ ।
ମୋର ଦୁଇଗୋଟି ଆଖି ତୁମ୍ଭେ କହ୍ନାଇ ବଳାଇ ॥
ତୋତେ ନଦେଖିଲେ କ୍ଷଣେ ରାମ ଜୀବନ ନରହେ ।
ଅନ୍ଧ ହୋଇଲାଉ ବାବୁ ମୋତେ କଢ଼ାଇବ କିଏ ॥
ପୂର୍ବେ ଗାର୍ଗ କହିଥିଲେ ପୁତ୍ର ଅପମୃତ୍ୟୁ ନାହିଁ ।
ଏବେ ମିଛ ହୋଇଲାତ ବୋଲି ପଡ଼ି ମୋହ ଯାଇ ॥
ଉପନନ୍ଦ ଆଦି ଜ୍ୟେଷ୍ଠ ପିତା ଖୁଡ଼ିତା ମଉଳା ।
କୃଷ୍ଣ ଚରିତ ବାହୁନ ଶୋକ ନଯାଏ ସମ୍ଭଳା ॥
ତୋର ରକ୍ଷଣି ନିମିତ୍ତ ବନେ ସଙ୍ଗ ପୁତ୍ର ପେଶୁ ।
ନିଜ ସୁତେ ଏତେ ସ୍ନେହ ନୂହେ ଯେମନ୍ତ ତୁ ହଶୁ ॥
ଆମ୍ଭ କୁଳର ଚନ୍ଦ୍ରମା ଅସ୍ତ ଗୋହରେ ବୁଡ଼ିଲୁ ।
ସୁଖ ତିମିର ଘୋଡ଼ାଇ ଦୁଃଖମେରୁ ଉହାଡ଼ିଲୁ ॥
ଚନ୍ଦ୍ର ଚକୋର ନଦେଖି ଦୁଃଖେ ଯାଉଅଛୁ ଫୁଟି ।
ଏକ ଉପନ୍ଦର ଆରକ ତ୍ରିଳି ଅବନୀରେ ଲୋଟି ॥
ରାମ କାରୁଣ୍ୟ କରନ୍ତି ଆରେ ମୋର ପ୍ରାଣ ଭାଇ ।
ତୋତେ ମୂର୍ଚ୍ଛିଣ କ୍ଷଣେ ମୁଁ ଯେ ନପାରଇ ସହି ॥
ମୋତେ ନକହିଣ ଆସି ଆଜି ଏତେ ଦଣ୍ଡ ଦେଲୁ ।
ସର୍ବଜନ ଜୀବନକୁ ଆଣି ଏଥି ହରାଇଲୁ ॥
ଚତୁର୍ବିଧ ସଖାଗଣ ଗୁଣ ଗାଇଣ ରୋଦନ ।
ତୋର ଉପକାର ଗୋଟି କୋଟିଯୁଗର ବନ୍ଦନ ॥

ମାୟାରୂପେ ବତ୍ସାସୁର ମାରି ଆଣିଥିଲୁ ଏଥି ।
ମନ ଜାଣି ବୃକ୍ଷେ କରୁଡ଼ ଖୁ**ଆଇଲୁ କପିତ୍ଥ** ॥
ବକା ଗିଳିଥିଲା ବେନିଫାଳ କରିଣ କରିଲୁ ।
ଅଘା ଅଜଗର ଉଦରେ ପଶିଣ ଉଦ୍ଧରିଲୁ ॥
ଏହି ବିଷବାରି ପାନକରି ମରିଥିଲୁ କାଲି ।
କ କ ପଡ଼ି ବିଷଝାଡ଼ ଦେଲୁ ଉଡ଼ାଇଣ ବାଲି ॥
ଆପେ ଗାବରଖି ଆମ୍ଭ ଦୁଃଖ ଦେଖିଣ ଶୁଆଉ ।
ବନେ ଲୋଡ଼ି ସ୍ୱାଦୁ ଫଳମୂଳ ଆମ୍ଭଙ୍କୁ ଖୁଆଉ ॥
ବନେ ବନେଣ ବିହରୁ କଂସ ରାଜାକୁ ନଡରୁ ।
କାଳୀହ୍ରଦ ଘେନଗଲା ଯେତେ ସୁଖ ଏହିଠାରୁ ॥
ଶୋକେ ଅସମ୍ଭାଳିଲ ପୁଣ ପୁଣ ପଡ଼ନ୍ତି ଅବନୀ ।
ଏକା ହୋଇ ପଶିଲୁ କମ୍ପାଇ ଆମ୍ଭଙ୍କୁ ନ ଘେନି ॥
ପଦ୍ମ ତୋଳିବାର କେତେ କଥା ଆପେ କମ୍ପା ଝାସି ।
ତୁମ୍ଭ ଆଜ୍ଞା ଦେଲେ କମଳ ତୋଳନ୍ତୁ ଜଳେ ପଶି ॥
କାଳୀ ଯେବେ ଗୋଳ କରନ୍ତା ଆମ୍ଭନ୍ତୁ ତାକୁ ଧରି ।
ବଳେ ଆମ୍ଭଙ୍କୁ ଗିଳନ୍ତେ ଅଘାପ୍ରାୟୁ ଯାନ୍ତା ମରି ॥
ଯେତେ ବ୍ରଜବାସୀ ନାନା ମତେ କରନ୍ତି କାରୁଣ୍ୟ ।
ଆହା କୃଷ୍ଣଚନ୍ଦ୍ର ଆମ୍ଭ ନେତ୍ର ସୁଖାଦ କାରଣ ॥
ବନ ବାହୁଡ଼ା ଗୋଧୂଳି ତନୁ ଶ୍ରମ ଜଳେ ମିଶି ।
ନଟବର ବେଶ ନଟ ଦେଖି ହେଉଥାଉଁ ତୋଷି ॥
ଯାଉଁ ପତନେ ଯମୁନା ତୋତେ ବନେ ଦେଖିବାକୁ
ଆଉକି ସୁଖ ଇଚ୍ଛଇ ପ୍ରାଣ ଚକ୍ଷୁ ଦେଖିବାକୁ ॥
କୃଷ୍ଣ ଅଭାବେ ବିକଳ ଚଳ ଅଚଳ ସକଳ ।
କାଳୀ ହ୍ରଦକୂଳେ ଉଚ୍ଛୁଳିଲା କାରୁଣ୍ୟ କୋଳାହଳ ॥
ଚନ୍ଦ୍ରାବଳୀ ସଖୀଗଣ ଘେନି ଗଉରୀ ତୀର୍ଥରେ ।
କୃଷ୍ଣ କାଳନ୍ଦୀରେ ଝାସଦେବା ଶୁଣିଲେ ପଥରେ ॥
ହା ହା **କୃଷ୍ଣ** ବୋଲି ଧରଣୀରେ **ପଡ଼ି** ମୋହଯାଇ ।
ସଖୀ ଶୋକଭରେ ତୋଳିଧରି ଅଙ୍କେ ଆଉଯାଇ ॥
ପାଳୀ କମଳା ମଙ୍ଗଳା ଆଦି ଯେତେ ଯୂଥେଶ୍ୱରୀ ।
କୃଷ୍ଣ ଗୁଣ ବିଳାପରେ ପାଷାଣ ଜର ଜରି ॥
ଦିନ ଦିନକର ଲୀଳାରଙ୍ଗ ଗୁଣ ଗୁଣି କାନ୍ଦେ ।
ଭୂମିଲୋଟି ହାରତୁଟି କେଶ ବସନ ନ ବାନ୍ଧେ ॥
ଚନ୍ଦ୍ରାବଳୀ ପୁଣ ଚେତି ଗୁଣ ସୁମରିଣ ଗାଏ ।
କାଳି ଦୂତୀ ଆସି ଯାହା କହି ସ୍ୱରୂପ ନିଷ୍ଠୟେ ॥

ସଖୀ ଅପମାନେ ଦୁଃଖମନେ ଦୂତୀଙ୍କ ପେଷିଲେ ।
ସ୍ବରୁ ସିନ୍ଦୂର ଆମ୍ଭଙ୍କ ଦେଇ ଜଣାଇ କହିଲ ॥
ଜାଣି ଆଦରେଣ ଯେବେ କାଲି ଦେଖିବା ବୋଇଲେ ।
ଏବେ ଜାଣିଲି ମୋ ଦୁଃଖ ହେତୁ ଏଥି ଖ୍ୟାସ ଦେଲେ ॥
ପ୍ରାଣ ଯାଉ ପଛେ ମୋ ବିରସ ଦେଖି ନ ପାରଇ ।
ଏଣୁ ପ୍ରିୟ ଯେହୁ ତାର ବିନୁ ଦେହ କି ଧରଇ ॥
ସେହି ହ୍ରଦେ ଝାସ ଦେବି ବୋଲି ଆସନ୍ତେ କୂଳକୁ ।
ପ୍ରାଣନାଥ କୋଳ ପ୍ରାପ୍ତ ମଣି କୋଡ଼ନ୍ତି ଜଳକୁ ॥
ଧାଇଁ ଝାସିବ ବୋଲି ଲୋଡ଼ନ୍ତେ ଧରନ୍ତି ସଜନୀ ।
ଜଳ ହୋଇଣ ପାଷାଣ ବହେ ତାଙ୍କ ଶୋକ ଶୁଣି ॥
ଏମନ୍ତେଣ ରାଧା ସଖୀ ସଙ୍ଗେ ବନେ ଫୁଲତୋଳେ ।
କୃଷ୍ଣ ଉଦ୍ଦେଶିଣ ବୁଲେ ତରୁଲତା ଡାଳେ ଡାଳେ ॥
ସଙ୍କେତ ସ୍ଥାନରେ ନ ଦେଖିଣ ଆକୁଳ ଜୀବନ ।
କାଲି ନଇଲି ଯା କୃଷ୍ଣ ତେଣୁ କଲେ ଅବା ମାନ ॥
ପୁଣି ବିଚାରେ ମୋଠାରେ ମାନ କେବେ ନୁହେଁ ।
ବ୍ୟାକୁଳ ଚିତ୍ତରେ ପୁଣ ପୁଣ ଚଉଦିଗ ଚାହେଁ ॥
ଅଦଭୁତ ଶୋକ ଉଠିଣ ଦକ୍ଷିଣ ନେତ୍ର ଫୁରେ ।
ଜାନୁ କମ୍ପିଣ ନୟନୁ ଅଶ୍ରୁଜଳ ପଡ଼େ ଉରେ ॥
ମନ ବିରସରେ ଛନ ଛନ ବିକଳ ପରାଣ ।
ଅତି ନୀରସ ବଦନ ପୁଚ୍ଛେ ସଖୀ ଜଣ ଜଣ ॥
ବନଶୋଭା ନ ହେଲାଇ ଦିଶଇ ଧୂମମୟ ।
ଚନ୍ଦ୍ର ଚନ୍ଦନ ପବନ ମୋତେ ଲାଗେ ବିଷପ୍ରାୟ ॥
ସର୍ବ ଅଶୁଭ ଦେଖଇ ଶୁଣେ କାରୁଣ୍ୟ ବଚନ ।
ତୁମ୍ଭ ମୁଖରେ ମଳିନ ଲୁହ ପୂରିତ ଲୋଚନ ॥
ଶୁଣି ସଖୀ ମୁହଁ ପୋଛି ଲୁହ ଅବନୀ ବରଷେ ।
ଏମନ୍ତେଣ ବୃନ୍ଦା ପାଶେ ମିଳି କହନ୍ତି ବିରସେ ॥
କାଲି ତୁମ୍ଭଠାରୁ ଗଲି କୃଷ୍ଣ ଦେଖିଲି ସଙ୍କେତେ ।
ଗୁଞ୍ଜରେଣୁ ଚନ୍ଦ୍ରାବଳୀ ସହିତେ କଥା ସେତେ ॥
ସବୁ କହିଲି ବୋଇଲେ ଆଜ ନ ଆସିବ କେମା ।
ଶୁଣି ବିରସେ ନୀରସ ହେଲା ବଦନ ଚନ୍ଦ୍ରମା ॥

କାଲି ଦେଖିବା ବୋଲିଣ ଗଲେ ପୂର୍ଣ୍ଣକାମ ହରି ।
ଆଜ କଦମ୍ବେ ଉଠିଣ କାଳୀହ୍ରଦେ ଡେଇଁପଡ଼ି ॥
ବିଷଜଳ ଉଚ୍ଛଳନ୍ତେ ବନ ଦହନ ହେଉଛି ।
ଗୋପୀ ଗୋପାଳ ଲୋକଙ୍କ ଜଳେ ଲିଭଣ ଯାଉଛି ॥
ଶୁଣି ବଜ୍ରଘାତ ଆନ୍ଦୋଳିତ ହୋଇଲା ପରାଣ ।
ତନୁ ଝମ ଝମ ଦେହୁ ଝରେ ରତ୍ନ ଆଭରଣ ।
କେଶ ବାସ ବନ୍ଧ ଫିଟିଣ ହଜିଲା ଦେହ ବୁଦ୍ଧି ।
ଲତା ଛେଦିଲା ପରାଏ ଢଳି ନାଶ କୁଳନିଧି ॥
ଶୋକ ସାଗରେ ଭାସିଲେ ସର୍ବ ଜନନୀ ନିକରେ ।
ସହିଁ ପାଷାଣ ଫାଟଇ ଏତ ଶ୍ରେଷ୍ଠ ରମଣୀରେ ॥
ବୃନ୍ଦା ଧରଣୀରୁ ରାଧାକୋଳ ଧରେ ଆଉଜାଇ ।
ନାହିଁ ଦମ ଦମ ଉରେ ଶ୍ୱାସନାସେ ନ ବହଇ ॥
ମନବୁଦ୍ଧି ଚଇତନ୍ୟ ଆଦି କୃଷ୍ଣପାଶେ ଗଲେ ।
ଶୁଦ୍ଧ ସୁବର୍ଣ୍ଣ ପ୍ରତିମା ଢଳି ରହେ ବୃନ୍ଦାକୋଳେ ॥
ଚଉପାଶେ ବେଢ଼ି ସଖୀ ଗୁରୁ ଦୁଃଖ ଶୋକଭରେ ।
କୃଷ୍ଣ ଗୁଣଗାଇ ରୋଦନ କରନ୍ତି ଏକ ଆରେ ॥
ବାଳ ଅବସ୍ଥା ଦେଖି କରନ୍ତି ସଚେଷ୍ଟା ବିସ୍ତର ।
କର ଚରଣ ମଞ୍ଜାଳି ନାନା ଶୀତ ଉପଚାର ॥
କେହୁ ଅଙ୍ଗୁଳି ଫୁଟାଇ କେହୁ ଉରେ କର ଦେଇ ।
କେହୁ କରେ ତୁଳା ପରୀକ୍ଷା ନିଶ୍ୱାସ ନ ବହଇ ॥
ସଖୀପ୍ରାଣ ନାହିଁ ବୋଲି କେହୁ ଲୋଟନ୍ତି ଧରଣୀ ।
କର୍ଣ୍ଣମୂଳେ ଉଚ୍ଚେ ଡାକଇ କେ ମୋ ପ୍ରାଣସଜନୀ ॥
କିଛି ଚେଷ୍ଟା ନ ପାଇଣ ମନେ ମନ୍ଦାଶଙ୍କା ପାଇ ।
କର୍ଣ୍ଣମୂଳେ କୃଷ୍ଣନାମ ଗୁଣ ଉଚ୍ଚେ ଡାକଦେଇ ॥
ତଣ୍ତ୍ରମୂଳେ ରୋମ ପୁଲକ ଶକୁନ୍ୟ ଶୁଭ ଏତେ ।
ଉପୁଡ଼ା ଲତା ପତ୍ରପ୍ରାୟେ ହସନ୍ତି ସଖୀ ସେତେ ॥
ଭୃଙ୍ଗବାଦ୍ୟ ବୀଣାଯନ୍ତ୍ର ସାଜ ଗୁଣଖଞ୍ଜି ମାଜେ ।
କୃଷ୍ଣ ବର୍ଣ୍ଣମାନ ଯଶଗୁଣ ଉଚ୍ଚାରଣ ବାଜେ ॥

ଗୀତ ରାଗ—ଭୈରବ । ଯତିମାନ ।

ସଖୀ ଗୋ । ଯାଇଦେଖ । କାଳିନ୍ଦୀ ହ୍ରଦରେ ହରି ପଦ୍ମତୋଳ । ରଙ୍ଗେ ଜଳକେଳି କରେ ।ସହସ୍ର ଦଳ କମଳେ । ପଦ୍ମମଳ ତୋର । ମୁଖ ସୁଗନ୍ଧ ଅନୁସରେ । ଘୋଷା ।

କି ସଖୀଗୋ ଯାଇଁ ଦେଖ । ପ୍ରାଣନାଥ ପଶିଁ ଅଛି । ସେହି ଚୋର ପଥ ରୁନ୍ଧି କାମଅନ୍ଧ । ବିଷଜଳେ । ତୋର ଅଧର ସୁଧାଇଚ୍ଛି । ୧ । ଏ ତୋର ସୁଧା ସୁଗନ୍ଧେ । ସେହିପଦ୍ମେ ହରି ନ ପାଇ । ଉଷାଇ ଜଳେ ଦିଏ । ମତ୍ତଗଜ ଜାଣି କୁଞ୍ଜେ କଞ୍ଜ ଗଞ୍ଜି । ତେଣୁ ଜଳତପେ ତୋର ଶୋଭା ଧ୍ୟାୟେ । ୨ । ସର୍ପକୁଳଦର୍ପହରି । କାଳୀଦଳି । ଉଠି ମଣ୍ଡଳ ପରେ ନାଚେ ରୁନ୍ଦେ । ଆନନ୍ଦରେ ନୃତ୍ୟକରେ ଆଗମରେ । ଅଙ୍ଗ ଗନ୍ଧ । ତୋ ସମୀର ପଶୁଁ ବନ୍ଦେ । ୩ । ଅମୃତ ନୟନେ ତୋର । ବିଷହର । ହରି ତୋମୁଖ ଦେଖିଲେ କୁଳଆସି । ଶ୍ରୀକୃଷ୍ଣ ଯଶଃ ପିୟୂଷେ । ବୀଣାଘୋଷେ ରଞ୍ଜି । ଶ୍ରବଣପ୍ରବେଶେ ଚେତାବସି । ୪ ।

। ବୋଲି ।

ବୀଣା ଗୁଣନାଦେ ଗୁଣାଇଣ ଶ୍ରବଣେ ଶୁଣାଏ ।
ହରି ଚରିତ ଅମୃତ ନବରସାୟନମୟେ ॥
ଗଣ୍ଡ ଉଲ୍ଲସିଣ ଉର କମ୍ପି ସର୍ବାଙ୍ଗ ପୁଲକ ।
ଧୀର ବହଇ ନିଶ୍ୱାସ ଫିଟେ ନୟନ ପଲକ ॥
କଞ୍ଜ ଲୋଚନୁ ଅଞ୍ଜନ ନୀର ନିରନ୍ତର ବହେ ।
ଅନ୍ତେ କୃଷ୍ଣ ରସ ଉଚ୍ଛୁଳନ୍ତେ ସମ୍ଭାଳ ସେ ନୁହେ ॥
ଗଦ ଗଦରେ ରୋଦଇ ଆହା ପ୍ରାଣନାଥ ମୋର ।
ନୀଳମଣି ନବ ମୃଦୁତନୁ କଲ ନାରଖାର ॥
ମୁହିଁ ଅତି ମନ୍ଦମତି ଯାହାପେ କାଳି କହିଲି ।
ସର୍ବ କରଣୀ ଯେ ଚିନ୍ତାମଣି ଜାଣି ହରାଇଲି ॥
ଯେଉଁ ବିଷଜଳ ଜାଳିଲେ ତରୁବର ଜଳିଯାଇ ।
ସୁକୁମାର ତନୁ ଗୋଟି ଥିବ କେମନ୍ତ ଯେ ହୋଇ ॥
ମୋତେ ମିଳିଥିବେ ଭଣ୍ଡି ଲ ସଖୀ ଖାଇ ନ ପାରି ।
ରଖି କରେ ଧରି ଆଗୁସାରି ସହଚରୀ ॥
ସଖୀଚୋର ବିମ୍ବାଧର ସୁଧାରସ ସେହୁ ଖାଇ ।
କାଳୀ ବିଷଜଳେ ପଶିଲେଣ ତାର କସ ଯାଇ ॥
କୃଷ୍ଣ ଯଶୋଗୁଣ କହିଣ କାଳିନ୍ଦୀ କୂଳେ ମିଳେ ।
ତହିଁ ଦେଖିଲେ ସର୍ବେ ରୋଦନ କରନ୍ତି ବିକଳେ ॥
ଶୋକଜଳ ପଡ଼ି କୂଳମାଡ଼ି ନଦୀ ଯାଏ ବଢ଼ି ।
ପୌର୍ଣ୍ଣମାସୀଙ୍କି ଦେଖିଣ ନନ୍ଦ ଆଦି ପାଦେ ପଡ଼ି ॥
ଦେବୀ ବୋଲନ୍ତି ଦଇବ ବଡ଼ ବଳୀୟାର ।
କଥା ବିଚାରିବା ସର୍ବେ ତୁମ୍ଭେ ଶୋକ ଶାନ୍ତକର ॥
ଆମ୍ଭେ ଜାଣୁଁ କୃଷ୍ଣଙ୍କୁ କାଳୀ ବିଷଘାତ ନାହିଁ ।
ମହା ଗାରେଡ଼ୀ ବିଦ୍ୟାକୁ ଶିଖିଅଛି ସେ କହ୍ନାଇ ॥
କୃଷ୍ଣ ରୋହିଣୀ ଦୁହିଙ୍କୁ ରବି ଦୋଷ ହୋଇଛନ୍ତି ।
ଆଜ ମୂଳାଧନ ତାରଚନ୍ଦ୍ର ଅବଳ ଅଛନ୍ତି ॥
ଗ୍ରହପୂଜ ମୁଖେ ଶାନ୍ତ କରି ବିପ୍ରେ ଦାନ ଦିଅ ।
ଇଷ୍ଟ ମନ୍ତ୍ର ଜପ କରି ସର୍ବେ ଶୁଚିମନ୍ତ ହୁଅ ॥
ସୂର୍ଯ୍ୟତନୟାରେ ସ୍ନାନେ ହର ସର୍ବ ଅପରାଧ ।
ବିପ୍ର ବରଣ କରିଣ ବିଶ୍ୱକେଶନଙ୍କୁ ଆରାଧ ॥
ଜାଙ୍ଗଳିକଗଣ ଅଣାଇଣ ଧନବସ୍ତ୍ରେ ତୋଷେ ।
ଗଦ ପଦବଳେ ହରନ୍ତୁଏ ବିଷଜଳ ଦୋଷ ॥
ନନ୍ଦ ଶୁଣି ବେଗେ ଗ୍ରହପୂଜ ଆଦରେଣ ରଚି ।
କୃଷ୍ଣ ଶିଷ୍ଟ ଶାନ୍ତ ପାଇ ଗ୍ରହପୂଜାକୁ କରାଇ ॥
ଜଳେ ସ୍ନାନକରି କୂଳେ ବିଶ୍ୱକେଶନଙ୍କୁ ଆରାଧି ।
ବିପ୍ର ବରଣ କରିଣ ଦେଲେ ଦାନ ନାନା ବିଧି ॥
ଦୂତ ପେଷି ଦେଶ ଦେଶୁଁ ବିଷବୈଦ୍ୟ ଅଣାଇଲେ ।
ଶାଢ଼ୀ ସୁନାବଳା ଦେଇ ବହୁ ଦଇନ୍ୟ ହୋଇଲେ ॥
ନନ୍ଦକହେ ବୃଦ୍ଧକାଳେ ମୋହର ଏକଇ ଦଳ ।
ବିଷଜଳେ ଡେଇଁପଡ଼ି ମୋର ବୁଡ଼ାଇଲା ଭେଳା ॥
ତୁମ୍ଭ ଉପାୟେ ଏଥିରୁ ଯେବେ ପୁତ୍ର ଉବୁରିବ ।
ତେବେ ଗୋପେଶିଖ ସମ୍ପଦ ତୁମ୍ଭେ ବହୁ ଭୁଞ୍ଜିବ ॥
ଶୁଣି ନନ୍ଦର ବିନୟ ସେ ସକଳ ଜାଙ୍ଗଳିକେ ।
ମହା ଗାରେଡ଼ୀ ପଢ଼ି ପ୍ରତିଜ୍ଞା କଲେ ଏକେ ଏକେ ॥
ବନ ଔଷଧି ବିଷ ମହୌଷଧି ଗଦ ଭିଆଇଲେ ।
ମନ୍ତ୍ର ପଢ଼ି ଅଭିମନ୍ତ୍ରିଣ 'ହରଭର' ବୁହାଇଲେ ॥
କାଳୀ ହ୍ରଦ ଜଳେ ମେଲନ୍ତି ସେ ପଢ଼ନ୍ତି ଗାରେଡ଼ୀ
ଜଳ ଛୁଇଁ ନପାରନ୍ତି କୂଳେ ରହିଛନ୍ତି ବେଢ଼ି ॥
ବିଷ ଲହରୀ ଜଳେ ନିକଟେ ନ ପାରନ୍ତି ରହି ।
ଜଳ ଜ୍ୟୋତି ଝଲକନ୍ତେ ନିଶ୍ଚଳରେ ନ ହେ ରହି ॥
ଏମନ୍ତେଣ କୃଷ୍ଣ ପିତା ମାତା ଆଦି ଶୋକ ଶୁଣି ।
ଧୀରୋଦ୍ଧାତ ସୁଲକ୍ଷଣେ ରୋଷ ବଢ଼େ ପୁଣି ପୁଣି ॥

ପଦ୍ମ ବନ ବିଧ୍ୱଂସଇ ମତ୍ତ ମାତଙ୍ଗ ପରାଏ ।
ତୋଳି ଛିଣ୍ଡାଇ ଅନେକ ପଦ୍ମ ସ୍ରୋତରେ ଭସାଏ ॥
କଂସ ରଜା ଜଳ କ୍ରୀଡ଼ା ଜଗତରେ ଭାସି ଲାଗେ ।
ସେହିଁ ମହାଭୟ ପାଏ ଖାର ଯେତେ ଦମ୍ଭ ଭଙ୍ଗେ ॥
କୃଷ୍ଣ ଅଇଲ ପରାଏ ମଣି ପଳାଏ ଭୁବନେ ।
ଦେବେ ଦେଖି କରତାଳୀ ମାରି ହସନ୍ତି ଗଗନେ ॥
କୃଷ୍ଣ କମଳ ତୋଳନ୍ତେ ଜଳ ହାଲେଦୋଳ ହୁଅଇ ।
ନାଗବଳ ଶୁଣି କୋପ ବହି ବେଢିଲେ ସେ ଯାଇ ॥
ହରି ଶରୀରେ ଦଂଶନ୍ତେ ଫଣା ଫୁଟି ଦନ୍ତ ଝଡ଼େ ।
ତ୍ରାସ ପାଇ ଶ୍ରେଣି ବିହ୍ୱ ଅନ୍ଧ ମୋହ ଯାଇଁ ପଡ଼େ ॥
କୃଷ୍ଣ ମୃଣାଳ ଆୟୁଧ ଧରି ବୁଲାଇଣ ପିଟେ ।
କୁଡ଼ କୁଡ଼ ନାଗ ମଡ଼ାମଡ଼ କାଳନ୍ଦୀରେ ଲୋଟେ ॥
ସେହି ଦୁଷ୍ଟ ନାଗ ନ ଭାଜନ୍ତି ଧାଇଁଣ ପଡ଼ନ୍ତି ।
ଶତେ ପୁରି କରି ନବନ୍ଧଣ କୃଷ୍ଣଙ୍କୁ ବେଢ଼ନ୍ତି ॥
ପଡ଼ି ଗାରେଡ଼ୀରେ ଜଳ ମନ୍ତ୍ରି ମାରନ୍ତି ତାଙ୍କରେ ।
ଭୟେ ପଳାଇ ରହନ୍ତି ପଶି ନପାରି ପାଶରେ ॥
ମଣିଚୂଡ଼ ଶଙ୍ଖଚୂଡ଼ କାଳୀ ଆଟେ ସେନାପତି ॥
ଆସି କୃଷ୍ଣଙ୍କୁ ବେଢ଼ିଲେ ପୁଣି ନାଗବଳ ପନ୍ତି ॥
ଫୁଫ କାର ଘୋର ଗରଜନେ ଫେଣାକୁ ଉଭାରି ।
ଏକାବେଳେ ଝାସି ମିଶି କୃଷ୍ଣ ତନୁ ବନ୍ଧ କରି ॥
କେହୁ ନାଗ ଲାଞ୍ଜ ବେଢ଼ାଇଣ ଯୁଡ଼ଆଇ ହୁଏ ।
କେହୁ ପାଦ ପାଣି ଉର ପୃଷ୍ଠ କଣ୍ଠେ ଲମ୍ବି ରହେ ॥
ବାହୁ ଦଣ୍ଡେ ନାଗ ଉଦ୍ଦଣ୍ଡ ଦଳଙ୍କୁ ଦଣ୍ଡଦେଇ ।
ପାଦେ ଦଳି ମାରି କୁଣ୍ଡଳୀଙ୍କି ହଅନ୍ତି ଭସାଇ ॥
ଶଙ୍ଖଚୂଡ଼ ମଣିଚୂଡ଼ ହସ୍ତେ ଧରି ଫିଙ୍ଗିଦେଲେ ।
କେତେ ଦୂରେ ବନେ ପଡ଼ି ଜ୍ଞାନ ହରାଇଲେ ॥
ଭେଲା ଭେଲା ହୋଇ ନାଗବଳ ଏଣେ ତେଣେ ଭାସେ ।
ଭୟେ ପନ୍ନଗ ପଳାନ୍ତି ହରି ଠହ ଠହ ହସେ ॥
କାଳି ନାଗରାଜା ଆଗେ ଯାଇ କହନ୍ତି ଆରତେ ।
ଏକ ଜଣ ପଦ୍ମ ତୋଳି ତୋ ନାଗବଳ ନିପାତେ ॥
ଶୁଣି କାଳୀୟ ପନ୍ନଗରାଜ ଗର୍ଜିଣ ଉଠିଲା ।
ଫଣ ସହସ୍ରେ ଉଭାରି ହ୍ରଦ ଫୁଲିଣ ଘୋଟିଲା ॥
ଫୁତ୍କାର ନିଶ୍ୱାସରେ ଜଳ ଉର୍ଦ୍ଧ୍ୱ କୁଣ୍ଡ ଉଠଇ ।
ସିନ୍ଧୁ ମନ୍ଥନେ ଯେସନେ କାଳ ଗରଳ ଘୋଟଇ ॥

କାଳୀ ପତ୍ନୀ କହେ ଶୁଣ ନାଥ ଏ କୋପକୁ ସଂହର ।
ଭବ ଉଶ୍ୱାସ ନିମନ୍ତେ ବିଷ୍ଣୁ ମର୍ତ୍ତ୍ୟେ ଅବତାର ॥
ନନ୍ଦ ମନ୍ଦିରେ ଗୁପତେ ବଢ଼େ କଂସ ବିନାଶନେ ।
ଅଘାସୁର ଅଜଗର ଆହ୍ୱ ନାଶି ଘୋର ବନେ ॥
ଖଗ ମୃଗ ତରୁ ତୃଣ ଯେଣୁ ବିଷରେ ତାପିତ ।
ଏଥି ନ ରଖିବେ ଆମ୍ଭଙ୍କୁ କୃଷ୍ଣଙ୍କ କୋପ ଚିତ୍ତ ॥
କାଲି ଦେଖିବା ବୋଲିଣ ଥିଲେ ଆଜ ଦେଲେ ଧାଡ଼ି ।
ତାଙ୍କୁ ଭଜନ କରିଣ ସ୍ଥାନ ମାଗ ଯିବା ଛାଡ଼ି ॥
ପାଦେ ପୂଜ କରି ଖଣ୍ଡିବା ସେ ଖଗପତି ଭୀତି ।
ଯୁଦ୍ଧେ ଜିଣି ନେ ହୁବ ସେ ଅଜିତ ନନ୍ଦ ସନ୍ତତି ॥
କ୍ରୋଧେ ବଧିର ନଶୁଣେ କାଳୀ ହିତ ଉପଦେଶ ।
କାହିଁ ତୁଷାର ଚନ୍ଦ୍ରେ ଲଭେ ପ୍ରଳୟ ହୁତାସ ॥
ପ୍ରିୟା ବଚନ ନ ଶୁଣି ବେଗେ କୋପ ମୁଖେ ଧାଏଁ
ଜଳ ଦୁଇଭାଗ ହୁଏ କାଳୀ ଆସିବାର ଘାଏ ॥
ବନ୍ଧୁ ବର୍ଗ ସୈନ୍ୟ ସାହା ଘେନ ଝାସିଣ ପଡ଼ଇ ।
ଆରେ ଆରେ କେହୁ ଆସି ଏଥି ମରଣ ଲୋଡ଼ଇ ॥
ବିଷ ଜଳେ ଜଳି ନ ଯାଇଅଛୁ ଏ ଭଳି କେହୁ ।
ଏତେ ବଳିୟାର ଯେବେ ମୋର ଫଣାଘାତ ସହୁ ॥
ମୁହିଁ ବାସୁକିର ଭାଇ ଗରୁଡ଼ ସଙ୍ଗେ ଯୁଝି ।
ସ୍ଥାନ ନ ରହନ୍ତି ଦେବାସୁର ନର ମୋତେ ପୂଜି ॥
କଂସ ମହାବଳୀ ମୋର ଭୟେ ଏଥେ ନ ଆସଇ ।
ଏଡ଼େ ବଳିୟ ର କେହୁ ମୋର ଜଳରେ ପଶଇ ।
ଦେବେ ଦୁର୍ଲ୍ଲଭ କମଳ ମୋର କରେ ନାରଖାର ।
ଆଜ ନିଶ୍ଚୟେ କାଳ ପୂରିଲା ଯିବ ଯମପୁର ॥
କହୁଁ କହୁଁଣ ପ୍ରବେଶ ହେଲ କୃଷ୍ଣଙ୍କ ଛାମୁରେ ।
ବେନି ସହସ୍ର ରସନା ଲୋଳ ବିଷ ଉଦଗାରେ ॥
କୃଷ୍ଣ ବୋଲନ୍ତି ହେ ନାଗରାଜ ଆମ୍ଭେ ନନ୍ଦସୁତ ।
ପଦ୍ମ ତୋଳି ନେବୁଁ କଂସ ଆଜ୍ଞା ଦେଇଛି ଆମ୍ଭନ୍ତ ॥
ତୁମ୍ଭ ନାଗଲୋକେ ଗୋଳ କଲେ ନଜାଣି ଆମ୍ଭଙ୍କୁ ।
ପ୍ରୀତ ହୋଇ ପଦ୍ମ ନେବୁ ଭେଜ ଦେବୁଁ ସେ ତୁମ୍ଭଙ୍କୁ ॥
କାଳୀ କୋପେ ଗର୍ଜି ବୋଲେ କାଳ ଏତେ ସରିହେଲା ।
ନନ୍ଦ ମହାଖଡ଼ ପୁଅ ଆସି ପଦ୍ମ ଜୁରି କଲା ॥
ପ୍ରୀତ ହୋଇ ଭୋଜ ଭୁଞ୍ଜିବା ଏ ଶୁଣିବାକୁ ବ୍ୟଥା ।
ମରଣରୁ ଗରୁ ଶୁଣି ବାଳକେ ପାଳଙ୍କ କଥା ॥

କହନ୍ତେଣ କୋପେ ଗର୍ଜ୍ଜଇ ପ୍ରଚଣ୍ଡ ଫଣା ଟେକି ।
କୃଷ୍ଣ ଚରଣେ ଦଂଶନ୍ତେ ବିଷ ଊର୍ଦ୍ଧ୍ୱେ ଉଠେ ଜଳ ॥
କବା ମହା ନୀଳ ପର୍ବତକୁ କାଳ ଅଷ୍ଟେ ହାଣି ।
ଦନ୍ତ ପନ୍ତି ଝଡ଼ ଫଣା ବଥାଇଣ ବନ୍ଧ ଶ୍ରେଣି ॥
ପୁଣ ପଛ ପୁଞ୍ଜ ଫଣା ସଞ୍ଚ ପଡ଼ଇ ନଉଡ଼ ।
କୃଷ୍ଣ ଅଙ୍ଗ ଢଳ ପଡ଼ନ୍ତେ ଆଗକୁ ବଳପଡ଼ ॥
ପୁଚ୍ଛଦେଶେ ପାଦ ପ୍ରହାରନ୍ତେ ଲେଉଟିଣ ଧାଏଁ ।
ଶୂନ୍ୟ ଛାଡ଼ି ଦେବେ ପଳାଇଲେ ଗରଜିବା ଘାଏ ॥
ଏକାବେଳେକେ ସହସ୍ର ଫଣା ମାରେ କୃଷ୍ଣ ଅଙ୍ଗେ ।
ସ୍ୱପୁଚ୍ଛେକ ମାରି ହରି କାଳୀ ଫଣା ଦର୍ପ ଭାଙ୍ଗେ ॥
ମୁଖୁଁ ରୁଧିର ଗଳଇ କାଳୀ କୋପେଣ ଗର୍ଜ୍ଜଇ ।
କୃଷ୍ଣ କୋଟି ସୂର୍ଯ୍ୟ ତେଜ ଜାଣି ନୟନ ବୁଜଇ ॥
ନାଗରଜା ଅପଘାତେ ବନ୍ଧୁବର୍ଗ ଯେତେ ବେଢ଼ି ।
ହରି ଏକ ପ୍ରହାରନ୍ତେ କୁଡ଼ କୁଡ଼ ମଡ଼ା ପଡ଼ି ॥
ବିଷ ରୁଧିରେ କାଳନ୍ଦ ଜଳ ପୂରି ଉଚ୍ଛୁଳଇ ।
ଆଚମ୍ବିତ ଦେଖି କୂଳେ ଲୋକେ ଅଛନ୍ତି ଅନାଇ ॥
କାଳୀ କୃଷ୍ଣ ରଣ ଗଗନରେ ଦେଖନ୍ତି ଦେବତା ।
ଖଗନାଥ ଆଦି ସୂର୍ଯ୍ୟ ଚନ୍ଦ୍ର ବାସବ ବିଧାତା ॥
ଫୁତ୍କାରେ ସର୍ପ ଗର୍ଜ୍ଜଇ ଆଷାଢ଼ ମେଘ ପ୍ରାୟେ ।
କୋପେ ପୁଚ୍ଛ ବେଢ଼ାଇଣ କୃଷ୍ଣ ଅଙ୍ଗ ଗୁଡ଼ିଆଏ ॥
ପାଦୁଁ କଣ୍ଠ ଯାଏଁ ଛନ୍ଦି ଫଣା ବଦନେ ଉଭାରି ।
କର ଚରଣ ବନ୍ଧନେ ହରି ନପାରନ୍ତି ଚଳି ॥
ପ୍ରଭୁ ଅନନ୍ତ ଶଯ୍ୟାରେ କି ଶୟନ ଜଳେ କଲେ ।
ଶୂନ୍ୟେ ଦେବେ ଦେଖି ହରଷ ବିରସ ମନେ ହେଲେ ॥
ଜଳଚର ଜୀବ ଦେଖି ଦୁଃଖୀ ଅଶ୍ରୁ ମୁଖେ ଝୁହେଁ ।
ମହାଜଳେ କୂଳ ଦୃଶ୍ୟ ହୁଏ କେତେବେଳେ ନୁହେଁ ॥

ଏମନ୍ତେଣ ସର୍ବ ବିକଳ ଜାଣିଣ ଦେବ ହରି ।
ତନୁ ପୁଷ୍ଟକିଂ ବଢ଼ନ୍ତେ କାଳୀ ବେଢ଼ାଇ ନପାରି ॥
ଗାଢ଼େ ଭିଡ଼ନ୍ତେଣ ଗଣ୍ଠି ଛନ୍ଦ ଛୁଡ଼ ଚଡ଼ଚଡ଼ ।
ଫେଡ଼ି ନ ପାରଇ କୃଷ୍ଣ ଅଙ୍ଗ ବେଙ୍କୁଁ ବେଙ୍କୁଁ ବଢ଼େ ॥
ଅତି କଷ୍ଟେ କଷ୍ଟେ ଶ୍ୟାମ ଅଙ୍ଗ ବନ୍ଧନ ଫିଟଇ ।
ଖଣ୍ଡି ଖଣ୍ଡି ହାଡ଼ ଭାଜ ବଳ ବୀର୍ଯ୍ୟହିଁ ତୁଟଇ ॥
କାଳୀ ସମ୍ଭାଳି ହୋଇଣ ଫଣା ନପାରେ ଉଭାରି ।
କାଳ ପୁରୁଷ ପରାୟେ ମଣି ମହା ଭୟଙ୍କର ॥
କୋପେ ବୋଲେ ହରି କାଳୀ ତୁ ଏଥରୁ ବେଗେ ଯାଯା ।
ନ ଗଲେଣ ନଷ୍ଟପୁଁ ଆଜ ଭେଟିବୁ ଯମ ରାଜା ॥
ଶୁଣି କାଳୀ କୋପେ ଶ୍ରୀଚରଣେ ପୁଣିହିଁ ଦଂଶନ୍ତେ ।
କୃଷ୍ଣ ଫଣା ଉପରେ ତୁରିତେ ଉଠିଲେ ଇଶିତେ ॥
ଜିହ୍ୱା ପାବଛରେ ପାଦ ଦେଇ ମଣ୍ଡଳରେ ଉଭା ।
ମତ୍ତଗଜ ପରେ ବିହମି ମାହୁନ୍ତ ଯେହ୍ନେ ଶୋଭା ।
କୃଷ୍ଣ ନୃତ୍ୟ କରନ୍ତେଣ କାଳୀ ମଉଳ ଲୋଟଇ ।
ଏକ ଫଣା ନୁଆଁଇଲେ ଆର ଫଣାଗ୍ରେ ଉଠଇ ॥
କାଳୀ ସ୍ୱଭାବେ ସହସ୍ର ଫଣା ନପାରେ ବଞ୍ଚାଇ ।
ଊର୍ଦ୍ଧ୍ୱେ ବୁଲନ୍ତେଣ ପୁଚ୍ଛ ହରି ଧରିଣ ନଚ୍ଛଇ ॥
ମସ୍ତକରେ ନୃତ୍ୟକରି ହସ୍ତକରେ ପୁଚ୍ଛଧରେ ।
ନାହିଁ କାଳୀୟୁ ଆୟତ୍ତ ଚଳେ କୃଷ୍ଣ ଖେଳବାରେ ॥
ଆଳପନ୍ତେ ପଞ୍ଚସ୍ୱରେ ରାଗ . ଶଙ୍କରାଭରଣ ।
ଶୂନ୍ୟେ ରହି ବୃଷଭ ଧ୍ୱଜ ଦ୍ରବୀଭୂତ ଶୁଣିଣ ॥
କର୍ଣ୍ଣ କୁଣ୍ଡଳ ଶିର ଶଶୀରୁ ପୀୟୂଷ ଖସନ୍ତି ।
ବିଷଦୋଷ ବିନାଶନେ ହରି ଶିରେ ବରଷନ୍ତି ॥
କୃଷ୍ଣ ପ୍ରଚଣ୍ଡ ତାଣ୍ଡବ କରେ କାଳୀ ମୁଣ୍ଡମାଳେ ।
ହରି ବନ୍ଦ ଗାଏ ଭଇରବ ସନ୍ଧିମାନ ତାଳେ ॥

( ଗୀତ ) ରାଗ—ଭୈରବ

ଜୟ କାଶୀବିଶ୍ୱବାସୀ ଶିରେଶଶୀ । ଆଜ୍ଞାଦିଅ ଏ ଅମୃତ ବୃଷ୍ଟି ହେଉ । କାଳୀ ହେତୁ ଯେତେ ଜୀବନ୍ତ ମୃତ୍ୟୁ । ପ୍ରାଣପାନ୍ତୁ । ଏ ଗରଳ ଦୋଷଯାଉ । ଘୋଷା ।

ହେ ମହାଦେବ ତୁମ୍ଭେ ଦେବଙ୍କ ଉପରେ ଦେବ ଦେବ ।
ସମୁଦ୍ର ମନ୍ଥନୁ ଜାତ କାଳକୂଟବିଷ କଣ୍ଠେ ବନ୍ଧିଣ ରଖିଛ ଜୀବସର୍ବ । ୧ ।

ତପନତନୟା ପୟଃ । ଲୋକାଶ୍ରୟ । ଏବେ ଅପେୟ ହୋଇଣ ଏଥେଁ ରହେ ।
ନଜାଣି କରନ୍ତେ ପାନ । ହରେ ପ୍ରାଣ । ନିରନ୍ତର କାଳୀବିଷ ପୂରି ବହେ । ୨ ।

ସାଗରେ କାଳୀୟ ରହୁ ଏଥି ଯାଇ । ସୁଧାସମ ହେଉ ଜଳ ଆଜ୍ଞା ଦିଅ ।
ଗୋ ବିପ୍ର ରକ୍ଷଣେ ଜାତ ଦୁଷ୍ଟ ଅନ୍ତ । ଏହି ଜଳ ହେଉ ସର୍ବଜନ ପେୟ । ୩ ।
ଏହି ପଦ ଦେବ ଯୋଗ୍ୟ । ନୃତ୍ୟେ ସେଗ୍ୟ । କାଳୀ ଗଲେ ଏଥି ସର୍ବ ସୁଖ ହୁଏ ।
ଶୁଣି ଶିବ ଅତି ତୋଷେ । ନୃତ୍ୟବଶେ । ସୁଧା ବରଷେ ହରଷେ ଦେବତାଏ । ୪ ।

( ବୋଲ )

ସହୁଁ ଅମୃତ ବରଷା କଲ କାଳନ୍ଦୀ ହ୍ରଦରେ ।
ବିଷ ଦୋଷ ନାଶ ହୁଅନ୍ତେ ସକଳେ ଆନନ୍ଦରେ ॥
କାଳୀ ରହିବା ବନରୁ ପକ୍ଷୀ ଯେତେ ଥିଲେ ପଡ଼ି ।
ସେହି ସ୍ୱରୂପ ସଜ୍ଞାତେ ଦେହ ପାଇ ଗଲେ ଉଡ଼ି ॥
ଚକ୍ରବାକୀର ସନ୍ନିଧି ଯାଇ ଚକ୍ରବାକ ମିଳେ ।
କାନ୍ତ ଲକ୍ଷଣ କୃଷ୍ଣଙ୍କୁ ଚାହିଁ ନୟନ ନିଶ୍ଚଳେ ॥
ଯେତେ ନାଗବଳ ବର୍ତ୍ତମାନ ମୃତ୍ୟୁ ପାଇଥିଲେ ।
ଅମୃତର ଯୋଗେ ସେହି ସର୍ବେ ଜୀବନ ପାଇଲେ ॥
କାଳୀ ମଣ୍ଡଳରେ କୃଷ୍ଣଙ୍କୁ ଦେଖିଣ କୋପଚିତ୍ତେ ।
ପୁଣ ଯୁଦ୍ଧ କରିବାକୁ ସର୍ବେ ଧାଆନ୍ତି ତୁରିତେ ॥
ଦେଖି କାଳୀ ପତ୍ନୀ ଆଶ୍ୱାସିଣ ନିବର୍ତ୍ତାଇ କହେ ।
ଯହିଁ ରାଜା ଗଞ୍ଜି ହୁଏ ତହିଁ ଭୃତ୍ୟରେ କି ହୁଏ ॥
ଦନ୍ତେ ତିରଣ ଧରିଣ ପଶ ଚରଣେ ଶରଣ ।
ସ୍ୱୟଂ ପରଂବ୍ରହ୍ମ ସ୍ୱରୂପ ଏ ଜଗତ-କାରଣ ॥
ଯେଉଁ ଗରୁଡ଼ ଭୟେ ପଳାଇ ଏଠାଇଁ ରହି ।
ସେହି ଗରୁଡ଼ ପ୍ରତାପୀ ଏହୁ ପାଦ ପଦ୍ମ ବହି ॥
ଯାର ଶିରେ ପାଦ ଦିଏ ଇନ୍ଦ୍ର ପଦ ଭୁଞ୍ଜ ତା'ରେ ।
ପୂର୍ବେ ବଳୀ ଶିରେ ଦେଇ ରଖେ ଇନ୍ଦ୍ର ପଦବୀରେ ॥
ଶତ୍ରୁ ମିତ୍ର ନାହିଁ ଏହାର ସବରେ ବଂଶ ହୋଇ ।
ମୃତ୍ୟୁ ପାଇଥିଲ ଜିଆଇଲେ ସୁଧା ବରଷାଇ ॥
ଏତେ କହି କାଳୀପତ୍ନୀ ନାଗଗଣ ସଙ୍ଗେ ଘେନ ।
ଅର୍ଘ୍ୟ ଥାଳୀ ଘେନ ବାହାର ହୋଇଲେ ସେ କାମିନୀ ॥
ଦିବ୍ୟ ରତ୍ନ ଜାମ୍ବୁନଦେ କୃଷ୍ଣ ଚରଣ ପୂଜିଲେ ।
ଫୁଲଫଳ ଅର୍ଘ୍ୟ ଘେନିଣ ସେ ସ୍ତବରେ ଭଜିଲେ ॥
ପୁଣି ପୁଣି ପାଦେ ପଡ଼ନ୍ତି ସେ ଶରଣ ପୂଜାରେ ।
ପତିଦାନ ଦେବା ବୋଲେ କେଶବାଧ ଅସମ୍ଭାଳେ ॥
ଖଳ ଲୋକେ ଦଣ୍ଡ ଦେବାକୁ ଏ ତୋର ଅବତାର ।
ଦୋଷ ଅନୁକ୍ରମ ଉଚିତ ଏ ଦଣ୍ଡକୁ ଏହାର ॥

ବଡ଼ ଆଚମ୍ବିତ ଦେଖିଲୁଁ କାଳନ୍ଦୀ ଏ ହ୍ରଦରେ ।
ବ୍ରହ୍ମାଦି ଦେବେ ଦୁର୍ଲ୍ଲଭ ପଦ କାଳୀୟ ଶିରରେ ॥
ତପ ଆଚରଣ କମଳା ବାଞ୍ଛେ ଯେବଣ ଚରଣ ।
କେଉଁ ପୁଣ୍ୟଫଳେ ଅଲଭ୍ୟରେ କଲ ଏ ଧାରଣ ॥
ସର୍ବ ହୃଦୟ ନିବାସ ଯାକୁ ଦେଉ ଏହୁ ବୁଦ୍ଧି ।
କେହି ମିତ୍ରଭାବେ କେହି ଶତ୍ରୁଭାବେ ଅପରାଧୀ ॥
ବେଶ୍ୟାରେଣ ସର୍ପ ଜନମରେ ଦୁଷ୍ଟ ପରକୃତି ।
ଦୋଷ ଅନୁରୂପେ ପାଇଲା ମରଣ ସମ ଶାସ୍ତି ॥
ପ୍ରଭୁପଣର ଲକ୍ଷଣ କ୍ଷମା କରିବା ଉଚିତ ।
କୃତ ଅଞ୍ଜଳୀ ହୋଇଣ ସ୍ତୁତି କରଇ ବହୁତ ॥
ପାଦପଦ୍ମ ପୂଜାକରେ ପୁଣ ଗନ୍ଧ କୁସୁମରେ ।
ନାଗ ପତ୍ନୀ ଭାବେ ଶ୍ରୀକୃଷ୍ଣ ଉଶ୍ୱାସ କାଳୀଶିରେ ॥
ହରି ନୃତ୍ୟଭରେ କାଳୀୟ ରୁଧିର ଉଦ୍‌ଗାରି ।
ଶିର ନୁଆଁଇଣ ମୂର୍ଚ୍ଛାଗତେ ନ ପାରଇ ଚଳି ॥
ପାଦ ପ୍ରସାଦରୁ ଜାଣିଲା ଏ ସ୍ୱୟଂ ଭଗବାନ ।
ହୃଦେ ଚିନ୍ତି ଶରଣ ସୁମରଇ ମନେମନ ॥
ତୋହର ଦତ୍ତ ଉରଗ ଜନ୍ମ ସ୍ୱଭାବ ମୋହର ।
ଏବେ ନିସ୍ତାର କରିବା ପ୍ରଭୁ ପଣରେ ତୋହର ॥
ଯହିଁ ତହିଁ ରଖ ବା ନରଖ ଏ ତୋର ଆୟତ୍ତ ।
ଶିରେ ଚରଣ ଧରି ଶରଣପଶିଣ ନିଶ୍ଚିନ୍ତ ।
କୃଷ୍ଣ କହନ୍ତି ବନ୍ଧୁବର୍ଗେ ସମୁଦ୍ର ମଧ୍ୟେ ରହ ।
ଖଗପତି ଖିନ୍ତି ନୋହୁ ମୋର ଚିହ୍ନ ଶିରେ ବହ ॥
ଖଗମୃଗ ନର ସୁଖେ ଜଳ କରନ୍ତୁ ଭକ୍ଷଣୀ
ବନଜୀବ ଗୋରୁ ଗୋପାଳଙ୍କ ଏ ଜୀବ ରକ୍ଷଣି ॥
ଗୋପୀ ଗୋପାଳେ ଏମନ୍ତ ଜଳେ କୃଷ୍ଣ ଚାହିଁ ।
କାଳ ଶିରେ ଊର୍ଦ୍ଧ୍ୱେ ନାଗପୁଚ୍ଛେ ବେଢ଼ାଇଣ ରହେ ॥
କାଳୀ ବଚନ ପତ୍ନୀୟ ମଣି ଆକୁଳ ସଙ୍କଳେ ।
ଉରେ ଶିରେ କରକୋଡ଼ ହୋଇ ଚାହିଁନ୍ତି ନିଶ୍ଚଳେ ।

କେହୁ ବୋଲେ କାଳୀ ଧରିଛି ଗିଳିବ ଏହିକ୍ଷଣି ।
କେହୁ ବୋଲେ ପଶି ପିଟିବାହୋ କେତେ ହେବ ପାଣି ॥
କେହୁ ବୋଲଇ କୃଷ୍ଣକୁ ଧରି କୂଳକୁ ଆସୁଛି ।
ପୁଚ୍ଛ ବେଢ଼ାଇ ଆମ୍ଭଙ୍କୁ ଧରିନେବାକୁ ପାଞ୍ଚୁଛି ॥
କେହୁ ବୋଲଇ ଆସ ଯିବା ହୋ ରହିଛ କାହିଁକି ।
କୃଷ୍ଣ ସଙ୍ଗେ ମରିବା ସତେ ଏମନ୍ତ ହୁଏ କି ॥
କେହୁ ବୋଲେ ଅଘା କିରେତ ଉଠିଲା ପ୍ରାୟେ ଧ୍ୱଂଶେ ।
କେହୁ ବୋଲଇ ଏମନ୍ତ ଅବା ହେବ ଧର୍ମବଂଶେ ॥
କେହୁ ବୋଲଇ ଗଦ ଗାରେଡ଼ୀ ପଦବ କାଟିଲା ।
ଗିଳନ୍ତେଣ ଅଘା ପ୍ରାୟେ ଅବା ମୂର୍ଦ୍ଧନା ଫାଟିଲା ॥
କେହୁ ବୋଲେ ପୌର୍ଣ୍ଣମାସୀ ଦେବୀ ଉପାୟ ବିଧାନେ ।
ବିଷଜଳ ନାଶଯିବ ବିଶ୍ୱକ୍ସେନ ଆରାଧନେ ॥
କୃଷ୍ଣ ଅଙ୍ଗ ସଉରଭ ବାଞ୍ଛା ପାଇ ଗନ୍ଧବହେ ।
କାଳୀଶିରେ ନୃତ୍ୟକରେ ଦେଖେ ସଜନୀ ସମୂହେ ॥
ପୌର୍ଣ୍ଣମାସୀ ଦେଲା ଅଞ୍ଜନ ନୟନେ ସର୍ବେ ରଞ୍ଜି ।
ଝଲହଲ ହୋଇ ଦିଶଇ କୃଷ୍ଣର ପ୍ରେମରଙ୍ଗ ॥
ନେତ୍ର ହସ୍ତ କରେ ଗତାଗତ ଏକୁଞ୍ଜ ବିହାରେ ।
ଜାଣି ସଖୀ ଏକ ଆରେ କହେ ରଙ୍ଗ ପ୍ରମୋଦରେ ॥
କୃଷ୍ଣ ଦେଖିଣ ଉନ୍ମତ୍ତ ପୁଏ ମରଣେ ନ ଡରି ।
ଜଳେ ଝସାଇ ପଶିଣ ବୋଲେ ଆହେ ହରି ହରି ॥
ଉତ୍ସୁକରେ ଲୋକେ ପଶିଲେ ଦେଖିଲେ ହରି ଜଳେ ।
କାଳୀ ମଉଳରୁ ଓହ୍ଲାଇ କମଳେ ବିଜେ କଲେ ॥
କାଳୀ ବହୁତ ବିନୟଭାବେ କୃଷ୍ଣପାଦେ ନମି ।
ନାଗପତ୍ନୀ ସ୍ତୁତି ଶୁଣି ବହୁ ପ୍ରୀତି କଲେ ସ୍ୱାମୀ ॥
ହରି ଆଜ୍ଞା ଘେନି କାଳୀ ବର୍ଗଙ୍କୁ ଚଳାଇ ।
ଦେଖ ଦେଖ ଗୁଡ଼ ଗଲା ପାଦେ ଓଳଗ ମେଲାଇ ।
ପ୍ରଭୁ ପାଦପଦ୍ମ ଚୁମ୍ବି ଖଗପତି ପ୍ରୀତ ହେଲା ।
ଆଦରେଣ ନେଇ ବରୁଣ ସମୁଦ୍ରେ ଠାବ ଦେଲା ॥
ଜାଙ୍ଗଳିକ ଗଣ ପ୍ରତିଜ୍ଞା କରନ୍ତି ନନ୍ଦ ଆଗ ।
ଗଦ ଗାରୁଡ଼ୀ ପଦ ହୃଦରେ କରନ୍ତେ ପ୍ରୟୋଗ ॥
କାଳୀ କୁଟୁମ୍ବ ଘେନିଣ ଦେଖ ପଳାଇ ଯାଉଅଛି ।
ବିଷଦୋଷ ନାଶି ତୁମ୍ଭ ପୁତ୍ର କମଳ ତୋଳୁଛି ॥
ଏମନ୍ତେଣ ଗୋପାଳେ ଗଲେ ଜଳେ ଯେ ଝସାଇ ।
ମଧୁମଙ୍ଗଳ ସୁବଳ କୃଷ୍ଣ ସମୀପେ ମିଳଇ ॥
ଅଶ୍ରୁ ବଦନେ ଆନନ୍ଦେ ଶ୍ୟାମସୁନ୍ଦର ଦର୍ଶନେ ।
ହୃଷ୍ଟ ନୟନେ ନୟନ ହାସ୍ୟ ମୁଖ ପରସନ୍ନେ ॥
ବୋଲେ କୃଷ୍ଣ ମଣିଭୁଜଙ୍ଗ ପଦ୍ମ ମରେ ବନ୍ଦୀହୋଇ ।
ମୁଖ କୁଙ୍କୁମରେ ଭୂଷିତ ଆମ୍ଭଙ୍କୁ ନ ଦେଖାଇ ॥
ଶ୍ୟାମସୁନ୍ଦର ରୂପ ତନୁ ଅହିରେ ବନ୍ଧାଉ ।
ସଙ୍ଗ ତେଜି ସୁଖଜଳେ ମଜ୍ଜି ଆମ୍ଭଙ୍କୁ କନ୍ଦାଉ ॥
କୃଷ୍ଣ ଇଙ୍ଗିତ ମଧୁରେ କହେ ଶୁଣ ପ୍ରାଣସଖେ ।
ମୋର ବିଷୟ ଗୋଚର ମାୟା ତୁମ୍ଭଙ୍କୁ ନ ରଖେ ॥
କଂସ କହିବ ଅଧିକ ପ୍ରୀତି କଲେ ତୁମ୍ଭେ ଜାଣ ।
ଏମନ୍ତେ ଯେ ଲୋକ ଗହଳ ସେ ହେଲେ ଜଣ ଜଣ ॥
ହରି ସୁବଳକୁ ଚୁମ୍ବିଁଲେ ନିଶ୍ଚଳ ଦୃଗଞ୍ଚଳେ ।
ନାଗପତ୍ନୀ ଦେଲା ରତ୍ନ ନେଇ ବାନ୍ଧିଲେ ଅଞ୍ଚଳେ ॥
କୃଷ୍ଣ ଘେନିଣ ଗୋପାଳେ ଆସି କୂଳେ ପରବେଶ ।
ଲୋକ ଭିଡ଼ ପଡ଼ ଉବୁରା ଉବୁରି ଚଉପାଶ ॥
ପ୍ରାଣ ପାଇଁଣ ଯଶୋଦା ଧରି ଆଉଁସଇ ଦେହ ।
କୋଳେ ଧରି ଲୋଭେ ବେନି ତନୁଜ କେ କହୁ ସ୍ନେହ ॥
ଜଣେ ଜଣେ କୋଳେ ଧରି ଅଶ୍ରୁଜଳରେ ଜଡ଼ିତ ।
ଅନ୍ଧ ନୟନ, ମରଣେ ପ୍ରାଣ ପାଇଲେ ଯେମନ୍ତ ॥
କୁଳଆହ୍ୱ ବୃଦ୍ଧ ପିତାମହ କହନ୍ତି ଶୋକେଣ ।
ବାବୁ ନୟନ ଜୀବନଧନ ଗୋକୁଳ ରକ୍ଷଣ ॥
ଏକାବେଳକେ ବୁଡ଼ାଇ ଦେଲୁ କାଳୀ ବିଷହ୍ରଦେ ।
ଆଉବେଳେ ନପଶିବୁ ବାବୁ ଏମନ୍ତ ପ୍ରମାଦେ ॥
ଏମନ୍ତେଣ ସେହି ବନେ ଆସି ହୋଇଲା ରଜନୀ ।
ଗୋପେ ନ ଯାଇ ରହିଲେ ସର୍ବେ କୃଷ୍ଣ ସଙ୍ଗେ ଘେନି ॥
ବନ ଭୂମି ମାତ୍ର ସେଠାମତେ ରହିଲେ ସକଳ ।
ଚଉପାଶରେ ପାରେଣ ବେଢି ରହିଲା ଅନଳ ॥
ନିଦ୍ରା ବିହ୍ୱଳେ ସକଳେ ମହା ଆକୁଳେ ବୋବାଳି ।
ଅସମ୍ଭାଳେ ଉଠି ଆଦିମୂଳ ରଖ ରଖ ବୋଲି ॥
କେହୁ ବୋଲେ କାଳୀ ବିଷ ଜ୍ୱାଳ ଅନଳ ବେଢ଼ିଛି ।
ଏକାବେଳେ ମରିବାକୁ ବହ୍ନି ଆଣିଲା କଢ଼ାଇ ॥
କେହୁ ବୋଲେ କଂସ ମାୟା ଘୋର ହୁତାଶ ରଚିଲା ।
କାଳୀ ବଦନୁ ବଞ୍ଚିବା ଜାଣି ଏମନ୍ତ ପାଞ୍ଚିଲା ॥
କେହୁ ବୋଲେ ଏ ନିଦାଘ ଦାବାନଳ ବନେ ପଡ଼ ।
କେଣେ ପଳାଇବା ଚଉଦିଗୁଁ ଆସୁଅଛି ମାଡ଼ି ॥

ନନ୍ଦ ନିଜସ୍ଥଳ ବାସ ପାଡ଼ ପ୍ରଣାମ ଯେ କରି ।
ବୋଇଲ ହବିର୍ଦ୍ଦେବ ଅଗ୍ନିମୁଖେ ଦେବଗଣ ବରି ॥
ବୃଦ୍ଧକାଳେ ପୁତ୍ରଗୋଟି ଏଡ଼େ ଶଙ୍କଟରୁ ବଞ୍ଚିଲା ।
ଏବେ ଏଠାରୁ ରଖିଲେ ହେବ ତୁମ୍ଭର ରଚିଲା ॥
କୃଷ୍ଣ ଦରଶନକରି ହୁତାଶନ ପଛଘୁଞ୍ଚେ ।
ନିଦ୍ରା ତେଜି ହରି ଉଠି ଗୋପାଳଙ୍କୁ ଡାକେ ଉଚ୍ଚେ ॥
ଜଳ ଧୂଳି ପକାଇଣ ଡାଳ ପିଟିଣ ଲିଭାଅ ।
ମିଣି ନ ଆସୁ ଧସାଇ ଆଖି ବୁଜିଣ ରହାଅ ॥
କୃଷ୍ଣ ବଚନେ ଗୋପୀ ଗୋପାଳ ଅନଳ ଲିଭାଇ ।
କାଳୀ ବିଷ ଶେଷ ଯେତେ ଥିଲା ଅନଳେ ସମ୍ଭାଇ ॥
ମହା ବତାସରେ ହୁତାଶନ ହୋଇଣ ଉଡ଼ିଲା ।
ହଗ ଭୂମି ସୀମାନ୍ତକୁ ଛାଡ଼ି ସମୁଦ୍ର ପଡ଼ିଲା ॥
ସେହୁ ବଡ଼ବା ଅନଳ ହୋଇ ରହିଲା ସାଗର ।
ମୁନି ବୋଇଲେ ଏଣୁ ଶ୍ରୀକୃଷ୍ଣ ମହିମା ଅଗୋଚର ॥
ଗୋପୀ ଗୋପାଳେ ଅଗ୍ନି ଲିଭାଇ ଜାଗିଣ ରହିଲେ ।
ଏମନ୍ତେଣ କେତେବେଳ ଅନ୍ତେ ରଜନୀ ପାହିଲେ ॥
ନନ୍ଦ ଯଶୋଦାଙ୍କୁ ବୋଇଲ ପୁରଜନ ଘେନିଯାଅ ।
ରାନ୍ଧି ଅଣାଇ ଯତନେ ପୁତ୍ରର ରନ୍ଧନ କରାଅ ॥
କୃଷ୍ଣ କାଲି ଉପବାସୀ ଦେଖ ଅତ୍ୟନ୍ତ ଦୁର୍ବଳ ।
କଥା କହି ନପାରଇ ପାଦେ ଯିବା ନାହିଁ ବଳ ॥
ରାଜା ପଦ୍ମ ଗୃହ ତୁମ୍ଭ ପଛେ ଆମ୍ଭେ ଯିବୁଁ ।
ଯେବେ ବିଳମ୍ବ ହୋଇବ ତେବେ ଏହି ବନେ ଥିବୁଁ ॥
ବେଗେ ପରିଜନ ହସ୍ତେ ପାକଅନ୍ନ ପେଶି ଦିଅ ।
ନଗରେ ଭୁଞ୍ଜା ହୋଇଛି ସର୍ବଜନ ଘେନିଯାଅ ॥
ପଦ୍ମ ଘେନି ଯିବ ଗୋପାଳେ ସେ ରହନ୍ତୁ କେବଳ ।
ଯଶୋବନ୍ତୀ ଚିତ୍ତରେ ଯେ ହୋଇଲେ ଚଞ୍ଚଳ ॥
କୃଷ୍ଣ ଉପବାସ ନିମନ୍ତେ ସେ ଆକୁଳ ଜୀବନ ।
ପୁରଜନ ଘେନି ଗୋକୁଳକୁ କଲେ ଆଗମନ ।
ପାଶୁଁ କୁନ୍ଦଲତା ପେଷିଲେ ସେ ଜଟିଳାର ପାଶ ।
ଏତେ ଦୁଃଖ କହି ରନ୍ଧନକୁ ରାନ୍ଧି ଘେନି ଆସ ॥
ଆଜ୍ଞା ପାଇ କୁନ୍ଦଲତା ଚଳେ ଦେଖା ମିଳେ ପୁରେ ।
ଭୁଲା ସେବକଣୀ ଘେନି ଯଶୋଦା ପାକ ନିର୍ବ କଲେ ॥
ଯେଝା ଜନନୀ ଯତନେ ପୁତ୍ର ଘେନି ଚଳେ ବାସେ ।
ଉପହାର ଦେବୁଁ ଘେନି ଆସ ବେଗେ କୃଷ୍ଣ ପାଶେ ॥

ଏମନ୍ତେଣ କୃଷ୍ଣ ଘେନି ନନ୍ଦ ରହେ ନଦୀ କୂଳେ ।
ପଦ୍ମ ଘେନିଣ ଗୋପାଳେ ଯେଝା ଘର ସଜ କଲେ ॥
ଦେବଗଣ ଖଗବର ଆଦି ଗଲେ ଯେଝା ସ୍ଥାନ ।
ରାଧା ସଙ୍ଗ ଇଚ୍ଛି କୃଷ୍ଣ ଯୋଗମାୟା ଉପାସନ ॥
ମେଘେ ମେଦୁର ଅମ୍ବର ଆଚ୍ଛାଦିଲେ ଏ ସମୟେ ।
ଶ୍ୟାମ ତମାଳ ତରୁରେ ଅନ୍ଧକାର ନକ୍ତ ଭୟେ ॥
କୃଷ୍ଣ ଡରେ ଥର ହର ଏକ ଆରେକ ନନ୍ଦଶେ ।
ଭୟେ ବୋଲନ୍ତି ହେ ତାତ ବେଗେ ଯିବା ଆମ୍ଭବାସେ ॥
ରାଜକାର୍ଯ୍ୟ ପୁତ୍ରସ୍ନେହ ବେନି ଉଭୟ ପ୍ରମାଦ ।
ପୁତ୍ର ଘେନି ପୁରେ ଆସିବ କୁ ବିଚାରନ୍ତେ ନନ୍ଦ ॥
ରାଜା ଆଉଣିଆ ନ ଛାଡ଼ଇ ଲାଗିଛି ସଙ୍ଗରେ ।
ପଦ୍ମ ଘେନାଇଣ ନନ୍ଦ ଯିବୁ ମଥୁରା ନଗରେ ॥
ରାଜା ଆଜ୍ଞା ଏଡ଼େ ନୋହିଲା କୁମରସନ୍ଧ ଧରୁ ।
ପୁତ୍ର ଘେନ ସଙ୍ଗେ ଚଳ ରାଜା ଦରଶନ କରୁ ॥
ଶୁଣି ନନ୍ଦର ସାହସ ଉତ୍ତ ବୋଇଲେ ଏ ବାଳକ ।
କାଲି ଦେଖା ନାହିଁ ହାତି ଘୋଡ଼ା ମଥୁରାକଟକ ॥
ମେଘାଚ୍ଛନ୍ନେ ଡରେ ଯେହୁ ତହିଁ କି ରହିବ ।
ଖଣ୍ଡେ ଦୂରେ ଛାଡ଼ି ଆସଇ ଏ ଲୋକ ସଙ୍ଗେ ଯିବ ॥
ଏତେ କହି କୃଷ୍ଣ ଭୁଜ ଧରି ଭରତେ ଆସଇ ।
କେତେ ଦୂରେ ରାଧା ସଖୀବୃନ୍ଦ ଶୋଭା ବିକାଶଇ ॥
ଶୀଘ୍ର ଗମନ ଦେଖି ତାଙ୍କର ପଛେ ଡାକେ ନନ୍ଦ ।
କେ ପଛେ ଡାକେ ବୋଲି ରହନ୍ତି ସୀମନ୍ତିନୀବୃନ୍ଦ ॥
ସନ୍ନିଧିରେ ନନ୍ଦ ପ୍ରବେଶ ସଲଜ୍ଜେ ବାଳୀ ରହନ୍ତି ।
ନନ୍ଦ ନନ୍ଦିନୀ ନାମେ ସଜନୀକୁ ଶୁଣି କହନ୍ତି ॥
ମେଘ ମେଦୁର ତମାଳବନ ଅନ୍ଧକାରେ ଡରେ ।
କୃଷ୍ଣଙ୍କୁ କରି ନିଷ୍ଠିନ୍ତ ପ୍ରବେଶ ରାଧେ ଗୃହରେ ॥
ଏମନ୍ତେଣ ଆଉଣିଆ ଡାକେ ଆହେ ଆହେ ନନ୍ଦ ।
ରାଜକାର୍ଯ୍ୟ ଛାଡ଼ି ଯାଉ ତୁ ନ ବୁଝୁ ଭଲମନ୍ଦ ॥
ଶୁଣି ପୁତ୍ର ସମର୍ପିଣ ନନ୍ଦ ଭୟେ ବାହୁଡ଼ିଲେ ।
ସହସ୍ରେକ ପଦ୍ମଭାର ଘେନି ମଧୁପୁର ଗଲେ ॥
ଚାରିବିରହରେ ଲଭି କୃଷ୍ଣ ରାଧା ମନ ରମେ ।
ନନ୍ଦ ନନ୍ଦନରେ ଚଳି ପ୍ରତ୍ୟେକ କୁଞ୍ଜଦ୍ରୁମେ ॥
ରାଧାମାଧବ ଏକାନ୍ତ ବନ ଯମୁନାର କୂଳେ ।
ହେମମଣ୍ଡପ ନିର୍ମିତ କଳ୍ପ ପାଦପର ମୂଳେ ॥

ତରୁ ଲତା ଫଳ କୁସୁମରେ ଶୋଭଇ ଧରଣୀ ।
ନାନା ପକ୍ଷୀ କୋଳାହଳ ମତ୍ତ ମଧୁକର ଶ୍ରେଣୀ ॥
ମଣିମୟ କମନୀୟ ଗୃହ ମଣି ପୀଢ଼ ସ୍ଥାନେ ।
ମନସିଜ ଜୟ କେଳି କି ନର୍ତ୍ତନ ସ୍ଥାନେ ସ୍ଥାନେ ॥
ନାନାରସେ ବିଳସନ୍ତି ତହିଁ ସଖୀବୃନ୍ଦ ଘେନି ।
ମନମଥ ମନୋରଥ କେତେ ପୂର୍ଣ୍ଣ ନୁହେ ବେନି ॥
ଦେଖି ମଞ୍ଜୁଳ ବଞ୍ଜୁଳ କୁଞ୍ଜେ ଜାମ୍ବୁନଦ ବେଦୀ ।
ପଲ୍ଲବିତ ତରୁ ବିସ୍ତାର କାଳନ୍ଦୀ ନଦୀ ଭେଦି ॥
ମରକତରେ ଜଳ ଭିତରେ ପାବଚ୍ଛ ଗଡ଼ାଇ ।
ଘାଟ ପୀଢ଼ ବାଡ଼ରେ ତରୁ ପଲ୍ଲବିତ ଯୋଡ଼ାଇ ॥
ଫୁଲ୍ଲ ଲତା ତରୁତଳେ ଜଳାଶୟ ରମ୍ୟ କମେ ।
ପକ୍ଷୀ ଜୀବେ ଚକ୍ଷୁ ନବେଶିଣ ସର୍ବେ ଜଳଭ୍ରମେ ॥
ଚଉଦିଗେ ବେଢ଼ି ନାନାବର୍ଣ୍ଣେ ନିକୁଞ୍ଜମନ୍ଦିର ।
ମଧ୍ୟରେ କୁଞ୍ଜମାଧବୀ ଲତା କୁଟିଳ ସୁନ୍ଦର ॥
ମଳୟଜ ପଲଙ୍କରେ ଘନସାର ପୁଷ୍ପତଳ୍ପ ।
ଖଞ୍ଜି କୁରୁବେଲ ମାଳତୀ କୁସୁମ ଚନ୍ଦ୍ରାତପ ॥
ତହିଁମଧ୍ୟେ ବିଜେ ରାଧା କୃଷ୍ଣ ସଖୀ ସନ୍ନିଧାନେ ।
ନାନାରଙ୍ଗେ ନୃତ୍ୟତାଳ ଗୀତ ମଧୁର ଗାୟନେ ॥
ଏହି ସମୟେ ସୁବଳ ତହିଁ ପ୍ରବେଶ ହୋଇଲେ ।
କୃଷ୍ଣ ଇଙ୍ଗିତେ ସେ ଅଳଙ୍କାର ଗୁମୁଟରେ ଥୋଇଲେ ॥
ଘେନ ଶ୍ରୀକରେ ରାଈ ଅଙ୍ଗରେ ଖଞ୍ଜିଲେ ନାଗର ।
ଏହି ସମୟରେ କୁନ୍ଦଲତା ପ୍ରବେଶ ଆଗର ।
କହେ ବ୍ରଜେଶ୍ୱରୀ ପେଷଣେ ଜଟିଳା ମୋତେ ବୋଲେ ।
ସୂର୍ଯ୍ୟ ପୂଜା ସ୍ଥକୁଁ ବଧୂ ଘେନ ଆସ ସଙ୍ଗମେଳେ ॥
ଶୁଣି ଆନନ୍ଦ ସଜନୀବୃନ୍ଦ ଭ୍ରାନ୍ତି ସେ ଫିଟିଲ ।
ସ୍ମର ଯଜ୍ଞ ଆହୂତରେ ଶିଖା ପ୍ରବଳ ଉଠିଲ ॥
ଏମନ୍ତେଣ ଧନିଷ୍ଠା ମିଷ୍ଟଅନ୍ନ ବହୁ ଘେନି ।
ସେହି ପଥରେ ଆସନ୍ତି ଦେଖି ହରଷ ଜନନୀ ॥
ରାଧା ମାଧବ ଯୁଗଳ ଗୃହେଁ ଆନନ୍ଦ ଅନ୍ତରେ ।
ଏମନ୍ତେଣ ନାନାକେଳି ରସ ମଧ୍ୟାହ୍ନ ଭିତରେ ॥
କୃଷ୍ଣ ସ୍ନାନ ଭୋଜନ କରଣ ଆସନେ ବସାଇ ।
ରାନ୍ଧ ପରଷେ ସରସେ ଖଣ୍ଡ କର୍ପୂର ମିଶାଇ ॥
ନାନା ଲଡ଼ୁ ପୁଳସର ଶିଖରଣୀ ବର୍ମାଦଧି ।
ଛେନା ଲଡ଼ୁ ଘୃତଲଡ଼ୁ ଦୁଧଲଡ଼ୁ ଯେତେ ଛଧି ॥
କୃଷ୍ଣ ନିମନ୍ତେ ଯତନେ ପୂରୁ ଆଣିଥିଲେ ସଞ୍ଚି ।
ସୁଧା ରସକେଳି ଘନସାର କୃଷ୍ଣ ମନ ରୁଚି ॥
ବନଫଳ ମୂଳେ ବୃନ୍ଦା ଆଗହୁଁ ଯା ସଞ୍ଚିଥିଲେ ।
କୃଷ୍ଣ ଭୋଜନ ସମୟ ଜାଣି ଆଣି ସମର୍ପିଲେ ॥
ପକ୍ୱ ଆମ୍ବ ଜାମ୍ବୁ ଜମ୍ବୀଲ ପଣସ କରମଙ୍ଗା ।
ତାଳ ଖଜୁରୀ ବଦରୀ ଗୁର କମଳା ନାରଙ୍ଗା
କେନ୍ଦୁ ଦାରକ୍ଷା କଦଳୀ କ୍ଷୀର ପଇଡ଼ ସପୁରି ।
ମଧୁମଙ୍ଗଳ ସୁବଳ ଘେନି ଭୁଞ୍ଜନ୍ତି ଶ୍ରୀହରି ॥
ସୁବାସିତ ଜଳ ଆଚମନେଣ ଦେବୀ ସଂଯୋଗେ ।,
ଯତ୍ନେ ଲଳିତା ଧରେ କର୍ପୂର ତାମ୍ବୂଳ ନିୟୋଗେ ॥
ରାଧା ଆଦି ସଖୀ ଭୁଞ୍ଜି ବସି ବୃନ୍ଦା ପରଷନ୍ତି ।
କୃଷ୍ଣଙ୍କ ଅଧରାମୃତ ପାନେ ଉଦର ତୋଷନ୍ତି ॥
ଆଚମନ ଅନ୍ତେ ଧରି କୃଷ୍ଣ ତାମ୍ବୂଳ ଭକ୍ଷଣ ।
କୃଷ୍ଣ ଯଶ ଗୁଣ ଉଚ୍ଚେ ପଢ଼େ ଶୁକ ବିଚକ୍ଷଣ ॥
ଯଶୋବନ୍ତୀର ଉତ୍ସାହ ନନ୍ଦ ଆଦେଶକୁ ମାନି ।
ଏମନ୍ତେଣ ପୁରେ ଚଳେ ରାଈ କୃଷ୍ଣ ସଙ୍ଗେ ଘେନି ॥
ପଥେ ଦେଖନ୍ତି ଗୋକୁଳ ବଧୂ ଅଦ୍ଭୁତ ଗମନ ।
କାନ୍ତା କାନ୍ତ ମୁଖ ନିରେଖିଣ ସଫଳ ନୟନ ॥
ଚନ୍ଦ୍ରାବଳୀ ସଖୀଗଣ ଦେଖି ଗର୍ବ ହେଲା ଧ୍ୱଂସି ।
ଯାର ଦୁର୍ବାଦ ଲାଗଇ ତାର ସଙ୍ଗେ ଯାଇ ମିଶି ॥
ଯୂଥେଶ୍ୱରୀ ସେ ଶ୍ୟାମଳା ବୋଲେ ରାଧିକା ସପକ୍ଷେ ।
ପିତାଦତ୍ତ ସୌହାର୍ଦ୍ଦ୍ୟରେ ପୁଷ୍ପ ସମର୍ପେ ପ୍ରତ୍ୟକ୍ଷେ ॥
ଏତେ ଯୁବତୀ ମଧ୍ୟରେ କାହିଁ ଏମନ୍ତ ବିଶ୍ୱାସ ।
ରାଈ ପକ୍ୱାନ୍ନ ଭକ୍ଷିଲେ ବୃଦ୍ଧି ଆୟୁ ବଳ ଯଶ ॥
ମହା ସୁଲକ୍ଷଣୀ ଶିରୋମଣି ଯୁବତୀ ସଂସାରେ ।
ସେହୁ ଏହାର ପୀରତି ହରି ପ୍ରୀତି କରେ ତାରେ ॥
ଏହାଙ୍କର ଦାସୀ-ଦାସୀ ସେବା ପାଇବା କି ଭଲେ ।
ଶୁଣି ମଙ୍ଗଳ ବୋଲନ୍ତି କୋଟିଜନ୍ମ ଭାଗ୍ୟ ଥିଲେ ॥
ଏମନ୍ତେଣ ନନ୍ଦୀଶ୍ୱରେ ରାଈ ପରବେଶ ଯାଇ ।
ପୁତ୍ର ଆଗମନେ ଜନନୀ ଆଗକୁ ଆସେ ଧାଇଁ ॥
ରାଧା ସଙ୍ଗେ ଦେଖି ପୁତ୍ରବଧୂ ପ୍ରାୟ ମଣି ଚିତ୍ତେ ।
କୃଷ୍ଣ ମୂର୍ଦ୍ଧନା ଆଘ୍ରାଣ କରି ରାଈ କୋଣଗ୍ରତେ ॥
ଅନ୍ନ ନିଉଛୁ ରୋହିଣୀ ମାତା ଭିତରକୁ ନେଲେ ।
ବେନି ମାଏ ବେନି ଜନ ଧରି ଆନନ୍ଦ ବହିଲେ ॥

ନବ ପୁତ୍ରବଧୂ ପ୍ରବେଶନେ ଉତ୍ସବ ଯେସନ ।
ପୁରେ ସକଳ ଜନ ମଙ୍ଗଳ ବିଧାନ ତେସନ ॥
ପାଦ ପଖାଳି ପାକଶାଳେ ପ୍ରବେଶ ସୁଲକ୍ଷଣୀ ।
ତେବେ ରନ୍ଧନ କରନ୍ତି ସଙ୍ଗେ ଘେନି ରୋହିଣୀ ॥
ପରିବାର ସହଚରୀ ମିଶି ପରିଚର୍ଯ୍ୟା କରେ ।
ନିର୍ବାହ ହୋଇଲା ଅମୃତପାକ କ୍ଷଣକ ଭିତରେ ॥
ବଳରାମ ମଧୁମଙ୍ଗଳ ସୁବଳ ଆଦି ସଙ୍ଗେ ।
ସଖାଗଣ ଘେନି ଭୋଜନ କରନ୍ତି ନାନା ରଙ୍ଗେ ॥
ଯେ ଯାହା ଜନନୀ ମିଷ୍ଟାନ୍ନ ଯ ହା ସଞ୍ଚିଥିଲେ ।
ଏଥି ସମସ୍ତେ ହଅନ୍ତେ ମାଏ ବଣ୍ଟାଇଣଦେଲେ ।
ରାଜି ସଂଯୋଗିଣ ହୁଏ ଯେନ ପରତେକ୍ଷ ଶୋଭିଣୀ ।
ଯଶୋବନ୍ତୀ ଦ୍ରବ୍ୟ ଚାଖାଇ ଭୁଞ୍ଜାନ୍ତି ପୁଣପୁଣି ॥
ବାସଜଳେ ଆଚମନ କରି ତାମ୍ବୁଲ ଭୁଞ୍ଜାଇ ।
ଶତପଦାନ୍ତେ ପଲଙ୍କାସନେ ବିଶ୍ରାମିଲେ ଯାଇ ॥
କୃଷ୍ଣ ଅବଶେଷ ଧନିଷ୍ଠା ସେ ଥୁଆଇ ଯତନେ ।
ସଖୀଗଣ ଭୋଜନରେ ହୁଏ ଯୁବତୀ ରତନେ ॥
ଆଚମନ ଅନନ୍ତେ ଅବଶେଷ ତାମ୍ବୁଲ ଭୁଞ୍ଜାଇ ।
କୃଷ୍ଣ ଆରୋଗ୍ୟ ଯେ ଦ୍ରବ୍ୟ ଦେଖି ଦୁରୁ ତା ତେଜଇ ॥
ଏମନ୍ତେଣ ନନ୍ଦ ଦେବୁ ହେଇ ଗୋକୁଳେ ବାହୁଡ଼େ ।
ପୁତ୍ରଠାରେ ଚିତ୍ତ ଦେଇଣ ଆସଇ ଧଡ଼ପଡ଼େ ॥
ପୁରେ ପୁତ୍ର ଦେଖି କୋଳେ ଧରି ମୁଖେ ଚୁମ୍ବାଦେଲା ।
ନଟୀକାଳ ଲଡ଼ୁ-ମଧ୍ୟରୁ ସ୍ନେହେ ଆଣିଥିଲା ॥
କୃଷ୍ଣ କର ପସାରିଣ ଖଞ୍ଜି ମୁଖରେ ଦିଅଇ ।
ପୁତ୍ରଠାରେ ଯେଉଁ ସ୍ନେହ ନିଜ ଜୀବନେ ନୁହଇ ॥
ନନ୍ଦ ସ୍ନାନ ଭୋଜନ ଭ୍ରାତୃଗଣ ସେନ କରେ ।
ବହୁ ଗଉରବ କରେ ବୃଷଭାନୁ ନନ୍ଦନୀରେ ॥
ସମ୍ମାନନା କରି ସଖୀଗଣ ସଙ୍ଗେ ପଠିଆଇ ।
ଗୋପେ ଆନନ୍ଦ ସକଳଜନେ କୃଷ୍ଣ ଯଶଗୁଣ ଗାଇ ॥
ମହାଗ୍ରୀଷମରେ ବାହାରେ ଲୋକେ ଯାଇନ୍ତି ଭୟ ।
ଏହି ବୁଦ୍ଧି ପ୍ରଲମ୍ବା ଭଟ୍ଟେ ଉଜାପାଟେରି ଛବି ॥
ଯହିଁ କୃଷ୍ଣ ରକ୍ଷାପାଳକ ତହିଁରେ କିସ ଭୟେ ।
ଅମ୍ଭ ଦ୍ରୋହ କଲେ ନାଶଯିବୁ କାଳନାଗ ପ୍ରାୟେ ॥
ଏମନ୍ତେଣ ପ୍ରଭାତ ସମୟେ ବ୍ରଜ ରାମହରି ।
ଗାବ ଗୋପାଳ ଘେନି ଭାଣ୍ଡିରବନେ କେଳିକରି ॥

ସ୍ତୋକକୃଷ୍ଣ ଅଧିକାଶ୍ରୀ ବନେ ସଖା ସୁଖରଙ୍ଗେ ।
କୃଷ୍ଣ ମୁରଲୀରେ ରାବନ୍ତେ ମିଳିଲେ ସର୍ବେ ସଙ୍ଗେ ॥
ମହାବଳ ନାମେ ଯେତୁ ସେତୁ ସହିତେ ରହିଲା ।
ଜାଣି ପ୍ରଲମ୍ବା ସେ ରୂପଧରି ସଙ୍ଗରେ ମିଳିଲା ॥
ଗାବ ଚରାଇ କୋମଳତୃଣେ ବିହରନ୍ତି ରଙ୍ଗେ ।
ବଳ ଜଣାଇ ଖେଳିକୁ ରଞ୍ଜି ଯୋଡ଼ି ଯୋଡ଼ି ସଙ୍ଗେ ॥
[illegible]ଳ ସୁଭଦ୍ର ଏ ବସିଲେ ମୂଳରଣି ।
[illegible] ହୁଆଦେଇ ହୋଇଣ ଆସନ୍ତି ଯୋଡ଼ି ଯୋଡ଼ି ॥
ମଧୁମଙ୍ଗଳରେ ମହାବଳ ସୁଭଦ୍ରେ ଶ୍ରୀରାମ ।
ପୁଣ ବଟୁରେ କୃଷ୍ଣ ସୁଭଦ୍ର ବିଭାଗରେ ସୁଦାମ ॥
ଯେହ୍ନରୂପେ ସମସରି ବେନି ବେନି ଭାଗଭାଗେ ।
ମୂଳବେନି ବିଚାରିଣ ବଳ ଜଣାନ୍ତି ସେ ଆଗେ ॥
କରେ ଆଞ୍ଚିଣ ସୁଭଦ୍ର କହେ ବଉଳ ସେ ଫଳ ।
ମହାକଠିନ ଆମ୍ବିକ ସ୍ୱାଦ ତରୁ ସେ ବିଶାଳ ॥
ଶୁଣି ବଳଦେବ କହେ କପିତ୍ଥ ଚରୁଏ ହୁଏ ।
ବୋଲେ ଘୋଡ଼ା ଚଢ଼ିଯାଅ ଏ ଭାଣ୍ଡିର ବଟେ ଯାଏ ॥
ଶୁଣି ମଧୁ ମଙ୍ଗଳ ବିଭାଗ କୁମର ହରଷେ ।
କାନ୍ଧ ଚଢ଼ି ସୁଭଦ୍ର ହରି ବାଳକ ହରଷେ ॥
କୃଷ୍ଣ କାନ୍ଧରେ ସୁଦାମ ମହାବଳ କାନ୍ଧେ ରାମ ।
ଯେଣ୍ଟା ଘଣିକଲେ ବସିନ୍ତି ବଳସୁ ଅନୁପମ ॥
ରାମ କାନ୍ଧେ ବହି ପ୍ରଲମ୍ବା ସେ ବିଚାର କରଇ ।
ଭଲ ହୋଇଲା କଂସରାଜା ସମ୍ମୁଖରେ ଦେବି ନେଇ ॥
ବନ୍ଧୁହନେ ଯୋଗେ ପାଇଲି ଏହାକୁ ପ୍ରବେଶିବି ।
ପଛେ ଆସି ଗୋପସୁତ ସଙ୍ଗ କୃଷ୍ଣ ବିନାଶିବି ॥
ସର୍ବେ ଭାଣ୍ଡିରୁ ବଟେଲେଣୁ ଆସନ୍ତି ବାହୁଡ଼ି ।
ନିଜରୂପ ଧରି ପ୍ରଲମ୍ବା ରାମକୁ ଘେନି ଉଡ଼ି ॥
ଗଗନରେ ଅମରଗଣ ଗୃହାନ୍ତି ଯେ ନିରେପି ।
ମଧୁ କନକକୁ ବୋଲିଣ ଅପ ର ଯାଏନ୍ତି କ୍ଷେପି ॥
ନେଇଗଲା ବୋଲି ଗୋପସୁତେ ଡାକନ୍ତି ବୋବାଳି ।
ମାର ମାର ମାୟାବୀ ଦୈତ୍ୟ ଡାକନ୍ତି ବନମାଳୀ ॥
ଶୁଣି ବଳରାମ କୋଟିସିଂହ ପରାକ୍ରମ ହୋଇ ।
ମେରୁଜାଣି ତାହୁ ହେଲେ ଦୈତ୍ୟ ନ ପାରିଲା ଯାଇ ॥
କଣ୍ଠ ଚରଣରେ ରୁନ୍ଧି କେଶ ବାନ୍ଧି ବାମ ହସ୍ତେ ।
ଘୋର ହୁଙ୍କାର କରିଣ ଟିପିଲେ ହୋଇଲେ ମୁଣ୍ଡ ॥

ଗିରିପରେ ବଜ୍ରଘାତ ଜାଣି ମୂର୍ଚ୍ଛନା ପାଇଲା ।
ପ୍ରାଣ ହାରିଣ ପ୍ରଲମ୍ବା ଗର୍ଜି ଅବନୀ ଲୋଟିଲା ॥
ରାମ ଅସୁର ସଂହାରି ଉଭା ଅରୁଣ ଲୋଚନ ।
ପାଶେ ବେଢ଼ି ଗୋପସୁତ କହେ ପ୍ରଶଂସା ବଚନ ॥
ଅପରାହ୍ନ ଶେଷ କାଳରେ ଗୋଧନ ବାହୁଡ଼ାଇ ।
ଶିଙ୍ଗା ବେଣୁ ବଜାଇଣ ଜୟ ପତାକା ଉଡ଼ାଇ ॥
ଗୋପୀଗୋପାଳେ ପ୍ରଲମ୍ବା ମଲା ବାରତା ପାଇଲେ ।
ଭୟ ସରିଲା ଗୋ ବୋଲି ପଥେ ଦେଖିତ ଅଇଲେ ॥
ସଙ୍ଗ ଗୋପାଳ କୁମର ଧରି ବାରତା ପଚାରି ।
ବେଲ ବୁଢ଼ାବୁଢ଼ୀ ଯାର ନାମେ ଗୋପେ ପଡ଼େ ହୁରି ॥
ଅତି ପ୍ରଲମ୍ବ ପ୍ରଲମ୍ବା ମୃତ୍ୟୁ ଲଭିଲା କେମନ୍ତେ ।
ସୁଏ କହେ କହେ ବସି ରାମ ନାଶି ମୁଥଘାତେ ॥
କହୁଁ କହୁଁ ଗୋଧନ ଯେ ପଥ ପୂରିଣ ଅଇଲେ ।
ଗୋପ ବତ୍ସଦାବାନଳ ଲିଭାଇ ଗଙ୍ଗା କ ବହିଲେ ॥
ଆଗେ ଗାବ ପଛେ ଗୋପସୁତେ ରାମକୃଷ୍ଣ ଘେନ ।
ହେମ ହାର ମଧ୍ୟେ ଶୋହେ କିବା ହୀରାନୀଳାମଣି ॥
ଲୋକ ହାହାକାର ହୋନ୍ତି ଦେଖିବାକୁ ବେନି ଭାଇ ।
ପୁର ପ୍ରାଙ୍ଗଣ ମେଢ଼ ମଣ୍ଡପ ଅଟ୍ଟାଳ ଆରୋହି ॥
ରାଈ ସଖୀଗଣ ସଙ୍ଗେ ରହିଁ ଗୋଧନ ବାହୁଡ଼ା ।
ଶ୍ୟାମଚନ୍ଦ୍ର ମୁଖ ନିରେଖିଣ ନପଡ଼େ ପିଛୁଡ଼ା ॥
କୁଳବତୀ ଗୃହ କୀରତି ଚେଳଣି ପଥେ ଦେଖେ ।
କର ଚିବୁକେ ଏକ ଆରକେ କୁହା କୁହି ଦୁଃଖେ ॥
ସତ ବଳାଇ କେମନ୍ତେ ମାରିଲୋଡ଼ନ୍ତ ଦାନବେ ।
ସାକ୍ଷୀଧର୍ମ ରକ୍ଷାକରେ ଏଣୁ ମାରନ୍ତି ମାନବେ ॥
କେହୁ ବୋଲେ ନନ୍ଦ ବିଷ୍ଣୁ ଆରାଧିଣ କରେ କର୍ମ ।
ତେଣୁ ବାରେବାରେ କୁମରଙ୍କୁ ସାହା ହୁଏ ଧର୍ମ ॥
ଏମନ୍ତେଣ ପୁରଦ୍ୱାରେ ଯାଇ ପ୍ରବେଶ ହୋଇଲେ ।
ଆଜ୍ଞା ମାନ ଗାବପଲ ଯେଝା ସ୍ଥାନରେ ରହିଲେ ॥
ମାତା ଯଶୋଦା ରୋହିଣି ଆସି ଅନ୍ଧ ନଉଛାଇ ।
ବନ ଆପଦ ଶୁଣି ନୟନୁ ଲୋତକ ମୁଞ୍ଚଇ ॥
ଶ୍ରମଭର ଜଳକଣା ମାଏ ପଣନ୍ତେ ମାଜିଲେ ।
ସ୍ନାନ ସୁବେଶ କରି ଶୀତଳ ଅନ୍ନ ଭୁଞ୍ଜାଇଲେ ॥
ଆଚମନ ଅନ୍ତେ ତାମ୍ବୁଲ ସେ ଜମ୍ବୁଲିନିଯୋଗେ ।
କୃଷ୍ଣ ଅବଶେଷ ଧନିଷ୍ଠା ସେ ପାଇଲ ସଂଯୋଗେ ॥
ପୁଣ ରଜନୀରେ ନିକୁଞ୍ଜରେ ମିଳନ ବେନିଜନ ।
ଚନ୍ଦ୍ରାବଳୀଗଣ ଅବକାଶ ନପାଇ ବିମନ ॥
ପଦ୍ମା ସୈବ୍ୟା ବେନି ସଜନୀ ରଜନୀ ଘଡ଼ି ମାନେ ।
ରାଈ ଅଭିସାର ଅନୁସରି ଗଲେ ସ୍ଥାନେ ସ୍ଥାନେ ॥
ଭେଟ ନପାଇ ଜଟିଳା ପାଶେ ପ୍ରବେଶ ହୋଇଲେ ।
ଗୋବର୍ଦ୍ଧନ ମଲ୍ଲ ଜନନୀର ଶଙ୍କା କହିଲେ ॥
ସେହୁ ଜଟିଳା କହେ ବହୁତ ଆଶ୍ୱାସି ହୋଇଣ ।
ପ୍ରିୟ କହି ବେନିଜନେ ବହୁ ଆଦର କରିଣ ॥
ସନମାନ ପାଇଣ ବାଳୀ ମେଲାଣି ହୋଇଗଲେ ।
ଦ୍ୱାର ତୁନବାଡ଼େ ମୃଗମଦେ ସମସ୍ୟା ଲିହିଲେ ॥
କାଲି ଏଠି ବୁଡ଼ୀ ରାଧାଗୁଡ଼ି ନ ଦେବ କାନନେ ।
କୃଷ୍ଣ ମଦନ ଆରତେ ଯିବେ ଆମ୍ଭର ମିଳନେ ॥
ଏମନ୍ତେଣ ନିଶା ଅବସାନେ ଜଟିଳା ଉଠିଲା ।
ପରିଜନ-ନିୟୋଗିଣ ପୁର ମଣ୍ଡି ସମାର୍ଜିଲା ॥
ଦେଖେ ବାଡ଼େ ମୃଗମଦେ ବର୍ଣ୍ଣାବଳୀ ଅଛି ଲେଖା ।
ପଡ଼ି ପ୍ରଜ୍ଜ୍ୱଳିତ ବୁଡ଼ୀ ଘୃତେ ଯେହ୍ନେ ଅଗ୍ନିଶିଖା ॥
ବଗୁରାଇ ମୁଖରାକୁ ପଠାଇବ ଘେନ ଆସି ।
ସେହୁ ନାତୁଣୀ ଗୁଣକୁ କହୁଥାନ୍ତି ପରଶଂସି ॥
ଏତେ ପାଞ୍ଚିଣ ମୁଖରା ପୁରେ ବେଗେ ଯାଇ ହୁଏ ।
ବୋଲେ ଯିବା ଆମ୍ଭ ପୁରଯାଏ ଉପାଧି କଥାଏ ॥
ନାନାମତେ ମୁଖରାକୁ କହି ସେହୁ ସଙ୍ଗେ ଘେନି ।
ଏମନ୍ତେଣ ଆସି ପଢ଼ିଲେ ତାଂ ରାଧିକାସଜନୀ ॥
ବଧୂ ତବ ବିଧୁର ସେ ସଦା ଗମନ କାନନେ ।
ଅଭିମନ୍ୟେ ନବ ରମ୍ୟ ନଗଛନ୍ତୁ ବୃନ୍ଦାବନେ ॥
ଶୈବ୍ୟା କାଲି ଆସି ଲେଖିଗଲା ବଗୁରି ଜାଣିଲେ ।
ପଢ଼ି କୋପେଣ ଜଟିଳା ମୁଖରାଙ୍କୁ ଆଣି ଗଲେ ॥
ସେହୁ ଆସିଣ ପଢ଼ିଲେ କଥା ବଞ୍ଚାଇ ନୋହିବ ।
ଯେବେ ଲଭାଇଣ ଦେବ ସବୁ ସତ ହିଁ ହୋଇବ ॥
ତୁମ୍ଭ ବଧୂ କୃଷ୍ଣ ସଙ୍ଗେ ରାସରଙ୍ଗେ ସଦା ବନେ ।
ଅଭିମନ୍ୟେ କହି ନବାରି ନ ଯାଉ ବୃନ୍ଦାବନେ ॥
ଜଟିଳାର ଆଗମନେ ଭୟେ ଅନ୍ତର ହୋଇଲେ ।
ଏମନ୍ତେଣ ମୁଖରାକୁ ଘେନି ଜଟିଳା ଅଇଲେ ॥
ବାଡ଼େ ଦେଖାଇ ଅଙ୍ଗୁଳି ବୋଲେ ପଢ଼ସି ଗୋସାଇଁ ।
ଗୋପନଗର ସାଗରେ ମୋତେ ଦେଉଛ ଭସାଇ ॥

ନାନ୍ଦୀମୁଖୀ ବିନ୍ଦୁମତୀ ଏହି ସମୟେ ମିଳିଲେ ।
ପଦ୍ୟାବଳୀ ପଢ଼ି ମୁଖରା ଏ ସତ୍ୟ ଯେ ବୋଲିଲେ ॥
ବଧୂତବ ବଧୂରାସେ ସଦା ଗମନ କାନନେ ।
ଅଭିମନ୍ୟୁ ନିବାରନ୍ତୁ ନଗଚ୍ଛନ୍ତୁ ବୃନ୍ଦାବନେ ॥
ବଧୂ ତୁମ୍ଭ ବଧୂର ଆସେ ସଦନେ ସଦାନନେ ।
ଅଭିମନ୍ୟୁ କହି ଗୋଧନ ରଖନ୍ତୁ ଅନ୍ୟ ବନେ ॥
ନାନ୍ଦୀମୁଖୀ ବିନ୍ଦୁମତୀ ପଢ଼ି ଏହି ଅର୍ଥ କହେ ।
ଶୁଣି ଜଟିଳା ଚକିତ ହୋଇ ବର୍ଣ୍ଣାବଳୀ ଚାହେଁ ॥
ଲିଭା ନାହିଁ ଲେଖା ନାହିଁ ସେହି ସ୍ୱବେତ ଅଛଇ ।
କିସ ପଢ଼ି ଗୁଣି ଦୋଷ ଧରି ନ ଜାଣି ବାଛଇ ॥
ଲଜ ଭୟ ପାଇ ସେ ଜଟିଳା ପୁତ୍ରକୁ ଡକିଲା ।
ବାବୁ ପଢ଼ ଏହା ଆମ୍ଭ ହାତେ ଧର୍ମ ଲେଖିଗଲା ॥
ଆଜ ବୃନ୍ଦାବନେ ନ ଯିବୁ ତୁ ମୋର ଦେହ ଛୁଇଁ ।
ବଧୂ ବଧୂର ସଙ୍ଗିରେ ଦୂରକର ଗୋଷ୍ଠ ନଅ ॥
ପୁନଃ ଛଆଣି ଜଟିଳା ଗଲା ଗୋମୟ ଯତନେ ।
ନାନ୍ଦୀମୁଖୀ ବିନ୍ଦୁମତୀ ମିଳେ ରାଧିକା ସଦନେ ॥
ବାଢ଼ ବର୍ଣ୍ଣାବଳୀ ପଦ ଅର୍ଥ କହିଲେ ମଣାଇ ।
ବୃନ୍ଦାବନେ ଅଭିମନ୍ୟୁ ଆଜ ନ ଯିବେ ଜଣାଇ ॥
ଶୁଣି ବାହାରେ ବିରସ ଅନ୍ତ ଆନନ୍ଦ ବଢ଼ିଲା ।
କୃଷ୍ଣ ସଙ୍ଗ ସୁଖ ବିଚ୍ଛେଦର ପ୍ରମାଦ ଛାଡ଼ିଲା ॥
ଶଙ୍କ ସମୀଧାନ କରିଣ ମୁଖରା ଗଲେ ପୁରେ ।
ରାଧାକୃଷ୍ଣ ପ୍ରୀତି ଦିନୁଦିନ ବଢ଼େ ଏ ପ୍ରକାରେ ॥
ସେହି ବେନଜନ ପଦଅରବିନ୍ଦ ମକରନ୍ଦେ ।
ଦାଶରଥି ଦାସ ମାନସ ମଧୁର ସଦାନନ୍ଦେ ॥
ଶ୍ରୀଗୁରୁ କଣୁଦାସ ଗୋସାଇଁ ଚରଣ ପ୍ରସାଦୁଁ ।
ଏହୁ ପ୍ରେମଲତା ବିସ୍ତାର ହରି ହୃଦୟକନ୍ଦୁ ॥

ଦୟାକରି ମୋତେ କଣ୍ଠରନ୍ଧ୍ର ହୃଦୟ ସ୍ଥଳରେ ।
କୃଷ୍ଣନାମ ବୀଜ ରୋପି ଯତ୍ନେ କରୁଣା ଜଳରେ ॥
ସାଧୁଜନ ଶ୍ରୀଚରଣେ ଅବଲମ୍ବନ କରଇ ।
ବ୍ରଜବିହାର ଚରିତ ପ୍ରେମଲତା ଅଙ୍କୁରଇ ॥
ଶ୍ରଦ୍ଧା ବଳେ ସୁବାସନା ଫୁଲେ ଭକ୍ତିଫଳ ଫଳେ ।
ହରି ଯାହାକୁ କରୁଣା ତାକୁ ଏହି ଫଳ ମିଳେ ॥
ସେହି ଜନ ସେ ଜାଣଇ ଏହି ଫଳ ରସାସ୍ୱାଦ ।
ବ୍ରଜେ ରାଧାକୃଷ୍ଣ ଉପାସନେ ଯେ ଜନ ପ୍ରମୋଦ ॥
ଅନ୍ୟ ଉପାସକ ଜନେ ଏ ଆସ୍ୱାଦକୁ ନ ଜାଣି ।
ଓଷ୍ଟ ଦାରାକ୍ଷ ଭକ୍ଷିଲେ କଣ୍ଟାଫଳ ବୋଲି ମାନି ॥
କ୍ଷୁଦ୍ର ମକ୍ଷା ଜନ ମାତ୍ରୁ ପ୍ରାପ୍ତ ସୁଗନ୍ଧ ତେଜଇ ।
ପୂର୍ବ ଦୁର୍ବାସନା ବଳେ ଯାଇ ଦୁର୍ଗନ୍ଧେ ମଜ୍ଜଇ ॥
ଏଣୁକରି ସାଧୁଜନେ ଏଥି ଯତନ କରିବା ।
ଏହୁ ରସ ଯେହୁ ଜାଣଇ ତାହାକୁ ପଚାରିବା ॥
ପାଦେ ପଡ଼ିଣ ମାଗୁଅଛୁ ମୋର ଘେନ ନିବେଦନ ।
ଏହି ଗ୍ରନ୍ଥକୁ ନ ଦେବ ସଖୀ ଭାବହିନ ଆନ ॥
ରତ୍ନ କମ ଗୁଣୀ ରତ୍ନ କମ କଷିଲେ ଜାଣଇ ।
ଲୌହକାର ତାର ଶ୍ରମ ଗୁଣ କିଛି ନଜାଣଇ ॥
ସେହି ରୂପେ ସର୍ବ ଶାସ୍ତ୍ର ଏହି ବ୍ରଜଲୀଳା ସାର ।
ଅନ୍ୟ ପୁରାଣେ କାବ୍ୟ ନାଟକେ ନୁହଇ ଗୋଚର ॥
ସଖୀ ରସେ ଯେ ରସିକ ସେହୁ ଏରସେ ବଞ୍ଚଇ ।
ସେହୁ ଅମୃତ ଭୁଞ୍ଜଇ ସେହୁ ସକଳ ତେଜଇ ॥
କୃଷ୍ଣ ଚରଣଯୁଗେ ଶତଶରଣ ଦାଶରଥି ଦାସ ।
ଏହୁ ରସ ଆଖ୍ୟାନରେ ନ ରୁଚଇ ଆନ ରସ ॥

ଷଷ୍ଠ ବୋଲି ସମ୍ପୂର୍ଣ୍ଣ ।



## ସପ୍ତମବୋଲି

। ଗୋପକେଳି ଦ୍ୱିତୀୟ ବୋଲି ବାଣୀରେ ଗାଇବ ।

ନନ୍ଦନନ୍ଦନ ଜଗଦ୍‌ବନ୍ଦନ ଶ୍ରୀଗୋପୀଜନ-ବଲ୍ଲଭ ।
ଦୁଃଖ ଛେଦନ ସୁଖସଦନ ସକଳଲୋକ ଦୁର୍ଲ୍ଲଭ ॥
ଉଜ୍ଜ୍ୱଳ ନୀଳମଣି ମଞ୍ଜୁଳ ମୃଦୁଳ ତନୁ ସୁନ୍ଦର ।
ଯୁବତୀ କୁଳଧୀର ସାଗର ମନ୍ଥନେ କି ଏ ମନ୍ଦର ॥
ରୂପେ ଉପମ କୋଟିଏ କାମ କମନୀୟ ବିଶେଷତଃ ।
ସର୍ବ ଲକ୍ଷଣ ସୁବିଚକ୍ଷଣ ଶ୍ରୀଚରଣେ ନିଷେବିତ ॥
ବ୍ରଜଈଶ୍ୱର ବପୁଃ କିଶୋର ବିସ୍ମର ନ ଯାଇ ମନୁ ।
ମୂର୍ତ୍ତିମଧୁର ଗୁଣ ଗମ୍ଭୀର ଗୋକୁଳସୁନ୍ଦର କାହ୍ନୁ ॥
ସଜଳ ଜଳଧର ଶ୍ୟାମଳ କଳେବର ମନୋରମ ।
ମିଷମନ୍ତ୍ରେ ଲୀଳା ବିଦିତେ ଜୀବନଦ ପୂର୍ଣ୍ଣତମ ॥
ଅଙ୍ଗ ଭୂଷଣ ଖଚରଗଣ ଶ୍ୟାମଘନ ଭାବେ ସେବ ।
ଶିଖେ ଶିଖଣ୍ଡ ଶକ୍ରକୋଦଣ୍ଡ ବିରାଜିତ ବନଭୂବ ॥
କଟିରେ ପୀତବାସ ଶୋଭିତ ତଡ଼ିତ ହାସପ୍ରସାଦର ।
ବେଣୁ ସୁସ୍ୱର ନାଦ ଗମ୍ଭୀର ବଜ୍ରସ୍ୱନ ନେନଶର ॥
ଅବଳାବଳୀ ଦର୍ପକୁ ଦଳି ହୃଦୟ ମେଦିନୀ କଟି ।
ଭକତଲୋକ ତୃଷାତୁରକ କରେ ପ୍ରେମରସ ବୃଷ୍ଟି ॥
ମୁକ୍ତାହାର କି ବନମାଳ ହସ୍ତୀଶୁଣ୍ଢ ହସ୍ତଦଣ୍ଡ ।
ଗୋପୀକା ପୟୋଧର ଆଶ୍ରୟ ନାସୀତାପ ଭୟଖଣ୍ଡ ॥
ଲାବଣ୍ୟାମୃତଧାରାମ୍ବୁଶନ ଲିଭେ କାମ ଦାବାନଳ ।
କାମିନୀକୁଳ ବନଶୀତଳ ମନ କଦମ୍ବ ପ୍ରଫୁଲ୍ଲ ॥
ଅଙ୍ଗ ଅବନୀ ପୁଳକେ ଧନୀ ସାତ୍ତ୍ୱିକ ସ୍ୱେଦବର୍ଦ୍ଧନ ।
ଲୋଚନ ନଦୀ ବହଇ ଭେଦି ଆନନ୍ଦସିନ୍ଧୁ ବର୍ଦ୍ଧନ ॥
ମାନ-ନିବୃତ୍ତ ରଜ ଦଳିତ ଦେଖି ପୀଡ଼ିତ କନ୍ଦର୍ପ ।
କୋକିଳବାଣୀ ଜାଡ଼ଯାଉଣି ଅନୁରାଗ ଇନ୍ଦ୍ରଗୋପ ॥
ସବୃକ ତ୍ରିକୀ ଭୂଜଙ୍କୁ ଦେଖି ଉନ୍ମତ୍ତ ନର୍ତ୍ତନ କରେ ।
ରସ ବରଷେ ଅଙ୍ଗ ପରଶେ କାମକୃଷି ସମ୍ପନ୍ନରେ ॥
ସୁମନେ ମୋଦ ଦୁର୍ମନେ ଖେଦ ଜଟିଳାଦିରେ ଦୁର୍ଦ୍ଦିନ ।
ଏ ବଳାହକ ସର୍ବବ୍ୟାପକ ବ୍ରଜମଣ୍ଡଳ ଆସ୍ଥାନ ॥
ଏ ମେଘ ଘରଂ ବୃନ୍ଦାବନର ଉଦେ ହୁଏ ପୂର୍ବଦିଗୁଁ ।
ଅନନ୍ତ ପଦ୍ମ ସୈନ୍ୟ ସୁହୃଦ ବୃଷ୍ଟି ରାଧା ଦିଗଭାଗୁଁ ॥

ପାଳକେଶ୍ୱର ମେଘକିଶୋର ମୂର୍ତ୍ତିବନ୍ତ ଅଭିରାମ ।
ଭକ୍ତବାସବେ ବଶସ୍ୱଭାବେ ଏ ମେଘ ଗୋବର୍ଦ୍ଧନନାମ ॥
ଗୋପାଳ ରୂପେ ପ୍ରକଟ ଗୋପେ ପୂର୍ଣ୍ଣବ୍ରହ୍ମ ଶ୍ୟାମଘନ ।
ଏ ରସେ ବଶ ନ ରହିଛି ଦାସ ଆନେ ନ ରମଇ ମନ ॥
ଅଙ୍ଗଭଙ୍ଗିମା ଶୋଭାଉପମା କହିବା ବୁଦ୍ଧି କାହାର ।
ସର୍ବ ଲାବଣ୍ୟ ଆଶ୍ରୟ ସ୍ଥାନ ଗୁଣ ନିଗମୁଁ ବାହାର ॥
ଜଗତ ହିତେ ଭକତପ୍ରୀତେ ନିଜଭାବେ ମୂର୍ତ୍ତିମନ୍ତ ।
ଏ ରୂପ ଦେଖି ନୟନ ଲାଖି ରହେ ଯେମନ ମତ୍ତଚିତ୍ତ ॥
ବଦନପଦ୍ମ ଲାବଣ୍ୟସଦ୍ମ ନେତ୍ରଅଳୀମତେ ଖେଳେ ।
ଭ୍ରୂଲତାରୂପ ଭୟେ କନ୍ଦର୍ପ ଅନସର ବୃଗଞ୍ଚଳେ ॥
କି ନୀଳୋତ୍ପଳ ନେତ୍ରଯୁଗଳ ସକଳ ସୁଖ ଆଶ୍ରିତେ ।
କାମିନୀ ମନେ କାମ ଜନମେ ଅବଲୋକନ କାଙ୍କ୍ଷିତେ ॥
ଶୁକନାସିକା ତିଳକଳିକା କମନୀୟ ମୋତି ଲୋଳେ ।
ଶ୍ୟାମଅନଳେ ସୁଧା କି ଢାଳେ ଉତ୍ତରଣ ଶ୍ରମକାଳେ ॥
ସୁହଞ୍ଚଳଳେ ଗୋରୋଚନାରେ ତିଳକ ଅଖଣ୍ଡରେଖା ।
ନୟନପକ୍ଷୀ ଦେଖିଲେ ଲାଖି ଅନଙ୍ଗ ଅଠାଖଡ଼ିକା ॥
ଅଳକାବଳି ଜାଲରେ ପଡ଼ି କାମ କବୁତରେ ବନ୍ଧ ।
ଅର୍ଦ୍ଧଚନ୍ଦ୍ରମା ଭାଲଉପମା ତେଣୁ ବଳେ କାମବୃଦ୍ଧି ॥
କପୋଳମୂଳ ଗଣ୍ଡଯୁଗଳ ନିର୍ମଳ ମୁକୁରା ଆଭା ।
ହେମରଚିତ ମକରାନନ କୁଣ୍ଡଳ ଶ୍ରବଣେ ଶୋଭା ॥
ଅନଙ୍ଗଯାନେ କେତନ କି କେତୁ, ଚଞ୍ଚଳ ଅଛି ଶୋଭିତେ ।
ଅବଲୋକରେ ଶମ୍ଭୁଯୁଗଳେ ଦଣ୍ଡଦିଅ ମୋର ହିତେ ॥
ଲାବଣ୍ୟଜଳେ ଗଣ୍ଡରେଖାଲେ ଦେଖି ପ୍ରୀତିସ୍ରଷ୍ଟା କମ୍ପେ ।
ଭ୍ରୂକୁଟିମାନ ଅପାଙ୍ଗବାଣ ହେଉ କି ଅନଙ୍ଗ ଝାମ୍ପେ ॥
ଅରୁଣାଧର ପ୍ରେମନିଧିର ବାଞ୍ଛିତ ଦୁଃଖ ଖଣ୍ଡନ ।
ମଧୁରହାସ ପିୟୂଷରସ ଗୋପିକା ତୃଷ୍ଣାମଣ୍ଡନ ॥
ଦଶନପଙ୍କ୍ତି ସିନ୍ଦୂରେ ମୋତି ଦାଡ଼ିମ୍ବ ବୀଜକୁ ଜିଣି ।
ରତିସଙ୍ଗ୍ରାମେ ଯେ ଅତିକ୍ରମ ସେନାଗ୍ରେ ସେମୁଦ୍ରା ଯେମ ।
ବଚନଧୀର ମେଘଗମ୍ଭୀର ମୃଦୁଳ ମଧୁର ଧ୍ୱନି ।
ଶୁଭିଲେ ବେଣୁ ଦ୍ରବାଇ ତେଣୁ ଯେଣୁ ବାଣୀ ହୃଦେ ଯେନି ॥

ମଳୟଗିରି ଆଶ୍ରୟକରି ଏ ବନ ସୁରଭି ଚନ୍ଦନ ।
ଅଧରେଲାଗି ବେଣୁସୁସ୍ୱର ତେଣୁ ଜଗତ୍‌ ବନ୍ଦନ ॥
ସେ ଅଭିମାନେ ମଧୁର ସ୍ୱନେ ଉଚ୍ଚାଟ ସକଳ କରେ ।
ମଳୟବାତ ହେଲା ନନ୍ଦନ୍ତ ମଦନ ବିରହ ଭରେ ॥
ଶୁଚି ଚିବୁକ ସୁଖଦାୟକ ନିର୍ମଳ ମୁଖମଣ୍ଡଳ ।
ବନ୍ଧୁ ଗୁହାଣି ସ୍ନିଗ୍ଧ ଚିକଣାହାଣି ବେଢ଼ି କର୍ଣ୍ଣକୁଣ୍ଡଳ ॥
କୃଷ୍ଣ ଭ୍ରମର ଜିଣି ଚିକୁର କାମଭର ତାଙ୍କ ଜଣା ।
ମଲ୍ଲୀ ମାଳତୀ ଯାତି କେଶରୀ କେତକୀପାଖୁଡ଼ା ବେଢ଼ା ॥
ଶିଖିଶାଖାବଳ ଆଗକୁ ଢଳ ମୟୂରଚନ୍ଦ୍ରିକା ଚୂଳ ।
ମଣିମୁକୁଟ କେୟାଛଡ଼ିକଟ ସକଳ ଚଟୁଳ ତଳ ॥
କମ୍ବୁକଣ୍ଠର ହେମମେଢ଼ର ଶିଳ ହେବତର ଖଞ୍ଜଣୀ ।
ମୁକୁତାହାର କୁସୁମମାଳ ଲମ୍ବେ ଜଙ୍ଘମୂଳ ମଣି ॥
ଶ୍ରୀବତ୍ସ ଚିହ୍ନ ହୃଦେ ଶୋଭନ ବାମପାଶେ ପୀତରେଖା ।
ପ୍ରିୟାକୁ ଦେହେ ସର୍ବଦା ବହେ ଘେନ ସ୍ୱର୍ଣ୍ଣ ରତ୍ନରେଖା ॥
ବସ୍ତ ରଞ୍ଜିଆ ଚନ୍ଦନଚୂଆ କର୍ପୂର କସ୍ତୁରୀ ଛିଟେ ।
ଆମୋଦତନୁ ଭୁଜ ଆଜାନୁ ମରକତ ସ୍ତମ୍ଭ କି କୁନ୍ଦେ ॥
ସୁରଙ୍ଗନବ କମଳପାଣି ମଣିଚାଖଣ୍ଡା କରଜ ।
କାମ ଦମନର ଉରଣମୂଳରେ ମାଣିକ ଖଣ୍ଡ ନାଗର ॥
ହେମକଙ୍କଣ ମୁଦିକାଗଣ କମନୀୟ ରତନରେ ।
ଗୋପିକା କୁଚ କଠିନ ଭିଡ଼ ମର୍ଦ୍ଦନକୁ ଯତନରେ ।
ମାଝେ ଶୋଭନ ପୀତବସନ ମେଖଳାକିଙ୍କିଣୀ ସାଜେ ।
ପ୍ରିୟାପଞ୍ଚମେ କାମସଙ୍ଗ୍ରାମେ ଶିବଡମ୍ବୁରୁ କି ବାଜେ ॥
ଉଲଟକୁମ୍ଭା ଚରଣଶୋଭା ନିଷ୍କଳଙ୍କ ନଖ ଜ୍ୟୋତି ଛନ୍ଦେ ।
ସୁନ୍ଦରପାଦ ନୂପୁରନାଦ ହାଟକେ ଶୋଭା ଆନନ୍ଦେ ॥
କଳ୍ପପାଦପ ହେମମଣ୍ଡପ ମଣିମୟ ସିଂହାସନ ।
ପ୍ରିୟାରସଙ୍ଗେ ବିହାରରଙ୍ଗେ ରୂପ ମଦନମୋହନ ॥
ବ୍ରହ୍ମାଶଙ୍କର ଶେଷଯୋଗୀଜନ ନ ହୁଅନ୍ତି ଯେଉଁ ରସ ।
ନରଲୀଳାରେ ବ୍ରଜବିହାରେ ଅନ୍ତରେ ଭାବି ପ୍ରକାଶ ॥
ସେ ରସ କାହିଁ ଜାଣିବ ମୁହିଁ ସାଧୁଙ୍କ ମୁଖାମୃତ ଶୁଣି ।
ଶରଧାକଲି ଅଶେଷବାଳି ସନ୍ଥଭଙ୍ଗ ଦୋଷ ଗଣି ॥
ବ୍ରଜବିହାର ବୋଲିମାନର ପଞ୍ଚମ ବେଳ ନନ୍ଦ ।
ପ୍ରଥମଭାଗ ଦାବାଗ୍ନି ନାଶ ଅସ୍ତ କଶାଙ୍କ ବଧ ॥
ଦ୍ୱିତୀୟବଧ ନାରଦଶାଣ୍ଡି ଗୋଠେ ଏଥିରେ ପଦ ।
ଏରୂପେ ବେଳ ଛନ୍ଦରେ ଭଣି ଷଷ୍ଠ ବେଳ ନନ୍ଦେ ॥

ଶୁଣ ସୁଜନେ ହେଳ ସୁମନେ ପ୍ରଥମ ଷଣ୍ଡ ପ୍ରକାଶ ।
ଶ୍ରୀବୃନ୍ଦାବନେ ଅଗ୍ନି ଦହନେ ନାଶ ହେଲା ସେଉଁ ରସ ॥
ରାଧାଗୋବିନ୍ଦ ଚିରବିଚ୍ଛେଦ ବନ୍ଧୁତ ଦୁଃଖେ ମିଳନ ।
ନରଲୀଳାରେ ସଣ ନ ଖେଳରେ ଉତ୍ସବ ଶ୍ରୀବୃନ୍ଦାବନ ॥
ଦେଖିସଂଯୋଗ ଜନ୍ମିଲା ଆଗେ ଚନ୍ଦ୍ରାବଳୀ ସଖୀ କହେ ।
ଭ୍ରମର ବନ୍ଧୁ ପରମସାଧୁ କୃଷ୍ଣ ନେଇ ବନେ ରହେ ॥
ଦେଖିବ ଯେବେ ଅନାଥା ତେବେ ବୋଲିଣ ପଥକଡ଼ାଇ ।
ଶୁଣିଣ ଲୋପ କହିଲା ଯାଏ ଖେଚର ପଛେ କଡ଼ାଇ ॥
ବନ ପଶନ୍ତେ ଦେଖି ଏରସ୍ତେ ଶାରିଶୁକ ଡାକ ହେଲେ ।
ବୃନ୍ଦା ଶୁଣିଲେ ବସୁ ସୁହେଲେ ଯୋଗମାୟା ଅଗ୍ନି କଲେ ॥
ସେ ନବନ ଆକୁଳ ମନ ଜନ୍ମିଲା ଭୟ ପଳାଇ ।
ଯୋଗମାୟାର ମୀରଭାବ ରଖିଲେ ବନ ଜଳାଇ ॥
ଏ ସମୟ ମୁନି ଏକ ବଚନ ଗୋକୁଳେ ନାରଦ ଋଷି ।
ବ୍ରହ୍ମାବରେନେ ଶ୍ରୀବୃନ୍ଦାବନେ କୁମାର ମିଳନେ ଆସି ॥
କୃଷ୍ଣମହିମା କହନ୍ତେ ବ୍ରହ୍ମା ମୁନିଗଣ ଲୁବ୍ଧ ଚିତ୍ତେ ।
ଦର୍ଶନ ଆରମ୍ଭ ଜ୍ଞାନୋପଦେଶ ଗୋକୁଳେ ମିଳେ ଗୁପତେ ॥
ଗୋବର୍ଦ୍ଧନଶିରେ ଭ୍ରମାଇ ମୁନି ଗୋପାଳପୁଅଙ୍କୁ ଗୃହେ ।
ହରିଙ୍ଗିତେ କପର୍ଦ୍ଦି ନନ୍ଦେ ଖେଳେ ରଙ୍ଗ ପଞ୍ଚଶାଇ ॥
ଦାନ ନିମନ୍ତେ ଆଡ଼ଜାଡ଼ରେ ବୃନ୍ଦାବନ ସାର ଗର୍ଭେ ।
ବହାର ହୋଇ ହଂସକୁ ବନ୍ଧ ବାହୁଡ଼ ସେ ଗର୍ଭେ ଲଭେ ॥
ଏ ପଞ୍ଚଶାଇ ଜ୍ଞାନବୁଝାଇ ଦେଖି ନ ଚେତିଲେ ମୁନି ।
ଗୋପାଳପୁଅ ଇତରପ୍ରାୟେ ମଣି ମହିମା ନ ଜାଣି ॥
ବାମାତା ତହିଁ ଶୁଣିଲେ ସହୁଁ ତହିଁ ସେ ହେଉଁ ପାଇଲେ ।
ନ ରହି ରହି ବ୍ରଜଜନାମୀ ସେହିନ ମୋହ ରହିଲେ ॥
ଗୋପକୁମାରୀ କୃଷ୍ଣକୁ ବରି ନାନ ଖେଳ ଆଦରେ ।
ନାନାବେଳହିଁ ଖେଳଇଥାଇ ଶଙ୍କତାହିଁ ବୋଲ ଯାରେ ॥
ହେମନ୍ତକାଳେ ନକ୍ରବ୍ରତରେ ଯମୁନା ଜଳେ ଗ୍ନ ବାଳୀ ।
ଦାମଡୋରୀଇଁ କଦମ୍ବ ନେଇ ବାନ୍ଧିଲେ ଶ୍ରୀବନମାଳୀ ॥
ଲଜ୍ଜା ତେଜିଲେ ସେ ଚନ୍ଦ୍ରମୁଖୀ ବିବସନେ କୃଷ୍ଣ ଆଗେ ।
କାତ୍ୟାୟନୀଙ୍କ ଆଜ୍ଞାକୁ ମନେ ବସନ୍ତ ବସନ ମାଗେ ॥
ନବଯୁବତୀ ମନ୍ତ୍ରଶୁଣିଲା ଜାଣି ନାଶ ଦେଉଥିଲା ।
ଶରଦାନନ୍ଦି ମନକୁ ଚାଷି ଦେବ ବନେ ରଞ୍ଜନ ॥
ଏମନ୍ତ ବେଳ ଛନ୍ଦନାଗର ବହାଇଲେ ପୂର୍ଣ୍ଣ ଆଶ ।
ନୃତ୍ୟରଙ୍ଗେ ବ୍ରଜବଧୂଙ୍କ ସାଥେ ନିତି ଦିବସ ॥

ଶିଶିର ଋତୁ ବିଚ୍ଛେଦ ହେତୁ ରାଧାଭୁବନ ଗମନେ ।
ଗୋକୁଳ ରାଜ୍ୟେ ନାନା ଉପାୟେ ରାଧିକାସଙ୍ଗ ମିଳନେ ॥
କାନନେ ମେଳା ବିବିଧ ଲୀଳା ମତ୍ତ ବଳେ ପରବାସେ ।
ତୀର୍ଥଯାତ୍ରାରେ ଯିବା ବିଷୟରେ ଅଚିନ୍ତା ବିହାରରସେ ॥
ଗୋପସଙ୍ଗରେ ସବୁ ବିଷୟରେ ଅମ୍ବିକା ବନକୁ ଯିବା ।
ଏ ଶିବରାତ୍ରି ଘୃତରେ ବତି ଜାଳି ଉଜାଗର ହେବା ॥
ଏମନ୍ତ ଭକ୍ତି ସେବନେ ଚିତ୍ତ ମନୋରଥ ପୂର୍ଣ୍ଣ କଲେ ।
ଗୋକୁଳ ନୃପ ଗିଳନ୍ତେ ସର୍ପ କୃଷ୍ଣ ପାଦ ପ୍ରହାରିଲେ ॥
ତେଜି ଉରଗତନୁକୁ ସ୍ୱର୍ଗ ନିଜଦେହ ଘେନିଗଲେ ।
ରାମ ଗୋବିନ୍ଦ ଗୋକୁଳ ବୃନ୍ଦ ନନ୍ଦ ଘେନି ବାହୁଡ଼ିଲେ ॥
ଏ ମୂଳସୂତ୍ର ବିସ୍ତାରେ ଶତ ବିଷୟର ରସ ଘେନିବା ।
ପ୍ରାକୃତ ବୋଲି ହେଳା ନକରି କୃଷ୍ଣ ମହିମା ଶୁଣିବା ॥
ଶ୍ରୀଭାଗବତ କ୍ଷୀର ପୂରିତ ମନ୍ଥି ଉଦ୍ଧରି ଲବଣୀ
ସାଧୁ ମୁଖରେ ଘରପାକରେ ସର୍ବସାର ଘୃତ ପୁଣି ॥
ସୁଜନ ଜନ ଦୋଷ ନଘେନ ଅଳପ ମୋହର ବୁଦ୍ଧି
ଭୃଙ୍ଗଙ୍କୁ ଧରି ସିନ୍ଧୁ ପହଁରି ଠୁଳ କରିଅଛୁ ନିଧି ॥
ଯେତେକ ପାରି ତେତେ ଉଦ୍ଧରି ସୁଖେଣ ଘେନ ବିଜସ
ଗୋବିନ୍ଦ ରସ ଶ୍ରଦ୍ଧାରେ ଘୋଷ ନଘେନ ଦାସର ଦୋଷ ॥
ନାରଦ ମୁନି ଚରଣେ ନମି ନଳ କୁବେର ପୁଚ୍ଛନ୍ତି
ପ୍ରଳମ୍ବା ନାଶି ଗୋକୁଳବାସୀ ନିର୍ଭୟ ହୋଇଅଛନ୍ତି ॥
ପଦ୍ମା ଶୈବ୍ୟାଦି ରାଧା ବିବଘା ବର୍ଣ୍ଣାବଳୀ ଗଲେ ଲିହ୍ୱି
ଜଟିଳା ପଡ଼ି ମଖର ଲୋଡ଼ି ଅନୁସ୍ୱାରେ ଆନ ହୋଇ
ବନେ ସେହିନୁ ସେ ଅଭିମନ୍ୟୁ ନଗଲେ ହୋଇଲି ହିତ
ଜାଣି ସେ ବାଳୀ କି ଅବା ଘଳିକଲେ.ଅବା କି କି କୃତ୍ୟ ॥
ଶରଧା ଚିତ୍ତେ ବିନୟ ମତେ କହ ବୋଲି ଯୋଡ଼ି କର
ସେ ମୁନିବର ଭାବତାହାର ଦେଖି ପ୍ରେମେ ଗର ଗର ॥
କହନ୍ତି ମୁନି ସରସେ ବାଣୀ ଶୁଣ କୁବେର ନନ୍ଦନ
ବହୁତ ମତେ ବିରୋଧ ଯେତେ କଲେ ଚନ୍ଦ୍ରାବଳୀଗଣ ॥
ପ୍ରବଳେ ନଦୀ ସାଗର ଭେଦି କୂଳଲଙ୍ଘି ବହୁଥାଇ
ଲତା ସୂତାରେ ବନ୍ଧ ବାନ୍ଧିଲେ ପ୍ରବାହ କି ତା ରହଇ ॥
ଗୋକୁଳ ଲୋକେ ଏକଆରକେ ଗୁପତରେ କୁହାକୁହି
ରାଧାମାଧବ ପୀରତିଭାବ ବିରୋଧ କେତେବେଳେ ନୋହି ॥
ସେ ଚନ୍ଦ୍ରାବଳୀ ସଜନୀମିଳି ବିରୋଧ ଯେତେହେଁ କଲେ
ଲାଜପାଇଲେ କାହିଁ ନୋହିଲେ ତାହାଙ୍କୁ ସେ ହିତ ହେଲେ ॥

ଦୁହିଁଙ୍କ ଦୁହେଁ ଅତି ଯେମନେହେଁ ନଥିଲା ନୋହିବ କାହିଁ
ଏ ଅନୁରାଗେ ଅବନୀସ୍ୱର୍ଗେ ଏମନ୍ତ ନଦେଖି କାହିଁ ॥
ଏମନ୍ତ ବୋଲି ସେ ଗୋପାଳୀ ସାତପାଞ୍ଚମେଳ କଥା
ଚନ୍ଦ୍ରାବଳୀର ସଖୀନିକର ଶୁଣିଲେ ଲଭନ୍ତି ବ୍ୟଥା ॥
ଏମନ୍ତ କେତେ ଦିନର ଅନ୍ତେ ବୈଶାଖ ଶୁକ୍ଳ ଦ୍ୱିତୀୟା
ରବି କୃତ୍ତିକା ଦିନେ ରାଧିକା ସ୍ନାନେ ତପନ ତନୟା ॥
କେଶ ସାଜେଇ ସୁବେଶ ହୋଇ ପ୍ରିୟ ସହଚରୀମେଳେ
କୃଷ୍ଣଉଦ୍ଦେଶି କାନନେ ପଶି କୁସୁମ ତୋଳିବା ଛଳେ ॥
ମାଧବ ରାଧା କୁଣ୍ଡେ ଶରଧା ଆରାଧନା ନିଯ କରେ
ଲୁଚିଣ ବସି ନେତ୍ର ନିବେଶି ରାଧା ଆସିବା ପଥରେ ॥
ଚିର ବିଚ୍ଛେଦେ ମରମଭେଦେ ମଦନ ବିଷମ ଶର
ଅତି ଆରତେ ମତ୍ତ ସୁରତେ ରାଧା ପ୍ରେମେ ଜରଜର ॥
ଏହି ସମୟେ ଯେମା ବିଜୟେ ଦେଖି ଉତ୍କଣ୍ଠା ବଢ଼େ
ଆଗେ ଓଗାଳି ବାହୁ ବିସ୍ତାରି ଆଲିଙ୍ଗନ କରି ଲୋଡ଼େ ॥
ଦେଖିଣ ରଙ୍ଗ ଘଞ୍ଜନି ରହି ସଖୀ ଆଗୁସାରି ହୁଏ
କରେ ସମାର୍ଜି କୃଷ୍ଣଙ୍କୁ ତର୍ଜି ବିହବାମେ ବାଳୀ କହେ ॥
ପଥ ଓଗାଳି ବଳେଣୁ ହରି ଲୋଡ଼ୁଛ କୁଳବଧୂଙ୍କି
ଅବଳାଗଣେ ବଳସ୍ତୁପଣେ ରାଜ ଙ୍କୁ ଭୟ ନାହିଁକି ॥
ରବି ପୂଜନେ ଆସନ୍ତି ବନେ ଶୁଣିମନ୍ତ ଯେମାନଦେଖି
କାହୁଁ ସେ ଆସି ମେଳରେ ପଶି କୋଳକରି ଲୋଡ଼ ଛୁଇଁ ॥
କେଥିଲ ଲୋଡ଼ ଆଣ୍ଡୁଆପଡ଼ ପଥକୁ ଆସିଛ, ଧାଇଁ
ଦେଖିଲେ ଲୋକ କହିବେ ଧିକ ତୁମ୍ଭଙ୍କୁ ତ ଲାଜ ନାହିଁ ॥
ଯାଅଯା ଘୁଞ୍ଚି ରହିଯା ଲଚି ସୂର୍ଯ୍ୟପୂଜା କରି ଆମ୍ଭେ
ବିଳମ୍ବେ କଲି କହିବେ ତଙ୍କା ମଣ୍ଡିଘ ନଣନ୍ଦ ଶାଶୁ ॥
ଜ୍ୱଳନ୍ତା ଅନଳକେ ଘୃତ ଢାଳିଲା ସେ ଯେମନ୍ତ ଅଧିକ ଜଳେ ।
ସଜନୀ ବାଣୀ ନାଗର ଶୁଣି ତେମନ ଉତ୍ସାହ ବଳ ॥
ବଡ଼ି ନଦୀ କି ରଖି ହୁଏକି କୂଳ ଲଙ୍ଘି ଯିବ ବୁଡ଼ି ।
କାମ ପ୍ରବଳେ କୃଷ୍ଣ ବିହ୍ୱଳେ ପ୍ରିୟେ ବୋଲି କୋଳ ଲୋଡ଼େ ॥
ରାଧିକା ତନୁ ସୁବାସ ଯେଣୁ ତେଣୁ ଆଘ୍ରାଣି ପ୍ରମତ୍ତ ।
ହେ ରତ୍ନାଦାୟେ ଦୁଅ ଶଦତ୍ୟେ ବାତର ଦାଣ୍ଡ କେ ଲାଗିତ ॥
କୃଷ୍ଣର ମନ ପ୍ରବଳ ଅତି ଦେଖି ଶ୍ରୀମତୀ ଘଞ୍ଚିଲେ ।
ନ କହି କିଛୁ କାନ୍ତକୁ ବଞ୍ଚି ଚମ୍ପକ ତଳେ ଲୁଚିଲେ
ଜାଣି ସଜନୀ ଛଦ୍ମନ ବାଣୀ କହି ଯେ-ଯାହାରେ ବଞ୍ଚେ ।
ମଦନେ ଅନ୍ଧହୋଇ ଗୋବିନ୍ଦ ପ୍ରିୟେ ପ୍ରିୟେ ବୋଲି ଉଚେ ॥

ଆପଣା ମତେ ହରିଙ୍କ ଶତେ ବୋଲନ୍ତି କି କର୍ମ କଲ ।
ନୃପଦୁଲାଳୀ ଅବୋଧ ବାଳୀ କଥା ଭାବ ନ ବୁଝିଲ ॥
ମଦନ ମୋଦେ ମତ୍ତ ପ୍ରମୋଦେ କୋଳ କରି ଲୋଡ଼ କଲେ ।
ବାମଲୋଚନା ହୋଇ ବିମନା ଭାବ ନପାଇଣ ଗଲେ ॥
ରସେ ରସାଇ ପ୍ରେମେ ଭସାଇ ମିଶାଇ ତନୁକୁ ତନୁ
ରସିକ ଗୁଣ ନଦେଖି ପୁଣ ରସବନ୍ତି ଦୁଃଖୀ ତେଣୁ ॥
ଏତେ ବିଚାରି ଚଞ୍ଚଳ ହରି ଅନୁସରି ଚଉଦିଗ ।
ଚରଣ ଚିହ୍ନ ଅନୁସନ୍ଧାନ କରନ୍ତି ଅବନୀ ଭାଗ ॥
ରାଧା ଚରଣ ଚିହ୍ନ ଲକ୍ଷଣ ଊନବିଂଶତି ଲକ୍ଷଣେ
ଧରଣୀ ବକ୍ଷ ପୁଲକ ହୋଇ ଗୋବିନ୍ଦ ଚିହ୍ନିତା ଜାଣେ ॥

( ଶ୍ଳୋକଃ )

ଛତ୍ରାରି ଧ୍ୱଜବଲ୍ଲି ପୁଷ୍ପ ବଲୟାନ୍ ପଦ୍ମୋର୍ଦ୍ଧ୍ୱରେଖାଙ୍କୁଶା
ନର୍ଦ୍ଧେନ୍ଦୁଂ ଚ ଯବଞ୍ଚ ବାମ ମନୁଯାଂ ଶକ୍ତିଂ ଗଦାଂ ସ୍ୟନ୍ଦନଂ;
ବେଦୀ କୁଣ୍ଡଳ ମତ୍ସ୍ୟ ପର୍ବତ ଦରଂ ଧତ୍ତେଽନୁ ସବ୍ୟଂ ପଦଂ
ତାଂ ରାଧାଂ ଚିର ମୂନବିଂଶତି ମହାଲକ୍ଷ୍ମାର୍ଚ୍ଚିତାଙ୍ଘ୍ରିଂ ଭଜେ ॥

ବାମେ ଛତ୍ରାରି ବଳୟ ଛତ୍ର ଚକ୍ର କୁସୁମ ବଲ୍ଲିକା
ଅଙ୍କୁଶ ଧ୍ୱଜ ନବ ଜଳଜ ଅର୍ଦ୍ଧଚନ୍ଦ୍ର ଊର୍ଦ୍ଧ୍ୱରେଖା ॥
ଦକ୍ଷିଣେ ରଥ ବେଦି ପର୍ବତ ଗଦା ଶକ୍ତି ବିରାଜିତ
ମନୁ ଯାବର ମତ୍ସ୍ୟ କୁଣ୍ଡଳ ନବ ଚିହ୍ନରେ ବିହିତ ॥
ଏ ନବ ଦଶ ଚିହ୍ନ ବିକାଶ ରାଧା ପାଦ ଅନୁସରି
କେତେକେ ଦୂରେ ତୃଣାଚ୍ଛନ୍ନରେ ନ ଦେଖି ବିସ୍ମୟ ହରି ॥
ମତ୍ତ ମୃଗାକ୍ଷୀ ମଧୁପ ବୃନ୍ଦ ଅନୁଗତ ଦେଖି ବେଗ
ଏମନ୍ତ ଦେଖି କମଳଆଖି ମନ୍ଦଗତି ଭୃଙ୍ଗ ସଙ୍ଗ ॥
ଗଉର ବର୍ଣ୍ଣ ଭୂମି କାନନ ଖଗ ମୃଗ ଆଦି ଦିଶେ
ଯେ ଦିଗେ ରାଧେ ଅଦ୍ଭୁତ ଦିବ୍ୟ ଅଙ୍ଗ ଜ୍ୟୋତି ପରକାଶେ ॥
ଚମ୍ପକ ଲତା ଲୋଭେ ଭ୍ରମନ୍ତା ହୋଇ ଭ୍ରମି ଅଳିକୁଳେ
ଦେଖିଣ ହରି ମନେ ବିଚାରି ନୃପକୁମାରୀ ଏ ମୂଳେ ॥
ଯେ ଚମ୍ପା ଦ୍ରୁମ ଅତି ଉପମ ନବ ପଲ୍ଲବ ନିଘନ
ଅବନୀ ମଣ୍ଡି ହୋଇଛି ଯୋଡ଼ି କୁସୁମିତେ ଶୋଭାବନ ॥
ମୂଳେ କୁଙ୍କୁମ ଅତି ଉପମ ନୃପ ଯୋଷା ଲଗି ବର୍ଣ୍ଣ
କାନ୍ତ ଅଷ୍ଟରଙ୍ଗ ବାମ ବିହ୍ୱଳ ଦେଖି ମଦନ ମନେ ହର୍ଷ ।
ଜାଣି ସେ ହରି ଠଣିକା ଧରି ଡାଳ ଆଡ଼ଆଇ ଦେଖି
କଣ୍ଠକ ଧରି ଆପଣେ ଓଟାରି ବୋଇଲେ ଏବେ ଲୁକ୍କି ରଖି ॥
ହସି ସୁକେଶୀ କାନ୍ତଙ୍କୁ ଚାହିଁ ତୁମ୍ଭେ ସେ ଦେଖନ୍ତି କାହିଁ
କୁଟିଳ ଭଙ୍ଗେ ବାଧା ମୋ ସଙ୍ଗେ ତୁମ୍ଭଙ୍କୁ ଦେଖାନ୍ତି କହି ॥

ଚମ୍ପକଗୋରୀ ଭୃଙ୍ଗ ବଇରି ସମସ୍ତ ପାଇଣ ଏଣୁ
ରୂପଗୁଣରେ ମିତ୍ରପଣରେ ତୁମ୍ଭଙ୍କୁ ଦେଖାନ୍ତି ତେଣୁ ॥
ବୋଲନ୍ତି ହରି ଶୁଣ ସୁନ୍ଦରୀ ତନୁରେ ପଦ୍ମ ସୁବାସ
ଦିଗ ଆଘ୍ରାଣେ ମଧୁପଗଣେ ଜାଣିଲୁଁ ତାଙ୍କ କି ଦୋଷ ॥
ସଖୀ ଗମନେ ପାଦସ୍ପର୍ଶନେ କମନୀୟ ଦିଶେ ମହୀ
ଯେଦିଗେ ଯାଉ ଯହିଁ ବା ଥାଉ ବିକାଶେ ଗଉର ଦେହୀ ॥
ଏ ବୃନ୍ଦାବନେ ମୋର ବଚନେ କାହିଁ ଲୁଚିଇବୁ ତନୁ
ଚନ୍ଦ୍ରମା ଯେହ୍ନେ ଶୁଭ୍ରଗଗନେ ନୁହେ ନବଘନ ତନୁ ॥
କାନ୍ତରବାଣୀ ତରୁଣୀ ଶୁଣି ଛଳ ସପତ୍ନୀ ଦୋଷେ
ଶୁଣ ନେତ୍ରକାନ୍ତ ସହିଁ ଯାଅଉ ଯାହାକହିଲେ ସେ ଦିଶେ ॥
ସକଳଚନ୍ଦ୍ର ତାରାଦିବୃନ୍ଦ ବାରୁଣୀ ଇଚ୍ଛି ଗମନ୍ତି
ନବନୀଡ଼ ଘନ ଶଶାଙ୍କେମନ ଚାମଣି ମିଶି ପୀରତି ॥
ଜୀମୂତକାନ୍ତା ତଡ଼ିତଲତା ଉପଗତ ଆଲିଙ୍ଗନେ
ସେ ଘନପତି ଚନ୍ଦ୍ରେ ପୀରତି କଲେ ନଦେନଇ ମନେ ॥
ଚନ୍ଦ୍ରମାପ୍ରଭା ମୁଦିରଶୋଭା ବିଦ୍ୟୁତରେ ଆଦରନାହିଁ
ପ୍ରେମେ ଭଜଇ ମାନେହଜାଇ ଉଭୟେ ଚଞ୍ଚଳବହି ॥
ରସିକଶୁଣି ବୋଲେ ମିତଣି କହିଲ ଦୃଶ୍ୟ ଆଶ୍ୱାସ
ଜଳଦେ ଶଶୀ କେହ୍ନେ ନମିଶି ମଧ୍ୟେ ଅନ୍ତର ଆକାଶ ॥
ବିଦ୍ୟୁ କରଣେ ଘନଶୋଭନେ ଆନନ୍ଦକରଣେ ବିବର୍ଣ୍ଣି
ନାୟିକାତନୁ ନାୟକତନୁ ବିରସେ ସରସସ୍ଥାନ ॥
ରୂପ ଦେଖାଇ ପ୍ରେମଚଖାଇ ଅନ୍ତଅନ୍ତର କ୍ଷଣକେ
ବିଦ୍ୟୁ ବିଚ୍ଛେଦ ନବ ଜଳଦ ବିରହେ ଅଷ୍ଟସାତ୍ତ୍ୱିକେ ॥
ବିପଥେଥିଲା ନବପଥେବାଲି ନିବିଡ଼ରେ ଧୂମ୍ରମେଘ
ସଜଳଦଙ୍ଗ ଜାଣି ରୋମାଞ୍ଚ ଘଡ଼ଘଡ଼ି ସ୍ୱରଭଙ୍ଗ
ବରଷାଧାରା କରକାମାଳା ଲୋତକ ସ୍ୱେଦଖସଇ
ଋଷ ବିହୀନ ଦିଶେ ବିବର୍ଣ୍ଣି କ୍ଷୀଣଲେଯୁ ନଦିଶଇ ॥
ଯୁବତୀ ହସ୍ତୀ ବାଡ଼ାନନ୍ଦିସ୍ତା ସ୍ୱଦସ୍ତା ଏତେକେ ନୁହେ
ମଦନାନଳେ ପ୍ରଳୟହୋଇଲେ ପ୍ରିୟକାନ୍ତ ବିକଳହେ ॥
ଶ୍ରୀନାଥାଙ୍ଗ ଦେହେ ପୀତବାସ ଯେତେବେଳେଯେ କ୍ଷୀଣଘନ ॥
ଯେ ଯାହାକାଳେ ସେ ତାହାପାଏ ଦେଖଘନେ ଚନ୍ଦ୍ରମ୍ଳାନ
ଏ ଶ୍ୟାମଘନ ଚନ୍ଦ୍ରଲାଞ୍ଛନ କଳଙ୍କରେ ଲଜବହି
ଛାଡ଼ିଗଲେତେ ଘନ ନ ଛୁଇଁ ଚନ୍ଦ୍ରଅଙ୍ଗେ ମିଶିରହି ॥
ଘନ ନଦେଖି ତଡ଼ିତ ଦୁଃଖୀ ଶୂନ୍ୟଭୁବନକୁ [illegible]
ତୁମ୍ଭବିନା ରେଖା ଉଦୟନେ ନିତ୍ୟଘନ ଶ୍ୟାମ ଭଜେ ॥

ରସେ ଦମ୍ପତି ପ୍ରୀତି ଉତ୍କଣ୍ଠି ପ୍ରେମପ୍ରଣୟରେ ଦ୍ରବେ
ବାନ୍ଧି ସାତ୍ତ୍ୱିକ ତନୁ ପୁଲକ ପ୍ରେମଅଶ୍ରୁ ସ୍ୱେଦସ୍ରବେ ॥
ସ୍ତନତଟହାର କମ୍ପିତଦେହ ଅଙ୍ଗେଅଙ୍ଗ ଅବଲମ୍ବ
ଉର ଉରଜେ ବଦନଭୁଜେ ବେନିଏକ କରେକାମ ॥
ଚନ୍ଦ୍ର ଚନ୍ଦନୁ ଶୀତଳତନୁ ଦେହ ବୁଦ୍ଧି ପାସୋରିଲେ
ମଦନକ୍ଷୋଭେ ଉଦ୍ଦୀପନେ ଚମ୍ପକ ଲୀଳାରତନେ ॥
ଲଲିତା ଆଦି ଲତା ଆଚ୍ଛାଦି ଶୁଣନ୍ତି ପ୍ରୀତି ବଚନ
ସୁଖ ସାଗରେ ଆନନ୍ଦଭରେ କଥାମୃତ ଆସ୍ୱାଦନ୍ତି ॥
ଏକକୁ ଆରେ ଅଙ୍ଗୁଳି ଠାରେ ଦେଖାଇ ଇଙ୍ଗିତେ ଭାଷେ
ସଖୀ ବେଶରେ ଦେଖ ଆମ୍ଭର ହରି କଣକରି ରସେ ॥
କୃଷ୍ଣଙ୍କ ବସ୍ତ୍ର ଭଲ ଗୋ ଲୁଚି ରହିଲେ ସଖୀ ଆମ୍ଭର
ଆରକ ଭଣି ହରିତା ଜାଣି ଆଣିଲେ ମଧ୍ୟ ବେଶର ॥
କେ ବୋଲେ ସେମା ଘନ ଚନ୍ଦ୍ରମା କେମନ୍ତ ଉପମା ଛନ୍ଦିଲ
କେ କହେ ହରି ବଚନେ ପୂରି ଭଲ ଛଳ ଉଦ୍ଧରିଲେ ॥
ଅଷ୍ଟ ସାତ୍ତ୍ୱିକ ଘନ ରୂପକ କେମନ୍ତେ କଲେ ମଣ୍ଡନ
ବୋଲେ ହେ ସଖି ହରି ଯା କହି ଶୁଣିଲ ଠିକ ଖଣ୍ଡନ ॥
ଚତୁରା ମଣି କାନ୍ତକୁ ଜଣି ପ୍ରୀତି ଉତ୍କଣ୍ଠି କି ଖଣ୍ଡି
ଛଳିଲେ ବାମେ ମିଳିଲେ ପ୍ରେମେ ଅଙ୍ଗେ ଅଙ୍ଗେ ରସ ଜଡ଼ି ॥
ବଚନ ରସେ ରସିକ ତୋଷେ ରମଣୀରେ ବଶ ହେଲେ
ଦେବାକୁ ଦ୍ରବ୍ୟ ଅଯୋଗ୍ୟ ସବୁ ଦେଖି ଭାବେ ଅଙ୍ଗ ଦେଲେ
ଚତୁରୀ ମଣି ଅମିୟ ବାଣୀ ବିଦଗଧ ରସେ ଭାଷେ
ପାଷାଣ ଶୁଣି ହୋଇବ ପାଣି ନାଗର କଏ ନ ରସେ ॥
ମଦନ ହେଲେ ଉଭୟ ଯୁଗଳେ କେମନ୍ତ ଶୋଭା ଦିଶନ୍ତି
ପ୍ରଥମେ ଅଷ୍ଟସଖୀ ଗଣେଷୁ ଉପମା ଛଳେ ଭାଷନ୍ତି ॥
ଲଳିତା କହି ଶୁଣ ଗୋ ସହି ମୋତେ ଏମନ୍ତ ଦିଶିଲେ
କରକା ଜଳ ମିଳି ଶଇଳ କି ଯୋଗେ ଦ୍ରବି ମିଶିଲେ ॥
ଏ ମହା ଯୋଗ ଜାଣେ ଅନଙ୍ଗ ଅନ୍ୱେଷଣ ଗୋଚର ନୁହେଁ
ଏ ବୃନ୍ଦାବନ ଦେଖି ସ୍ତମ୍ଭନ ସ୍ତମ୍ଭି ହୋଇ ରହେ ଦୁହେଁ ॥
ତେଣୁ ଲଳିତେ ମଳୟ ବାତେ ବନ ସନମାନ କରେ
ପୁଷ୍ପ ହରଷେ ମଧୁ ବରଷେ ମଙ୍ଗଳ କୋକିଳ ସ୍ୱରେ ॥
ବିଶାଖା ବୋଲେ ପ୍ରେମ ସାଗରେ କଳ୍ପତରୁ ବାଞ୍ଛା ଲତା
ରୂପେ ତମାଳ ହେମ ମଞ୍ଜୁଳ ନବଘେରି ମଣି ଶୋଭିତା ॥
କରି ବିଶାଖେ ଏକ ଆରକେ ଛନ୍ଦାଛନ୍ଦି ନନ୍ଦନରେ ॥
କରଜ ପୁଷ୍ପ ହାସ-ବିକାଶ ପୟୋଧର ଫଳ ଧରେ
ଏହାଙ୍କୁ ସେବି କାମନା ଲଭି କାମେ ପ୍ରଭବ ନୋହିବା
କଳ୍ପ ଲତିକା ହିଁ ନାୟିକା ରସାନୁଭବୀ ହୋଇବା
ବୋଲନ୍ତି ଚମ୍ପେ ଦେଖ ବିଚିତ୍ରେ ମଦନ କେଳି ନାଟକ
ଚିତ୍ର ପ୍ରତିମ ହରିତ ଶ୍ୟାମ ପ୍ରେମ ରସେ ବେନି ଏକ ॥
ଗତି ନୃତ୍ୟକ ରତି ନାଟକ ଚତୁଃଷଷ୍ଟି ବନ୍ଧ ଖଞ୍ଜି
କୁସୁମ ଶର ଭାବେ ଧ୍ରୁବର କରନ୍ତି ମନକୁ ରଞ୍ଜି ॥
ଆପଣେ ଗୃହୀ ହୋଇଲେ ମୋହି ଦେହ ହଜାଇଲେ ସେଣୁ
ସୂତ୍ର ଗୃଳକ ତନୁ ନାଟକ ପ୍ରତିମା ସ୍ତନଚ ତେଣୁ ॥
ଚମ୍ପକଲତା ଭାବେ ବିକତା କାମ ବିଶ୍ୱକର୍ମା ଗଢ଼ା
କାଞ୍ଚନ ପୁରି ମିଳା ମାନରି ନୀଳ ପ୍ରସ୍ତରେ ହେମ ବେଢ଼ା ॥
ଶୃଙ୍ଗାର ରସ କଳା ବିଶେଷ ପଢ଼ନ୍ତେ ମୁଦ୍ରଣ ଥାଏ
ଅନ୍ତରେ ରହି ସୁଖ ଲଭଇ କୋଷକାର କୀଟ ପ୍ରାୟେ ॥
ମକରାନନେ କୁଣ୍ଡଳ କର୍ଣ୍ଣେ ଚିହ୍ନ ଦେଖି କୁଚ ଶମ୍ଭୁ
ହୃଦୟ ଭେଦି କରେ କି ସନ୍ଧି ରତି ବନ୍ଧୁ ଶମ୍ଭୁ ଭାବୁଁ ॥
ସେ ରଙ୍ଗ ଦେବୀ ଉପମା ଭାବ ବୋଲନ୍ତି ଶୁଣ ସଜନୀ
ନବ ନୀରଦେ ବିଦ୍ୟୁ ଆଚ୍ଛାଦେ ନିଶ୍ଚଳ ପ୍ରକାଶୁ ହେନ ॥
ଲାବଣ୍ୟ ବାରି ବରଷା କରି ଲୋଚନ ଚାତକ ମୋଦ
ଏ ଘନ ଦେଖି ସକଳେ ସୁଖୀ ବନ ଭୂମି ସୁଖପ୍ରଦ ॥
ସୁଦେବୀ ଭାଷେ ଅତି ସରସେ କାଳିନ୍ଦୀରେ ଜମ୍ବୁ ନଦୀ
ଉଜାଣି ହେଲେ ରହିଲେ ଥକି ଏକ ଆରକକୁ ଭେଦି ॥
ଏକଇ ସଙ୍ଗେ କୂଳକୁ ଲଙ୍ଘେ ପ୍ରେମେ ପୂରି ଉଚ୍ଛୁଳିଲେ
ଖେଳନ୍ତା ମୀନ ନୟନ ମନ ଆନନ୍ଦ ଭାବେ ରହିଲେ ॥
ହେମ କମଳ ନୀଳ ଉତ୍ପଳ ବଦନ ମଣ୍ଡଳ ଶୋଭା
ବାହୁ ମୃଣାଳ ମୃଦୁ ମଞ୍ଜୁଳ କୋକନଦ କର ଆଭା ॥
ଉରଜ ଚକ୍ରବାକ ଆନନ୍ଦ କାଳିନ୍ଦୀରେ ବସା ସଞ୍ଚି
ରଜନୀ ଭ୍ରାନ୍ତି କମ୍ପି ଦମ୍ପତି ଶରଣ ପକ୍ଷୀ କି ଲୁଚେ ॥
ବୋଲନ୍ତି ତୁଙ୍ଗବିଦ୍ୟା ଏ ହେତୁ ଆନର ହୋଇବ କାହିଁ
ରସିକ ବନ୍ଧୁ ଧଇର୍ଯ୍ୟ ସିନ୍ଧୁ ଏକାକୀ ମନ୍ଥିଲେ ଯାହିଁ ॥
କୁଚମନ୍ଦର ମଧ୍ୟ ହୃଦର ଭୁଜ ଉରଗରାଜରେ
ରତ୍ନ ନିନ୍ଦନେ ଖଣ୍ଡୁଆ ବନ୍ଧନେ ନାନା ରତ୍ନ ଜାତ କରେ ॥
ଚୂଡ଼ି କଙ୍କଣ ମୁଦ୍ରିକା ରତ୍ନ ଦଶ ହାରପଦକ ମିଳି
ଅନୁରାଗରେ ବେଣୀ ହାରରେ ସରସ ମରସ କଳି ॥
କାମ ଗରଳ ତେଜ ପ୍ରବଳ ଶିବ ମାଳ ଅଙ୍ଗେ ଧରେ
କୃଷ୍ଣ ସମ୍ଭ୍ରମେ ପିୟୂଷ ପାନେ ଯୁବତୀରତ ଶ୍ରୀଧରେ ॥

ବୋଲନ୍ତି ଇନ୍ଦୁରେଖା ଏବିଧି ଏକ ଅଙ୍ଗ ଅର୍ଦ୍ଧେ ଅର୍ଦ୍ଧେ
ବେନି ଜନମେ ଭାଦ୍ରବାଷ୍ଟମେ ଶ୍ୟାମ ଗଉର ହିବିନ୍ଧ ॥
ଏ ପୌର୍ଣ୍ଣମାସୀ ବିଧାନେ ମିଶି ପୂର୍ଣ୍ଣତମ ବୃନ୍ଦାବନେ
ମହା ମୋଦରେ ଆହ୍ଲାଦରେ ତରୁ ଲତା ଜୀବଦାନେ ॥
ଶତା ଧନିଷ୍ଠା ବିଶାଖା ଜ୍ୟେଷ୍ଠା ଅନୁରାଧାଦିରେ ଶୋଭେ
ପ୍ରେମ ଅମୃତ ବେନି ପୂରିତ ଲୋଚନ ଚକୋର ପ୍ରାପ୍ୟେ ॥
ଏ ଅଷ୍ଟବାଣୀ ଧନିଷ୍ଠାଶୁଣି ବୋଇଲେ ଏ ବନ ମଙ୍ଗଳ
ସ୍ୱଗୃହେ ଆସି ଭୋଗବିଳସୀ ରାଧାଙ୍କର ବନ୍ଧ ନିଷ୍ଫଳ ॥
ହେମାଦ୍ରି କୁଚେ ଏ ଘନଲୁଚେ ଦୃଷ୍ଟି ବୃଷ୍ଟି ତେଣୁ ନୋହି
କନ୍ଦର୍ପ ନୃପ ନାଶିବ ଦର୍ପ ଭଲେ ନ କହିବା କେହି ॥
ଏ ଉତପାତେ ଅଚନୁଭ୍ରାତେ ମହା ରକ୍ଷଣ ହେବ
ହାର ବସନ ମଧ୍ୟ ଚନ୍ଦନ ଅଙ୍ଗେ ଦେଶୁଁ ଜରିପିବ ॥
ପୀରତି ହୋଇ ସୁରତି ଦେଇ ସ୍ୱର ମଙ୍ଗଳ ପାଠକୁ
ତନୁ ସୁବର୍ଣ୍ଣ କରସି ଦାନ ମହାଗ୍ରହ ଅରିଷ୍ଟକୁ ॥
ବୋଲନ୍ତି ଜ୍ୟେଷ୍ଠା ଦେଖ ଏ ନିଷ୍ଠା କୃଷ୍ଣ ଗ୍ରହରାଜ କନ୍ୟେ
ଭୃଙ୍ଗ ପ୍ରଶସ୍ତ ବିହିତହସ୍ତେ ମୁଖ ଚନ୍ଦ୍ର ସୁଧା ପାନେ ॥
ନୟନ ମୀନେ ଶତ୍ରୁ ଚଳନେ ଶାନ୍ତ ଶୋଭା ଅମୃତରେ
ଯୋଗେ ଯୁଗଳ ଶୁଦ୍ଧ ସକଳ ଉତ୍ସାହ ଲୋକ ସ୍ତମ୍ଭରେ ॥
ମିଷ୍ଟ ସ୍ପୃହେ ଉତ୍ତରଭଦ୍ର ଚତୁର୍ଦ୍ଦଶ ବିଲୋକିତ
ଅନୁରାଗରେ ବନ ଭାଗରେ ଉପରାଗରେ ବିହିତ ॥
କହନ୍ତି ବୃନ୍ଦା ପ୍ରେମପ୍ରସିଦ୍ଧା ଦେଖ ଏ ପ୍ରେମସାଗରେ
କାମ ସାଧବ ରାଧା ମାଧବ କୋଇଛି ସାଙ୍ଗୋପାଙ୍ଗରେ ॥
ନାନାରତନେ ମଣ୍ଡି ଯତନେ ରଖି କାମ କଳାନିଧି
ମଧୁର ରଙ୍ଗ ଲୀଳା ବିଶେଷ ଶେଷ ନପାଇ ଯ ବିଧି ॥
କୁଚ-କଳସ ଅମୂଲ୍ୟକୋଷ ସାତକୁମ୍ଭ ରସ ପୂର୍ଣ୍ଣେ
ସାତ୍ତ୍ୱିକ ବାତମେଲି ବୋଇତ କାମ ମାଳବ ବିଧାନେ ॥
ମହା ଲଙ୍ଗଳେ ଅବମାନରେ ନିଷ୍ଫଳ ଚଉପୁରେ
ଭୁଜ ରଜ୍ଜୁରେ ନିବନ୍ଧନରେ ବିଚ୍ଛେଦ ବାତ ଭୟରେ ॥
ବାଣିଜ୍ୟ ଭାବ ବହୁତଲଭ ମନ ଧନଦେଇ ଯେନ
ଅମୂଲ୍ୟଭାବ ସମନୋହ୍ୱବ ଦେବ ନିଜ ଯଉବନ ॥
ତୁଳସୀ ଭାଷି ଦିବସ ନିଶି ବେନିମିଶି ମୂର୍ତ୍ତି ଏକ
ତପନଶଶୀ ଗଗନବାସୀ ହାର କୁଣ୍ଡଳ ତାଟଙ୍କ
ଅରୁଣାଧର ସନ୍ଧ୍ୟା ଯୁଗଳ ଧ୍ୟାନ ମଧ୍ୟାହ୍ନ ନିଶୀଥ
ଅଷ୍ଟକାଳରେ ମିଳେ ଯୁଗଳେ ଅବିଶ୍ରାମ ମନମଥ ॥

ରଜନୀକର ଦିବାକୁ କୋଳ କ୍ଷପା ଦିବାକର କୋଳେ
ନୟନ ପଦ୍ମ ମନ କୁମୁଦ ମୋଦେ ରହେ ସଙ୍କୋଚରେ
ଏ ମହାଭାବ ପରମ ଲାଭ ସମ୍ଭୋଗ ସୁଖ ନରୁଚେ ॥
ନେତ୍ର ସମ୍ପଦ ପରମ ପଦ ଦେଖି ମୋଦମନେ ବଞ୍ଚେ ॥
ରୂପମଞ୍ଜରୀ କହେ ବିସ୍ତାରି ମହାମଙ୍ଗଳ ତିଳକ
କୁଙ୍କୁମ ମୃଗମଦ ବିହାଗ ବିଶାସରାଗ ବିଲୋକ
କେଉଁ ସିଙ୍ଗାରୀ ସୂଚନ୍ନ କରି ବିଚିତ୍ରଚିତ୍ର ଲେଖିଲା
ମୋଚନ ଦୁଃଖ ଲୋଚନସୁଖ ଧନ୍ୟତା ସେହୁ ଦେଖିଲା ॥
ରତିମଞ୍ଜରୀ ଭାବେ ବୃକ୍ଷରୀ ଯେମା ଉଚ୍ଚରେ ଶମ୍ଭୁରହେ
ନନ୍ଦନନ୍ଦନ ନବ ମଦନ ଦେଖିଣ କମ୍ପିତ ଭୟେ ॥
ଶରଣ ପଶି ଅଙ୍ଗରେ ମିଶି ନିଜ ଆଭରଣ ଯେନ
ଉମ୍ମତ୍ତ କନ୍ତି କଳ୍ପଟ ଟି ଅର୍ଦ୍ଧଚନ୍ଦ୍ର ଫଣୀବେଣୀ ॥
କାମରେ ତୋଷ ରତିରେ ବଶ ପ୍ରୀତି ଅଭେଦରେ ରହେ
ହୃଦୟେ ଲାଗି ଶୀତଳଭାଗୀ ମହାଜ୍ୱାଳା ନାଶ ହୁଏ ॥
ରସମଞ୍ଜରୀ କହେ ବିଗୁରି ମୁର୍ତ୍ତିମନ୍ତେ ରସକଳା
ଶ୍ରୀ ବୃନ୍ଦାବନେ ପରିଷଦେନେ ବିସ୍ତାରି ଶୃଙ୍ଗାରଲୀଳା ॥
ମଦନଦେବ ଅମୂଲ୍ୟଦ୍ରବ୍ୟ ବୋଳକ ରଖିଲେ ମୁଦ
ହୃଦୟ ତଟେ କୁଚ ସମ୍ପୁଟେ ଶ୍ୟାମରସ ଅନୁବାଦ ॥
ଏମନ୍ତେ ସଖୀ ମଞ୍ଜରୀ ଦେଖି ନାନା ଉପମାରେ ଛଳ
ଏକ ଆରକେ ମତ୍ତ ଉତ୍ସୁକେ ଆନନ୍ଦସିନ୍ଧୁ ଉଚ୍ଛୁଳ ॥
ଲତାର ମୂଳେ ସଲିଳ ଦେଲେ ପତ୍ର ପୁଷ୍ପ ଶୋଭାଯେହ୍ନେ
ରାଧା ମାଧବ ମିଳନଭାବ ସଜନୀ ହରଷ ତେହ୍ନେ ॥
ଯେ ରସେ ରହେ ସେହ୍ନରସେ ବୁଝେ ନବୁଝେ ଆନଉପାସୀ
ଏ ହରିଦାସ ମତ୍ତ ଲାଳସ ସଖୀ ଦାସୀ, ଦାସୀ, ଦାସୀ
ଏମନ୍ତେ ତହିଁ ନ ଦେଖାଇ ହୋଇ କୁନ୍ଦଲତା ତହିଁ ଭାଷେ
ମଦନ ରାଜା ନୋହୁଁ ପରଜା ଦଣ୍ଡ ଦେଉଛ କି ଦୋଷେ ॥
ବଳେ ଧରାଇ ଉଭାକରାଇ ସାରଣା କରୁଣ ଅଛ
ଉଗରାଅଳ କି କି ଯେ ବୋଲ ରାଣ ମଣ୍ଡଳୀ ଦେଉଛ ॥
ସ୍ତନକେ ଉଚ୍ଚ ଛିଲେ ନଚଳ ତାଙ୍କୁ କମ୍ପାଏକ୍ଷି ଧ୍ୱନ୍ତ
ରାଇଉରଜ ଶମ୍ଭୁକୁ ପୂଜ ପାଣିପଦ୍ମ ଦେଇନାଥ ॥
ଅନୁ ବରତେ ରାଧା ନେହାନ୍ତେ ଅନୁପରେ ଯେଉଁକାମ
ଧାବକହାନେ ନକରମନେ ଦଣ୍ଡଦେଇ କି ଯେ କ୍ଷମ ॥
ବାମ ଉକ୍ତି ଶ୍ରୁତି ଦମ୍ପତି ଦେହ ବୁଦ୍ଧିକ ପ୍ରଂସରେ
ସଖୀ ସମାଜେ ଲୌକିକ ଲାଜେ କୋଳତେଜି ଅପସରେ ॥

କୃଷ୍ଣର ଅଙ୍ଗେ କୁଙ୍କୁମସଙ୍ଗେ କୁଚସଙ୍ଗ ପ୍ରକାଶଇ
ପ୍ରେମ ସମୂହରେ ହୃଦପୁଟରେ ଚୂଡ଼ି ସଞ୍ଚାର ହସଇ ॥
ଯେ ଅଙ୍ଗରାଗ ଲାଗି ସୁଭଗ ବେନି ତନୁ ଶୋଭା ହସେ
ସଖୀ ହରେଷି ଦେଖିଣ ସୁଖୀ ନୟନମନ ସନ୍ତୋଷେ ॥
ଜାଣି ଶ୍ରୀମତୀ ସଙ୍କୋଚ ଭ୍ରାନ୍ତି ବାମ ଭାବ ଉପୁଜାଇ
ବାମ ଲୋଚନା କରେ ତର୍ଜନା ଉଗ୍ର ନାକର ଟେକଇ ॥
ବନରେ ଥାଇ ଗାଈ ଚରାଇ ବୋଲେ ଧର କୁଳସ୍ତ୍ରୀ ସ୍ୱୀ
ରାଜାକୁ ଡର ନାହିଁ ତୁମ୍ଭର ବଡ଼ା ଅର୍ଥାଦ ସହାଶ ॥
ନାହୁଆ ବେଶେ ଅଇଲ ପାଶେ ଛୁଇଁଲ ଏଡ଼େ ଭରସା
ଶାଶୁ ଜାଣିଲେ ହିବ କ ଭଲେ ଥିଲା ମତେ ଏତେ ଦଶା ॥
ତୁମ୍ଭଙ୍କୁ ଲୁଚି ଯାଆନ୍ତେ ବଞ୍ଚି ଯୋଗରେ ପଡ଼ିଲ ଭେଟ
ତୁମ୍ଭର ପୁଣ ସେ ଭଲପଣ ଜଣାଗଲା ଗୁଡ଼ ବାଟ ॥
ବୋଲନ୍ତି ହରି ଶୁଣ ସୁନ୍ଦରୀ ଦିଅ ଆମ୍ଭ ଘାଟ ଦାନ
ରାଜାଙ୍କୁ କେତେ ଡରାଅ ମୋତେ ପର, ମୋ ଠାକୁରୁ ଆନ
ଅଞ୍ଚଳ ଧରି ଘଞ୍ଚାଳ କରି ଦାନଦେ ଦାନଦେ ବୋଲ
ଏ ବୃନ୍ଦାବନେ ବଡ଼ିମା ପଣେ କାହିଁ ଯାଅ ଫୁଲ ତୋଳି ॥
ଲଳିତା ଧାଇଁ ବାସ ଛଡ଼ାଇ ବୋଲେ ଭଲ ହେଲା ଆଳ
ଅବୋଧ ନାରୀ ପଣନ୍ତ ଧରି କମ୍ପାଇ କରୁଛ ଗୋଳ ॥
ବଳିଷ୍ଠ ହୋଇ ଗରିଷ୍ଠ ନୋହି ଅବଳା ସଙ୍ଗରେ ଲାଗ
ଆଗ ଉଗାଳ ଜଞ୍ଜାଳ କରି ଭୁରୁଛୁ କି ଘାଟ ମାଗ ॥
ଧର୍ମକୁ ଆଜ ଜାଣିବ କାହିଁ ବନଚର ହୋଇ ବଞ୍ଚ
ରାଜାଙ୍କୁ ଖର ନକରି ଲାଞ୍ଚ ଦେବା ପଥ ଗୁଡ଼ ହଞ୍ଚ ॥
ଦେବତା ପୂଜା ସେ ବଳଭୋଜା ଦେବା ଏଥି କୁଞ୍ଜେ ଥାଅ
ଯୁବତୀ ଗଣେ ପୁରୁଷ ଜଣେ ଅପଖ୍ୟାତି ନ ହିଅଅ ॥
ଏମନ୍ତ ଭାଷି କୃଷ୍ଣଙ୍କୁ ତୋଷି ଶୁଭ୍ରକେଶୀ ଚଳିଗଲେ
କୃଷ୍ଣବିଳାସେ ମତ୍ତ ଉଲ୍ଲାସେ ବନେ ପଶି ଫୁଲ ତୋଳେ ॥
ରସିକ ମଣି ଚତୁରୀ ବାଣୀ ହେବ ସେହି କୁଞ୍ଜେ ରହି
କାମ ଚେଷ୍ଟାରେ ଉତ୍କଣ୍ଠାରେ ଧଇର୍ଯ୍ୟ ଧାରଣା ନୁହେ ॥
ଉହାଡ଼େ ବସି ନେତ୍ର ନବେଶି ରାଧା ଗମନ ପଥକୁ
କାହିଁ ନ ରସେ ସେହି ସେ ହସେ ବଢ଼ାଇ ମନୋରଥକୁ ॥
ପଲ୍ଲବ ପାଡ଼ି ଶେଜ ସଜାଡ଼ି କୁସୁମ ପାଖୁଡ଼ା ସିଞ୍ଚି
କାମନାଭରେ ଭାବନା କରେ ନାନା ଉପହାର ସଞ୍ଚି
ବିଶ୍ୱରେ ଚିତ୍ତେ ଉତ୍ସାହମତେ ନବ କୁଳବତୀ ବାଳା
ବଚନେ ବାନ୍ଧି ଗଲା ବା ଲୁଚି ଲୋକ ଲାଜେ ଭୟ କଲା ॥

ପରିରମ୍ଭଣ ସଜନୀଗଣ ଦେଖନ୍ତେଣ ଲାଜ ପାଇ
ପୁଣି କେମନ୍ତେ ଆସିବ ଏଥେ ବଗୁରକୁ ନ ଯୋଗାଇ ॥
ଧଇର୍ଯ୍ୟ ମନେ ଭରସା ଚିତ୍ତ ସତ୍ୟବାଦୀ ପୁଣ ସେହି
ଦେବତା ପୂଜ ଦେବାକୁ ଭୋଜୀ ଯାଇଛନ୍ତି ମୋତେ କହି ॥
ସଙ୍କେତେ ରଖି ଚତୁରୀ ସଖୀ ଫୁଲତୋଳ ଗଲେ ରଙ୍ଗେ
ପ୍ରିୟ ସଜନୀ ମେଳରେ ହେବ ମିଳିବେ ଏ ମୋର ସଙ୍ଗେ ॥
ପ୍ରାଣ ବାନ୍ଧବୀ ପ୍ରେମମଣେ ଦ୍ରବ ଆଲିଙ୍ଗନ ଯେବେ କରେ
ଧଇର୍ଯ୍ୟ ଧରି ରଖି ନପାରି ଚେତା ବୁଡ଼ କାମ-ଜଳେ ॥
ଏବେ ମିଳିଲେ ହିବ କି ହେଲେ ରସବତୀଶିରୋମଣି
ସୁରତିରଣେ କେ ହାରେ ଜିଣେ ଅଜ ବୁଝି ପରମାଣି ॥
ଚିନ୍ତି ମନରେ ଛନଛନରେ ଏମନ୍ତେ ଚିହ୍ନିଲେ ଭ୍ରମେ
ମଦନ ବଳେ ହରି ବିହ୍ୱଳେ ଢ଼ଳଢ଼ଳ ତନୁ ପ୍ରେମେ ॥
କଙ୍କଣ ଧ୍ୱନି ଯେ ହରେ ଶୁଣି ସେ ହରେ ନୟନ ଡେରି
ଅଇଲେ ଜାଣି ବାହାରି ପୁଣି ପଥ ଯାଇ ଅନୁସରି ॥
କେତେହେଁ ଦୂରେ ଯାଇ ବଗୁରରେ କୁଞ୍ଜେ ଆସିଥିବେ ପ୍ରିୟା
ଲେଉଟି ଆସି କୁଟିରେ ପଶି ନ ଦେଖି ଲାଗଇ ହିଆ ॥
ତନୁ ଚମକେ ଡର ଦମକେ ଅପ୍ରତେ ସଖୀ ବଚନେ
ନିକଟ ନଇଲେ ଭୁଲାଇ ଗଲେ ଚିନ୍ତି ଲୋତକ ନୟନେ ॥
ଅଧୈର୍ଯ୍ୟ କାହ୍ନୁ କୁସୁମ ଧନୁ ବଢଇ ତନକୁ ଯୋଖି
ରାଈ ଉଦ୍ଦେଶି କାନନେ ପଶି ପୁଚ୍ଛି ହରି ଶାରୀ ଦେଖି ॥
ଯୁବତୀଗଣେ ନାୟିକା ଜଣେ ଦେଖିଲ କି ଗଲା ଏଣେ
ଚିତ୍ତ ଚୋରାଇ ଘେନି ପଳାଇ କେଉଁ ମୁଁ ପାଇବ କେଣେ
ଶାରିକା ଭାଷି ହେ ବନବାସି ଚିତ୍ତ ଚୋର ତୁମେ ହରି
ତୁମ୍ଭର ତହୁଁ ଅଧିକ କେହୁ ଅବଳାକୁ ଦିଅ ଦୋଷ ॥
ସେ କୁଳବତୀ ତୁମ୍ଭଙ୍କୁ ପ୍ରୀତି ସମ୍ଭାଳି ମସ୍ତକେ ରଖି
ଦେଲାଇ ହୁଅ ଚୋରକ ହିଅ ତୁମ୍ଭ ଯୋଗୁଁ ସେହି ଦୁଃଖୀ ॥
ବୋଲଇ କୀର ଶ୍ୟାମ ମାଧବ ମୋତେ ଚୋର ସେ ବାଳୀ
ତୁମ୍ଭର ପ୍ରୀତି କଳି ଗାୟନ ଏ ବନେ କୁସୁମ ତୋଳି ॥
ଖଣ୍ଡେ ଏ ବାଟ ଗଲେଣ ଭେଟ ପାଇବ ଯୁବତୀବୃନ୍ଦ
ଶୁକର ବାଣୀ ସାନନ୍ଦ ଶୁଣି ତହୁଁ ବ୍ରଜ ଯୁ ଗୋବିନ୍ଦ ॥
ଏମନ୍ତ ରାଧା ବିଚ୍ଛେଦେ ବାଧା ବିହ୍ୱଳେ କୁସୁମ ତୋଳା
ମଦନାନଳେ ତନୁ ତରଳେ ନୁଆଁଇ ନ ପାରେ ଡାଳ ॥
ତୋଳିବା ମୁଠି ପଡ଼ଇ ଫିଟି ଫୁଲ ବୋଲା ପନ ତୋଳେ
ମନ ଚଞ୍ଚଳେ କର ନ ଚଳେ କଣ୍ଟକ ବିନ୍ଧିଲ ବୋଲେ ॥

ମଦନ ମଦେ ବିକାର ଯେତେ କହେ ସଖୀଙ୍କି ବଞ୍ଚାଇ ॥
ଅଳସ ହୋଇ ପ୍ରିଇଲି ହାରି ବୃନ୍ଦେ ସମ୍ଭାଳି ଲୁଗୃହ ॥
ବଲ୍ଲଭ ଯେଣେ ଗୃହିଁଇ ତେଣେ ଆହା ବୋଲି ଦୁଃଖ ମନେ
ଲୀଳା କମଳ କାହିଁ ମୋହର ଛାଡ଼ି ମୁଁ ଅଇଲି ବନେ ॥
ଏମନ୍ତ ବୋଲି ସେ ବନୁ ଚଳି ଗହନ ବନରେ ମିଳେ
ଏକ ଆରକେ ମତି ଉତ୍ସୁକେ କୁସୁମ ତୋଳିବା ଛଳେ ॥
ନୃପ ନନ୍ଦନା ଯତନେ ବଣା ଲତା ଅଭ୍ୟନ୍ତରେ ଗଲେ
ସଙ୍କେତ ସ୍ଥାନେ ମିଳି ଗୋପନେ କାନ୍ତ ନ ଦେଖି ଆକୁଳେ ॥
ଶ୍ରୀବନମାଳୀ ଏ ବନେ ମିଳି ଦେଖିଲେ ସଜନୀଗଣ
କୁସୁମ ତୋଳି ବନରେ ବୁଲି କେତାକରେ ଜଣ ଜଣ ॥
ରାଈ ନ ଦେଖି କମଳଆଖି ଖେଦ ଲଭି ଚିନ୍ତେ ମନେ
ମୋ ପ୍ରାଣ ସହି ମଦନେ ଦହି ଲୁଚିସେ ରହିଲେ ଏଣେ ॥
ନବ ତରୁଣୀ ଚତୁରୀମଣି ହୃଦୟ ନୋହିଲି ଜାଣି
ପ୍ରିୟସଖୀଙ୍କି ନ କହି ନିକି କେଣେ ଗଲେ ପ୍ରାଣଧନୀ ॥
ଏମନ୍ତ ଭାଳି ଶ୍ରୀବନମାଳୀ ସଜନୀଙ୍କି ମିଳି କହି
ତୁମ୍ଭେତ ଅନ୍ନ ଫଳ ତୋଳୁଛ ରାଇପୁଣି ଗଲେ କାହିଁ ॥
କୃଷ୍ଣର ବାଣୀ ଶୁଣି ତରୁଣୀ ରାଈଙ୍କି ନ ଦେଖି ପାଶେ
କୁସୁମ ତୋଳା ତେଜନ୍ତି ବାଳା ଲୋଡ଼ି ଏକ ଆରେ ହସେ ।
କେ ବୋଲେ ବଣା ନୃପ ଦୁଲଣା ଫୁଲ ତୋଳି କେଣେ ଗଲେ
କେ ବୋଲେ ମୁହିଁ ଥିଲି ଅନାଇଁ ଚମ୍ପକ ମୂଳରେ ଥିଲେ ॥
କେ ବୋଲେ ପୁରେ ଶାଶୁଙ୍କ ଡରେ ଗଲେ ଅବା ଏକା ହୋଇ
କେଉଁ ଶଙ୍କାଟି ଏଡ଼େ ଆକଟି ବୁଲେ ଆମ୍ଭଙ୍କୁ ନ କହି ॥
କେ ବୋଲେ ଥିଲେ ମାଧବୀ ତଳେ ଅଙ୍କରେ ଫଳ ତୋଳେ
ମୁଖରେ ଅସି କି କି ଲସ ଭାଷି ମେଲକରି ଅବା ଗଲେ ॥
କେ ବୋଲେ ଆଜ ପଙ୍କଜେ ସୂର୍ଯ୍ୟ ଆଦେଶେ ଜଟିଳା ଆସି
ବିଳମ୍ବ ଜାଣି ତରୁଣୀ ମଣି ଗଲେ ବା ଆମ୍ଭଙ୍କୁ ରୁଷି ।
କେ ବୋଲେ ଶତ ମୟୂର ନୃତ୍ୟ ଦେଖୁଥିବେ ଅବା କାହିଁ
ତମାଳ ଦ୍ରୁମ ଶୋଭା ଉପମା ଦେଉଥିବେ ଅବା ମୁହିଁ
କେ ବୋଲେ ଗାତ କରି ପବିତ୍ର ଯମୁନା ସ୍ନାନେ କି ଗଲେ
ଦେଖିବା କୃଷ୍ଣସାରକୁ ତୃଷ୍ଣ ହୋଇଣ କାହିଁ ରହିଲେ ॥
ଏମନ୍ତେ ସଖୀ ରାଈ ନ ଦେଖି ଦୁଃଖଭରେ ବିଚ୍ଛେଦରେ
ଗୋକୁଳ ବୀର ଶୁଣି କାତର ମନସିଜ ଆରତରେ ॥
ବିରହ ଭରେ ନିଃଶ୍ୱାସ ଖରେ ଦମ ଦମ ହୋଇ ଆରେ ଲୋଡ଼େ
ମଦନ ଦୁଃଖେ ବଦନ ସୁଖେ ବନେ ବନେ ପଶି ଲୋଡ଼େ ॥

ଏମନ୍ତେ କେତେ ଦୂରର ଅନ୍ତେ ଚନ୍ଦ୍ରାବଳୀ ଆଳୀ ଭେଟେ
ସଖୀ ବିରହେ ଛଳକୁ ବହେ କୃଷ୍ଣଙ୍କୁ ନେବା ଉଚ୍ଚାଟେ ॥
ଏକାନ୍ତେ ଦେଖି କମଳ ଆଖି ମିଶାଇଣ ଅଙ୍ଗେ କହେ
ଚନ୍ଦ୍ରବଦନୀ ମୋ ପ୍ରାଣଧନୀ ବିନ୍ କାମତନୁ ଦହେ ॥
ଜଗିଣ ବାଟ ନ ପାଇ ଭେଟ ଯେ ରେ ଦେଖିଲୁ ତୁମ୍ଭଙ୍କୁ
ସଖୀ କୁଶଳ କହ ସକଳ ଲୋଡ଼ୁ କି ଥାଅ ଆମକୁ ॥
ଏତେଡ଼କ ରୋଷ କେବଣ ଦୋଷ କରିଛୁଁ ଘେନିଛ ମନେ
ମୋହର ପାଇଁ ପାଶେ ଜଣାଇ ଘେନାଇ ନ ଗଲ ହନେ ॥
ପଦ୍ମା ଶୈବ୍ୟାହ ରସାନୁବାଦୀ ବୋଲନ୍ତି ହେ ବନମାଳୀ
ରାଧିକା ପ୍ରୀତି ସବୁ ସମ୍ପତ୍ତି କି କରିବେ ଚନ୍ଦ୍ରାବଳୀ
ଏହି ସମୟେ ପ୍ରବେଶ ହୁଏ ସୁବଳ ମଧୁମଙ୍ଗଳେ
ଦେଖି ଗୋବିନ୍ଦ ମନ ସାନନ୍ଦ ସୁବର୍ଣ୍ଣ ଭାଷନ୍ତି ଛଳେ ॥
ରସ ସମୁଦ୍ର ଯେ ପୂର୍ଣ୍ଣଚନ୍ଦ୍ର ଅମୃତମୟ ମୂରତି
ତାହାର ଛବି ଏ ବନଭୂମି ଶୋଭନ୍ତି ନେତ୍ର ସମ୍ପତ୍ତି ॥
ଯା ଆହ୍ଲାଦ ମୁରସମ୍ପଦ ଜଗତ ଆନନ୍ଦ କରେ
ରାଧାହି ତାର ଅଦୃଶ୍ୟ ପର ପାଶେ ବର୍ଣ୍ଣ ଅନୁସାରେ ॥
ଯା କଳି ଏକ ଧରି ମସ୍ତକ ହରିହରେ ଗର ଜ୍ୱାଳା
ଜଗ ଉଜ୍ଜ୍ୱଳା ରୂପେ ମଞ୍ଜୁଳା ବଧୂ ନୁହ ତାରେ ହେଲା ॥
ଯୋଗେ ବା ବାଟେ ପଡ଼ିଲେ ଭେଟେ ଷଣେ ସୁଧା ସମ୍ଭୋଗରେ
ରାଧାହି ତାରେ କି ଅନୁସାରେ ସଦା ସଙ୍ଗ ଅଯୋଗରେ ॥
ସୁବଳ ଭାଷି ରାହୁ ଗରାସି ପୂର୍ଣ୍ଣଶଶୀ ରସହୀଣ
ନିତି କି ନିତି ଶେଷାନୁମିତି କୃଷ୍ଣପକ୍ଷେ କଳାହୀନ ॥
ଭାନୁ ଯାହାରେ ଶରଣଧରେ ଦରଶନ ହସି ଲଜ୍ୟେ
ବିଶାଖା ଭୂଲେ ସେ ଭାନୁ ମିଳେ ରାଧା ଦରଶନ ପାଏ ॥
ଏ ଆହ୍ଲାଦ ଗ୍ରହ ଯେଣୁ ଆଗ୍ରହ ଏଣୁ ଭୋଗକରେ ମାସ
ଯେଣୁ ଏ ରାଧା ସକଳ ସୁଧା ଏଣୁ ଶ୍ୟାମ ରାହୁ ବଶ ॥
ସୁବଳ ବାଣୀ ମାନିନୀ ଶୁଣି ଗର୍ବ ଧ୍ୱଂସି ବିରସରେ
ପୁଛନ୍ତି ହରି ଶ୍ରୀଚନ୍ଦ୍ରାବଳୀ ଅଇଲେ କି ଅପସରେ ॥
ବୋଲନ୍ତି ବାଳୀ ହେ ବନମାଳୀ ଚନ୍ଦ୍ରାବଳୀ କ୍ଷୀଣ ଯେଣୁ
କି ବ୍ୟାଧି ଜାଣି ନ ପାରି ପୁଣି ତୁମ୍ଭରେ ଅଇଲୁ ବେଣୁ ॥
ନବମ ଦଶା ଥିଲା ଭରସା ଏଣିକି ନହେ ଦଶ ବୃଦ୍ଧି
ତୁମ୍ଭେତ ବୈଦ୍ୟ ଗୋପ ପ୍ରସିଦ୍ଧ ଦେଖିସେ କେବଣ ବ୍ୟାଧି ॥
ଏମନ୍ତ ଶୁଣି ଚତୁରମଣି ବୋଲନ୍ତି ସାଧ୍ୟ ସେ ବ୍ୟାଧି
ପ୍ରତିକାର ଜାଣି ଅଛଇ ପୁଣି ଦେଖି ଦେବା ମହୌଷଧି ॥

ଧଇର୍ଯ୍ୟହୁଅ ବେଗେଣ ଯାଅ କରାଅ ସଖୀପଥ୍ୟକୁ
ସଖୀଙ୍କୁ କହ୍ନ ଗାଣ ରଖାଇ ଯିବୁଁ ଗଉରୀ ତୀର୍ଥକୁ ॥
ଏମନ୍ତ ଭଣି ଧରଣ ପାଣି ଦକ୍ଷିଣ ନାୟକ ଗ୍ମଣ
ବନସୁ ହୋଇ ମେଲାଣି ଦେଇ ଚହ୍ନି ଚଳେ ତିନ ଜଣେ ॥
ରାଇ ଉଦ୍ଦେଶି ନେତ୍ର ନିବେଶି ସ୍ଥାନେ ସ୍ଥାନେ ଲୋଡ଼ି ଦେଖେ
କାହିଁ ନପାଇ ବିଷଣ୍ ହୋଇ ସଖୀଙ୍କୁ କହନ୍ତି ଦୁଃଖେ ॥
ମଲ୍ଲୀ ନିଧି ପାଇଣ ବାନ୍ଧ ଥିଲ କାହିଁ ଫିଟି ପଡ଼ି
ବିବେକ ହୀନେ ବିଯୋଗ ମନେ ପାଇବି କି ବନେ ଲୋଡ଼ି ॥
ଏତେକ ଭାଷି ମଣ୍ଡପେ ବସି ଲୋତକ ଖସିଣ ବହେ
ତନୁ ଦ୍ରବଇ ସ୍ୱେଦ ଖସଇ ବିବେକ ନରହେ ଦେହେ ॥
ମଣ୍ଡପେ-ବସି-ନୟନ ଖୋସି ରାଧା ରୂପ ପରିଧାନେ ॥
କୃଷ୍ଣ ଚରିତ ଦେଖି ସେ ମିତ ଦୁଃଖେ ଦୁଃଖୀ ବେନି ଜଣେ ॥
ସେହି ବିଶ୍ୱାସେ କୃଷ୍ଣ ଅବଶେ ଶୁଆଇ କମଳ ଶେଜେ
ସଜଳ ସିଞ୍ଚି ପଲ୍ଲବେ ବିଞ୍ଚି ଶୀତ ଉପଚାର କୁଞ୍ଜେ ॥
ତନୁ ତାପରେ ଅନୁଲେପନରେ ଅଧିକେ ତପତ ଘୋଟେ
ତାତିଲା ଘୃତେ ଜଳ ପଡ଼ନ୍ତେ ସେ ଯେହ୍ନେ ଜଳିଣ ଉଠେ ।
ରାଧା ବିଚ୍ଛେଦେ ମଦନ ମଦେ ସନ୍ତାପେ ପ୍ରଳାପ ଭାଷେ
ଆପେ ମୁଁ ହୁଡ଼ ଦେଇଛି ଘୁଡ଼ ଏବେ ଲୋଡ଼ିଲେ କି ଆସେ
ଆହା ହେ ସଖି ଚନ୍ଦ୍ରମାମୁଖି କେଣେ ଲୁଚି ଦେଇଗଲୁ
ଏ ରମ୍ୟ ବନେ ମଧୁ ଭଜନେ କାମମୁଖେ ମୋତେ ଦେଲୁ ।
ଆଶା ବଢ଼ାଇ ମନ ଗୋଡ଼ାଇ ସଙ୍ଗ ନଛାଡ଼ଇ ତୋର
ନରତେ ଭାବ ଏ ଦୁଃଖ ଲଭି କେଉଁ ଅପରାଧ ମୋର ।
କୁସୁମ ତୋଳି ଆସଇ ବୋଲି ଗଲୁ ସଖୀ କଣ୍ଟକର
କୁଞ୍ଜେ ରଖାଇ ଅଙ୍ଗ ଦେଖାଇ ନେତ୍ର ଭଙ୍ଗି ମାରେ ଠାର ।
ଏମନ୍ତେ ଶୁଣି ସେ ମିତ୍ର ବେନି କୃଷ୍ଣ ପ୍ରବୋଧକୁ ଭାଷି -
ସେ ନୃପତନୟା ବିବେକ ସୀମା କୁଞ୍ଜେ ରହି ଥିବେ ବସି ।
ସଶଙ୍କିତ ବନେ ଉଦ୍ଭ୍ରାନ୍ତ ମନେ ନରହି ଚଞ୍ଚଳ ଚିତ୍ତ
ପଥକୁ ଆସି ନେତ୍ର ନିବେଶି ଲୋଡ଼ୁଥିବେ ବନଗତେ ।
ସଙ୍ଗେ ସଜନୀ ନଥିବେ ଯେବେ ଏକାକିନୀ ହୋଇ ଭ୍ରମେ
ବିଚ୍ଛେଦ ଭୟେ ତୁମ୍ଭର ପ୍ରାଏ ବନେ ବନେ ପରିଭ୍ରମେ ।
ବିବେକଶୀଳ ନୃଦ ବିହ୍ୱଳ ବୋଲି କୃଷ୍ଣ ସେନି ଚଳେ
କୁଞ୍ଜ ବନେ ସଙ୍କେତ ସ୍ଥଳେ ବାଞ୍ଛା ଅନୁସରି ବୁଲେ ।
ଏମନ୍ତ ସଖୀ ଯେମା ନଦେଖି ସୂର୍ଯ୍ୟ ପୂଜାସ୍ଥଳେ ଚଳେ
ଲଳିତା ଆଦି ଅଷ୍ଟ ପ୍ରସିଦ୍ଧି ଯେମାଲୋଡ଼ି ସଙ୍ଗେ ମିଳେ ।

ବୋଲନ୍ତି ଭଲ ନବୀନ ବାଳା ନକହ୍ନ ସଙ୍ଗରୁ ଆସ
ଅମ୍ଭେ ଯେ ତେଣେ ଆକୁଳମନେ ନଦେଖି ତୁମ୍ଭଙ୍କୁ ପାଶ ।
ଯାହାକୁ ଲୋଡ଼ି ଏ ଦୁଃଖେ ପଡ଼ି ସେ ଯାଇ ଆମ୍ଭରେ ମିଳେ
ତୁମ୍ଭ ବିଚ୍ଛେଦେ ମଦନ ମଦେ ବନେ ବନେ ଲୋଡ଼ି ବୁଲେ ।
ଯାହାର ପାଇଁ ଏଡ଼େ ବିରହୀ ତାହାରେ କି କେବାମତା
ଲୋତକ ଢାଳେ ଲତାଙ୍କ ମୂଳେ ଲୋଡ଼ନ୍ତି ଏଡ଼େ ମମତା ।
ତୋର ବିମନ ଭାନ୍ତି ମଳିନ ଦେଖିଣ ନପାରୁ ସହି
ମଦନାନଳେ ତୋତନୁ ଜଳେ ଅମ୍ଭର ହୃଦୟ ଦହି ।
ଲତାର ମୂଳ ଯେବେ ଅନଳ ପଲ୍ଲବ ଅଗେ ମଉଳେ
ଆନନ୍ଦ ଜଳେ ମୂଳ ବୁଡ଼ିଲେ ପୁଣି ନବୀନ କଅଁଳେ ।
ଏମନ୍ତ ସେହୁ ତାଙ୍କୁ ନକହି ହୃଦୟେ ନିବେଦନା ରଖି
ଯେମନ୍ତ ହୋଇ ଆସୁ ନକହି ଜୀବନ ରହେକ ସଖୀ ।
ବିରସ ମନେ ଶାରସ ବନେ ନୁହସି ପ୍ରାଣ ସଜନୀ
ଲୋଡ଼ିଣ ହରି ଆଣିବୁ ଧରି ଏ ତୋର ଆଦେଶ ଘେନି ।
ଚିତ୍ତକୁ ଚୋରି ଯେବେ ସେ କରି ତାକୁ ପାଇଲେ କି ଛାଡ଼ି
ବନରୁ ଖୋଜି ଆଣିବୁଁ ଆଜି ବାହୁପାଶେ ରଖି ଭିଡ଼ି ।
କରଜ କ୍ଷତ ଦଶନଘାତ କାମ ଧର୍ମେ ଯା ଲେଖିଛି
ସେ ହରେ ଚିତ୍ତ ଚୋର ଉଚିତ ଦଣ୍ଡେ ଦୋଷନାହିଁ କିଛି ।
ହାସ ଗୃଭୁଷି ନୃପ କୁମାରୀ ଶୁଣି ଚିତ୍ତ ପୁଲକଇ
ଦଶନ ବାସ ପ୍ରେମରେ ହାସ ଲଜ୍ଜା ସମ୍ଭାଳି ରଖଇ ।
ଲଳିତା ଜାଣି କମଳ ପାଣି ଦେଇଣ ବାହୁ ପଇଠେ
କୃଷ୍ଣ ଉଦ୍ଦେଶି ଗହନେ ପଶି ଧୀରେ ଧୀରେ ଜେମା ଉଠେ
ବନେ ସେ ଗମି ଅନେକ ଭ୍ରମି କାହିଁ କୃଷ୍ଣଙ୍କୁ ନଦେଖେ
ଏମନ୍ତେ ପଥେ ଯୋଗେଣ ପଥେ ଚନ୍ଦ୍ରାବଳୀ ସଖୀ ଦେଖେ
ଭେଟନ୍ତି ବେନିକୁଳ ସଜନୀ କୁଶଳ ସେ କୁହାକୁହି
କେଣେ ଗୋ ଥିଲ ଉଛୁର ହେଲ ଧୂରେ କି ଜଞ୍ଜାଳ ନାହିଁ
ଶୈବ୍ୟା ଚନ୍ଦ୍ରାରେ କି ସମାଚାରେ ଏକାକୀ ହୋଇ ଭ୍ରମ
ଅଧୀରା ହନୁ କରତେ ତୁ ଭ୍ରମି ଭ୍ରମି ପରିଶ୍ରମ ।
ବିଶାଖା ଭଣି ଶୁଣ ମିତଣି ଦୁର୍ବାସା ଋଷି ବଚନେ
ଗୁରୁଜନେ ଅଜ୍ଞା ମାନିତ ମଧ୍ୟାହ୍ନେ ରବି ଅର୍ଚ୍ଚନେ ।
କୁସୁମ ବନୁ ତୋଳି ସେ ଭାନୁ ପୂଜିବା ନିମନ୍ତେ ଭ୍ରମୁ
ନନ୍ଦ ନନ୍ଦନ ଦେଖେ ନ ପୁଣ ଲୁଚି ଲୁଚି ତେଣୁ ଗମୁଁ ।
ଲଳିତା ଭଣେ କେଉଁ କାରଣେ ଚନ୍ଦ୍ରାବଳୀ ବିନୁ ବନେ
କି ଅବା ନେଇ ଏ ଦୁଖ ପଡ଼ି ହରଷ ବିରସ ମନେ ।

ପଦ୍ମା ବୋଲନ୍ତି ଶୁଣ ସୁମତି ଚନ୍ଦ୍ରାବଳୀଙ୍କ ଆଦେଶେ
ନିବେଦନ ନେଇ ଗଲୁଁ ସଜନୀ ପୌର୍ଣ୍ଣମାସୀଙ୍କର ପାଶେ ॥
ସେଥି ଆସନ୍ତ ହରି ଶୁଣନ୍ତେ ଆଗେ ଓଗାଳି କହନ୍ତି
ସଖୀ ସମ୍ମୁଖରେ ଅବକାଶରେ କହିବ ମୋର ବିନତି ॥
ମାନ ଭଞ୍ଜାଇ କଥା ବୁଝାଇ ଆଣିବ ଗଉରୀ ତୀର୍ଥେ
ତହିଁରେ ମୁହିଁ ଥିବଇଁ ରହି ବୃନ୍ଦେ ଥିବ ତୁମ୍ଭ ସଥେ ॥
ଏମନ୍ତ କହି କୁସୁମ ଦେଇ ପେଷି ଚନ୍ଦ୍ରାବଳୀ ପାଶେ
ଥିଲେ ସେ ଏଥି ଗଉରୀତୀର୍ଥେ ଗଲେ ସଖୀ ପ୍ରତିଆଶେ
କୃଷ୍ଣ ଦଇବ ଯାଉଛୁଁ ନେଇ ମାଗିଣ ନିକ ଆଣିବେ
ଜଗିଣ ରହି ନିରାଶହୋଇ କୃଷ୍ଣ ମଦନେ ଖେପିବେ ॥
ଯାଉଛୁଁ ବୋଲି କୁସୁମ ତୋଳି ଯୋଗେ ଭ୍ରମର ମିଳନ
ତୋଳ ସୁମନ ପୂଜ ତପନ କୃଷ୍ଣ ନୁହ ଚେଦମନ
ଏମନ୍ତ ବୋଲି ଗଲେ ସେ ବାଳୀ ଶୁଣି ଜେମା ହତମଣି
ଭରସା ତେଜି ଦୁଃଖରେ ମଜ୍ଜି ଚରଣ ନ ଚଳେ ପୁଣି
ସରସ ବାଣୀ ନ କହି ଭୁଜ ଅଧର ବିମ୍ବ ନୀରସ
ନଳୁତରଳ କାମ ଅନଳ ଜଳନ୍ତେ ଅନ୍ତେ ବିରସ ॥
ନେତ୍ରକ ତୋଳେ ଧୀର ଅଞ୍ଚଳ ପରିଗ ଛଟିଳ ଗୁପଇ
କୃଷ୍ଣ ବିଳାସ ତେଜି ନିରାଶ ଅବଶେ ତନୁ ତାପଇ
ଯନ୍ତ୍ରେ ଫୁଟଇ ହାର ତୁଟଇ ଫିଟଇ ବନ୍ଧନ ନୀବି
କର କଙ୍କଣ ମୁଦ୍ରିକା ଗଣ ଖସିଣ ପଡ଼ନ୍ତି ଭୁବି ॥
ଅକସି ହୋଇ ବନହଣ ରହି ଉର୍ଦ୍ଧ୍ୱେ ଅଙ୍ଗୁଳି ଛନ୍ଦରେ
ସ୍ୱେଦ ଖସଇଁ ହୋଇ ଆସନ୍ନ ସଜନୀ ଫିଟକ ଧରେ ॥
ବୋଲନ୍ତି ସଖୀ ହେଚନ୍ଦ୍ରମୁଖି ମନେ କ୍ଷମା ଏତେ ବ୍ୟଥା
ଯେ ଅପହରି ସତ କି ଭଣି କପଟ ସକଳ କଥା ॥
ପ୍ରୀତି ଲଗାଇ କନ୍ଦ ଭଙ୍ଗାଇ ଜଗାଇଣ ସ୍ଥାନେ ସ୍ଥାନେ
କୃଷ୍ଣଙ୍କୁ ନେବା ଉପାୟେ ବାମା ଆସି ଥିଲା ଏଥୁ ବନେ
କୃଷ୍ଣଙ୍କ କହି ଆଶା ଦେଖାଇ ନ ପାଇ ରହିଲେ ଏଥି
ବଚନେ ତୋଷି ଏହାଙ୍କୁ ପେଷି ସଙ୍କେତ ଗଉରୀ ତୀର୍ଥେ ॥
ତେଣୁ ଏ ବାଳୀ ଆମ୍ଭଙ୍କୁ ମିଳି ଯତନେ କହେ ଭଙ୍ଗାଇ
ଆମ୍ଭର ଗଲେ କୃଷ୍ଣର ମେଳ ସଖୀ ମନକୁ ରଞ୍ଜାଇ ॥
ଚତୁରୀ ହୋଇ ନ ଚେତୁ ସହି ସପତ୍ନୀ ଜନ ଗତି
ଘୁଲ ଏ ବାଟେ ଏହି ନିକଟେ ଭେଟିବା ଭ୍ରମର ପତି ॥
ଏମନ୍ତ ବୋଲି ନସ ପଥେ ଚଳି ଦେଖିଲେ ଚରଣ ଚିହ୍ନ
ଚିହ୍ନିଣ ଜାଣି ବୋଲନ୍ତି ପୁଣି ଯାଇଛନ୍ତି ତିନି ଜଣ ॥
ତିନି ଚରଣ ଏକ ଲକ୍ଷଣ ଶଙ୍ଖ ଚକ୍ର ଚିହ୍ନାଦିରେ
ସଂଶୟେ କୃଷ୍ଣ ବିସ୍ମୟେ ରହି ଅନୁମାନ ପୁଣି କରେ ॥
କୃଷ୍ଣ ସମାନ ଏ ବେନି ଜନ ଅଣୁ ଏ ଜଣା ନୁହନ୍ତି
ହରି ଲକ୍ଷଣେ ଏ ବିଚକ୍ଷଣେ ସକଳ ଚିହ୍ନ ବହନ୍ତି ॥
ଏ ବେନି ସଙ୍ଗେ ଅଛନ୍ତି ପାଖେ ଆମ୍ଭର ହିତ ସଜନୀ
ମଧ୍ୟରେ ହରି ନୀଳ ନପାରି ଚିହ୍ନି ପାଦଧୂଳି ନେଇ ॥
ରାଧାର ପଦ ନିନବ ରାଜ ଚିହ୍ନ ଶ୍ରୀଚରଣେ ବହେ
ରାଧିକା ଚିହ୍ନି ସଜନୀ ଜାଣି ଧରଣୀ ଧରଣ ଶୋହେ ॥

ଶ୍ଳୋକଃ ।

ଚନ୍ଦ୍ରାର୍ଦ୍ଧଂ କଲସଂ ତ୍ରିକୋଣଧନୁଷୀ ଖଂ ଗୋଷ୍ପଦଂ ପ୍ରୋଷ୍ଠିକାଂ
ଶଙ୍ଖଂ ସବ୍ୟପଦେଽଥ ଦକ୍ଷିଣପଦେ କୋଣାଷ୍ଟକଂ ସ୍ୱସ୍ତିକଂ;
ଚକ୍ରଂ ଛତ୍ର ଯବାଙ୍କୁଶଂ ଧ୍ୱଜ ପବୀ ଜମ୍ବୂର୍ଦ୍ଧ୍ୱରେଖାମ୍ବୁଜଂ
ବିଭ୍ରାଣାଂ ହରିମୂନବିଂଶତି ମହାଲକ୍ଷ୍ମ୍ୟର୍ଚ୍ଚିତାଙ୍ଘ୍ରିଂ ଭଜେ ॥

ଗୀତ ।

ରାଧା ସଙ୍ଗମେ ମୂର୍ତ୍ତି ଉତ୍ତମେ ମଦନ ମୋହନ କରେ
ସର୍ବ ବିଭୂତି ଊନବିଂଶତି ଚିହ୍ନକୁ ଚରଣେ ଧରେ ॥
ଦକ୍ଷିଣ ପଦ ସ୍ୱସ୍ତିକ ପଦ୍ମ ଛତ୍ର ଧ୍ୱଜ ଜମ୍ବୁ ପବୀ
ଅଙ୍କୁଶ ଚକ୍ର କୋଣ ଅଷ୍ଟକ ଊର୍ଦ୍ଧ୍ୱ ରେଖା ଯବ ଛବି ॥
ବାମେ କଳସ ତ୍ରିକୋଣ ଝଷ ଧନୁ ଶଙ୍ଖ ଅର୍ଦ୍ଧଚନ୍ଦ୍ର
ଗୋଷ୍ପଦ ଶୂନ୍ୟ ଲାବଣ୍ୟ ଚିହ୍ନ ବହେ ବୃନ୍ଦାବନଚନ୍ଦ୍ର ॥
ଭାବି ନବାରେ ଯେ ଅବତରେ ତାଙ୍କ ଚିହ୍ନ ଏତେ ନୁହେ
ଆଦ୍ୟ ପୁରୁଷ ରାଧା ବିଳାସ ଗୋକୁଳେ ଏ ଚିହ୍ନ ବହେ ॥
ଚନ୍ଦ୍ରମାମୁଖୀ ହରଷ ଦେଖି ନିଜ କାନ୍ତ ପଦ ସଙ୍ଗେ
ଘେନି ସେ ଧୂଳି ଉରସେ ଜଳି ବୋଲି ସଖୀଙ୍କି କପଟେ ବଞ୍ଚେ ॥
ମୁହ ପଡ଼ଇ ନାଇଁ ଲେଉଡ଼ଇ ପାଦ ଧୂଳି ସଙ୍ଗେ ଘେନି
ଉରେଣ ଲଦି ଅଙ୍ଗୁଳି ମୁହ ଯାଆନ୍ତେ ଭୂଷିତ ଧନୀ ॥
ଗୋବିନ୍ଦ ଅଙ୍ଗ ଲଗି ସୁରଭି ତରୁଲତା ଗନ୍ଧବହେ
ଆଘ୍ରାଣେ ପାଇ ଫୁଟିଲି ହୋଇ ତାଳଧରି ମିଳେଇରହେ ॥
ଗମନ କରେ ଲତା ବାଙ୍କରେ ଗମନରେ ଆଡ଼େ ଆଡ଼େ
ପିବା ଉତ୍ସୁକେ ମଧୁ ପୁଲକେ ଉର୍ଦ୍ଧ୍ୱନାଭି ଜାଳ ଛୁଡ଼େ ॥
ବନ ପ୍ରାନ୍ତରେ ଶ୍ୟାମଳ ହରଷ ସୁସ୍ୱରେ ଭାଷେ କୋକିଳ
ତନୁ ମୁରଳେ ମଧୁ ବରଷେ ବୃଷ୍ଟି ହୁଏ ଫୁଲକୁଳ ॥
ନାରୀ ଜାଣିଲେ ଆନନ୍ଦ ଜାଣେ ମଙ୍ଗଳ ସଙ୍କେତ ଦେଖି
ଭରସା ପାଇ ସେଠାରୁ ଯାଇ ସ୍ଥାନେ ସ୍ଥାନେ ଉପଲସି

କୃଷ୍ଣ ଦେଖିବା ଦୁଃଖ ଲେଉଟିବା ସବୁରି ମନ ସଙ୍କଳ୍ପ
ଏମନ୍ତେ ତହିଁ ଦେଖିଲେ ଯାଇ ଗୋବିନ୍ଦ ବାସକତଳ୍ପ ॥
କୃଷ୍ଣର ଅଙ୍ଗ ଲାଗି ସୁଭଗ ଦେଖି ସୁନ୍ଦରୀ ବିଗ୍ରହର
ମୋର ବିଚ୍ଛେଦ ମଦନ ମଦେ ଏଥି ଶୁଣିଥିଲେ ହରି ॥
ଗନ୍ଧ ଚନ୍ଦନ ଗନ୍ଧ ବନ୍ଧନ କୁସୁମ କୃଷ୍ଣ ଉଲଗି
ସ୍ୱେଦ ଲୋତକ ଆଦି ଯେତେକ ପଲ୍ଲବଶେଯରେ ଲାଗି ॥
ଯତନେ ତହିଁ ଶୁଭିଣ ଗଇ ଉରବାଧ ଦୁଇକରେ
ତାପ ଶିନାଣି କୋଟିଏ ଶଶୀ ଆହ୍ଲାଦ ଶୀତଳରେ ॥
ଦେଖି ସଜନୀ ଶବୁକେ ପାଣି ମନେ ମନେ ବିଚାରନ୍ତି
କୃଷ୍ଣ ଉଲଗି ଶୋଭନ୍ତୁ ଭାଗୀ ଦେଖିଣ ବଳାଲ୍ ମତି ॥
ଧଇର୍ଯ୍ୟଧରି ରଖି ନପାରି ଉଦ୍ଧତଭାବେ ବହ୍ୱଲ
ଶ୍ୟାମ ଭେଳକ ଲାଗି ସଖୀଙ୍କି ତେଜ ଲଜ କୁଳଶୀଳ ॥
କୃଷ୍ଣର ଶଯ୍ୟା ପାଇଣ ତେଜ୍ୟା କଲୁ ସେ ଆମ୍ଭମାନଙ୍କୁ
ଏଠାରୁ ଚଲେ ଆଉକ ଚଳେ କର ଆନ ବିଧାନକୁ ॥
ଏମନ୍ତ ଭାଳ ସକଳଆଳୀ ତୁଳସୀଙ୍କୁ କହି ପେଶି
କୃଷ୍ଣଙ୍କୁ ଯାଇ କହ ମଣାଇ ଦେଖନ୍ତୁ ପ୍ରିୟାକୁ ଆସି ॥
ମଲ ଚନ୍ଦନ କର୍ପୂରପାନ ଘେନିଣ ତୁଳସୀଚଳେ
ଶ୍ରୀ ବୃନ୍ଦାବନେ ଚରଣ ଚଳେ ଭେଟିଲେ କଦମ୍ବତଳେ ॥
ଦୂରହୁଁ ଦେଖି କମଳ ଆଖି ରାଧା ସଖୀ ବୋଲି ଜାଣି
ନେତ୍ର ନିବେଶି ସଖୀଙ୍କୁ ପେଶି ପାଶ୍ୱେଟି ଗଲେସେ ଘେନି ॥
ମନେ ଗୋବିନ୍ଦ ହେଲେ ଆନନ୍ଦ ତୁଳସୀ ଆସିଲେ ଯେବେ
ନଷ୍ଟସ୍ୱପ୍ନରଣି ଏ ବନେରହି ପରତେ ହୋଇଲା ଏବେ ॥
ଏମନ୍ତେ ଯାଇ ତୁଳସୀପାଇ କର୍ପୂର ଚନ୍ଦନ ଘେନି
ଆନନ୍ଦେ ହରି କରିପ୍ରସାରି ଘେନି ଲଗାଇ ମୂର୍ଦ୍ଧନି ॥
ସତ୍ୱରେ ପୁଚ୍ଛି ପ୍ରିୟା କାହିଁଛି ଘୁଡ଼ିଣ ଅଇଲ କାହିଁ
ସଙ୍କେତେ ରଖି ଗଲେ ଯେ ସଖୀ ମନେ ମୁଁ ପଡ଼ିଲି ନାହିଁ ॥
ଆଶାପ୍ରୀ ହୋଇ ସମାଧି ଧାୟି ପଥଗୃହିଁ ବସିଅଛି
ତୃଷା ଆରତେ ଗଗନାମୃତେ ଯେମନ୍ତ ଚାତକ ପକ୍ଷୀ ॥
ତୁଳସୀ ଭାଷେ ହେ ପୀତବାସେ ଚନ୍ଦ୍ର ସେ ଗଗନାମୃତ
ଏଣେ ରସିକ ଯେଉଁ ଚାତକ ଆନେ କି ରସଇ ଚିତ୍ତ ॥
ଗଗନ ଭେଦି ଧଇଲେ ନଦୀ ପଦ୍ମାଦରେ ଶୋଭା ବହେ
ଚନ୍ଦ୍ରମାଦ୍ରବ ଚାତକଭାବ ତୃଷାଶାନ୍ତି କାଳେ ନୁହେ ॥
ମଧ୍ୟମଣ୍ଡଳୀ ତୃଷାଖଣ୍ଡଣୀ ପୁରୁତ ହସ୍ତୀ ନରସେ
ନାଗର ଭାଷି ଶୁଣ ସୁକେଶୀ ବଣ ଚଢ଼ିଭାନ ରସେ ॥

ତୁଳସୀ ପୁଣି ଇଙ୍ଗିତେ ଭଣି ଶଶୀ ଶଶୀ ଅଙ୍ଗେ ବସେ
ତୃଷା ଶାନ୍ତିକ ତୁଷାରନିକ ଅବିବେକ ପ୍ରତି ଆଶେ ॥
ମୃଗତୃଷ୍ଣାରେ ଜଳଭ୍ରମରେ କୃଷ୍ଣସାର ଫୁଟି ଧାମେ
ଜଳ ସେ ସହିଁ ନଯାଇ ତହିଁ ପରିଶ୍ରମେ ମତିଭ୍ରମେ ॥
ମଧୁ ମଙ୍ଗଳ ଭାଷେ ମଞ୍ଜୁଳ ଭଲ କହିଲ ତୁଳସୀ
ଯେଉଁ ଚାତକ ଏକ ବ୍ରତକ ଘନରସେ ତୃଷାନାଶି ॥
ସେ ଘନରସ ଦେଇ ସନ୍ତୋଷ ନକରେ ଉଦିତ ହୋଇ
ତିରି ବିଚ୍ଛେଦ ସନ୍ତାପ ଖେଦେ ଚାତକ ଆନେ କି ଯାଇ ॥
ଯେ ଯହିଁ ରସେ ସେ ତହିଁ ବସେ ଆନେ ନରସଇ ମତି
ଆଶା ବଢ଼ାଇ ଯାଏ ଗୋଡ଼ାଇ ମୃଗ ମୃଗତୃଷ୍ଣା ପ୍ରୀତି ॥
ଯେସନେ ତୁମ୍ଭ ସଖୀଙ୍କ ଦମ୍ଭ ଦେଖାଇ ଆରମ୍ଭେ ଧୂଞ୍ଚ
ଯେ ସମାଚାର ମଦନ ବିଚାର ଦେଖି ପୁଣି ଏବେ ଲୁଚ ॥
ଆରତେ ହରି ପୁଣି ପଚାରି ପ୍ରାଣଧନୀ ମୋର କାହିଁ
ଗୃହ ମୃଗାକ୍ଷୀ କି କରୁଅଛି କାମାନଳେ ମୋତେ ଦହି ॥
ପୁରୁଷ ବଧ ନାରୀ ନିଷେଧ ନୁହଇ ଏ ସମାଚାର
ସଜନୀ ଗଣ ଅଛ ଗହଣ ନ କହି ଭଲ ବିଚାର ॥
ତୁଳସୀ କହେ ନାଗର ବିପ୍ରେ କୁଞ୍ଜ ନ ଦେଖି ତୁମ୍ଭଙ୍କୁ
ମନ ଆକୁଳେ ବନରେ ବୁଲେ ଏକାକୀ ତେଜ ଆମ୍ଭଙ୍କୁ ॥
ସଙ୍କେତ ସ୍ଥଳେ ଲତାର ତଳେ ପୁନଃ ପୁନଃ ସଖୀ ଦେଖେ
ତୁମ୍ଭର ତହୁଁ ଅଧିକ ସେହୁ ଭ୍ରମିଣ ବିଚ୍ଛେଦ ଦୁଃଖେ ॥
ସଖୀ ସାନ୍ନିଧ୍ୟେ ନ ଦେଖି ଖେଦେ ଲେଉଡ଼ିଲୁଁ କାନନେ ପଶି
ଗୃହ ବିମ୍ବୋଷ୍ଠୀ ଦୁଃଖେଣ ଭେଟି ଦେଖିଲୁ କ୍ଷୀଣ ସୁକେଶୀ ॥
ବାତୁଳ ପ୍ରାୟେ ବଚନ କହେ ପୁଞ୍ଛନ୍ତେ ହୁଏ ମଉନ
ଗୃହଲନ୍ତେ ଫୁଟେ ଝାଳହିଁ କଣ୍ଠେ ପିଟେ କବରୀ ବନ୍ଧନ ॥
ଘୂର ଗରଳେ ଚନ୍ଦ୍ର ତରଳେ ଗଳଇ ନୟନୁ ଲୁହ
ପ୍ରେମ ଆନନ୍ଦେ ଭ୍ରମେ କାନନେ ମଦନ କର୍ଦ୍ଦନ ଭୂଅ
ତମାଳ ତରୁ ଦେଖିଲେ ଆରୁ ପରିକମା କରି ବୁଲେ
ମୟୂର ନୃତ୍ୟ ଦେଖି ବିଚିତ୍ର ନିଶ୍ଚଳ ନେତ୍ର ନଟଳେ ॥
ଚନ୍ଦ୍ରାବଳୀର ସଖୀ ନିକର ଆସିଣ ମିଳିଲେ ଏଥି
ସେହୁ କହିଲେ ମାଧବ ଥିଲେ ଗଲେ ସେ ଗଉଣାର୍ଥେ ॥
ଚନ୍ଦ୍ରାବଳୀଙ୍କି ନେବୁ ତହିଁକ ବନପ୍ରେ ନପଶିଲେ ହରି
କୁସୁମ ବନେ ତେଲ ସୁମନେ କହି ସେ ଗଲେ ଚତୁରୀ ॥
ଏମନ୍ତ ଶୁଣି ତରୁଣୀ ମଣି ହୋଇଲେ ଧଇର୍ଯ୍ୟ ଧ୍ୱଂସ
ଚନ୍ଦ୍ରମା ମୁଖୀ ଅଧର ମୁଖି କାତର ଖର ନିଃଶ୍ୱାସ ॥

ସଖୀଙ୍କ ସଙ୍ଗେ ଗମନ ମାର୍ଗେ ଭ୍ରମନ୍ତ ପାଦ ସଞ୍ଚା ଚିହ୍ନି
ଭରସା ଗୃହିଁ ସରସ ବହି ଉରେ ପାଦଧୂଳି ଘେନି ।
ନେତ୍ର ନିବେଶି ଗୋଡ଼ାଇ ଆସି ଭ୍ରମନ୍ତର ବୀସକ ତଲ୍ପେ
ଦେଖି ଶୟନ ଅଶ୍ରୁ ନୟନ ଅଙ୍ଗ ସଙ୍ଗ ଅନୁକମ୍ପେ ।
ଖେଦ ବିରହେ ସମାନ ଦୁହେଁ ନିଜ ଦେହ ମଳିଣ ହାରି
ଏମନ୍ତ ହୋଇ ନଥିବ କାହିଁ ପ୍ରେମତନ୍ମୟ ମିଳନ ସରି ।
ପ୍ରିୟାନୁଭବ ଶୁଣି ମାଧବ ପୁଲକ ଗଦଗଦରେ
ତୁଳସୀ କର ଧରି ସୁନ୍ଦର କହନ୍ତି ଅତି ମୋଦରେ ।
ସଖୀ ଭେଟାଇ ଦୁଃଖ ତୁଟାଇ କାମ କୂପରୁ ଉଦ୍ଧର
ବିଳମ୍ବ କ୍ଷଣେ ନ କରି ଏଣେ ଆଣ ପ୍ରାଣଧନୀ ମୋର ।
ବେଗେଣ ଘେନି ଆଣ ସଜନୀ ନିଭୃତ ରାସ କୁଞ୍ଜକୁ ।
ତହିଁରେ ମୁହିଁ ଥିବଇ ରହି ଭଜଣ ମନସିଜକୁ ।
ଦୁଃଖ ଜଣାଇ କଥା ଘେନାଇ ମଣାଇ ଯେମନ୍ତେ ଆଣ
ପଥକୁ ଚାହିଁ ଥିବଇଁ ରହି ଘଣ ଦେଇ ରଖ ପ୍ରାଣ ।
ଏମନ୍ତ ବୋଲି କମଳମାଳ ତୁଳସୀ ପାଣିରେ ଦେଲେ
ତୁଳସୀ ବେଣୀ ପାଶ୍ଚେ ଆସି କୃଷ୍ଣ ରାସକୁଞ୍ଜେ ଗଲେ ।
ଏଣେ ସୁକେଶୀ ତୁଳସୀ ବେଶୀ ରାତ୍ରରେ ବିଗ୍ରର କରି
ହରି ନଦେଖି କହିଲେ ସଖୀ ଜୀବନ କି ରଖି ପାରି ॥
ଜାଣୁଛୁ ମୁହିଁ ମାଧବ ନାହିଁ କପାଇଁ ଥିବେ ସେ ସେଥେ
ମୋ ପରି ହୋଇ କେତେ ବା ନାହିଁ ଅନୁସରି ପଥେ ପଥେ ॥
ସ୍ନେହରେ ଆସି ଦେହରେ ମିଶି ପ୍ରଥମେ ମାଗିଲେ କୋଳ
ସଜନୀ ସେତେ ଦାରୁଣ ମତେ ବୋଲିଲେ ନକଲେ ଛଳ ॥
ଲୁଚନ୍ତି ଯାଇ ଲୋଡ଼ିଲା ପାଇ ସେତେ ସୁଖ ପୁଣି ଦେଲେ
ମୁଁ ଅବିବେକୀ କାହିଁ ପାଇଁ କି ସେ ସୁଖ ତେଜିଲି ଭଲେ ॥
ଲାଜ ଗୁରୁକୁ ଆଜ କରକୁ ଅଇଲି ନିଧି ଛାଡ଼ିଲି
ଲୋକ ଦୁର୍ବାଦ କି ପରମାଦ ଅମୃତ ପାଇ ଏଡ଼ିଲି ॥
କୁଳେ କଳଙ୍କ ହୋଇଲେ ନିକି ମୃତ୍ୟୁସଞ୍ଜୀବନୀ ତେଜି
ନୋହିଲେ ତନୁ ଦହେ ଅତନୁ ନଜାଣିବା କେଣେ ଗଞ୍ଜି ॥
ଏ ଦୁଃଖସହି ଧରିବ ଦେହୀ ତୁଳସୀ ଆସିବା ଯାଏ
ନିରାଶ ବାଣୀ ଜୀବନ ଘେନି ଯିବଟି କାହିଁକି ଉପେ ॥
ଏମନ୍ତ ବେଳେ ତୁଳସୀମିଳେ ଦୂରୁଁ ଦେଖି ଶ୍ୱାସ ଛାଡ଼େ
ହେଠ ବଦନେ କର ଶ୍ରବଣେ ଦାନ ଦାନ ହୁଆ ପଡ଼େ ॥
ଦେଖି ତୁଳସୀ ତୁରିତେ ଆସି ପ୍ରସନ୍ନବଦନେ କହେ
ହରିକି ଦେଖି ଅଇଲି ରଖି ରାସକୁଞ୍ଜେ ପଥ ଚାହେଁ ॥

ପିୟୂଷ ବାଣୀ ଶ୍ରବଣେ ଶୁଣି ପୁଲକି ଆନନ୍ଦ ହେଲେ
କୃଷ୍ଣର ମାଳା ଲମ୍ବାଇ ଗଳା ଗନ୍ଧ ସେହି ଅନୁକୂଳେ ॥
ବିରସ ତେଜି ସରସ ଭଜି ତୁଳସୀ ପୂଜ ଆଦରେ
କୃଷ୍ଣ ମୂରତି ଚିନ୍ତି ଧ୍ୟାନ୍ତି ଗତି କମଳ ପାଦରେ ॥
କୃଷ୍ଣ ଚରିତ ଶୁଣିତ ରାତ୍ର ଜାଣି ଲଳିତା ଘରୁରେ
କହି ଚଳସି କୃଷ୍ଣ ଉଦ୍ଦେଶି ଦେଖିଲି କି ସମାଗ୍ରରେ ॥
ତୁଳସୀ କହି ଗଲା ଯେ ମୁହିଁ କୃଷ୍ଣ ଭେଟି କୁଞ୍ଜବନ
ଚମ୍ପକ ତଳେ ଦେଖିଲି ଡୋଳେ ଉଭା ନବଘନ ଶ୍ୟାମ ॥
ଚମ୍ପକ ଫୁଲେ ନେତ୍ର ନିଷ୍ଟଲେ ରାତ୍ର କି ବିଷୁଛୁଥିଲେ
ଲୋତକ ଖସି ଉରେ ବରଷି ପୀତବାସ ତିନ୍ତିଗଲେ ॥
ବିନ୍ଦୁ ସୁବଳ ସଙ୍ଗେ କେବଳ ଦର୍ଶନେ ଲୋତକ ଗ୍ଲାପ
ବିଶ୍ୱାସ ବାନ୍ଧି ଆଶ୍ୱାସି କହି ମିଳ ଘେନି ଅନୁତାପେ ॥
ମୋତେ ସେ ସହିଁ ଦେଖିଲେ ତହିଁ ଜାଣି ପଥ ଅନୁସରେ
ହରି ରାତ୍ରରେ ସଚକିତରେ ମିଳିଲି ଏ ଅବସରେ ॥
ପାଶ୍ଚେ ଆସି ବିନୟେ ଭାଷି ତୁମ୍ଭର ସେଣୁ ସଜନୀ
ଗତ ମତରେ କୃତ କୃତ୍ୟରେ ମାଳ ଚନ୍ଦନକୁ ଘେନି ॥
ଯତ୍ନରେ ପୁଚ୍ଛି ସଖୀ କାହିଁ ଛୁ ଛାଡ଼ିଣ ଅଇଲ କାହିଁ
କୁଞ୍ଜେ ନରହି ଉଛାହା ବହି ଲୋଡ଼ି ନପାଇଲି ମୁହିଁ ।
ବନରେ ଲୋଡ଼ି ସେ ଦୁଃଖପଡ଼ି କହିଲା ବିଚ୍ଛେଦ ଦଶା
ଶୁଣି ସେ କାହ୍ନୁ ଲୁହ ନୟନୁ ନରହେ ନ ଆସେ ଭାଷା ॥
ବଦନେ କର ଦେଇ ମୋହର ବୋଲନ୍ତି ଆଜ ନକହ
ସଖୀର ଦୁଃଖ ଶୁଣି କି ସୁଖ ଅସ୍ଥିର ମୋହର ଦେହ ॥
ବେଗେଣ ଯାଅ କ୍ଷଣେ ନରହ ଅଣାଅ ଯାଇ ସେମାକୁ
ରାସ କୁଞ୍ଜରେ ଗଲି ବେଗରେ ମୋତେ ପେଶିଲେ ନେବାକୁ ॥
ଯାଆନ୍ତେ ତହିଁ ଏମନ୍ତ କହି ପ୍ରବେଶ ହୋଇଲେ କୁଞ୍ଜ
କୃଷ୍ଣ ବିଳାସ ମନ ଲାଳସେ ଗଜଗାମୀ ସଖୀ ମାଝେ ॥
ସଙ୍କେତେ ହରି ବିଜୟ କରି କୁଞ୍ଜ କୁଟିରେଣ ପଶି
ଶଯ୍ୟାକୁ ରଚି କୁସୁମ ସିଞ୍ଚି ପଥେ ନୟନ ନିବେଶି
ଏମନ୍ତେ ରାଧା ପ୍ରବେଶ ହୋଇ ବେନଜନ ହେଲେ ଭେଟ
ନେତ୍ର ଭଙ୍ଗିମା ହାସ ରଙ୍ଗିମା ଅଧରେ କୁଣ୍ଠିତ କଣ୍ଠ ॥
ପ୍ରେମ ସମୁଦ୍ର ବଦନ ଚନ୍ଦ୍ର ମୂର୍ତ୍ତି ଦର୍ଶନେ ଉଚ୍ଛୁଳେ
ପଞ୍ଚବିଂଶି ପେତେଜ ଦୁଃଖ ତେଜି ଆନନ୍ଦେ ବୁଡ଼ିଲେ ॥
ରସିକ ବର ନେତ୍ର ଚକୋର ଚନ୍ଦ୍ରବଦନୀ ନିରେଖି
ବୋଲନ୍ତି ସୁଖେ ମଦନ ମୁଖେ କେଉଁ ଗଲି ମୋତେ ରଖି ॥

ଜଳ ବିହୀନ ନବଞ୍ଚେ ମୀନ ମୀନ ବିନୁ ଜଳ ଧାରୀ
ବୋଲେ ବିମ୍ବୋଷ୍ଠୀ ହୃଦୟ ଫାଟି ପୟଃ ବିନୁ ପଙ୍କ ଦରି ॥
ଏମନ୍ତେ କେଳି ସ୍ନେହରେ ଭଣି କୋଳାଗ୍ରତ ପରିରମ୍ଭ
ଅଧର ବିମ୍ବ ବଦନ ଚୁମ୍ବ ମଦନ କେଳି ଆରମ୍ଭ
ଶଯ୍ୟା ଆସନ ଫେଡ଼ି ବସନ ନିଶ୍ଚିତେ ମନ୍ତ ବଶରେ
ଶୃଙ୍ଗାର ଲୀଳା ବିବିଧ କଲା ପ୍ରମତ୍ତ ରତି ରସରେ ॥
ଚିର ବିଚ୍ଛେଦ ମଦନ ମତ୍ତ ଶାନ୍ତ କେବେହେଁ ନୁହନ୍ତି
ଏକକୁ ଆର ରସାନୁସାରେ ଦେହ ବୁଦ୍ଧି ବିସୋରନ୍ତି ॥
ଭାବରେ ଖେଳା ବିବିଧ ଲୀଳା କୁଞ୍ଜେ କୁଞ୍ଜ ସଖୀ ସଙ୍ଗେ
ଶୀତ ଗନ୍ଧରେ ଧୀର ସମୀରେ ବିହରନ୍ତି ନାନାରଙ୍ଗେ ॥
ନୃତ୍ୟ ଗାୟନ ବୀଣା ବାଦନ କାହିଁ ବସି ଖେଳ ଦୋଳ
କାହିଁ ଶୟନ ବେଶ ଅଶନ କାହିଁ ରହି ପଶା ଖେଳ ॥
କ୍ଷଣ ବିୟୋଗ କୋଟିଏ ଯୁଗ ଯୁଗଳେ ଯୁଗ କ୍ଷଣକ
ବିଳମ୍ବେ ମାନ ବିଚ୍ଛେଦେ ଧ୍ୟାନ ଏ ଆଦି ଲୀଳା ଅନେକ ॥
ଏମନ୍ତେ ତହିଁ କାନନ ଦହି ଦାବାନଳ ଆସେ ମାଡ଼ି
ଗୋପାଳ ପୁଏ ଗାବ ଚରାଏ ଦେଖୁଁ ଦେଖୁଁ ଅଗ୍ନି ବଢ଼ି ॥
ପ୍ରଚଣ୍ଡ ଖର ଭୀଷଣ ଧାରା ପ୍ରଖରେ ଜଳ ଉଠଇ
ଶିଖା ଚହଲେ ଲହ ଲହରେ ନଭ ଅବନୀ ଘୋଟଇ ॥
ଧୂମ ଅନ୍ଧାରେ ପକ୍ଷୀ ଧନ୍ଦାରେ ବସାକୁ ଛାଡ଼ି ପଳାଇ
ଉଡ଼ିବାକୁ ଲେଖୁ ନଗଲ ପକ୍ଷୀ ଅନଳେ ଅଙ୍ଗ ଜଳାଇ ॥
କୁସୁମ ଲତା ଫଳ ଶୋଭିତା ମହା ମହା ଦାରୁ ପୋଡ଼େ
ମୃଗ ନିକର ଭୟେ କାତର ଡାପ ଧାପ ଧଡ଼ପଡ଼େ ॥
ସୁରଭି କୁଳ ଭୟେ ଆକୁଳ ହେମାରବ ଉଚ୍ଚେ କରି
ଗୋପାଳ ପୁଏ ଜୀବନ ଭୟେ ଡାକେ ହରି ନାମ ଧରି ॥
ଆହେ ମାଧବ ଦୀନବାନ୍ଧବ ଆରତ ଭୟ ଛେଦନ
ହେ ଶ୍ୟାମଘନ ହେଲୁଁ ଦହନ ବୋଲି କରନ୍ତି ରୋଦନ ॥
ଏମନ୍ତ ଶୁଣି ପୁଚ୍ଛନ୍ତି ମୁନି ବନ୍ଦଣି ନଳ କୁବେର
ସର୍ବଜ୍ଞ ମୁନି ସଂଶୟ ଶୁଣି ବିରସ ମନେ ମୋହର ॥
ଯେ ବୃନ୍ଦାବନ ହରି ରମଣ କୋଟି ଚନ୍ଦ୍ର ଆହ୍ଲାଦ
ଅମୃତ ତୋଳ ସ୍ଥାବର ପାଳ ସର୍ବ ସୁଖ ବାଞ୍ଛା ପ୍ରଦ ॥
ଯହିଁ ତପନ ଶୀତ କିରଣ ମଳୟ ପବନ ବହି
ଶୀତଳ ମହୀ ଯମୁନା ବହି ମଳୟ ଭୁବନ ତହିଁ
ବସନ୍ତ ବହି ପରିମଳଇ ଇନ୍ଦ୍ର ପାଳଇ ଯହିଁରେ
ରକ୍ଷା ପାଳନେ ଦେବତା ଗଣେ ଅନଳ ଦହି ତହିଁରେ ॥

ଏତେ ବନରେ ବର୍ତ୍ତମାନରେ ବିହରେ ରାଧା ମାଧବ
ଗୋରୁ ଗୋପାଳ ବେଢ଼େ ଅନଳ ଶୁଣିତଏ ଅସମ୍ଭବ ॥
ଚରଣେ ପଡ଼ି କରକୁ ଯୋଡ଼ି ବୋଲଇ ଫେଡ଼ ସଂଶୟ
ନାରଦ ମୁନି ଏମନ୍ତ ଶୁଣି ମନ ର ବଡ଼ ବିସ୍ମୟ
ପୂର୍ବେଣ ବେଦବ୍ୟାସ ସମ୍ବାଦ ଏ ଭାଗବତ କହିଲୁଁ
ସେହୁତ ଶୁଣି ମୁନିଙ୍କ ପୁଣି ହେତୁ ଏଥି ନପାଇଲୁଁ ॥
ଏତେ ବିଚାରି ଚିତ୍ତ ସୁମରି ବୃନ୍ଦାଦେବୀଙ୍କି ଆରାଧି
ଶ୍ରୀପୌର୍ଣ୍ଣମାସୀ ଧ୍ୟାନେଣ ଦର୍ଶି ହୃଦେ ପ୍ରକାଶେ ଯେ ବିଧି ॥
ଲୋତକ ବହି ପୁଲକ ହୋଇ ଭାବେ କଣ୍ଠ ଗଦଗଦ
ନଳ କୁବର ଧନ୍ୟ ତୋହର ବ୍ରଜବାସୀ ସିଦ୍ଧ ପଦ ॥
ତୋହର ମୋଦେ ମୋହର ହୃଦେ କହିଲେ କରୁଣାମୟୀ
ଏହୁ ବିଚାର ଆନେଗୋଚର ନୁହଇ ନ ଜାଣେ ମୁହିଁ ॥
ଯେଉଁ କାରଣ ଶ୍ରୀବୃନ୍ଦାବନ ଦହନ ହୋଇଲା ଶୁଣ
କୃଷ୍ଣଙ୍କୁ ବରି ସଙ୍କେତ କରି ଗଲେ ଚନ୍ଦ୍ରାବଳୀ ଗଣ ॥
ଗଉରୀ ତୀର୍ଥେ ବିହାର ଅର୍ଥେ ଚନ୍ଦ୍ରାବଳୀ ଘେନି ରହେ
କୃଷ୍ଣ ଆଗମ ଉତ୍ସାହାକାମ ଛନଛନ ମନେ ଗୁହେଁ ॥
ବିଳମ୍ବ ଜାଣି ଦୁଃଖିତ ପୁଣି ରହିଲେ ଅମ୍ଭଙ୍କୁ ଭଣ୍ଡି
ରାଧାର ସଙ୍ଗେ ରମିଲେ ରଙ୍ଗେ ଆଜ ତାଙ୍କ ସୁଖଖଣ୍ଡି ॥
ଏମନ୍ତ ଭାଳ ସେ ଚନ୍ଦ୍ରାବଳୀ ଆଳୀ ଅନୁସରି ଗଲେ
କଖଟୀ ଦ୍ୱାରେ ପଶି ନଗରେ ମଙ୍ଗଳ ଧ୍ୱନି ଶୁଣିଲେ ॥
ବାହାରେ ରହି ବିଷାଦ ବହି ସଙ୍କେତ ଠୁଣିକା ଜାଣି
ଶବ କୁଞ୍ଜରେ ଉଚ୍ଚ ବାଟରେ ପଶାଖେଳ ଶୁଣିପୁଣି
ତାପିତ ହୋଇ ମନ୍ତ୍ର ଭ୍ରମଇ ମାନ ଅନଳ ଜଳଇ
ପ୍ରତିପକ୍ଷରେ ଅତି ଦୁଃଖରେ ଚନ୍ଦ୍ରାନନୁ ନସରଇ ॥
ଶଠନାୟକ କହିବା ଠକ ଯୋଡ଼ି ପୋଡ଼ୁ ଏହୁବନ
କେତେ କହିଲେ କଥାଗୋ କଲେ ମିଥ୍ୟାଗୋ କୃଷ୍ଣ ବଚନ ॥
ସଖୀ ବିରହୀ ଦେଖି ନ ସହି ବାହୁଡ଼ିଲେ ଯୁବତୀ ଜଣେ
ଜଟିଳା ପାଶେ କହି ବିଶ୍ୱାସେ ଘେନିଆସ ବେଗେ ଏଣେ ॥
ଶୁଣିଲେ ଶାଶୁ ଦେଖିବ ଆଧି ବିଚ୍ଛେଦ ହୁଅନ୍ତୁ ବେନି
ଏମନ୍ତ ଭାଳ ଦେଲପେ ଘୂଲ ଗଲ ବାଳୀ ଆଜ୍ଞାଘେନି ॥
ଖେଳାଇ ବାଳୀ ଯାବେ ମିଳି ଏକାନ୍ତେ ଜଟିଳା ପାଶେ
ଲାଗେ ପାୟେ ଜଟିଳାକହେ କଲ୍ୟାଣ ବାଞ୍ଛୁଛି ତୋଷେ ॥
କାହିଁଗୋ ଥିଲ କେଣେ ଅଇଲ କହସି ଅମା କୁଶଳ
ବୋଲଇ ବାଳୀ ସେ ଚନ୍ଦ୍ରାବଳୀ ତୁମ୍ଭ କଲ୍ୟାଣେ ମଙ୍ଗଳ ॥

ଯମୁନା କୂଳେ ସଜଣୀ ମେଳେ ଭ୍ରମୁରେ ଓଲଗି ପେଶେ
ଶୁଣି ସେ ବୃନ୍ଦା ପାଇଲେ ଶ୍ରଦ୍ଧା କଲ୍ୟାଣ କୁଶଳ ଭାଷେ ॥
ବଧୂ ସେ ମୋର ସୂର୍ଯ୍ୟ ଭାସ୍କର ଦେଖିଲୁ କି ସଖୀମାନେ
ଦେଖିଲୁଁ ବନେ ସଜଣୀ ଗଣେ ରବିକିବା ବାସେ ପୂଜେ ॥
ବେଲ ଉତ୍ତର କପାଇଁ ପୂର ନଇଲେ ପୂଜା ବଢାଇ
ବଧୂ ଭ୍ରମୁର ପାଇଲେ ବର କମଳ ମାଳ ଚଢାଇ ॥
କି ବର ପାଇ କହସି ଆଜ୍ଞା ଦେବ ଭ୍ରମୁରେ ବଧାଇ
ନନ୍ଦନନ୍ଦନ ବର ପାଇଣ ଆମ୍ଭରେ ପୁଣ ସଧାଇ ॥
ନନ୍ଦ କୁମର ବିରୋଧୀ ମୋର ସେ ପୁଣ କି ବର ଦେବ
କନ୍ଦର୍ପ କଳା ବିବିଧ ଲୀଳା ରତିରସେ ପ୍ରେମ ଭାବ ॥
ପାଦକୁ ପାଦ ବେନି ସମ୍ବାଦ ଶାଶୁ ଜାଣି କୋଡ଼ ହୋଇ
ବୋଲଇ ସତେ ଦେଖାଇ ମତେ ପାଶବକ ସଙ୍ଗେନେଇ ।
ଦେଖିବ ଯେବେ ଆସ ଗୋ ତେବେ ବୋଲଣ ପଛୁ କଢାଇ
ଜଟିଲା ତାପେ ଉଠିଣ ଧାପେ ଖଟରାଇ ପଛେ ଗୋଡ଼ାଇ ॥
ହାତରେ ବାଡ଼ି ଚର୍ଚ୍ଚିଇ ବୁଢ଼ୀ ବନେ ଗମେ କୋପ ମନେ
ଏ ଖରାକାଳ ମଧ୍ୟାହ୍ନବେଳ ବେନିଜନ ଆଗମନେ ॥
ପଥରେ ଜଗି ଥିଲେ ସେ ସଙ୍ଗୀ ନାନ୍ଦୀମୁଖୀ ବିନ୍ଦୁମତୀ
ଏ ବେନିଦେଖି ସେ ବେନି ସଖୀ ପାଶେ ଆସି ପଚ୍ଛରନ୍ତି ॥
କି କାର୍ଯ୍ୟେ ମାଏ ଏଣେ ବିଜୟେ ଅତି ପ୍ରଚଣ୍ଡ ଖରାଏ
ତପତ ବାଲି ନପାରି ଚାଲି ଅଗ୍ନି କଣିକା ପରାଏ ॥
ବଧୂ ଭ୍ରମୁର ପୂଜି ଭାସ୍କର ଆସି ନପାରି ରହିଲେ
ପେଣି ଆମ୍ଭଙ୍କୁ ଶ୍ରମ ଶାନ୍ତକୁ କରୁ ନବାକୁ କହିଲେ ॥
ତୁମ୍ଭେ କାହିଁକି ଯାଅ ତହିଁକି ଲେଉଟି ସଦନେ ଯିବା
ଫୁଟିଣ ଗିମ୍ବ ଅଛନ୍ତି ରହି ଶୀତଳ ସାମଗ୍ରୀ ଦେବା ॥
ଜଟିଲା ଭଣେ ଅପୂର୍ବ ଏଣେ ଦେଖିଣ ଅଇଲେ ଏଥୁ
ସିନ୍ଦୂର ସଙ୍ଗୀ ସୁବର୍ଣ୍ଣ ମୃଗୀ ଦେଖିବାକୁ ବନେ ଯାଉ ॥
ତୁମ୍ଭେ ହେ ଆସ ଦେଖ ରହସ୍ୟ ବନେ ଉତ୍ପାତ କଥା
ବୋଲନ୍ତି ବେନି ରଞ୍ଜାଇ ପୁଣି କହିଲେ ଯାହା ଏ ମିଥ୍ୟା ॥
ସିଂହ ଘରଣୀ ହେମ ହରିଣୀ ଦେଖିତ କର ଶରଧା
ବିଷମ ସହି ନପାଇ ତହିଁ ତୁମ୍ଭେତ ବିବେକ ବୃଦ୍ଧା ॥
ନଶୁଣି ବାଳୀ ତାମସେ ଚଳ ଖେଲୋଇ ବେଗେ କଢ଼ାଇ
ଏ ବେନି ବାଳୀ ବିଷାଦେ ଭାଳି ଆସନ୍ତି ପଛେ ଗୋଡ଼ାଇ ॥
ଗୁପତ ଲୀଳା ପ୍ରଘଟହେଲା ବୁଡ଼ାଇ ଦେଲା ଖେଲୋଇ
ହେ ହେ ଦଇବ କନ୍ଦର୍ପ ହେବ ଶାଶୁତ ମହା ଚଳୋଇ ॥

ରଖ ଗୋ ବୃନ୍ଦାବନ ଆନନ୍ଦା ନନ୍ଦା ନପାଇବ ଦେଖଣେ
ଆଜ ବଞ୍ଚାଇ ରଖ ଲୁଚାଇ ଲାଜଭୟୁ ନିସ୍ତାରଣେ ॥
ସେ ବୃନ୍ଦାଦେବୀ ଅଛନ୍ତି ସେବି ରାଧାକୃଷ୍ଣ ସନ୍ନିଧାନେ
ମଧୁର ଲୀଳା ରସେ କୁଶଳା ଜାଣି ପାଶେ ସାବଧାନେ ॥
ଅନେକ ମତେ ମିଳନ ଯତ୍ନେ ପଶାଖେଳାଇ ଜଗାଇ
ବୃନ୍ଦାନୁବାଦ୍ୟ ଖଗ ମୃଗାଦ୍ଧ ବିବାଦ ଦେଖି ଭଙ୍ଗାଇ ॥
ଏମନ୍ତେ ବନେ ଏ ଗୁଣିଜଣେ ତପନ ତାପେ ଅଦୃଶ୍ୟ
ବୃନ୍ଦା ପଛରେ କେତେହେଁ ଦୂରେ ଖେଳୋଇ ବୋଲଇଆସ
ପଥ ନପାଇ ଧନ୍ଦଶ ହୋଇ ଫୁଟି ଜଟିଲା ନଟଳେ
ତପତ ବାଲି ନପାରେ ଚାଲି ଖେଳୋଇ ନଅଇ ବଳେ ॥
ଶୁକ ସାରିକେ ଚଞ୍ଚଳ ଡାକେ ଜଟିଲା ଅଇଲା ଧ୍ୱନି
କୁଞ୍ଜ ମେଳରେ ପଶା ଖେଳାରେ ବୃନ୍ଦାଦେବୀ ତାହା ଶୁଣି ॥
ଆରତ ଭାରେ ବାସ୍ତରେ ବିନ୍ତି ଜଟିଲା ଆସୁ ଅଛଇ
କୃଷ୍ଣର ମେଳେ ଏ ପଶାଖେଳେ ଶାଶୁକି ଭଲେ ଗୁଡ଼ଇ ॥
ଅନେକ ଦୁଃଖେ ମିଳନ ସୁଖେ ପଶାରସେ ମନଦେଇ
ଜଟିଲା ଧାଡ଼ି ଏବେ ସେ ପଡ଼ି ଆମ୍ଭେ କି କଲଇଁ ଥାଇ ॥
ବନ ଜଳାଇ ଦେବା ଭୁଲାଇ ପଳାଇ ଜଟିଲା ଯାଉ
ରାଧା ମାଧବ ମଦନ ଭାବ ନିଶ୍ଚିନ୍ତ ହୋଇଣ ରହୁ ॥
ଏମନ୍ତ ବୋଲି ମନରେ ଭାଳି ଦେଖନ୍ତି ସେ ପଶାଖେଳା
ରାଧାଙ୍କୁ ଘେନି ସର୍ବ ସଜଣୀ କୃଷ୍ଣଘେନି ପଶାମେଳା ॥
ଗୋଟି ଗୋଟିକା ସାରି ରାଧିକା ଯାତପଡ଼ିଲେ ମିଶିବେ
ମାଡ଼ ନପାଇ ସୁଖେଣି ଯାଇ କଣିଣ ଘରେ ପଶିବେ ॥
ଏମନ୍ତ ବେଳେ ବୃନ୍ଦା ଡାକିଲେ ହେ ସନ୍ଧ୍ୟାନଳ ବାମତା
ଦେଖି ପକାଅ ଖେଳ ରଖାଅ ନୋହିଲେ ସକଳ କଞ୍ଜା ॥
ସତ୍ୟେ ଜଣାଇ ପଶା ମଣାଇ ଅନିଳ ଅନଳ ସଞ୍ଚେ
ରାଧା ଗୋବିନ୍ଦ ଯୁଗଳାନନ୍ଦ ରକ୍ଷଣେ ଉପାୟ ରଚେ ।
ଡାକିଲେ ରଙ୍ଗ ପଡ଼ିଲେ ଯେହ୍ନ ପଶା ନବନ୍ଧରେ ରହେ
କ୍ରୀଡ଼ାଯୋଗେ ପବନ ଘେନି ଆଜ୍ଞାମାନ ବନଦହେ ॥
ବୈଶାଖ ମାସ ମେଷେ ଦିନେଶ ରବି ଦିଶାସ୍ୟ କୃତ୍ତିକା
ମଧ୍ୟାହ୍ନକାଳ ଜାତ ଅନଳ କାଠେ କାଠ ଘଷି ଶିଖା ॥
ଜଟିଲା ମନେ କୁପିତା ବନେ ଅନୁସରି ବୃନ୍ଦି ଚାଲେ
ଶ୍ରମେ ପୁଟଇ ଝାଳକଣାଇ ଜାଣିବା ଜାଣିବା ବୋଲେ ॥
ଏମନ୍ତ ବେଳେ ଅନଳ ଜଳେ ଧୂମ ପୂରିଣ ଘୋଟିଲେ
ଜଣ ବଣିଆ ଝଣ ଝଣିଆ ପ୍ରଚଣ୍ଡେ ଜଳ ଉଠିଲେ ॥

ପବନ ବଳେ ପ୍ରଖରେ ଜଳେ ତରୁତୃଣ ହୋଇ ପୋଡ଼େ
ପଛରୁ ବୁଲେ ଆଗେ ଓଗାଳେ ଲହ ଲହ ଶିଖାବଢ଼େ ॥
ଚଡ଼ ଚଡ଼ରେ ମଡ଼ ମଡ଼ରେ ଘୋରଧ୍ୱନି ଧୂମମୟେ
ଚଉ ପାଖୁଣ ଅନଳ ତ୍ରାସ ଦେଖିଣ ଜଟିଳା ଭୟେ ॥
ଆଗ ପଳାଇ ପଛକୁ ଯାଇ ଅଗ୍ନିକି ଚାହିଁ ନପାରେ
ନହଶେ ବୁଢ଼ି ଆରତେ ଧାଇ ସେ ବେନି ପଣନ୍ତ ଧରେ ॥
ତପତ ଲାଗି ବିକଳ ଭାଗୀ ପଶଇ ସବୁରି ମଝି
କି ଦଇବ ପଡ଼ି ମରିବା ପୋଡ଼ି ଅଇଲ ଯେ ବୋଲି ଗଞ୍ଜି
ବାପୁଡ଼ି ମୋତେ ଆଣିଲୁ ଏଥ ମରଣ ପଥ କଢ଼ାଇ
ଯମ ଭଉଣୀ ବନକୁ ଆଣି ମାଇଲୁ ଆଜ ପୋଡ଼ାଇ ॥
ଏମନ୍ତ କହୁଁ ପଣନ୍ତେ ତହୁଁ ଅନଳ ଆସିଣ ଲାଗେ
ଚମକ ପଡ଼ି ବସନ କାଢ଼ି ବୋଝପାଡ଼ ଝାଡ଼େ ବେଗେ ॥
ବିକଳେ ବୁଢ଼ୀ ହୁଅଇ କୋଣ୍ଡ ସେ ବେନି ବାସ ଓଟାରେ
ତପତ ପାଇ ଆରତେ ଧାଇଁ ପଡ଼ଇ ଯାଇ କଣ୍ଟାରେ ॥
ସେ ବେନିବାଳୀ ଆଶ୍ୱାସି ବୋଲି ପଳାଇ କାହିଁକି ଯାଅ
ସିଂହର କୋଳେ ହରିଣୀ ଖେଳେ ଦେଖିବ ପରା ଗୋ ଥାଅ
ଜଟିଳା ବୋଲେ ମରଣ କାଳେ ସେ କଥା କିପାଇଁ କହ
ଏଥୁଁ ଉଦ୍ଧାର ଉପାୟ କର କେମନ୍ତେ ରହଇ ଦେହ ॥
ତୁମ୍ଭର ବୋଲି ଭର୍ତ୍ସିଲି ଫଳ ପ୍ରତ୍ୟକ୍ଷେ ହୋଇଲା ଆସି
ଏମନ୍ତେ କହି ଏ ବନେ ରାଧା କୃଷ୍ଣଙ୍କୁ ହେନ ବିଳସି ॥
ଏମନ୍ତ ଶୁଣି ସେ ବେନି ଭଣି ଅସହଣୀ ଏହାକହେ
ସେ ମହାସତୀ ଦୂଷଣ ଶନ୍ତ ତହୁଁ ଦଣ୍ଡ ଦେଖ ହୁଏ ॥
ହୟୂମାନଳ ସତ୍ୟେ ଶୀତଳ ଅସତ୍ୟ ଜନ ଦହଇ
ଏହୁ ନିର୍ଦ୍ଦୋଷୀ ସତ୍ୟ ବିକାଶି ସୁବର୍ଣ୍ଣ ଶୋଭା ବହଇ ॥
ଯେ ତୁମ୍ଭ ବଧୂ ସାଧବୀ ସେହୁ ତାହାର ଦୂଷଣ ଲୋଡ଼ି
ଏହାର ବୋଲି ସତ୍ୟ ମଣିଲି କେଆନ ମରିବ ପୋଡ଼ି ॥
ଦୋଷୀର ତୁଲେ ନିର୍ଦ୍ଦୋଷୀ ଥିଲେ ସେହି ନାଶ ଯାଇବଲେ
ଏହାର ଯୋଗୁଁ ତୁମ୍ଭର ସଙ୍ଗୁ ଆମ୍ଭେ ନାଶଗଲୁଁ ଭାଳେ ॥
ଏଥକୁ କର୍ତ୍ତା ହେଲ ଗୋ ମାତା ଏବେକି ଲୋଡ଼ୁଛ ବୁଦ୍ଧି
ଅନଳ ମୁଖୁଁ କେ ଅବା ରଖୁ ମହାସତୀ ଅପରାଧୀ ॥
ଖଳୋଇ ବୋଲେ ଶୁଣଗୋ ଭଲେ ରାଧା ପତିବ୍ରତା ଯେବେ
ସତ୍ୟ ଅନଳ ହେଉ ଶୀତଳ ପରୀକ୍ଷ ବୁଝିବା ତେବେ ॥
ସେ ବେଦ ମନ୍ତ୍ର ଧର୍ମକୁ ଶାସ୍ତ୍ର ବୋଲନ୍ତି ପ୍ରମାଣ ଏହୁ
ରାଧିକା ସତୀ ଯେବେ ଅଟନ୍ତି ତେବେ ଅଗ୍ନି ଭୟ ନୋହୁ ॥

ଏକଇ ପତି ବିନା ପରିରତି ଇତିଯେବେ ଆନେ ନାହିଁ
ହେ ହୁତାଶନ ନ ଦହ ବନ ଯେବେ ପତିବ୍ରତା ରାଧା ॥
ସେ ନାନ୍ଦୀମୁଖୀ ବୋଲନ୍ତି ସାକ୍ଷୀ ହୁଅ ଧର୍ମ ଅଗ୍ନିଦେବ
ଏକଇ ପତି ରାଧିକା ସତୀ ଯେବେ ତୁମ୍ଭେ ତେବେ ଜାଣ ॥
ବୁଢ଼ୀ ବୋଲନ୍ତି ମୋ ବଧୂ ସତୀ ଯେବେ ସେ ନମରି ପୋଡ଼ି
ସତ୍ୟ ଉଚାରି ପରୀକ୍ଷ କରି ବୃନ୍ଦା ଆଜ୍ଞା ଅଗ୍ନି ଛାଡ଼ି ॥
ପୁଣି ସେ ଖେଡ଼େ ଡାକିଲେ ଗାଢ଼େ ଚଉବଞ୍ଚ ଖେଡ଼ି ରହୁ
ବୃନ୍ଦାଙ୍କ ବାଣୀ ଦାବାଗ୍ନି ଶୁଣି ବାଟ ଛାଡ଼ି ଘୁଞ୍ଚେ ତହୁଁ ॥
ସତ୍ୟେ ଅନଳ କିଭ ଶୀତଳ ଦେଖି ଜଟିଳା ସତ୍ୱରେ
ମୋହର ବୋହୂ ସାଧବୀ ସେହୁ ଦୋଷ ଦେଇ ଅସତ୍ୱରେ ॥
କୁଳ ମଣ୍ଡନୀ ଦୁଃଖ ଖଣ୍ଡନୀ ମୁଖ ପଦ୍ମ ବିକାଶଇ
ସେ ମହାସତୀ ମୁଁ ହୀନମତି ଖଳ ବୋଲେ ଝିଙ୍ଗାସଇ ॥
ଏମନ୍ତ ଭଳ ଲେଉଟି ଚଳ ଖଳୋଇ ଲାଜେ ଗୋଡ଼ାଇ
ଟେକି ବଦନ ନଚାହିଁ ପୁଣ ପଣନ୍ତେ ମୁଖ ଘୋଡ଼ାଇ ॥
କେତେହେଁ ଦୂରେ ଗୋରୁଗୋପାଳେ ଅନଳ ବେଢ଼ିଛି ଦେଖି
ଦୂରେଣ ରହି ଆକୁଳେ ଚାହିଁ କେ ପୁଣ ଏହାଙ୍କୁ ରଖି ॥
ସେ ଗୋପ ସୁତେ ଅନଳ ଖ୍ୟାତେ ବୋଲନ୍ତି ହେ ଗୋପବୀର
କାନନ ପୋଡ଼ି ଅନଳ ବେଢ଼ି ବେଗେ ଏଥୁଁ ପାରିକର ॥
ପଶା ବଢ଼ିଲେ ଡାକ ପାଡ଼ିଲେ ଶୁଣି ହରି ବେଗେ ଆସେ
ରାଧା ବିଜୟେ ସୂର୍ଯ୍ୟ ପୂଜାଏ ଶୁଭେ ଭବନେ ପ୍ରବେଶେ ॥
ସଙ୍ଗେ ସୁବଳ ମଧୁମଙ୍ଗଳ ହେନ କୃଷ୍ଣ ଗୋଷ୍ଠ ବିଜେ.
ଗୋରୁ ଗୋପାଳ ଅତି ଆକୁଳ ଘୋର ଦାବାନଳ ତେଜେ
ଗାବ ଚରାଇ ଥିଲ ପଳାଇ ଗୋପାଳେ କୃଷ୍ଣଙ୍କୁ ଚାହିଁ
ବୋଲନ୍ତି ଭାଇ ରହ ଅନାଇ ଅନଳ ଆସୁଛି ଦହି ॥
ହେଲୁଁ ନିରେଖ ପାଶରିଲ ରଖ ଆନ ବେଳ ପରା ନୁହେ
ପ୍ରଳୟାନଳ ମହା ପ୍ରବଳ ସମୀର ସାହାରେ ବହେ ॥
ବଟୁ କହଇ ଶୁଣରେ ଭାଇ ଯେ ଯାହା ସତ୍ୟ ଉଚାର
ସତ୍ୟରେ ଶାନ୍ତ ଅରୁଣ ମୂର୍ତ୍ତି ଲୋଚନ ବୁଜ ସତ୍ୱର ॥
ଶୁଣି ଏମନ୍ତ ସକଳେ ନେତ୍ର ବୁଜ ଏମନ୍ତ ବୋଲନ୍ତି
କୃଷ୍ଣ ଆମ୍ଭର ବନ୍ଧୁ ସୋଦର ନାହିଁ ନାହିଁ ଆନ ଗତି ॥
ବୋଲନ୍ତି ହରି ସତ୍ୟ ଉଚାରି ଜିତେନ୍ଦ୍ରିୟ ଆମ୍ଭେ ଯେବେ
ଗୋକୁଳ ଜନ ମୋର ଜୀବନ ସତ୍ୟେ ଅଗ୍ନି ଲିଭୁ ତେବେ
ଅନଳ ଭୟେ କଙ୍କର ପ୍ରାୟେ ଜାଣି ହରି ବର ଦେଲେ
ମାଘ ପୂର୍ଣ୍ଣିମୀ ନର ମାନବୀ ପୂଜିବେ ଗ୍ରାମ ସକଳେ ॥

ଏ ଦୋଳା ଲୀଳା ଏ ପଶା ଖେଳା ରଖିଲି ତୁମ୍ଭେ ଆମ୍ଭର
ଦୋଳ ଉତ୍ସବେ ପୂଜା ସମ୍ଭବେ କରିବୁଁ ଆମ୍ଭେ ତୁମ୍ଭର ॥
ଶ୍ରୀବୃନ୍ଦାବନ ଯେ ହୁତାଶନ ଆପଣା ଗର୍ଭେ ରଖିଲେ
ଅନଳ ଲିଭି ବନ ପଲ୍ଲବି ନୟନ ଫେଡ଼ି ଦେଖିଲେ ॥
ଗୋପାଳ ପୁଏ ଆନନ୍ଦ ହୁଏ ଗୋବିନ୍ଦ ଚରଣେ ବନ୍ଦ
ଜଟିଳା ବୃଦ୍ଧି ଆଶ୍ଚର୍ଯ୍ୟ ହୋଇ ଆପେ ଆପେ ହୁଏ ନିନ୍ଦ ॥
ଏମନ୍ତ ଯେହି ତାହାକୁ ମୁହିଁ ଅପବାଦ ଦେଉଥାଇ
ଖଳ ବାଦକୁ କୁଳ ବଧୂକୁ ନିନ୍ଦ୍ୟ ନିନ୍ଦ୍ୟ ହିନସାଇ ॥
ତ'ହାର ଧର୍ମେ ବର୍ତ୍ତିଲି କର୍ମେ ଶନ୍ତ ଶନ୍ତ ପୁରେ ଚଳେ
ବଧୂକୁ ଦେଖି ହୋଇଣ ସୁଖୀ ଲଳିତରେ ପ୍ରତିପାଳେ ॥
ଦିବସ ଶେଷ ଗୋପେ ପ୍ରବେଶ ଗୋଧନ ଘେନି ଶେ ବିନ୍ଦ
ଗୋକୁଳ ସର୍ବ ଅନଳ ଲିଭି ଶୁଣି ସକଳ ଆନନ୍ଦ ॥
ଶୁଣହେ ଧନପତି ନନ୍ଦନ ଏ ନିମନ୍ତେ ବନ ଦହେ
ତୁମ୍ଭର ପାଇଁ ହୃଦରେ ଥାଇ ଭଗବତୀ ଏହା କହେ ॥
ବ୍ରହ୍ମାକୁ ଯେହି ଗୋଚର ନାହିଁ ଆମ୍ଭେ ତା ଜାଣିବୁଁ କାହିଁ
ବଚନ ଗଦ୍‌ଗଦେ ନାରଦ ସାତ୍ତ୍ୱିକେ ନ ପାରେ କହି ॥
କୁବେର ବଳା ଲୋତକ ମାଳା ଶୁଣି ପୁଲକ ହୁଅଇ
ମନରେ ଶନ୍ତ ସ୍ୱର୍ଗ ସମ୍ପତ୍ତି କଞ୍ଚତ ସମ ନୁହଇ ॥
ବ୍ରଜବିହାର ଚରିତ ସାର ଦାବାନଳ ହେତୁ ରସ
ହୃଦରେ ରହି ହରି ଯା କହି ତାହା ଲହେ ଦୀନ ଦାସ ॥
ସୁଜନ ଜନେ ସଂଶୟ ମନେ ନକର ବ୍ରଜ ଚରିତେ
ଜାଣିବ ଯେବେ ପଚ୍ଛର ତେବେ ସେହି ଏ ରସ ଭକତେ ॥
ଶାସ୍ତ୍ରେ ପ୍ରଗଳ୍‌ଭ ହୋଇଲେ ଗର୍ବ ବହିଲେ ଭାବ ନପାଇ
ସଜାତି ମେଳେ ଭାବନା କଲେ ମନ ବଳାଇଲେ ପାଇ ॥
ଶ୍ରଦ୍ଧାରେ ଶୁଣି ଯେବା ବଖାଣି ଆରତ ବିପତ୍ତି ନାଶ
ଅନଳ ଭୟେ କେବେହେଁ ନୁହେ ଅନ୍ତେ ଗୋକୁଳେ ନିବାସ
ବ୍ରଜବିହାର ସପ୍ତମ ବୋଲି ପୂର୍ବ ବିଭାଗ ସମ୍ପୂର୍ଣ୍ଣ
ବୋଲଇ ଦାସ ପାମର ରସ ଶୁଣିବା ସୁଜନ ଜନ ॥

—*—

( ଗୁଣ ସାଗର ବୋଲରେ ଗାଇବ )

ଏ ବ୍ରଜବିହାର ଅମୃତ ସାଗର ପ୍ରେମ ମୂଳ ଭାବ ଦ୍ରୁମ
ସପ୍ତମ ସ୍କନ୍ଧ ଉତ୍ତର ଭାଗ ଛନ୍ଦ-ବଂଶାକ୍ଷରେ ପଦସମ ॥
ଲୀଳା ରହଣରେ ବନ ଦହନରେ ରସ ଗର୍ଭ ହେତୁ ଯେତି
ନାରଦ କହନ୍ତେ ଧନପତି ସୁତ ସାନନ୍ଦ ପୁଲକ ଚିତ୍ତେ ॥
ସଂଶୟ ମନରେ ବିନୟ ଭାବରେ କର ଯୋଡ଼ିଣ ପଚାରେ
ଅତି ଗୂଢ଼ତର ନିଗମେ ଗୋଚର ନୁହେ ଲୀଳା ଲୋକାନ୍ତରେ
ସେ ରାଧାମାଧବ ମନରେ ଯେ ଭାବ ରୂପକ ପ୍ରକଟ ରସ
ବ୍ରହ୍ମା ଶେଷ ଶିବ ଯେ ରସ ଅଗମ କେମନ୍ତେ ତୁମ୍ଭଙ୍କୁ ଦୃଶ
ଦୋଷ ମୋନେଘେନ କୃପାକର ସ୍ୱାମୀପରତେ ଯିବଇଯେଣେ
ଏମନ୍ତ ସେ ଭଣି ମୂର୍ଦ୍ଧନରେ ପାଣି ପ୍ରଣାମ କରେ ଚରଣେ
ଏମନ୍ତ ଶୁଣି ନାରଦ ମହାମୁନି ବୋଲନ୍ତି ହେ ଧନ୍ୟ ଧନ୍ୟ
ବ୍ରଜବାସୀ ସେଣୁ ଶୁଦ୍ଧ ମନ ତେଣୁ ପ୍ରସଙ୍ଗେ ପରମ ଜ୍ଞାନ ॥
ଗୁପତ ସନ୍ଧି କେ ପୁଣ ପାରେ ଭେଦି ପର୍ବେ ସନତ କୁମାର
ପୁଚ୍ଛିଲେ ଯେ ଯାହା କହିଲୁଁ ତାହା ପ୍ରକଟ ନିତ୍ୟବିହାର
ସେକାଳେ ଏଦୃଶ୍ୟ ନୁହେଁ ଗୂଢ଼ରସ ତୁମ୍ଭ ପ୍ରଶ୍ନରେ ଏବେ ଶେ
ଆମ୍ଭର ସିଦ୍ଧି ଶୁଣିବା ପୂର୍ବବିଧି ଉପଦେଶ ବ୍ରଜରସେ
ବହୁତ ଜନମେ ସାଧୁଙ୍କ ସଙ୍ଗମେ ଗୋବିନ୍ଦ ଗୁଣ ଶୁଣିଲି
ଚରଣେ ସେବିଣ ଉଚ୍ଛିଷ୍ଟ ଭକ୍ଷିଣ ନିରନ୍ତେ ନାମ ଗୁଣିଲି ॥
ଶ୍ରଦ୍ଧାନୁ ଦିବସେ ଲାଳସା ମାନସେ ନୃତ୍ୟଭାବେ ଆସକତି
ବିପତ୍ତି ଘୁଞ୍ଚଇ ଆନ ନରୁଚଇ ହରି ରସେ ସଦା ରତି ॥
ବାସନା ବଳରେ ବ୍ରହ୍ମାଙ୍କ କୂଳରେ ଋଷି ରୂପେ ଉତପତି
ନିଗମ କର୍ମରେ ଏ ଲୋକ ଧର୍ମରେ ନ ପଶେ ସେ ରସେମତି
ବେଦମାର୍ଗେ ଥାଉଁ ଅସକତ ନୋହୁଁ ପ୍ରଭୁଭାବେ ହୋଇସୁଖୀ
ଦେବ ଋଷିଗଣେ ସଙ୍ଗଋଷିମାନେ ଉପହାସ କରେ ଦେଖି
ବିଧାତା କେବଳ କରନ୍ତି ଆଦର ପ୍ରଭୁଙ୍କ ସେବକ ଜାଣି
ଶ୍ରୀ ବ୍ରଜଚରିତ ଭାବଇ ନିରତ ଶତ୍ରୁ ମୋର ପରମଣି ॥
ଗୋକୁଳ ମନ୍ତ୍ରରେ ଗାୟତ୍ରୀଛନ୍ଦରେଋଷି କଲେ ଗୋକୁଳରେ
ବ୍ରହ୍ମା ଦୀକ୍ଷାପାଇ ବ୍ରଜରେ ସେବଇ ପ୍ରକଟ ଲୀଳା ରସରେ ॥
ଏମନ୍ତ ହୋଇ ଶ୍ରୀହରି ସଙ୍ଗେଥାଇ ପ୍ରେମ ରସକୁ ନପାଇ
ବ୍ରଜଙ୍କ ଭଗ୍ନୀ ଯେବେ ସେଦସ୍ଥା କରି ତେବେ ସେ ଏରସପାଇ
ବ୍ରହ୍ମାଙ୍କ କୃପାରୁ ବୃନ୍ଦାଙ୍କ ସେବାରୁ ତୁମ୍ଭର ପ୍ରଶ୍ନରୁ ଦିଶେ
ପୂର୍ବେଗୋପକନ୍ୟା କୃଷ୍ଣରେଭାବନାଘଟନାଧାତାଆଦେଶେ
ଏମନ୍ତ ଶୁଣି କୁବେର ସୁତଭଣି ଶୁଣିବା ଭେଦେବ ମୁନି
କେଉଁ ଅବସରେ ବ୍ରହ୍ମା ଶିକ୍ଷାଦେଲେ ସେବିଲେ ଭାବଘେନି
ବିସ୍ତାରି କହିବା ସୁଦୟ ବହିବା ଫେଡ଼ିବା ହୃଦୟ ବ୍ୟଥା
ଏମନ୍ତ ଶୁଣି ନାରଦ ମହାମୁନି କହେ ଅନୁଭବ କଥା
ସାନନ୍ଦ ହୋଇ ଲୋତକ ଧାରବହି ଶୁଣ କୁବେର ନନ୍ଦନ
ଏକଇ ଦିନେ ପରଶାବନ୍ତୀ ଭୁବନେ ବ୍ରହ୍ମାଙ୍କୁ କଲି ଦର୍ଶନ

ସକଳ ମୁନି ଆଦରେ ପଢ଼ନ୍ତି ଯୋନି ଏ ମୋର ମୁଖକୁ ଚାହିଁ
ଶ୍ରୀ ବୃନ୍ଦାବନରେ ବଚ୍ଛା ହରଣରେ ଗୋବିନ୍ଦ ମହିମା କହି ।
ଆମ୍ଭେ ଆଜଗଲୁଁ ଦରଶନ କଲୁଁ ଗୋବିନ୍ଦ ବାଳକ ବେଶେ
ଏକ ସମାଚାର ନାହିଁ ନା ଆଚାର ଉଚ୍ଛିଷ୍ଟ ସେ ଭୁଞ୍ଜାଭୁଞ୍ଜି
ବୁଦ୍ଧି ଭ୍ରମହେଲା ପରତେ ନକଲୁଁ କପିଚ ଲେଉଡ଼ିଲ ହରି
ଦେଖିବା ସେ ଆଜକଣରେ କି କାର୍ଯ୍ୟ ବଚ୍ଛାବାଳ କଲେ ଚୋରି
ଆପଣାର ଅଙ୍ଗୁଁ ଜାତକଲେ ପ୍ରଭୁ ଗୋପସୁତ ଗାବ ବଚ୍ଛା
ଯେମନ୍ତ ଯେ ରୂପ ବୟସ ସ୍ୱରୂପ ସ୍ୱଭାବ ଯେଯାହା ଇଚ୍ଛା ।
ଦେଖିଲୁଁ ମହିମା ଚେତିଲୁଁ ଗରିମା ବଚ୍ଛାବାଳ ନେଇଦେଲୁଁ
ଅନେକ ସ୍ତୁତିକରି ପାଦେ ପ୍ରଣତି ବିନୟ ଭଗତି ହେଲୁ ॥
ସେଯେ ଦୟାନିଧି ମୁହିଁ ଅପରାଧୀ କ୍ଷମାକଲେ ସବୁଦୋଷ
ଜଗତ ପାଳନେ ସୁବୁଦ୍ଧି ସୁଜ୍ଞନେ ଦେଲେ ପୁଣ ଉପଦେଶ ।
ନାଶ ମହୀଭାର ନିମନ୍ତେ ଅବତାର ପୂର୍ଣ୍ଣବ୍ରହ୍ମ ସନାତନ
ସଂଶୟ ଛୁଟିଲା ସୁପଥ ଫିଟିଲା ଭଗବାନ ଦରଶନ ॥
ପତିତ ତାରିବେ ଲୀଳା ବିସ୍ତାରିବେ ଭକ୍ତଜନେ ସୁଖଦେବେ
ଜଗତ ନିମନ୍ତେ ଗୋପୀଙ୍କ ସଙ୍ଗରେ ମଧୁର ରସେ ରସିବେ
ଏମନ୍ତ ଧାତା କହନ୍ତେ ଊର୍ଦ୍ଧ୍ୱରେତା ଶୁଣି ଶରଧାଅଶେଷ
ଅଷ୍ଟାଙ୍ଗ ଯୋଗେ ନପାଇବେ ବେଦମାର୍ଗେ ସେପ୍ରଭୁ ସ୍ୱୟଂପ୍ରକାଶ
ନିଗମ ଆଗମ ସେଁ ପୁଣ ଅଗମ୍ୟ ସେ ପ୍ରଭୁ ମାନବ ରୂପେ
ଅବିଦ୍ୟାବଳେଗୋପାଳମେଳେଖେଳେବୃନ୍ଦାବନଚନ୍ଦ୍ର ଗୋପେ
କି କି ଲକ୍ଷଣ କେବଣ ବର୍ଣ୍ଣିବ କେମନ୍ତ ଲାବଣ୍ୟ ରାଶି
ଦେଖିବା ଡୋଳେ ଉନ୍ମାଦ ମନକଲେ ବିଚାର ସକଳ ଋଷି
ବେଦ ବଚନ ଜାଣିଣ ତତ୍ତ୍ୱଜ୍ଞାନ ସାକ୍ଷାତ ମୁଖୁଁ ଶୁଣିବା
ଜ୍ଞାନ କର୍ମ ଯୋଗ ଉତ୍ତମ ଯେ ମାର୍ଗ ତତ୍ତ୍ୱ କରି ତା ଚିହ୍ନିବା
ସଂସାର ଚରିତ ଜୀବ ଆତଯାତ କେଉଁ ଭାବେ ହେଉଛନ୍ତି
କାହିଁ ଆସନ୍ତି କାହିଁ ପୁଣି ପଶନ୍ତି କାହାର ବଳେ ଭ୍ରମନ୍ତି ।
ଏ ସବୁ ସାଧନ ଜାଣିବା ନିଦାନ ଭଗବାନ ପରସନେ
କୁତ୍ସିତ ସଙ୍ଗ କରିବେ ବେଗେ ତ୍ୟାଗ ଦେବେ ସୁଖ ଦରଶନେ
ବିଦ୍ୟା ସମ୍ବାଦ ଜାଣିବା ତତ୍ତ୍ୱ ଭେଦ ସେ ପ୍ରଭୁ ସର୍ବ କାମଦ
କହିବେ ଯଥାର୍ଥ ପରମ ଯେ ଅର୍ଥ ନିଗମ ଉପନିଷଦ ॥
ଏମନ୍ତେ ସ୍ଥିତ ଅଛନ୍ତି ସର୍ବ ଯତି ଆମ୍ଭେ ହେଁ ଅଇଲୁ ସଙ୍ଗେ
ଶ୍ରୀବୃନ୍ଦାବନେ ଗୋବିନ୍ଦ ଦରଶନେ ପ୍ରବେଶ ହୋଇଲୁଁ ବେଗେ
ଦେଖିଲୁଁ ବନ ଅତ୍ୟନ୍ତ ଶୋଭାବନ ନବଦଳ ତରୁ ଲତା
ଅବନୀ ଲୋଟଇ ପବନେ ଟଳଇ ଫଳ କୁସୁମେ ଶୋଭିତା ।

ନିର୍ମଳ ବାଲି ସୁପଙ୍କ ପୀଠସ୍ଥଳୀ ପବିତ୍ର ଗୁଣ୍ଡି ସୁଷମେ
ମଧୁକର କୁଳ ମୁଖରବ କୋଳ ଶାରୀ ଶୁକ ମନୋରମେ ॥
କୋକିଳ ଗାୟଇ ବନ ସୁବାସଇ ମଳୟ ଗନ୍ଧ ମରୁତେ
ଖଗ ମୃଗ ରଙ୍ଗେ ବିହରେ ସୁସଙ୍ଗେ ସୁବାସ ରସ ବସନ୍ତେ ॥
ଯମୁନା ନଦୀ ବହଇ ବନ ଭେଦି ଶୀତଳ ପାତଳ ଜଳ
କୁମୁଦ କମଳ ଆଦି ଫୁଲ କୁଳ ପ୍ରଫୁଲ୍ଲେ ଦିଶେ ମଞ୍ଜୁଳ ॥
ମୀନ କୁଳ ଖେଳେ ତରଙ୍ଗ ଚଞ୍ଚଳ ହଂସ ଚକ୍ର ଚକ୍ରବାକ
ପନ୍ତି ପନ୍ତି ଭାଷେ କଳରବ ଘୋଷେ ସୁସ୍ୱରେ ଡାହୁକ ଡାକ ॥
ମଣ୍ଡିଣ ବାଲୁକା ତଟରୁ ଲତିକା ମୂଳ ଅତି ମନୋହର
ସଲିଳାନିଲ ସ୍ପର୍ଶ ବାଲି ଶୀତଳ ଗୋବିନ୍ଦ ସୁଖ ବିହାର ॥
ପିନ୍ଧିକେ କାଛେଣି ମାଳ ଗଉଛୁଣି କାଞ୍ଚିଦାମ ଘଣ୍ଟିସାର
ଫୁଲ ଓହଳଇ ଝୁମ୍ପା ଦୋହଲଇ ବିବିଧ ପଦକ ହାର ॥
ହାଗୁଡ଼ ମାଳୀ କଟିବନ୍ଧ ଶିଙ୍କୁଳ ଥୋପା ଜାଲିବନ୍ଧ ଚୂଢ଼
କଟି ଓଡ଼ିଆଣି କନକ କିଙ୍କିଣୀ ନାନା ବର୍ଣ୍ଣ ବାସପିନ୍ଧ ॥
କରେ କଙ୍କଣ ମୁଦ୍ରିକା ଶୋଭାବନ ଗଳେ ବନମାଳ ଲମ୍ବେ
କର୍ଣ୍ଣେ କୁଣ୍ଡଳ ଅଳକା ବେଡ଼ସାର କମନୀୟ ରତ୍ନ କମେ
କପୋଳେ ଶବକ ବଚନ ତିଳକ ଚୂଳ ଶୋଭା ଗଭା ଫୁଲେ
ବଚନ ବିଶାଖା ମୟୂର ଚନ୍ଦ୍ରିକା ଗୁଞ୍ଜି ଗୁଞ୍ଜି ଫୁଲମାଳେ ॥
ସର୍ବାଙ୍ଗେ ଚନ୍ଦନ ଝାଳେ କରଦନ ଶିଙ୍ଗା ବେଣୁ ଧ୍ୱନିକରେ
ତାଣ୍ଡବ ସ୍ୱଞ୍ଚାରେ ଆଳାପ ଉଚାରେ ଗାୟନ ଏକଇ ସ୍ୱରେ
କଟିରେ କିଙ୍କିଣୀ ନୂପୁର ବାଜେଣି ତାଳ ଅନୁଗତେ ବାଜେ
ଗୋଧନ ଚରାଇ ଲଉଡ଼ି ଖେଳାଇ ସାଧନ ମେଳାଇ ସାଜେ
ଊର୍ଦ୍ଧ୍ୱେଣ ଥାଇ ଗୋପାଳ ବୃନ୍ଦ ଚାହିଁ ଚିହ୍ନି ନ ପାରିଲୁଁ ହରି
ସର୍ବେ ସମଏକ ନାହିଁ ଊଣାଧିକ ଜାଣିବୁ କେମନ୍ତ କରି ॥
ଆଜ ଭଗବାନ ନଇଲେ ବା ବନ ରହିଲେ ଗୋପ ନଗରେ
ଜଗତ ଈଶ୍ୱର ଲକ୍ଷ୍ମୀ ପରିଚର ସେବକ ଗୋରସ ସଙ୍ଗରେ ॥
ଗୋପାଳବେଶରେବନରେବିହରେଫଳେକ ତୋଳିଣକରେ
କବଳେ ଖାଇ ଆରେକ ମୁଖେଦେଇ ସ୍ୱାଦୁ ବୋଲିପ୍ରୀତିଭରେ
କେହୁ ଠାକରହି ଦେନିଧ ପଳାଇ ଅଙ୍ଗୁଳି ହଲାଇ ଖାଇ
ସ୍ୱାଦୁ ଫଳ ଗଛି ଆରେବାଳକେ ଅଛୁ ଥୁଥୁ ଛେପକୁ ପକାଇ
ଅମୃତ ବୋଲି ନିଅନ୍ତି ଜୁରକରି କେହୁ ଲୁଚିଇ କେ ପାଇ
ଖେଳରେ ଜଣି କନ୍ଧେରେବସି ପୁଣି ହେଉ ଘେନ କେହୁ ଯାଇ
ବାହୁ ଯୁଦ୍ଧ କରି ହୋଇ ଧରାଧରି ଯୋଡ଼ି ବନ୍ଧେ ଗଡ଼ି ଯାଇ
ହୁଙ୍କାରନାଦେ ଉଠିକେ ମାରେ ପାଦେ ଭୟେଣ ପୁଣପଳାଇ

ଧାଇଁଧରନ୍ତେ ଛିରଣଧରି ଦନ୍ତେ ଦୋଷକଲବୋଲିବୋଲେ
କେ ଦୁଇ ଜଣ ଯେହ୍ନେ ମାଲବିଜ୍ଞାଣ କେହୁ ଉପରେକେହୁତଳେ
କେ ପେଲାପେଲି ନୋଅଇ ଖଣ୍ଡେଠେଲି ସେପୁଣ ଯୁଞ୍ଝାଇଆଣେ
ନୁହେ କେହୁ ଊଣ ଦୁହେଁ ସମକକ୍ଷ ଯୁଦ୍ଧ ରଙ୍ଗେ ଜଣେଜଣେ
ଘୁଡ଼ନ୍ତି ନଉଡ଼ି ଘଉଡ଼ା ଘଉଡ଼ି ଠାଣେ ରହି ଠିକାଠିକ
ଫେରାଇ ବୁଲାଇ ପିଠିକେ ପଳାଇ ପାଞ୍ଚେ ରହି ଟକା ଟକ
ବସି ଅଭ୍ୟାସି ଲଉଡ଼ି କେହୁ କସି ଗଳାପଳାଇଣ ପିଠି
କେ ପୁଣି ଆଉଂ ନୀଳାଗତ ଲଉଡ଼ି ଗଳାମାଳା ନାଏ ଗୁଣ୍ଠି ॥
ସାଧନସାରେ ଆଉ ବାଙ୍କ ସ୍ୱସାରେ ଯିବା ଆସିବା ଛଟକେ
ଧାଇଁ ଧପଟେ ରହନ୍ତି ଆଉପଟେ ହାର କୁଣ୍ଡଳ ଝଟକେ ॥
ଅଙ୍ଗ ଟଳାଇ ବେନି ବାଡ଼ିବୁଲାଇ ନୃତ୍ୟକାରୀ ପ୍ରାୟେ ଭ୍ରମେ
ମଣ୍ଡଳ ଆକାରେ ଚକ୍ର ଅନୁସାରେ ଶର ନିବାରଣ କ୍ରମେ ॥
ଚଉଲଉଡ଼ି ଊର୍ଦ୍ଧ୍ୱକୁ କେହୁଚ୍ଛଡ଼ି ଏକଧରି ଆର ଫିଙ୍ଗେ
ଯିବା ଆସିବା କରେ ଧରି ପେଶିବା ସାଧନ ସ୍ୱଭାବ ରଙ୍ଗେ
କେବୋଲେବାଛୁ ନୋହିଲାରାଇ କହୁଆଗେସାଧନଦେଖାଇ
ଲଉଡ଼ି ପରେ ଲଉଡ଼ି ଊର୍ଦ୍ଧ୍ୱେ ଧରେ ସାଧନ ବଳେରଖାଇ
ଏକ.ଆରକେ ସାଧନ କଉତୁକେ ବେଳୁ ବେଳ ଶବ୍ଦପଡ଼େ
ଆଶ୍ଚର୍ଯ୍ୟ ପାଇଲୁଁ ଦେଖିଣ ରହିଲୁଁ ଶ୍ରଦ୍ଧା ଅନୁରାଗଗାଢ଼େ
ରାମ ଗୋବିନ୍ଦ ନପାଇରୂପ ଭେଦ ଊର୍ଦ୍ଧ୍ୱ ଋଷି ସର୍ବରୂପି
କାନନ ମଧ୍ୟେ ଗୋପସୁତ ସନ୍ନିଧେ ପ୍ରବେଶ ହୋଇଲୁଁ ଆସି
ଆମ୍ଭଙ୍କୁ ଗୃହେଁ କୁମାରେ ଭକ୍ତି ବହି ମୂର୍ଦ୍ଧନରେ ଦେଲେକର
ହେ ମୁନିଗଣେ ରାଇଲ କିଂ କାରଣେ ଗୃହଉଡ଼ି ଖେଡ଼ି ଆମ୍ଭର
କଲ୍ୟାଣ କରି କହିଲୁଁ ବ୍ରହ୍ମବୃଷି ତୀର୍ଥଯାତ୍ରା କରିଯାଉଁ
ତୁମ୍ଭଙ୍କୁ ଦେଖି ହୋଇଲୁଁ ବନେ ସୁଖୀ କଉତୁକେ ଦେଖିରହୁଁ
ଶୁଣିଏମନ୍ତ ଗୋପାଳେ ତୋଷଚିତ୍ତ ପୂର୍ଣ୍ଣେ ସଖିଳା-ବିନୋଦେ
ସୁମେଳ କରାଇ ଗାବଙ୍କୁ ଚରାଇ ଶିଙ୍ଗା ଶଙ୍ଖ ବେଣୁନାଦେ
ଶ୍ରମରେ ପୂର୍ତ୍ତି ହୋଇଲେ ଏକ ଗୋଷ୍ଠୀ ବିଶ୍ରାମାଧାରେ ରହିଲେ
ଚଉଷମ ପୀଠ ବିସ୍ତାର ନିବାଡ଼ ଦ୍ରୁମ୍ମା ପଲ୍ଲବ ଗହଳେ
ତହିଁରେ ରହି ଶୀତଳ ତନୁହୋଇ ଉପାଧି ନଖେଡ଼ି ଭୁଆଇ
ଚବଶ କୋଠି ଚନ୍ଦ୍ରର ପାଳିକାଠି ଧୂପ ଧୂନ ସାର ନେଥାଇ
ମଧୁମଙ୍ଗଳ ଆଗେ ହୁଏ ସୁବଳ ଦାମ ଶ୍ରୀଦାମ ଏ ବେନି
ବଳାଇ କହ୍ନାଇ ଧାସୀ ହୋଇଆର ସକଳ କୁମାର ଯେହ୍ନ
ଛକଡ଼ା କଉଡ଼ି ଝମକଣ ତେଡ଼ ଦଶ ପଚିଶ ଏ ଡ଼ାକେ
ଏହାନେ ଦାହାର ପୁଅ ଯେହ୍ନସାରେ ଛକାବାରେ ନପୁଁସକେ
ଗୃହ ତିନ ଦୁଇ ହାତଦାନ ଏହି ଏରୂପେ ସପତ ଦାନ
ଦଶ ପଚିଶ ଦାନମଧ୍ୟେ ସରସ ପ୍ରଥମେ ସାରି ଗମନ ॥
ଦାନବଳେ ଚଳେ ଚଉହରେ ବୁଲେ ମାଡ଼ମାରି ପାଶଉଠେ
ଦାନର ସ୍ଥାନେକେତେକୋଠୀଗମନେ ମାଡ଼ଖାଇଣଲେଉଟେ
ଛକେ ଯେବେ ଥାଇ ମାଡ଼ ତହିଁନାହିଁ ଏରୂପେ ଏ ପଞ୍ଚଣାଇ
ପୀଡ଼ିକୁ ପୀଡ଼ ସଂସାର ବନ୍ଧଖେଡ଼ ହେଉନୁହେ ମୁନି ସ୍ୱହିଁ ॥
ଋଷିଙ୍କି ଜ୍ଞାନ ସଖାଙ୍କୁ ସନମାନ ବୃନ୍ଦାବନେ ନବଲୀଳା
ବଟୁକୁ ହରାଇ ରହସ୍ୟ କରାଇ କପର୍ଦ୍ଦୀ ଖେଳରେ ମେଳା ॥
ତାମସ ରାଜସେ ହରଷ ବରସେ ଚୋଟପାଡ଼ି ମାଡ଼ ଛଳେ
ନୁହେକଲେ ବାଞ୍ଛା କପର୍ଦ୍ଦୀ ଯେଇଚ୍ଛାଦାନକର୍ମବଳେଚଳେ
ଥୋଇଣ ଏ ଖେଳ ଏରୂପେ ରଚିଖେଳ ଚଞ୍ଚଳବୃହିଁ ହୋଇଲେ
କେଣେଗଲେଗାଣ୍ଡି ଧାଇଁ ଧାଇଁ ଭାଇବୋଲିଖେଳଭଙ୍ଗି ଗଲେ
କୃଷ୍ଣ ପ୍ରସନ୍ନ ନୋହିଲେ ଦରଶନ ନପାଇ ନଜାଣି ଗଲୁଁ
ବିଧାତା ଛାଣି ମିଳିଲେ ପଥେ ପୁଣି ଦେଖିଣ ପ୍ରମାଣ କଲୁଁ ॥
ପୁଚ୍ଛିଲେ ବିଷ୍ଣୁ ସକଳେ ଥିଲେ କାହିଁ କହିଲୁଁ ସର୍ବ ଚରିତ
ବୋଇଲ ହରି ଗୋକୁଳେ ଅବତରି ଶୁଣି ଲୁବ୍ଧ ଆମ୍ଭଚିତ୍ତ
ଗଲୁଁ ବୃନ୍ଦାବନେ ପ୍ରଭୁଙ୍କ ଦର୍ଶନେ ଭେଟ ନପାଇଲୁଁ ତହିଁ
ଗୋପାଳ ବାଳ ଖେଳନ୍ତି କୁତୂହଳ କେବଳ ଦେଖିଲୁଁ ରହି
ଲଉଡ଼ିଖେଳ ପ୍ରତିଣ ହୋଇ ମେଳ ପଚିଶାଇ ନାମେଖେଳେ
ଗୃହଗୋପାଳେଲକ୍ଷଣଙ୍କଆବୋରେସାକ୍ଷୀବେନିଗୋପବାଳେ
ବିଧାତା ଜାଣି କହିଲେ ପରମାଣି ବୋଲନ୍ତି କହିବା ଆମ୍ଭେ
ଦରଶନ କଲ ଜାଣିନପାରିଲ ସର୍ବ ବଞ୍ଚିଲ ତୁମ୍ଭେ ॥
ସେ ଭଗବାନ ଦେବେଆଗେଦର୍ଶନଗୋପାଳସଙ୍ଗେଭେଟିବେ
ବିଦ୍ୟା ବିବାଦେ ଜ୍ଞାନ ଯୋଗସମ୍ବାଦେ ଆମ୍ଭରସଙ୍ଗେମଜ୍ଜିବେ
ଏମନ୍ତ ମନ ଜାଣି ସର୍ବଗଞ୍ଜନ ଦେଖାଦେଇ ଭୁଲାଇଲେ
ଗୋପାଳ ପୁଏ ଶ୍ରୀକୃଷ୍ଣ ଭିନ୍ନନୁହେ ଏବୁଦ୍ଧି ତୁମ୍ଭନୋହିଲେ
ନିଜ ପାରିଷଦ ଭଗତ ପ୍ରସିଦ୍ଧ ସମସ୍ତେ ମୁକୁନ୍ଦବତ
ତାଙ୍କ ସମାନ ଆମ୍ଭେ ପଞ୍ଚଳପନ ନୋହୁଁ ନୋହୁଁ ସତ୍ୟସତ୍ୟ
ଗୋପାଳେ ଇତର ବୁଦ୍ଧି ସେ ତୁମ୍ଭର ହରିଙ୍କି ପାଇବ କାହୁଁ
ନମାପରା ହୋଇ ନହାଇଲା ଗର୍ବ ହେଳା ଅନ୍ତର ବୋଇଲି ଯହୁଁ
ଏ ନନ୍ଦନନ୍ଦ ଧାମ ବସୁଧ ଅନୁପମ ସୁରେବେଣ ସମାନ ମତେ
ବ୍ରହ୍ମାନନ୍ଦ ସୁଖ ପ୍ରସାଦରେ ନଦେଖି ଚେଷ୍ଟ ନପାଇଲ ଶକ୍ତି
ତୁମ୍ଭେ ଯେ ମନେ ଛକିଲ କର୍ମଜ୍ଞାନେ ଦେଖି ଦେଖି ନଜାଣିଲ
ଇତର ଖେଳ ବୋଲି ମନେକଲ ଉପଦେଶ ନମାନିଲ ॥

ସକଳ ଆନନ୍ଦ ସକଳ କାମଦ ଯେ ଯାହା ଭାବଇ ପାଇ
ସଂସାରେ ହୋଇ ତୁମ୍ଭଙ୍କୁ ଉପଦେଶ ଖେଳରଚ ପଚସାଇ ॥
କାମନାଯାହା ଦେଖିଲୁଁ ପୁଣତାହା କେବଳ ମୋହ୍ବଲହେତୁ
ଜୀବ-ସଞ୍ଚାର ଜ୍ଞାନ କର୍ମ ବିସ୍ତର ସଂସାର ବେଭାର ତତ୍ତ୍ୱ
ଏମନ୍ତ ଶୁଣି ଚରଣେ ନମି ମୁନି ବୋଲନ୍ତି କିରୂପେ କହି
ଈଶ୍ୱର ଯହିଁ ସକଳ ଶୋଭା ତହିଁ ତୁମ୍ଭହେତୁ ଜନ୍ମ ନୁହି ॥
ଇତର ଖେଳ ପରମଜ୍ଞାନ ବୋଲି କିରୂପେ ହେବ ଘଟନା
ଅଳପ ବୁଦ୍ଧି ପାରିବୁ କାହିଁ ଭେଦ ତୁମ୍ଭେ ଜାଣି କହିକନା
ବିଧାତା ଭଣେ ଶୁଣିବା ମୁନିଗଣେ ପିଣ୍ଡ ବ୍ରହ୍ମାଣ୍ଡ ବିସ୍ତର
ପଚିଶ ପ୍ରକୃତି ଜୀବସଙ୍ଗେ ହେତି ପଚିଶାଇ ନାମଚାର ॥
ଯେ ପାଲଗୋଟି ବ୍ରହ୍ମାଣ୍ଡ ପୂର୍ଣସେଟି ଚତୁର ଦଗ ପ୍ରକାଶି
ହିଗୁଣ ଜନ୍ଦେ ସତୁର ନାଡ଼ି ଭେଦେ ଆଠକାଳ ବାରମାସି
ଆର୍ଥିଚ୍ଛକ ଯେହ୍ନ ଆଠକ୍ଷେତ୍ର ସେହ୍ନ ମାଡ଼ି ନଖାଇ ତହିଁରେ
ବୃଶଖାନି ସାର ବିଶୁଗର୍ଭେ ଠୁଳ ଜନମ ଦାନ କର୍ମରେ ॥
ବୃଶ ପ୍ରଜାପତି କରେ ଉପପତ୍ତି ସାକ୍ଷୀ ଯେଟି ରାମହରି
ନୁହେ କଲେବାଞ୍ଛା କନ୍ଦର୍ପ ଯେ ଇଚ୍ଛା ଷଡ଼ ଅଙ୍ଗରେବିହରି
ଯଜନ ଯାଜନ ଧ୍ୟାନ ଧ୍ୟାପନ ଦାନ ପ୍ରତିଗ୍ରହ ଆଦି
ଅଧୋର୍ଦ୍ଧ୍ୱ ବଦନେ ପ୍ରଜାପତି ଖାଣେ ବଳଶ ଗୁଣେ କପର୍ଦ୍ଦୀ
ସପତଦାନ ସପତ ଆବରଣ ପଚିଶଟି ପରକୃତି
ପୁଅ ଏଥି ଯେହ୍ନ ଜୀବ ଆତ୍ମା ସେହ୍ନ ହେନ ଗର୍ଭ ଉତପତ୍ତି ॥
ଏଥେ ଦଶଦାନ ଦଶ ଇନ୍ଦ୍ରି ଜାଣ ମନ ବୀଜ ଶରଧାଏ
ନପୁଂଷକ ଦାନ ଛକା ବାରଜାଣ ଏ ପୁଣ ଯେମନ୍ତ ଦେହେ
ଶୃଙ୍ଗାର ଆଦି ଯେହ୍ନ ରସ ପ୍ରସିଦ୍ଧି ବାରବୋଲି ହେନ ତାହା
କାମ କ୍ରୋଧଆଦି ଏ ଷଡ଼ ବିବାଦୀ ଛକା ଦାନ ହୋଲା ଯାହା
ଧର୍ମ ଅର୍ଥ ମୋକ୍ଷକାମ ଏ ପ୍ରତ୍ୟକ୍ଷ ହାତ ଦାନ ଦୁଗା ବୃଶ
ଅଧି ଆତ୍ମା ହେନ ସ୍ୱୟଂ ଗୁଣ ତିନି ପାପ ପୁଣ୍ୟ ଦୁଗାବୋଲି ॥
ସପତ ବିଭାଗ ଚଉଷଠି ଅଙ୍ଗେ ବ୍ରହ୍ମାଣ୍ଡ ଏ ଆତଯାତ
ଚଉରାଶି କୋଠି ନର୍କଯୋନି ଏଥି ଭୂମି ସାର ଗର୍ଭସ୍ଥିତ
ଦାନ ସ୍ଥାନେ ଯାଇ କେତେ କୋଠିଥାଇ ମାଡ଼ିଖାଇ ଲେଉଟଇ
କେହ୍ନ ଦାନବଳେ ଡେଇଁଯାଇ ହେଲେ ପେଟରେ ଯ ଇପାରଇ
ଅନେକ ଯୋନି ସଂସାରେ ଜୀବ ଭ୍ରମି ମନୁଷ୍ୟ ଜନମ ଏଥି
ଏଠାରେ ଯେବେ ମାଡ଼ିକୁ ଖାଇଥିବେପୁଣି ତେତିକ ଭ୍ରମଇ
ତେଣିଲେ ଗର୍ଭେ ପଶିଣମୋକ୍ଷଲଭେ ଏ ରୂପେ ସଂସାରଲୀଳା
ସଖାଙ୍କୁ ଶିଖାଇ ତୁମ୍ଭଙ୍କୁ ଦେଖାଇ ସାକ୍ଷୀହୋଇ କରେ ଲୀଳା

ଖେଳଇ ଖେଳାଇ ଜୀବ ଆତ୍ମହୋଇ ଭଗବାନ ମନଇଚ୍ଛା
ବିଦ୍ୟା ପ୍ରଗଲ୍‌ଭ ଭଙ୍ଗିଣ ତୁମ୍ଭଗର୍ବ ପ୍ରାକୃତେ ପୂରଇ ବାଞ୍ଛା
ଗୋପ କୁମାରଙ୍କୁ ନ ଆସେ ମନକୁ କୃଷ୍ଣନିଜ ପାରିଷଦ
ସେ ଯାକୁ ପ୍ରସନ୍ନଦିଅନ୍ତି ଦର୍ଶନ ଗୋବିନ୍ଦ ପରମ ପଦ
ଅବନୀଭାର ଖଣ୍ଡିନେ ଅବତାର ଏମନ୍ତ ସେ ଆମ୍ଭେ ଜାଣି
ଭଗତ ଜନେ ପ୍ରେମରସ ପ୍ରଦାନେ ନିଜ ଅଭିଷ୍ଟଏ ପୁଣି ॥
ଜ୍ଞାନେ ବାଅଜ୍ଞାନେହରିଦରଶନେ ଧନ୍ୟସେ ବୋଲି ତାହାଙ୍କୁ
ତୁମ୍ଭେ ଗୃହିଲ ଉପଦେଶ ପାଇଲ ଧ୍ୟାନେ ନ ପାଇଯାହାକୁ
ଏମନ୍ତ ଶୁଣି ବୋଲନ୍ତି ନମି ମୁନି ତୁମ୍ଭକୃପାରୁ ଜାଣିଲୁଁ
ଆତ୍ମ ତପ ଫଳ ହୋଇଲା ସଫଳ ଏବେଯେହେତୁ ପାଇଲୁଁ
ଏମନ୍ତ ବର ଦିଅସି କୃଶକର ଶ୍ରୀବୃନ୍ଦାବନେ ଭ୍ରମିବୁଁ
ଗୋପ କୁମାରେ ଗୋବିନ୍ଦଅନୁସାରେସେହିଭାବରେରସିବୁଁ
ଏମନ୍ତ ଶୁଣି ହରଷେକୁଶପାଣି ଅସ୍ତୁ ହେଉ ହେଉ ବୋଲେ
ସ ନିଧେ ମୁହିଁ ରହିଲି ଏକା ହୋଇ ତଟସ୍ଥ ନେ ମୁନିଗଲେ
ମୋତେ ଅନାଇ ହସିଲା ଭାବହୋଇ ବିଷ୍ଣୁ କରୁଦେଇଣିରେ
ଗୋଲୋକ ଋଷି ବ୍ରଜରସେ ଲାଳସୀ ହରି ପ୍ରସନ୍ନ ତୁମ୍ଭରେ
ଏବେ ତୁମ୍ଭେଯାଅ ଗୋକୁଳେରଥାଅଗୋପକନ୍ୟାଙ୍କୁଭସ ଅ
ପୂର୍ବେ ସେ ଋଷି ଦଣ୍ଡକା ବନବାସୀ କୃଷ୍ଣ ସଙ୍ଗରେ ମିଶାଅ
ନୃପତି ଯେମା ଶୁଣି ରସମହିମା ମନରେ ପତି ବରିଲେ
ଏକ ପତ୍ନୀ ବ୍ରତ ନପାଇ ଯୁଗତେ ଏ ଯୁଗେ ଅନୁସରିଲେ
ଅନଳ ନନ୍ଦନେ ହରିଙ୍କ ଶୋଭନେ ଭାବିନୀ ଭାବକୁ ଇଚ୍ଛି
ଏରୂପେ ତିନି ପ୍ରତି ବ୍ରଜ ନନ୍ଦିନୀ ଚାରିପ୍ରକାରେ ମୃଗାକ୍ଷୀ
ଯେମନ୍ତେ ପାର ଉପାୟ ଯାଇକର ଗୋବିନ୍ଦସଙ୍ଗେ ମିଳାଅ
ନର ଲୀଳାରେ ଲୌକିକ ସମାଚାରେ ଲଜ୍ଜା ଛଡ଼ାଇଖେଳାଅ
ପିତା ଆଦେଶ ପାଇ ମନେ ହରଷ ପ୍ରଣାମ କରି ଅଇଲୁଁ
ଧାତା ଅନୁମତେ ଅନୁଗତପଥେ କଳିଯୁଗ ସଙ୍ଗୀହେଲୁଁ ॥
ଯୁଗରେ ଧନ୍ୟ ଅଳପେ ବହୁପୁଣ୍ୟ ହରିନାମେ ସର୍ବସିଦ୍ଧି
ଶକଟା ଖେଳ କଳିର ଧର୍ମ ବଳ ଭିଆଇ ଯତନେ ବିଧି ॥
ପାଂଚପାଳି ଯେହ୍ନ ଯୁଗରୂପ ସେହ୍ନ ଆଠକାଳ ବାରମାସୀ
ହୃଦ ସଦନେ ରାମକୃଷ୍ଣ ନର୍ତ୍ତନେ ଶାଳଗ୍ରାମ ଶୋଭାଦଶି ॥
ଅଙ୍ଗରେ ଚକ୍ର ଏକବିଂଶ ଲକ୍ଷଣ ବିନ୍ଦୁ ମନ୍ତ୍ର ମୁଦ୍ରାଧରେ
ଚାରିଖାନି ସ ରେ ଗୁଣ ଅନୁସାରେ ମନ୍ତ୍ରଦାନ ଅନୁସରେ
ଏମନ୍ତ ଅଙ୍ଗ ଧରିଣ କଳିଯୁଗ ଉପଗତ ଅଦଭୂତେ
ଆରିଧି ଯୋଗ ଜାଣିଲୁଁ କଳିଯୁଗ ବିଧାତାଦେଲେସଙ୍ଗତେ

କାଖେଣପାକ ବୋଲନ୍ତି ଲୋକେଦେଖି କଳି ଧୋକଡ଼ପଣ୍ଡିକ
କଳିପ୍ରିୟ ମୁନି ବୋଲିଉ ପ ଯେନି ଦୁଃଖ ନକରୁଁ ତନ୍ଦ୍ରିକ ॥
ଏମନ୍ତେ ଆସି ଗୋକୁଳ ପୁରେ ପଶି ଗୁପତ ପ୍ରକଟ ଦେଖି
ଗୋପ କୁମାରୀ ଯେମନ୍ତେ ହରି ବରି ଉପାୟବିଧାନଯୋଖି ॥
ଏ ଗୋପ ନଗର ଗୃହବର୍ଣ୍ଣେ ଘର ଏକ ଅନେକ କୁମାରୀ
ଅପୂର୍ବ ସୁନ୍ଦରୀ ନବୀନ କିଶୋରୀ ଲକ୍ଷ୍ମୀରୂପେ ଅନୁସରି ॥
ଜନକ ଜନନୀ ଏହିକି ନନ୍ଦିନୀ ରୂପଗୁଣ ଶୋଭା ଗୃହିଁ
ନନ୍ଦ ନନ୍ଦନ ବରିଣ ମନେମନ ଭରସି ନପାରେ କହି ॥
ସୁବେସ କରି ଯତନରେ କୁମାରୀ ନନ୍ଦ ମନ୍ଦିରେ ପଶନ୍ତି
ଯଶୋଦା ଦେବୀ ଚରଣେ ନିତ୍ୟ ସେବି ପ୍ରସାଦପାଇ ଆସନ୍ତି
ରୂପପୁଣ ଗୃହିଁ ମାଏ ତୋଷାହୋଇ କୃଷ୍ଣ ବରକୁ ବିଗ୍ଭରି
ଏକଇ ପୁତ୍ର ସହସ୍ର ଉପଗତ କାହାକୁ ଏଥିରେ ବରି ॥
ରୂପଗୁଣେ ବାଳୀ ଏକ ଆରେବଳି ବଧୂଭାବ ଅନୁରାଗେ
ଖୀରଡ଼ି ଦେଖି ପୀରତି ମନେରଖି ଫେଡି ନକହେ କାଆଗେ
ନବ କିଶୋରୀ କୃଷ୍ଣ ମାଧୁରୀ ଦେଖି ମଦନେ ବିରହୀ
ମୂର୍ଚ୍ଛି ନପାରି ସମୟ ଅନୁସରି ଲୁକ୍ଷ୍ମ ଯହିଁଥାନ୍ତି ରହି
ଗୋଷ୍ଠ ଗୋଦହନେ କାନନ ଗମନେ ଜଗି ଶ୍ରୀମୁଖ ନିରେପେ
କୃଷ୍ଣ ନଦେଖି ନିମିଷ ଯୁଗ ଲେଖି ଚଞ୍ଚଳ ଚିତ୍ତ ସନ୍ତାପେ
କୃଷ୍ଣକୁ ଦେଖି ଯେମନ୍ତ ଶଶୀମୁଖୀ କୃଷ୍ଣଙ୍କୁ ତେମନ୍ତ ଗୃହିଁ
କେହି କାହାକଥା ନପାଇଣ ବ୍ୟଥା ଅନ୍ତର୍ଗତେ ଜଡ଼ରହି ॥
ସୁଦାମ ଉଜ୍ଜ୍ୱଳ ବସନ୍ତ କୋକିଳ ବସୁଦାମ ଅରଜୁନ
କିଙ୍କିଣୀ ଗନ୍ଧର୍ବ ନର୍ମ ସଖାସର୍ବ ଜାଣନ୍ତି ଗୋବିନ୍ଦ ମନ ॥
ନବ କୁମାରୀ ରସହାସ ବିଭ୍ରୁରୀ ଭଙ୍ଗିମା ରଙ୍ଗେ ରହିବା
ଅଳସୀ ହୋଇ ଅଙ୍ଗଶୋଭା ଦେଖାଇ ଅକଣ୍ଠାପିତେ ଗୃହିଁବା
ଏ ସର୍ବକଥା ମନେ ଯେତେ ବ୍ୟବସ୍ଥା ପ୍ରିୟଙ୍କସଙ୍ଗେ ଭଲେଣି
କନ୍ୟାଙ୍କୁ ଦେଖି ମଦନେ ହୋଇ ଦୁଃଖୀ କହନ୍ତି କମଳପାଣି
ପୁରକୁ ଗଲେ ଜନନୀଗଣ ମେଳେ ଲଜ୍ଜେଣ ନପାରେ ଗୃହିଁ
ପଥେ ଅଇଲେ ଶୁରଜନ ଗହଳେ କି କହିବା ଅବା ତହିଁ
ନବକନ୍ୟା ସର୍ବେ ଏ କାନନେଥିବେ କେମନ୍ତେ ଭେଟ ପାଇବା
ସ୍ୱରଇଆଖି ହୋଇବା ଦେଖାଦେଖି କେଉଁରସେ ରସାଇବା
ବୋଲନ୍ତିସୁଦାମ ଶୁଣ ପ୍ରିୟତମ ଯେତେ ଏ ଗୋପକୁମାରୀ
ତାତ ଜନନୀ ତୁମ୍ଭଙ୍କୁଛନ୍ତି ମାନି ଆନ ବରିଣ ନଇଛି ॥
ଯାତନେ ଶୁଣ ଦେଖାଦେଇ ତୁମ୍ଭରେ ଯାଆନ୍ତି ନବସୁନ୍ଦରୀ
ତୁମ୍ଭଙ୍କୁ ଦେଖି ମନରେ ହୋଇସୁଖୀ ହୃଦୟ ମଦନେ ଘାରି

ବନ ଗମନେ ଦେଖିତ ଦୁଃଖମଧ୍ୟେ ଆସନ୍ତି ପଛେଗୋଡ଼ାଇ
ବିଚ୍ଛେଦ ଖେଦ ମଦନ ମଦଦ୍ରୁତେ ବିବେକ ବୁଦ୍ଧି ବୁଡ଼ାଇ ॥
ତୁମ୍ଭ ପାଦଧୂଳି କେବଳ ଶଙ୍କାକି ଯେନି ଖେଳୁଥାନ୍ତି ବନେ
ମନକୁ ଖେଳନ୍ତି ଦେଖିଲେ ପଳାନ୍ତି ଏହିରୂପେ ପ୍ରତିଦିନେ ॥
ଜଗିଲେ ବାଟ ପାଇବା ଅବା ଭେଟ ନିକଟ ହେଲେ ପଳାଇ
ଅବୋଧ ବାଳୀ ନଜାଣେ ରସକେଳି କେହୁ ପାରିବ ମିଳାଇ
ଶୁଣି ସରାଗେ କୁମାରୀ ଅନୁରାଗେ ଉଦବେଗ ଗୋପୀନାଥ
ରଙ୍ଗେ ଗୋଧନ ଚରାନ୍ତି ଉପବନ ଜଗିଣ କୁମାରୀ ଯୂଥ ॥
ସେହୁ କୁମାରୀ ନବ ପ୍ରେମଗୃଭୁରୀ ହରି ଦର୍ଶନ ଲାଳସେ
ଯମୁନାବନେ ପାଦଧୂଳି ସେବନେ ଖେଳେ ମନୋହରବେଶେ
ଆମ୍ଭେ ଯୋଗଲୁଁ ପରବେଶହୋଇଲୁଁ ଯମୁନାରେସ୍ନାନକଲୁ
ଗୋକୁଳ ନଗରୀ ପରିକ୍ରମା କରି ପୌର୍ଣ୍ଣମାସୀ ସ୍ଥାନେ ଗଲୁଁ
ସେଭଗବତୀ ପାଦେ ନୁହାଇ ଭକତି କଲୁଁ ବନ୍ଦନ ଅର୍ଚ୍ଚନା
ସେ ଦେବୀ ହସି ବୋଇଲେ ବିହ୍ୱଳପଣି କୃଷ୍ଣ କୁମାରୀସର୍ଜ୍ଜନା
ଆମ୍ଭେତହିଁକି ଉପାୟେଅଛୁଁ ଯୋଗିଏକାନ୍ତେ ନୂହସଂଯୋଗେ
ସେ ସତ୍ୟ ଯୁଗ ପାଇଛୁଁ ଉଦବେଗ କେମନ୍ତେ କୃଷ୍ଣସମ୍ଭୋଗ
ବୃନ୍ଦାହିଁ ମଞ୍ଜି ହୋଇଣ କୁନ୍ତ ଗଞ୍ଜି ଏକାନ୍ତେ ମିଳନନୁହେ
ତୁମ୍ଭେ ଅଇଲ ହୋଇଲା ଏବେଭଲ ମିଳନ କରାଅ ଦୁହେଁ ॥
ସେକୃପାଣୀଳେମୋହରେଦୟାକଲେବୋଇଲହେଦେବର୍ଷି
ମଧୁରରସ ଶ୍ରବଣେ ଯେବେଆଶ ପୁରୁଷଗୁଣ ତେଜସି ॥
ଗାନ୍ଧର୍ବୀମନ୍ତ୍ରେ ନ୍ୟାସକଲେ ମୋ'ଗାହେଶ୍ୱରୀକୁଣ୍ଡେସ୍ନାନକରାଇ
ଯୁବତୀ ଭାବ ବିକାର ଉଦ୍‌ଭବ ନାରଦୀ ଭେଦକୁ ପାଇ ॥
ତାଳ ମର୍ଦ୍ଦଳ ବୃନ୍ଦାବନ ମଙ୍ଗଳ ନାମ କୀର୍ତ୍ତନେ ଗାଇଲୁଁ
ଦେବୀ ଆଦେଶେ ରହିଲୁଁ ବୃନ୍ଦାପାଶେ ମହାଆନନ୍ଦପାଇଲୁଁ
ବୃନ୍ଦା ଆରାଧି ହୋଇଲୁଁ ତନୁସିଦ୍ଧି ବ୍ରଜେଶ୍ୱରୀଙ୍କ ପରସନ୍ନେ
ଯମୁନାକୂଳେ କୁମାରୀଗଣ ଖେଳେ ଉପଗତ ଦରଶନେ ॥
କୃଷ୍ଣ ପାଦଧୂଳି ଘରଦ୍ୱାରେ କରି ଆସନ ବସନ ଧନ
ଦୁଆରେ ଯାଇ ଅତିଥି ଭାବେରହି କଲୁଁ ବେଦ ଉଚ୍ଚାରଣ
ଅଥର୍ବ ବେଦ ଗୋକୁଳ ଗୁଣଭେଦ ଗୋପାଳ ତାପିନୀପଢ଼ି
ବରଜ ମହାତ୍ମ୍ୟ ଅଛନ୍ତି ଉତ୍ତମ ଶୁଣନ୍ତେ ଶରଧା ବଢ଼ି ॥
ତପୋଧନ ଜାଣି ସଲକ୍ଷେ ତରୁଣୀ ଧୂଳି ଜଳାସନ ଦେଇ
ବିନୀତହୋଇ ଓଳଗି ପାଦେ ଶୋଇ ସଙ୍କୋଚିତେ ଉଠିରହି
ଓଳଗ ହେଳା କଲ୍ୟାଣ କଲୁଁ ପୁଣି ଭିକ୍ଷା ମାଗିଲୁଁ ଯତନେ
ଶୁଣି କୁମାରୀ ନିର୍ମଳ ମନ କରି ସମ୍ପାଦି ଅନ୍ନ ବ୍ୟଞ୍ଜନେ ॥

ଭୋଜନ ଦ୍ରବ୍ୟ ନାମକୁ ଧରି ସବୁ ପରଶନ୍ତି ଧୂଳି ଆଣି
ମନେ ହୋଇ ତୋଷି ସେ ଧୂଳି ଗରସି ଦେହକୁ କ୍ଷେପିଲୁଁ ପୁଣି
ବ୍ରହ୍ମାଆଦି ଦେବେ ନ ପାଇ ପାଉବେ ଗୋକୁଳଅବନୀରେଣୁ
କୃଷ୍ଣପାଦ ଗନ୍ଧ କୁମାରୀ ସମ୍ପାଦ ଭାଗ୍ୟରେ ପାଇଲୁଁ ଏଣୁ
ଅନ୍ତେ ଯହୁଁ ପଡ଼ି ଦୁର୍ବାସନା ଛାଡ଼ି ପ୍ରେମଭକ୍ତି ଉଦେ ହୁଏ
ଗ୍ରାସକୁ ପାଇ ଆଉ ଗ୍ରାସ ଭଞ୍ଜାଇ କନ୍ୟାଏ ନମିଲେ ପାଏ
ଯେମନ୍ତ ବାଳା ଲୀଳା ଏ ଧୂଳିଖେଳା ମିଥ୍ୟା ଏଂଗୃହ ବିଧାନ
ସତ୍ୟ ତପଶୀଳ ଅଭଥିହୋଇଲ ହେଲୁଁ ସେ ଧୂଳିଭୋଜନ
ଅପ୍ରାଧକଲୁଁ ନିନ୍ଦିତଲୋକେ ହେଲୁଁ ଏ ଦୋଷଆମ୍ଭ ନଛେନ
ବହୁତ ବିନୟେ କରସି ସଦୟେ ଶୁଣି ଆମ୍ଭେ ତୋଷ ମନ
ବୋଇଲୁଁ କୁମାରୀ ଧନ୍ୟ ସେଭୁମ୍ଭର ଭାବେ ମତେଭିକ୍ଷାଦେଲ
ସେ ତୁମ୍ଭର ଇଚ୍ଛା ଭଲମନୋବାଞ୍ଛା ପତି ହୋନ୍ତୁ ନନ୍ଦବାଳ
କନ୍ୟା ଗଣ ଶୁଣି ଦ୍ରୁହସିକେ ଭଣି ଯେମନ୍ତ ଏ ମିଥ୍ୟା ଘର
ମିଥ୍ୟାଭୋଜନ ପାଇଣ କୋପମନ ଦେଉଅଛ ମିଥ୍ୟାବର ॥
ସେ ରାଜକୁମାର ରୂପେଣ ସୁନ୍ଦର ଆମ୍ଭଙ୍କୁ କାହିଁ ବରିବ
ତୁମ୍ଭେ ଯେମନ୍ତ ନକହ ମିଥ୍ୟାବାଣୀ ଏବର କେମନ୍ତେହେବ
ପ୍ରତିଜ୍ଞା କରି ବୋଇଲୁଁ ହେ ସୁନ୍ଦରି ଆମ୍ଭ କଥାନୁହେ ଆନ
ନିଶ୍ଚୟହରି ପତିହେବେ ତୁମ୍ଭର ମନୋବାଞ୍ଛା ହେବ ପୂର୍ଣ୍ଣ
ଅପ୍ରତେଯେବେପାଇଲମନେତେବେଖେଳେକିଯିବା ଖେଳାଇ
ଖେଳ ଖେଳନ୍ତେ ଆସିବେ ନନ୍ଦସୁତ ଦେଖି ନମିବେଲୋଇ
ଶୁଣି ଏ ଧ୍ୱନି ଆସିବେ ଆଗେମୁନି ସେହୁ ତୁମ୍ଭ ପୁରୋହିତ
କୃଷ୍ଣଙ୍କୁ ମିଳାଇ ତୁମ୍ଭକୁ ଖେଳାଇ ଆମ୍ଭର ଜାଣିବ ସତ ।
ଏମନ୍ତ ବୋଲି କାଖରୁ କାଢି ପାଲି ମେଲି ସାର ବସାଇ
ମଧ୍ୟରେ ଧୂଳି ଥୋଇଣ କଂସାଥଳି ମୁଦ୍ରା ଧରି ଲାଠି ଦୁଇ
ପକାଇ କାଠି ଖେଳନ୍ତି ସେ ବନ୍ଧୋଷ୍ଟୀ କହନ୍ତି ଶିଖାଇ ରତି
ଖେଳ ଅନୁପମ ଶକଟାହା ନାମ ନିଶ୍ଚେ ଜାଣ କୃଷ୍ଣ ଆସି ॥
ଶକଟାଭଞ୍ଜନ ଖେଳରେ ମଜ୍ଜନ ଖେଳ ବିନୋଦସ୍ୱା ହରି
ଡ଼ାକିବ ଦାନେ ଆସିବେ ସନ୍ନିଧାନେଶକଟାହାଖେଳେ ବରି
ଆଜର ମଧ୍ୟ ହୋଇବ କାର୍ଯ୍ୟସିଦ୍ଧି ଦେଖ ତପୋବଳମୋର
ଏମନ୍ତ ଖେଳି ଗଲେ ସେମୁନି ଚଳନ୍ତିଜନ କନ୍ୟା ନମସ୍କାର
ମୁନି ଯାଆନ୍ତେ କୁମାରୀ ତୋଷଚିତ୍ତସବେହୋଇ ଏକମେଳ
ମନ ବିଧାନେ ଯୁକ୍ତି ନାରୀ ପ୍ରଧାନେ ମନ ଉତ୍ସାହରେ ଖେଳ
ଏହି ସମୟେ ନନ୍ଦରାଜ ତନୟେ ପ୍ରବେଶ ହୋଇଲେ ତହିଁ
ଶଙ୍କୁନି ଘୃହିଁ ଲତାରେ ଲୁଚିରହି ଦରିଦ୍ର ନିଧିକି ପାଇ ॥

ସଖାଙ୍କୁ ସଙ୍ଗ ଉହାଡ଼େଣ ରଖାଇ ବୋଲନ୍ତି ଦେଖା ନଦିଅ
ଆମ୍ଭଙ୍କୁ ଦେଖି ଶରଦ ଚନ୍ଦ୍ରମୁଖୀ ପଳାଇବେ ଲୁଚି ରହ ॥
ନସ୍ୱନ ସମ୍ପଦ ନ କର ବିଚ୍ଛେଦ ଦେଖଦେଖ କନ୍ୟା ଶୋଭା
ପୁରୁଷ ଦେହା ଧରିଣ କେହୁ ସହ ଦେଖି ହେଲ ମନ ଲୋଭ
ସମୀପେ ଯିବା ତାଙ୍କସଙ୍ଗେ ଖେଳିବା କେପାରୁ ଏମନ୍ତ କର
ମୋର ମନୋରଥକରିବ ଯେ ସାର୍ଥ ବେଗେ ହୁଅ ଅଗ୍ରସର
ଏମନ୍ତ ଶୁଣି ଦ୍ରୁହାସେ ବଟୁ ଭଣି ମତେ ଆଗ ପଠିଆଅ
କଥା ବଢ଼ାଇ ଲଜ୍ଜା ତାଙ୍କ ଛଡ଼ାଇ ପଛେ ପୁଣ ତୁମ୍ଭେଯାଅ
ହରି ବୋଲେ ଯହୁଁ ବୃନ୍ଦାଚାହା ତହୁଁ ଅନୁକୂଳ ଗନ୍ଧବହେ
ବଟୁହରଷେ ଚଳିଲେକନ୍ୟାପାଶେ ଝଣ୍ଡେପାଇ ଦଣ୍ଡେ ରହେ
ପ୍ରେରାଇ ସ୍ଥଳ ପଡଇ ଝୁଟିବାଲ ଶ୍ୟାମସୁନ୍ଦରହେବୋଲେ
ଉଠିଣ ଧୀରେ ତତ୍ର ଜାବେ ପଶ୍ଚାରେ ଶ୍ୟାମ ଏପଥେ କିଗଲେ
କନ୍ୟାଙ୍କୁ ଦେଖି ଉଷିଣ କରେ ଆଖି ନିରେଖିନିରେଖ ପୁଛି
ଡ଼ାକ ତୁମ୍ଭର ଶୁଣି ଶ୍ୟାମ ଆମ୍ଭର ଅଇଲେ ଜାଣ ମୃଗାକ୍ଷୀ
ପଦେକ କହି ସାହାସି ବଟୁ ହୋଇ କାସି ଉଠଇ ବସଇ
ଉଡ଼ାଏ ଯାଇ ଥର ଥର ହୁଅଇ ହରି ହରି ହସେ ଭାଷଇ ॥
ବଟୁକୁ ଚାହିଁ ଆଶ୍ଚର୍ଯ୍ୟ କନ୍ୟାପାଇ ବୋଲନ୍ତି ହେ ନବଦ୍ୱିଜ
କେଣେ ଶ୍ୟାମସ୍ଥୁଡ଼ ଆମ୍ଭପାଶେ ଲୋଡ଼ଲୋକେଶୁଥିବା କୁଳଜ
ବୋଲ ମଧୁମଙ୍ଗଳ ଶୁଣ ବଧୂ ବଦନ ଆମ୍ଭର କଥା
ଭୁବନ ମଙ୍ଗଳ ନିଜ ଶ୍ୟାମସୁନ୍ଦର ପୁଛନ୍ତି ପାଇଲେ ବ୍ୟଥା
ତୁମ୍ଭେତ ପୁଣି ଖେଳୁଛ ତାଙ୍କୁ ଘେନି ଆମ୍ଭଙ୍କୁ ଭ୍ରମାଇଁ କହ
ଏମନ୍ତ ଶୁଣି ତେଜିଣ ମୁନି ବାଣୀ ବୋଲନ୍ତିହେ ବିପ୍ର ଚାହିଁ ॥
ଶାରଧା ବସି ବଟୁରେ କଟୁ ଭଷି କାହିଁ ତୁମ୍ଭ ଶ୍ୟାମ ଦେଖି
ଅବଶ୍ୟ କୁମାରୀ କାହାକୁ ନକରି ଏଥିରେ କଳଙ୍କ ରଖି ॥
ବଟୁ ବୋଲନ୍ତି ଶୁଣ ନବ ଯୁବତୀ ଏ ଖେଳଟି ଶକଟାହା
ଭାଙ୍ଗି ଶକଟ ଏଠି ନାମେ ପ୍ରକଟ କହିଲେ ନଟେତ ତାହା ॥
ନାମ ଶୁଣନ୍ତେ ଗଲକ୍ଷ ମନେ ପ୍ରତେ କହିବା ଯାହା ପଟ୍ଟର
ଏହୁ ଖେଳଲୀଳା ତୁମ୍ଭ ତାଙ୍କଖେଳା ଗୋଟିଗୋଟିକେବିଚାର
ପାଲି ଘଟନ ଦ୍ୱାଦଶଭାଗ ବନ କୋଠି ଅଷ୍ଟ କୁଞ୍ଜ ଶୋଭା
ଚତୁର ଦ୍ୱାର ମଧ୍ୟରେ ମହାଭାଗ ଦେଖ କଂସରାଜା ସଭା ।
ତଥି ଉପରେ ତୁମ୍ଭର ନୃତ୍ୟ କରେ ଦିବ୍ୟ ରୂପ ଦୁଇ ଗୋଟି
ଅଙ୍ଗେ ମୁଦ୍ରାଚିହ୍ନ ଲକ୍ଷଣରେ ପୂର୍ଣ୍ଣ ରାମକୃଷ୍ଣ ଜାଣିବ ଏଟି ॥
ଚଞ୍ଚଳ ଉଜ୍ଜ୍ୱଳ ବିନ୍ଦୁରେ ମଞ୍ଜୁଳ ଏକରୁ ଦ୍ୱାଦଶଯାଏ
ମନ୍ମଥସ୍ଥାନେ ବାଞ୍ଛା ପରିପୂର୍ଣ୍ଣ ଯାର ଆଠଯାନ୍ତ ହୁଏ ॥

ଷୋଳସହସ୍ରଙ୍କର ଗୋପକନ୍ୟା ସାର କାଳ ଶ୍ୟାମଳୀରଙ୍ଗିମା
ଗଉଣ ଆଦି ଗୃହଗୃହ ପ୍ରସିଦ୍ଧି ଏକେକେ ସଙ୍ଗେ ସଙ୍ଗିମା ॥
ବସିଣ ଘଳ ଦାନ ଲୀଳା ସୁମର ଦ୍ୱାଦଶାକ୍ଷରବନ୍ଧ ଯପି
ବନେ ଅଭିସାରି କୁଞ୍ଜେ ଅନୁସର ମାରେ ଆଖି ଅନୁରାଗୀ ॥
ପ୍ରତିପକ୍ଷେ ଅବା ସୁହୃଦେ ଅଥବା କୁପାରେ ସୁପାରେ ଯାଏ
ଲେଉଟିଯାଇ ନିଭୃତେ ଦାନ ପାଇ ପୁଣିଣ ସେ ପୁଣ ରହେ
ଆମ୍ଭରେ ବୁଝି ତୁମ୍ଭରେ ଏବେ ହେଜ ଏରୂପେ ଖେଳଘଟନ
ବିଧାତା ପାଞ୍ଚ ସ୍ୱରୂପେ ଅଛି ରତି ତୁମ୍ଭ ତାଙ୍କ ପର୍ଯ୍ୟଟନ ॥
ଏକାନ୍ତେ ହେନ ଖେଳ ନବ କାମିନୀ ପରସ୍ପରନ୍ତେ କର ଛଳ
ଆମ୍ଭଙ୍କୁ ଲେଛି ତୁମ୍ଭଙ୍କୁ ଅଛି ଗଛି ବଶକଲ ନନ୍ଦବାଳ ॥
ମନେ ଯା ମନାସି ଶୁଣନ୍ତା ସୁକେଶୀ ଏକ ଆର ମୁଖଂ ଚାହିଁ
ପ୍ରେମରେଭାସି ମନରେ ହୋଇ ତୋଷି ସଲଜ୍ଜ ଭାବରେରହି
କନ୍ୟାଙ୍କଚିତ୍ତ ମୋହିଲେ କହି ହିତ ଆଦରେ ପୂଜାପାଇଲେ
ଏ ଖେଳ ଘରେ ପୁରୋହିତ ବେଶରେ ମଧୁମଙ୍ଗଳ ଚାହିଲେ
କୁମାରୀ ମନ ଜାଣି ବଟୁ ବଚନ କହନ୍ତି ଅତି ସରସେ
ନିଶ୍ଚୟ ହରି ଆସିବେ ତୁମ୍ଭ ପୁଣି ପୂଜିବ ମନ ହରଷେ ॥
ଶକଟା ଖେଳାଇ ଜିଣିବା ଭୁଲାଇ କିଣିବା ମୂଲାଇ ଭାବେ
ତୁମ୍ଭବାହାରେ ନ ରମିବେକାହାରେ ଶାସ୍ତ୍ରେନଖେଳେଲେଖିଥିବେ
ହସାଇ ରସାଇ ଶକଟା ଖେଳାଇ ନାନା କଉତୁକେ କହି
ଲଜ୍ଜା ଛଡ଼ାଇ ପ୍ରେମରସେ ବୁଡ଼ାଇ କୃଷ୍ଣ ଆସିବାକୁ ଚାହିଁ ॥
ଏମନ୍ତେବାଳୀ ଶକଟାରସେ ବୋଲ ବାରବାରଦାନଡାକେ
ଶ୍ୟାମସୁନ୍ଦର ଶୁଣି ମନେ ଅସ୍ଥିର ଦେଖାଦେଇ କଉତୁକେ
ଲୀଳା କମଳ ଭ୍ରମାଇଣ ମଣ୍ଡଳ ପ୍ରିୟ ସଖାଗଣ ସଙ୍ଗେ
ମଧୁହାସେ ମିଳିଲେ କନ୍ୟାପାଶେ ନୃତ୍ୟ ଲୀଳା ଆଦରଙ୍ଗେ
ଦେଖି କୁମାରୀ ସାତ୍ତ୍ୱିକେ ଲଜ୍ଜାଧାରି ବାସ ଉହାଡ଼ ବଦନେ
ତନୁ ଝମ ଝମ ଉର ଦମ ଦମ ମନ ଭରମେ ମଦନେ ॥
ନବ ସାଙ୍ଗୋପାଙ୍ଗେ ଶ୍ରଦ୍ଧା ଅନୁରାଗେ ଲଜ୍ଜାପଙ୍କେ ମିଶିରହେ
ଚରଣ ନଚଳେ ଲୋଚନ ନିଶ୍ଚଳେ ଚାହିଁ ନିର୍ମ୍ମଳ ଭାବେ ॥
ମଧୁମଙ୍ଗଳ ସଙ୍ଗେ କୃଷ୍ଣ ସୁବଳ ଦେଖନ୍ତି ସେ ଧୂଳି ଘର
ଗୃହ ସମାଧାନ ଯେତେକ ବିଧାନ ଦ୍ରବ୍ୟ ସଞ୍ଚା ପୁର ପୁର ।
ସେ ମଧୁମଙ୍ଗଳ ଦେଖାଇ ସକଳ ଉହ୍ଲାଲ ଆଙ୍ଗୁଳି ହେଳ
ଦେଖି ହରି ହସି କୁମାରୀ ପ୍ରଶଂସି ବୋଲନ୍ତି ଏ ଧନ୍ୟ ଧନ୍ୟ ॥
ଗୃହ ଚରିତ ଦେଖିଣ ତୋଷଚିତ୍ତ ଅନୁସରି ପୁରେ ପୁରେ
ଶମ୍ଭୁନଗେଶପ ଉର୍ଦ୍ଧବୃତ୍ତରେ ଜଳଜେ ଏକାଙ୍କ ଦେଖିବସ୍ଥିରେ

ତୁମ୍ଭ ବସ୍ତ୍ରେନେ ଉର୍ଦ୍ଧ୍ୱ ଦ୍ୱିଏ ଶଯ୍ୟନେ ଚତୁଷ୍ଟ ଏ ଗୁଣବଶା
ସୁରଚ ବଚନ ବହିବ ଭେଦିନ ଏହାଙ୍କରେ କର ପ୍ରୀତ ॥
ଏମନ୍ତେ ଚହିଁ ଶକଟା ଖେଳ ପଛିଁ ଚହିଁ ପ୍ରବେଶ ହୋଇଲେ
କୃଷ୍ଣ ଆସିବା ଦେଖିଣ ନବ ବାମା ଖେଳ ଗୁଡ଼ ରହିଥିଲେ
ଖେଳକୁ ଚହିଁ ଜାଣିଲେ ଭାବଗ୍ରାହୀ ନାରଦ ଉଆଣ ଏଛି
ଆମ୍ଭେପଞ୍ଚଗାଇ ଖେଳ ଯେ ଦେଖାଇ ଚହିଁଙ୍କ ଉଆଇସେହି
ଭକ୍ତ ମନୋରଥ ଆମ୍ଭର ଯଥାର୍ଥ ଖେଳିବା କନ୍ୟାଙ୍କ ସଙ୍ଗେ
ଏତେବଶୃଙ୍ଖର ବଟୁକୁ ନେଇଏଠାର କନ୍ୟାଖେଳାଇବାରଙ୍ଗେ
କୁମାରୀଙ୍କ ଶୁଣି ବଟୁ ହିତ କହି ଏସେ ପୁରକୁ ଅଇଲେ
ଆଦରେମୂଳଖେଳରେ ମନ ଗଞ୍ଜି ବନ୍ଧୁ ବେଦାରେରହିଲେ
ଆହାରେ ବେଭାରେ ଲଜ୍ଜା ପରିହରେ ଏମନ୍ତ ଶାସ୍ତ୍ରଲେଖିଛି
କହିବୁଁ ହିତ ଆମ୍ଭେ ଯେ ପୁରୋହିତ ଦୋଷ ନାହିଁ ଏଥିକିଛି
ଯାହାକୁ ମନେଭାବୁଛରାତିଦିନେସେଯେବେଯୋଗେଅଇଲେ
ତାହାଙ୍କୁଦେଖି ପଣନ୍ତେ ମୁଖଡ଼ାଙ୍କୁ କିଛି ଭାଷା ନପାଇଲେ
ପୂର୍ବର ଧର୍ମେ ଅଳସୀ ଭୃଷୀ କର୍ମେ ଗଙ୍ଗା ଦୁଆରେବହିଲେ
ଏ ହର ଶୁଭ ଭଲ ଯାଗେ ଆରମ୍ଭ ନିଧି ପଶିଣ ରହିଲେ
ସୁନ୍ଦର ପଣକୁ ସୁନ୍ଦର ଜଣକୁ ବନ୍ଧି ଭେଟାଇଛି ଆଣି
ରସିକମଣି ଗୁଆଁସି ଗୁଣ ଜାଣି ସମ୍ମୁଖେ ନପାଉଁ ପୁଣି ॥
କୁଳକୁମାରୀ ଲଜ୍ଜାରେ ହୋଇ ଭାରି ଶିର ଲମ୍ବାଇ ମଣ୍ଡନ
ପଦ୍ମ୍ୟପେକ୍ଷୀ ପ୍ରାପ୍ତେ ତରଳ ହୃଦୟେ ବାହାରଭାବେ ଗଞ୍ଜନ
ଦେଖିଣ ବଟୁ ଗରବେ କହେ କଟ ଗରବ ତୁମ୍ଭ ସଭବ
ଏହାଙ୍କ ଆଗେ ଉଭାହେବ ଉଲଗେ ଯାହାବୋଲବେକରିବ
ଜାଡ଼ ବାହିବ ବଚନ ନକହିବ ଏମନ୍ତେ ଛଳେ ହୋଇବ
ଆମ୍ଭେ ଯେ କହୁଁ ବଚନହିଁ ନପାଉ ତୁମ୍ଭେକତାଙ୍କ ନୋହିବ
ଏମନ୍ତ ଶୁଣି ସର୍ବସ୍ୱରେ ତରୁଣୀ ବୋଲନ୍ତି କ ହଉ ଆଜ୍ଞା
ଆମ୍ଭ ପୁରୋହିତ ହୋଇ ଏଥି ଶଠ କଲୁ କ ତୁମ୍ଭ ଅବଜ୍ଞା
କ କରିବୁଁ କହ କୋପମନ ଲୁହ ହସିସୁଖ ବଟୁ ବୋଲ
କୃଷ୍ଣକୁ ଖେଳାଇ ହୁଡ଼ରେ ହରାଇ ଆଣିବା ମୁକ୍ତାମାଳୀ ॥
ସନ୍ନମତ ବାଳୀ ମଧୁମଣି ବୋଲି କନ୍ୟାଗଣେ ଯୂଥଶୁଣି
କୃଷ୍ଣରସଙ୍ଗେ ଶକଟା ଖେଳ ରଙ୍ଗେ ବସିଲେ ପାଳିଆବୋଲ
ହୁଡ଼କୁ ରଖି ଉଭୟ ବଟୁ ସାକ୍ଷୀ ପକାଇ ଶକଟା କାଠି
ପକାଇ ଦାନ ବାହାନ୍ତି ସାଉମାନ ସଖା ସଖୀ ଏକ ଗୋଷ୍ଠୀ
କୃଷ୍ଣର ପକ୍ଷ ଅଛନ୍ତି ସବସଖ ସର୍ବକନ୍ୟା ଏକମନ
ବୃନ୍ଦା ନାରଦ ଅନ୍ତେ ଚାହିଁ ସାନନ୍ଦ ବରକନ୍ୟା ଏକାସନ

ହାରିଲେ ବାଳୀ ଜିଣିଲେ ବନମାଳୀ ବୋଲନ୍ତି ମଧୁମଙ୍ଗଳ
ହୁଡ଼ିକୁ ଦିଅ ବିକଳ ମନେ ନୁହ କୃଷ୍ଣ କଣ୍ଠେ ହେମ-ମାଳ
ଶୁଣି ସେ ବାଳୀ ବଚନ ପ୍ରତିପାଳି କୃଷ୍ଣଗଳେ ମାଳଦେଲେ
ସଖୀ ମାନଙ୍କେ ହୁଳହୁଳି ଶବଦେ ହେଣ୍ଡି ବଜାଇ ନାଚିଲେ
ପୁଣ ହୋଡ଼କରି ଖେଳନ୍ତି କୁମାରୀ ଯେବେ କୃଷ୍ଣଙ୍କୁ ଜିଣିଲେ
ଦେଖିଣବିଷ୍ଟି ମୁକୁତା-ମାଳ କଣ୍ଠୁ ହେନକନ୍ୟାଗଣେଦେଲେ
ତାଳି ବଜାଇ ହାସ୍ୟ ବିଷ୍ଟି କରଇ ହାରିଲୁ ହାରିଲୁ ହରି
ଆମ୍ଭ ପଣମାନ ନବ ବାଳାଗଣ ଜିଣିଲେ ଜିଣିଲେ ବୋଲି
ମଳୟ ଗନ୍ଧେ ମରୁତ ମନ୍ଦେ ମନ୍ଦେ ତରୁ କୁସୁମ ବରଷେ
ମଧୁକରଗଣେ ବନଜୀବ ହରଷେ କୋକିଳ ମଙ୍ଗଳ ଭାଷେ ।
ପୁଣିହିଁ ଖେଳ ହସିଣ ବିଷ୍ଟି ବୋଲି ଏ ବେଳ ଏହୁ ହାରିବ
ବିଭା ବେଭାରେ ଏହୁ ଗୋପ ସଭାରେ ଆନକେହୁ ନବରିବ
ଏମନ୍ତେ ହୁଡ଼ି ଖେଳନ୍ତେ ସେହୁପରି ହାରିଲେ ଗୋପକୁମାରୀ
ଦେଖିକୁମାରେ ବୋଲନ୍ତି ନବବାଳେ ରଖିଲ ହୋଇଆମ୍ଭର
କନ୍ୟାଛଳ ବିହି ବିଷ୍ଟି ପୁଣିକହି ଏ ପିଢ଼ି ଯେହୁ ହାରିବ
ପାଲଟା ବସନ ବିହିଣ ସେ ପୁଣ ତାହାର ସେବା କରିବ
ପୁଣିହିଁ ଖେଡ଼ ଖେଳନ୍ତେ ରଖିହୋଡ଼ ଜିଣିଲେ ନବ ସୁନ୍ଦରୀ
ବିଷ୍ଟି ହସି ଉଚ୍ଚେ ହେଣ୍ଡି ମାରି ନାଚେ ପାଲଟା ବିହିବୁ ହରି
ଏମନ୍ତବେଳେ ପ୍ରବେଶଯୋଗେ ହେଲେ କୁଳବୃଦ୍ଧା ମହତାରି
ଥକିତ ବୃଦ୍ଧି ଗଣ୍ଡରେ କରଦେଇ ରସନା ଚିପି ଧିକ୍କାରି ॥
କୁଳ କୁମାରୀ ଅବହିଇ ସୁନ୍ଦରୀ କହ୍ନାଇ ହେନିଣ ଖେଳ
କେହୁ ବରିବ କାହିଁ ଦିନ ସରିବ କୁଳରୁ ବାହାର ହେଲ ॥
ଗୋପ ନଗର ନାଗର ବେଣୁଧର ଏହାର ବୁଦ୍ଧିରେ ପଡ଼ି
ଜାଣିଲେ ଲୋକ କହିବେ ଧିକ ଧିକ ଜାତି ପ୍ରତି ଆଣ ଗୁଡ଼ି ॥
ଅଜାଗେ ଯାଇ ସନ୍ନିଧି ବୃଦ୍ଧାପାଇ ଦେଖିପଳାଇଲେଲାଜେ
ଚାହାଁଇ ନୋହିସନ୍ନିଧିକେକେରହିଗଲେକେକନ୍ୟାଯେଝାକାର୍ଯ୍ୟେ
କୃଷ୍ଣର ସଙ୍ଗ ବିନୋଦ ଖେଡ଼ ରଙ୍ଗ ରସରେ ରସି କାମିନୀ
ଲୋକ ଅପବାଦ ବିପଦ ପ୍ରମାଦ ମନରେ ଭୟ ନ ଘେନି ॥
ନ ରହେ ମତି ନ କରନ୍ତି ଖୀରତି ପୀରତି ନନ୍ଦ ନନ୍ଦନେ
ହୋଇବେ କାନ୍ତ କରନ୍ତି ବାରବ୍ରତ ଦେବ ବ୍ରାହ୍ମଣ ବନ୍ଦନେ
ଏଥୁଅନ୍ତରେ କେତେ ଦିନ ଅନ୍ତରେ ହିମଋତୁ ପରବେଶ
ଉତ୍ତର ପବନ ଶୀତ ଆଗମନ ନିର୍ମଳ ଦିଶେ ଆକାଶ ॥
ତୁଷାର ପଡ଼େ ଅବନୀ ତରୁ ଜାଡ଼ ମହାଜାଡ଼େ ତନୁ ଥରେ
ଶୀତ ଭୟେ ଜୀବେ ରହନ୍ତି ନିର୍ଜୀବେ ବାହାର ନୁହନ୍ତି ଡରେ

କମ୍ପି ଯୁବତୀ ଦଶନ ବେନି ପନ୍ତି ଧୂମ ବଦନୁ ବାହାରେ
ଦେହନ୍ତି ପଙ୍କୋଳି ଉରକୁ ଆବୋରି ଘନଜନେ ଛନ୍ଦ କରେ
ଅନଳ ରବି ଆଦରେ ଜନେ ସେବି ଜଳରେ ଅଇରି ଭାବି
ସୁଖଦ ଉଷ୍ଣୁମ ବିଷାଦକୁ ଶରମ ଶ୍ୟାମ ଆଲିଙ୍ଗନେ ଧାବି ॥
ନ ରୁଚେ ବେନି ଚନ୍ଦ୍ରମା ଚନ୍ଦନ ପ୍ରପାନ ଅଶନ ଆଦି
ରଜନୀ ଦିବସେ ନିବିଡ଼ ନିବାସେ ତୁଳି ବସନ ଆଚ୍ଛାଦି ॥
ତପନ କିରଣ ନିର୍ଗୁନ ଦେଖିଣ ଦିବସ ପରମ କ୍ଷୀଣ
ଚନ୍ଦ୍ରମା ପରମା ଶୋଭା ପ୍ରିୟତମା ନିଶି ଦେଖି ବର୍ଦ୍ଧମାନ ॥
ଝରିଲ ଜଳେ ଉଷୁମ ଧୂମ ଉଠିଲ ତପନ ଦେଖିଲେ ଯାଇ
ଯେସନେ ଯାର ଯୁବତୀଏ ବିହାର ତେଜି ତ୍ରପାରେ ପଳାଇ
କମଳ ମଣ୍ଡଳ ପ୍ରବାଳ କଅଁଳ ତରୁ ଲତା ଶୋଭାବନ
ଫୁଟିଲେ ନୀଳ ଇନ୍ଦୀବର ମଞ୍ଜୁଳ ଲୋଧ ଲବଙ୍ଗ ସୁମନ ॥
ପାଚିଲେ ଧାନ କ୍ଷିତି ଅତି ଶୋଭନ କ୍ରୌଞ୍ଚପକ୍ଷୀ ଉଚ୍ଛନ୍ନ
କୁସୁମ ନୀରସ ଭ୍ରମର ବିରସ ହରଷ କାନ୍ତ କାମିନୀ ॥
ଚକ୍ରବାକ ଶୋକେ ରଜନୀ ଅଧିକେ ପ୍ରବଳ ସେ ବିଶ୍ଳେଷରୁ
ପଥିକ ଜନ ଦୁଃଖିତେ ବଞ୍ଚେ ଦିନ ରଜନୀ ରମଣ ହେତୁ ॥
ଏ କାଳେ ପତି ନାହିଁ ଯେଉଁ ଯୁବତୀ ତାହାର କି ସୁଖଅଛି
ଏମନ୍ତ କାଳେ ଗୋପ କନ୍ୟା ସକଳେ କୃଷ୍ଣ ଅଙ୍ଗ ସଙ୍ଗଇଚ୍ଛି
ଅନଳେ ଝାସିବେ ଜଳରେ ପଶିବେ ଗ୍ରାସିବେ ଗରଳହେଲେ
ଏମନ୍ତ କଲେ ପାଇବା ହରି ଭଲେ କରିବେ ଜୀବନ ଗଲେ
ଲାଜ କୁଳ ଶୀଳ ତେଜିଲେ ସକଳ କେବଳ କୃଷ୍ଣରେ ମତି
ଯେହୁ ଯାହାର ଅଙ୍ଗ ଭୋଗ ଆହାର ଛାଡ଼ିଲେ ସକଳ ପ୍ରୀତି
ବନେ ବନେ ବୁଲି ଜାଣି ତପଋଷି ମିଳିଲେ ସେ ବନେଆସି
ଦେଖିଣ ଭକତି ହୋଇ ସେ ଯୁବତୀ ସଲଜ ହୋଇଣ ଭାଷି
ଦେଲ ଯେ ବର ନୋହିଲେତ ଆମ୍ଭର ସ୍ୱପନ ଧନ ପରାୟେ
ନବଘନ ଉଦେ ଗଗନ ଆଚ୍ଛାଦେ ବୃଷ୍ଟି ବିନୁ ଦୁଃଖମୟେ
ଏମନ୍ତ ଶୁଣି ବୋଇଲୁଁ ହେତରୁଣୀ ଜଳଦ ଯେ ନବଘନ
ପ୍ରସନ୍ନ ଅବଶ୍ୟ ବରଷାରେ ଶସ୍ୟ ରସ ହେବ ଉତପନ ॥
ଏମନ୍ତ କହି ଗଲୁଁ ଯେ ପଥବିହି ହେତୁ ପାଇ ସେ କୁମାରୀ
ଦୀକ୍ଷା ଉପଦେଶ ପାଇସେ ବିଶ୍ୱାସ କରି ସେ ତପ ଆଚରି
ପ୍ରଥମ ମାସ ମହା ହିମ ପ୍ରବେଶ ବ୍ରତ ହବିଷ ପାଳିଲେ
ନିଶି ଶେଷଭାଗେ ବିବସନ ଅଙ୍ଗେ କାଳିନ୍ଦୀରେ ତପକଲେ
ବସନ କୂଳେ ରଖିଣ ଶୀତ ଜଳେ ପଶିଣ ଆକଣ୍ଠେ ରହି
ମାନସେ ଚିନ୍ତି ଶ୍ୟାମଘନ ମୂରତି ସବୁଙ୍କର ଜପ ଏହି ॥

ଏମନ୍ତେ ମାସେ କୁମାରୀକାସ୍ୱା କ୍ଳେଶେ ଦୃଢ଼ବ୍ରତଆଚରେ
ଉଚାଟ ହରି ଦୁଃଖ ସହି ନପାରି କନ୍ୟା ଚୀରିବା ବସ୍ତ୍ରରେ
ପୂର୍ଣ୍ଣ ଦିବସ ନଦୀ କୂଳେ ପ୍ରବେଶ ପ୍ରିୟସଖା ସଙ୍ଗେ ଘେନି
ପ୍ରଭାତକାଳେ ଦେଖିଲେ ଶୀତଜଳେ ତପ କରନ୍ତି କାମିନୀ ॥
ଅନେକ କନକ ମୁଖ ଅକଳଙ୍କ କମଳ ପ୍ରଫୁଲ୍ଲ ଜଳେ
କି ଅବା ଯମୁନା ଜନକ ଅର୍ଚ୍ଚନା କରନ୍ତି ଉଦୟକାଳେ ॥
ଶୀତେ ଅଧର କମ୍ପମାନେ ସୁନ୍ଦର ଦନ୍ତ କିରଣ ବିକାଶେ
କି କାନ୍ତି ବଶି ଉଦେକ ତାରଣଶୀ ଅନୁରାଗ ଶୋଭାଦିଶେ
କି ଅବା ନୀଳ ମଣିମାନେ ମଞ୍ଜୁଳ ବଦନ ପଦ୍ମ ପଦକ
ଶ୍ରୀବୃନ୍ଦାବନ ଧରି ହୃଦେ ଶୋଭନ ଗୋବିନ୍ଦ ସୁଖଦାୟକ ॥
ହେମବରନା ଅଳଙ୍କାରେ ଯମୁନା ଭୂଷଣେ ଅତି ଶୋଭନ
ଏମନ୍ତେ ହରି ଦେଖି ନବ ସୁନ୍ଦରୀ ଜାଣିତପେ ଦୃଢ଼ମନ ॥
ଗୋଧନ ଚାଳନେ ପେଷି ସଖାଗଣେ ଏକାକୀ ହୋଇଣ ରହି
କନ୍ୟାଙ୍କ ଭାବ ନବୀନ ଅନୁଭବ ତପ ନ ପାରନ୍ତି ସହି ॥
ଅନୁରାଗେ ହରି ହୃଦୟ ଆକୁଳ ପ୍ରୀତିବନ୍ଧ କରି ଲୋଡ଼େ
ପାଳଟ ବାସେ ପଦ୍ମ ଗନ୍ଧ ସୁବାସେ ମଧୁପ ଲୁବଧେ ଜଡ଼େ
ଶରଧା ମନେ ବଣ୍ଠକଥା ଚାଳନେ ବସନ ଉଡ଼ାଇ ନେଲେ
କଦମ୍ବେ ମଣ୍ଡି ପତାକା ପ୍ରାୟେ ଉଡ଼ି ଥୋକାଏ ମାଡ଼ି ବସିଲେ
ନୀପ ଉପରେ ମୁରଳୀ ଧରି କରେ ଅଧରେ ସୁସ୍ୱରେ ବୋଲେ
ଏ ଶୀତକାଳେ କିପାଇଁ ପଶି ଜଳେ ଉଠିଆସ ଏବେ କୂଳେ
ଏମନ୍ତେ ବଂଶୀ ଶୁଣି ଚେତି ସୁକେଶୀ ଉଠି ତଟକେ ଚାହିଁଲେ
କୂଳେ ବସନ ନଦେଖି ଖେଦମନା କଦମ୍ବ ହେଲ ବୋଇଲେ
କୂଳରେ ବେଗେ ଚାହିଁଲେ ଚଉଦିଗେ ନଦେଖି ଅତିକାତରେ
ବସନ କେ ନେଲା ଲଜ୍ଜାତ ହୋଇଲେ କମ୍ପନ୍ତି ଶୀତ ଭୟରେ
ମୁରଳୀ ଧ୍ୱନି ଶୁଭିଲା କେଶେ ପୁଣି କଦମ୍ବକୁ ଦେଲେ ଚାହିଁ
ଦେଖିଲେ ହରି ପତାକା ବାସ କରି ଜଳେ ବୁଡ଼ି ଲଯେ ରହି
ଭକ୍ତବତ୍ସଳ ପତାକା ଫରହର ମନୋହରତରୁ ବସି
ଭୁବନମୋହନ ଗୋପୀଙ୍କି ଭାବେଣ ଡାକନ୍ତି ମୁରଳୀ ଘୋଷି
ମରଣୁ ଲାଜ ବଳିଲା ପଶି ଆଜ ଭଲ ବାଳୀ ଅନୁରାଗେ
ଶ୍ୟାମସୁନ୍ଦର ଦିଅ ବାସ ଅମ୍ବର ବିନୟ କହୁଣ ମାଗେ ॥
ରାଜ କୁମାର ହୋଇଣ ଅବିଚାର ପାଲଟା ବାସ ଚୋରିଅ
ଅବଳାହ୍ରତବେ ବଳିଲା ମନ ଏବେ ଧାର୍ମିକ ଗୋପେ ବୋଲାଅ
ଯେବେ ଅନ୍ୟାୟେ କଲ ଯେଣ ନ୍ୟାୟେ ଧର୍ମୀ କେମନ୍ତେ ସମ୍ଭବ
ଆମ୍ଭ ବିନୟ ଘେନିଣ ବସ୍ତ୍ର ଦିଅ ବେହର ଯେବେ ରହିବ ॥

ରାଜାଙ୍କ ଛାମୁରେ କହିବୁଁ ନଦେଲେ ଡାକିଲେତ ଶୁଣୁନାହିଁ
ଶୀତରେ ଥର ଥର ତନୁ ଅମ୍ବର କି କରିବୁଁ ଏବେ କହ ॥
ତୁମ୍ଭର ଦାସୀ ଦେଖିଲେ ଲୋକେ ଆସି ଏ ଲାଜ କାହାକୁ ହେବ
ବସନ ଦେଇ ଶୀତ ଭୟୁ ବଞ୍ଚାଇ ଲଜ୍ଜା ଘୁଞ୍ଚାଇ ରଖିବ ॥
ଏମନ୍ତ ଶୁଣି ବୋଲନ୍ତି ବେଣୁପାଣି ଶୁଣ ଗୋ ସୁନ୍ଦରୀଗଣେ
ଚମ୍ପ ପବନ ଉଡ଼ାଇଣ ବସନ ଘେନି ଯାଉଥିଲା ଏଣେ ॥
ଆମ୍ଭେ ତା ଦେଖି କଦମ୍ବେ ଆସିଲୁଁ ଆଶ୍ଚର୍ଯ୍ୟ ପାଇ ରହିଲୁଁ
ଧରି ଦୁକୂଳ କଦମ୍ବେ କରିଲୁ ତହିଁର ଫଳ ପାଇଲୁଁ ॥
ତୁମ୍ଭର ଯେବେ ଚାହାଣି ନଅଏବେ ଆଉ ଆମ୍ଭେତା ନଛୁଇଁ
କୂଳରେ ବାସ ରଖିଣ ଜଳେ ପଶି ଲାଜ ଭୟ ତୁମ୍ଭ ନାହିଁ ॥
ଚତୁରବର ବଚନେ କନ୍ୟାକୁଳ ଏକ ମୁଖ ଆରେ ଚାହିଁ
ଦଇବ କଷଣ ଅମ୍ବର ଦୁଷଣ ପୂର୍ବେ ବଣ୍ଠ ଛନ୍ତି କହି ॥
ବସନ ତାଙ୍କି ନ ଚାହିଁ ମୁଖ ଟେକି କୋପେ ବଣ୍ଠ ବୋଲେ ଯାହା
ଏ କୃଷ୍ଣ ଆଗେ ଉଭାହେବେ ଜଳୁଁ କେ ଆନ କରିବ ତାହା
ସେ ବଜ୍ରବାଣୀ ଭେଟିଲ ଆସି ପୁଣି ଯାହା ବୋଲିବେ କରିବା
ବୁଡ଼ିଣ ଶୀତେ ରହିବା ଅଜାକେତେ ଗଲ ତାଙ୍କଠାକୁ ଯିବା
ବସନ ମାଗି ପିନ୍ଧିବା ଗଲ ବେଗି ଲାଜକଲେ କାର୍ଯ୍ୟ ନାହିଁ
ଆନକେ ନଦେଖି କୃଷ୍ଣ ପଛେ ଦେଖି ମନ ତୋଷ କରି ଚାହିଁ
ଏମନ୍ତ ବୋଲି ବାହାର ସବୁ ଆଳୀ ମଦନ ସଦନେ ପାଣି
କିବା ଯମୁନା ଘେନି ନବ ଅଙ୍ଗନା କୃଷ୍ଣଙ୍କୁ ସମର୍ପେ ଆଣି ॥
କିଶୋରୀ ବ୍ୟବସ୍ଥା ଜନମ ଅବସ୍ଥା କନକ ପ୍ରତିମାଗଣେ
ଦେଖିଣ ହରି ନିଶ୍ଚଳ ଚକ୍ଷୁ କରି ନିରେଖନ୍ତି ଜଣେ ଜଣେ ॥
କୃଷ୍ଣ କୁନ୍ତଳ ସଜଳ ଜଳଧର ପୃଷ୍ଠଦେଶେ ବରଷନ୍ତି
ବଦନ ପଦ୍ମ ଅଳକା ଆଳିବୃନ୍ଦ ବେଢ଼ିକି ମଧୁ ଚୁମ୍ବନ୍ତି ॥
ନାସିକା କୀର ପକ୍ୱବିମ୍ବ ଅଧର ଦାଡ଼ିମ୍ବ ବୀଜ ଦଶନ
ନୟନ ନଳିନ ଖଞ୍ଜନ ଗଞ୍ଜନ ଭୁରୁ କାମ ଶରାସନ ॥
ଶ୍ରବଣ ବେନି ଅନଙ୍ଗ ପାସଜାଣି ଅର୍ଦ୍ଧେନ୍ଦୁ ଭାଲ ଚିବୁକ
ଚନ୍ଦ୍ର-ବଦନ ମଣ୍ଡଳ ଢଳ ଢଳ କୃଷ୍ଣର ସୁଖ-ଦାୟକ ॥
ସୁଗ୍ରୀବ ଶଙ୍ଖ ରେଖାବଳି ସୁରେଖ ଖିଆଡ଼ୁଆ ଶୋଭାବନ
ମୃଣାଳ ଭୁଜ ହେମକ କୁମ୍ଭେ ଉଚ୍ଚ ପ୍ରଲମ୍ବେ ଅତି ଶୋଭନ
ଉର ବିପୁଳ ପୟୋଧର ଯୁଗଳ କଠିନ ଚଞ୍ଚଳ ସଙ୍ଗେ
ହୃଦୟଦେଶ ମଦନ ରସ କୋଷ ବଢ଼ିଲେ ବର୍ତ୍ତୁଳ ଉଚ୍ଚେ
କିବା ଶତ ବୀଣା ତୁମ୍ବୀ ଯନ୍ତ୍ରଗୁଣା କଣ୍ଠମୂଳେ ଜାଣି ଖଞ୍ଜେ
ଶ୍ୟାମା ରୋମାବଳୀ ମଧ୍ୟଦେଶ ଝଳ ନାଭି ପରିସନ୍ତେ ସାଜେ

ହେମ ମସ୍ତି ଭେଦ କି ଅବା କାଳନ୍ଦୀ କୁଚ ଚକ୍ରବାକ ଦୁଇ
ନଦୀକି ଲଙ୍ଘି ହୋଇଲେ ଏକ ସଙ୍ଗୀ ବିଚ୍ଛେଦ ନପାରି ସହି
ଏହି ନଦୀକୂଳ ବିବାଦ ଯୁଗଳ କୁଚ ଗିରିକି ବଢ଼ିଲେ
କଠିନ ସନ୍ଧି ନିଷ୍ଠୁର ସ୍ୱଭାବଙ୍କୁ ମଧ୍ୟ ସନ୍ଧି ନଛାଡ଼ିଲେ ॥
ହରି-ନେତ୍ର-ପକ୍ଷୀ ପଞ୍ଜୁରୀ ଏହିକି ପଶି ବାହାରି ନପାରେ
ବୃହିଁ ନିଷ୍ଠଳେ କର ଦୁଇ ଚଞ୍ଚଳେ ମନ ଛନ ଛନ କରେ
ମଧ୍ୟା ଅତିକ୍ଷୀଣ ଭାର ସଜ୍ଜବନ ବିହିକି ଭାଳି ମନରେ
ରୋମାବଳୀଗୁମ୍ଫ ନାଭିଟେଙ୍କାପେ ଦମ୍ଭ ବାନ୍ଧି ବିକଳରଜ୍ଜୁରେ
ଶ୍ରୋଣୀ ସୁନ୍ଦର ସଞ୍ଚ ଘଞ୍ଚ ଉଦର ଭୁଙ୍ଗ ନିତମ୍ବ ଯୁଗଳ
ଅଭିରାମ ଶ୍ୟାମ କାମ ସିଂହାସନ ଘନ ଜଘନ ପୃଥୁଳ ॥
ଉଲଟ ରମ୍ଭା ପ୍ରାପ୍ୟେକ ଉରୁ ଶୋଭା ପାଦ କୋକନଦ ଛବି
ଅଶୋକ କଳ ଅଙ୍ଗୁଳି ନଖ ଝଳ ଶଶୀକି ଚରଣେ ସେବି ॥
ନବକୁମାରୀ ସର୍ବଅଙ୍ଗ ମାଧୁରୀ ନିର୍ମିଲେ ହରି ନିରୋପେ
ଏକ ଆରକେ ଗୁଣ ଶୋଭା ଅଧିକେ ନିଶୋଷି ସମ ସ୍ୱରୂପେ
ଉଲଗ୍ନେ ରଖି ପୂରାଇ ଆଖି ଦେଖି ଶାନ୍ତ ଏତେକେ ନୁହଇ
ଜଘନ ସନ୍ଧି କର ପଦ୍ମ ଆଚ୍ଛାଦି ଦେଖିବା ମନ ହୁଅଇ ॥
ଲଜ୍ଜା ଛଡ଼ାଇ କର ଯେବେ କଢ଼ାଇ ତେବେ ରସାଳି ଜାଣି
ରସିକ ସେହୁ ଅବୋଧ ବୋଧ ଯେହୁ ଆଜ ବୁଝି ପରମାଣି
ଏମନ୍ତ ବିଚାରି ବୋଲନ୍ତି ଶ୍ରୀହରି ଶୁଣ ନବୀନା ସକଳେ
ଅପ୍ରାଧ ଅର୍ଜିଲ ଉଲଗ୍ନେ ମଜ୍ଜିଲ ତପନ ତନୟା ଜଳେ ॥
ସୂର୍ଯ୍ୟା ଅପ୍ରାଧ ପିତାଙ୍କ ବନ୍ଧ ବୋଧ ଖଣ୍ଡ ବେଗେ ଦୁଇକର
ମୂର୍ଦ୍ଧନ କରେ ଉଲଗ ଉଠେବେଳେ ନିର୍ମଳ କରିଣ ଚଉ
ରାଧା ଶ୍ରୀମତୀ ତର୍ପଣେ କରି ପ୍ରୀତି ସକଳ ଲୋକବନ୍ଦନୀ
ଏବେ ଗୋ ତୁମ୍ଭେ ସୂର୍ଯ୍ୟଙ୍କୁ ପୂଜାଭାବେ ତୋଷକଳନ୍ଦ-ନନ୍ଦନୀ
ନବ ଶ୍ୟାମଘନ ଅମୀୟ ବଚନ ସରସେ ସୁନ୍ଦରୀ ଶୁଣି
ଲଜ୍ଜାକୁ ତେଜ ନାଗରଭାବେ ମଜ୍ଜି ଏକଆରେ ଅନା ଅନି
ଦର୍ପଣ କରି ଦେଇଣ ମୂର୍ଦ୍ଧନରେ ଉଲଗନ୍ତି ଧନମଣି
ନାଗର ଭଣି ବିଶେଷରେ ତରୁଣୀ ଅପ୍ରାଧ ଅର୍ଜିଲ ପୁଣି ॥
ଏକଇ ହରେ ଦେବତା ଉଲଗିଲେ ନାଶଇ ସକଳ ଫଳ
ନବ ତରୁଣୀ ବିବେକ ଶିରୋମଣି ଏତେକର୍ମ କମ୍ପାକଳ ॥
ଏବେ ବେନିକର ଯୋଡ଼ଶିର ପର ଉଲଗି ଭଗତ ମାଗ
ନିର୍ଦ୍ଦୋଷୀ ହୁଅ ବାଞ୍ଛିଲ ଫଳପାଅ ଦେଖ ଭାନୁଅନୁରାଗ ॥
ଏମନ୍ତଶୁଣି ଏକ ଆରେ ତରୁଣୀ ଶିରେ ବେନି କରଯୋଡ଼େ
ସୁର ସଦନ ନିର୍ମଳ ଦରଶନ ଅଙ୍ଗ ଅନଙ୍ଗରେ ପୀଡ଼େ ॥

ବିଶୁଦ୍ଧ ମନ ଜାଣି ନନ୍ଦ ନନ୍ଦନ ସୁବର୍ଣ୍ଣ ବଂଶୀକି ଘେନି
ନିଷ୍ଠୟେ ମୋର ତୁମ୍ଭେ ମୁହିଁ ତୁମ୍ଭର ଏମନ୍ତ ହସିଣ ଭଣି ॥
ଯେଝା ବସନ ଫେଡ଼ିଦେଲେ ବଦନ ପିନ୍ଧନ୍ତି ଗୋପ କୁମାରୀ
ଅଙ୍ଗୁଳି ଦେଖାଇ ବସନ ଚିହ୍ନାଇ ମାଗନ୍ତି କେଉଁ ସୁନ୍ଦରୀ
ଆହେ ବନମାଳି ଏମୋହଂସାବଳୀ ଶାଢ଼ି ଫେଡ଼ିବେ ନେଇଦିଅ
କହାଳ ଯହିଁକି ଜାଣିବା ନାହିଁକି ଯେ ତୁମ୍ଭ ବର୍ତ୍ତନ ନୁଅ ॥
କେହୁ ବୋଲେ ଶ୍ୟାମ ଫୁଲପଡ଼ି କମ ଭ୍ରମର ମାଳା ବସନ
ନାଗର ଯେମନ୍ତ ଦେଖିଲେ ନେଉଚ ବେଗେଚୋର କରଦାନ
କେବୋଲେରସିକବାମପାଖେଦେଖଚନ୍ଦ୍ରୋଦୟସାଢ଼ିଫେଡ଼ି
ଅନୁଗ୍ରହ କର ଶୀତ ଭୟ ହର ତରୁ ଆରୋହଣ ଛାଡ଼ି ।
ଭାଷେ କେଉଁରମା ହେଗୋପଚନ୍ଦ୍ରମା ମୋତାରାବଳଅମ୍ବର
ତରୁକୁ ମଣ୍ଡିଲ ଆମ୍ଭଙ୍କୁ ଭଣ୍ଡିଲ ଏଥିଁ କି କାର୍ଯ୍ୟ ତୁମ୍ଭର ॥
ହେ ପୀତବାସ କ୍ଷୀରୋଦ୍ର ବାସବଶ ଦେଖିଲେଦୁଃଖନଘେନ
ଜଳେ ସର ସର ତନୁ ଜର ଜର ଶୀତେ ଥରହର ପୁଣ ॥
କେଉଁ ସୁନ୍ଦରୀ ବୋଲନ୍ତି ବେଣୁଧାରି ଦୁକୂଳ ଲଜ୍ଜ ତେଜିଲୁଁ
ଦେଖି ଏଅବସ୍ଥା ନକର ବ୍ୟବସ୍ଥା କେତେ ରୂପରେ ଭଜିଲୁଁ
ଆହେ ଦୟାନିଧି ରସିକ ବାରିଧି ଅତନୁ ଶୀତେ କମ୍ପାଅ
ସିନ୍ଧୁଆ ଫେଇ ଦିଅମୁହିଁ ପିନ୍ଧଇ ଦେଖିଲେ ସୁଖ ନପାଅ ॥
କେହୁ ଡକାପାଡ଼ କାନମଡ଼ସାଢ଼ୀ କର ପ୍ରସାରି ମାଗଇ
ପରିଧାନରେ ସୁଖୀ ଅବଧାନରେ ହେବ ତୁମ୍ଭଙ୍କୁ ଲାଗଇ
ବୋଲେ ଚନ୍ଦ୍ରମୁଖୀ ମୋବାସ ଏସଖୀ ମାଗିଲେ ନଦିଅଂଫେଡ଼
ଦାଇବ କରିବ ଏମନ୍ତ ହୋଇବ ନପାଇବ ପୁଣରେଡ଼ ।
କେଉଁ ସୁନ୍ଦରୀ ବୋଲେ ଆହେ ତୁମ୍ଭର ଦେଖିଯଉବନ ଧନ
ଯତନେ ରଖ ହୋଇବ ଏତେ ସୁଖ କର ବାସେ ଆଚ୍ଛାଦନ
କେହୁ ପୁଣମାଗି ମୋରକଳାମେଘୀ ଦିଅ ମୁଁ ତନୁଘୋଡ଼ାଇ
ଓଧା ପାଳିଲା ଫଳ ଆଜ ଫଳିଲା ସକଳ ଗଲୁଁ ବୁଡ଼ାଇ
କେବୋଲେମାଧବଅବଳା ବାନ୍ଧବପୀତାମ୍ବର ମୋ ଘୋଡ଼ଣୀ
କେଉଁତରୁଣୀ ବୋଲଇ ହେଲାରଣ ଦିଅମୋଶ୍ୟାମ ଓଢ଼ଣୀ
କେଦଣ ବାଳୀ ବସନମାଗ ବୋଲ ଦ୍ରୁତକାନ୍ତରେ ନୋହିଲୁଁ
ମଦନ ରାଏ ଳୋଇ ଆମ୍ଭଦେୟ ଦିଗମ୍ବର ହେଣୁହେଲୁଁ
ପଡକା ଉଡ଼ାଇ କୂଳରୁ ଛଡ଼ାଇ ଆଣିଲ କଢ଼ାଇ ଏବେ
ଛାଡ଼ ବଢ଼ାଇ ମାଗିକରବଢ଼ାଇ ନପାଇଲୁଁ ବାମ ଜଣେ ॥
କେ ବୃକ୍ଷେଚଢ଼ିଲ କେତରୁ ଓଢ଼ାଇ କେତାଳିମାରଣତାକେ
ଊର୍ଦ୍ଧ୍ୱମୁଖରବେ କରତାଳି ସର୍ବେ ଦେଖି ହରି କଉତୁକେ

ହସିଣ କହି ଶୁଣ ନବ ସୁକେଶୀ ରସବତୀ ବାମା ଉତ୍ତ
ସର୍ବାଙ୍ଗ ଗୋପ୍ତକୁ ବସନ ଦେବାକୁ ସତ ନବଳଇ ଚଫେଡ଼ ॥
ପଞ୍ଚମଙ୍କ ନାହିଁ ଉତ୍ତରଙ୍କ ନାହିଁ ଆନନ୍ଦ ହୋଇଲ ସଜ
ଜଳରେ ପଶି ଶ୍ରମକୁ ଅନ୍ତନାଶି ସଙ୍ଗେ ସଙ୍ଗ ମନସିଜ ॥
ମଦନ ସାହା ପାଇଏଡ଼େ ଉଚ୍ଛାହା ଆମ୍ଭଙ୍କୁ କର ତର୍ଜନା
ବସନ ନ ଦେଇ ଦେବାପେ ଦୁଃଖପଡ଼େ କନ୍ଦେବ ତା କହକନା
ବୋଇଲେ ଚତୁରୀ ବଚନେ ରସଧୀର ସ୍ମରଦେବ ରତିଦେବା
ଦେଖଏ ପ୍ରସନ୍ନ ସବୁରି ବଦନ ଯେହ୍ନେ ଏ ଭ୍ରମରେ ସେବା ॥
ରସିକମଣି ବସନ ମାନନେଇନ ହଅନ୍ତ ଜଣ ଜଣକୁ
ସାଢ଼ି ପାଇଲେ ହରଷ ବଳାହୋଇଲେ କଅବା କାମରଣକୁ
ଏମନ୍ତ ସୁନ୍ଦରୀ ବସନ ପଦରି ରହିଲେ କୃଷ୍ଣଙ୍କୁ ବେଢ଼ି
ବୃକ୍ଷରୁ ହରି ଓହ୍ଲାଇ ବନ୍ଦନକରି ଅନୁରାଗ ପ୍ରେମେ ନବେଢ଼ି
ତ୍ରିଭଙ୍ଗ ଛନ୍ଦେ ମୁରଲୀ କରବନ୍ଦେ କଦମ୍ବ ଅବଲମ୍ବନେ
ହେମ ପଦକ ମଧ୍ୟେ ମାଳା ନାୟକ ହରି ଯେମନ୍ତ ଶୋଭନେ
ମନ୍ଦେ ମନ୍ଦେ ହସି କନ୍ଦାଛନ୍ଦେ ଗପି ଶୁଣଗୋ ନବୀନ ବାଳେ
ଆମ୍ଭରଆଗେ ଉଲ୍ଲଙ୍ଘେହେଲ ଉଲଗ୍ନେ ଲଜ୍ଜାକୁ ତେଜିଲ ଡ଼ାଳେ
ନାରୀ ଉଲଗ୍ନେ ଦେଖିଲେ ପାପଲାଗେ ନୁହଇ ଏତ ଉଚିତ
ଘେନ କୁମରୀ ବୋଲି ଉପୂନକରି କରିବା କ ପ୍ରାୟଶ୍ଚିତ ॥
କାହାକୁପୂଜିବା ଏ ଦୋଷ ତେଜିବା କାହାକୁ କପୂଣଦେବା
ବୃନ୍ଦାଙ୍କ ଆଦେଶେ ଶୁକ ବୃକ୍ଷଦେଶେ ବ୍ରଜେନ୍ଦ୍ରସୁତ ଶୁଣିବା
ଉଲଗ୍ନ ଦୋଷ ଲେଖିଛି ମୁନିଶାସ୍ତ୍ରେ ଉପଦେଶ ଶ୍ମୃତିଗିର
ପଣି ପଦ୍ମ ପୂଜ ଶୁଦ୍ଧ ଦ୍ୱିଜରାଜ ମୁଖେ ଚନ୍ଦ୍ରଦାନ କର ॥
ବୋଇଲନ୍ତି ହରି ଶୁଣିଲକି ସୁନ୍ଦରୀ କହେଯାହା ଶୁକଦ୍ୱିଜ
ଭ୍ରମନ ସେ ପାପ ଦେବ ଶୁଦ୍ଧଚାହ ଦାନଦେବା ଯେନ ଆଜ
ଶରଦ କାଳେ କାର୍ତ୍ତିକ ପୌର୍ଣ୍ଣମୀରେ ମହାଦାନ ଦେବାପୁଣ
ସ୍ୱଣମୁପମା ଦ୍ୱିଜରାଜ ବଦନୀ ଯୋଗେ ତୋଷହେବ ମନ ॥
ଶୁଣି ସୁନ୍ଦରୀ ଅବନୀ ମୁଖକରି ଚରଣ ଅଙ୍ଗୁଳି ଘସି
ଲଜ୍ଜା ହାସ୍ୟସଙ୍ଗେ ପ୍ରେମ ଅନୁରାଗେ ଚିର ସଙ୍କେତରେ ହାସି
କନ୍ୟାଙ୍କ ମନ ଜାଣି ନନ୍ଦ ନନ୍ଦନ ପ୍ରସନ୍ନ ଭାବେଶ କହେ
ଭ୍ରମେ ମୋରମାୟୀ ଭାବେଅଛକରଣି ଋଣୀ ହୋଇଅଛଦେହେ
ଜାଣିଲ ସତ୍ୟ ଭ୍ରମର ଦୃଢ଼ବ୍ରତ ଏକାନ୍ତେ ମୋତେ ଭଜିଲ
ଗୃହ ପରିଚର୍ଯ୍ୟା କୁଳଶୀଳ ଲଜ୍ଜା ମୋଲାଗି ସବୁ ତେଜିଲ ॥
ଭ୍ରମରେ ପ୍ରୀତ ଅନୁରୂପେ ଭଗତି କରିତ କ୍ଷମ ନୁହଇ
ପ୍ରେମ ତପେ ତୋଷ ହେଲି ଭ୍ରମବଶ ପରମ ସୁଖ ଦେବଇଁ

ଶରଦ ପୂର୍ଣ୍ଣି ରଜନୀ ବୃନ୍ଦାବନ ରାସରଙ୍ଗେ ହଳସିବ
ଅଚଳ ରସେ ବହରି ମନଦୋଷେ ଶର ଶରଦ ନାଶିବ ॥
ଏବେ ବାଛକୀ ବୃନ୍ଦାଙ୍କ ପାଦେ ସେବ ରାସରଙ୍ଗ ଲୀଳା ଶିଖ
ଯମୁନାକୂଳେ ନଶିଶରୀ ଉଜ୍ଜ୍ୱଳେ ତେବେ ସେ ହୋଇବସୁଖ
ସଙ୍ଗୀତ ସାହିତ୍ୟ ନୃତ୍ୟରସ ଗୀତ ତାଳମାନ ରସକଳା
ଏକାନ୍ତେ କାନ୍ତ ସଙ୍ଗେ ଯେତେ ସୁରତ ଅନନ୍ତସୁଖଦଲୀଳା
ଗାନ୍ଧର୍ବୀବିଦ୍ୟା ରାସେଶ ସିଦ୍ଧା ବୃନ୍ଦା ଦେବୀଙ୍କ କରଭାବନା
ନନ୍ଦୀମୁଖୀ ବନ୍ଦ ହୁଅ ସଜାସିଦ୍ଧ କାମବୀଜ ଉପାସନା ॥
ମୁରଲୀ ଧରି ନିପୁନ ହୁଇଁ କରି ସତ୍ୟ ଏ ସତ୍ୟ ଆମ୍ଭର
ବନେ ନଶି ସଙ୍ଗେ ରତିରସ ରଙ୍ଗେ ତୋଷିବ ମନ ଭ୍ରମର
ଆଜଗୋ ଘରି ଗୃହେ କଥାକର ସାହା ଉତ୍ସବେ ମିଳନ
ଶନ୍ତାନକରି ନିଷ୍ଠିନ୍ତରେ ବାହାର ଜାଣିଲତ ମୋର ମନ ॥
ଶୁଣି ତରୁଣୀ କୃଷ୍ଣର ଦୃଢ଼ ବାଣୀ ହରଷ ମାନସ ହେଲେ
ବ୍ରତକୁଉଜାଇ ଶଉକୁ ମଜ୍ଜାଇ ସେ ଯାହା ଭୁବନେଗଲେ
ତହୁଁ ବନମାଳୀ ଗୋଗୋଷ୍ଠକୁ ଚଳି ମିଳିଲେ ସଖାସମାଜେ
ମନହରଷେ କନ୍ୟାଗଣ ପୌରଶେ ହାସ ବଦନ ପଙ୍କଜେ ॥
ଦେଖିଣ ବନ୍ଧୁ ହାସ୍ୟରେ କହେ କନ୍ଧୁ ଆଜତ ବଡ଼ ହରଷ
ସହସ୍ରଯୋନ ଦର୍ଶନ ଫଳ ଯେହ୍ନେ ପାଇଛକି ସୁଧାରସ ॥
ସହସ୍ର ସହସ୍ର ସୁବର୍ଣ୍ଣକଳସ ପିୟୂଷ ଧରି ଯା ପାଶେ
ମାଠିକଳଧେ ଗୋରସଆମ୍ଭପାଶେ ଦେଖି କପାଇଁ ସେରସେ
ସଙ୍ଗୀତ ସାହିତ୍ୟ ନୃତ୍ୟରସଗୀତେ ସୁନ୍ଦରୀ ମଧ୍ୟେ ଯେବଣେ
ଗ ଙ୍କବନେରଖି ନାନା ବାଣୀଶିଖି ଗୋପାଳ ମେଳକରିଛେ
ଶୁଣି ଶ୍ରୀହରି ବନ୍ଧୁକୁ ସ୍ତୁତି କରି ତେମନ୍ତ ଆଜ୍ଞା ଭ୍ରମର
ଅକାମୀ ଦ୍ୱିଜ ବଚନେ ହେଲା ଆଜ ମନେକଲୁଁ ଏ ବିସ୍ତର
ବେଳଉଛୁରି ହୋଇଲପିବା ପୁରି ବେଗେଦୋହନ ବଢ଼ାଅ
ଦୁଧ ପୁରଇ ଭାର ଆଗେ ଚଳାଇ ଆପଣା ପଥ କଢ଼ାଅ ॥
ଏମନ୍ତ କହି ଗାବ ସବୁଦୁହାଁଇ ଭାରବୁହାଇ ଅଇଲେ
ସେ ନିତମତେ ଜନନୀ ତୋଷରିତେ ମାଜଣା ମଣୋହିକଲେ
ଶୁଣି ସେନଲ ଯୋଡ଼ଶ ବେନକରି ନାରଦଙ୍କୁ ପୁଣ ପୁଚ୍ଛି
ଭେମୁନିବର ସୁଦୟା ମୋତେ କର କଥାଏ ପରିଛୁଅଛି ।
ତରୁଣୀମଣି ନବୀନ ଯଉବନୀ ରସିକଭାବେ ରସିଲେ
ବିବସ୍ତ୍ରେଆସି ଗ୍ରାମ୍ୟରେ ସୁକେଶୀ ନାଗର ନେଇ ତୋଷିଲେ
ଯେଯାହା ବୋଇଲନ୍ତି ସେତାହ କରନ୍ତି ସର୍ବାଙ୍ଗଦେଖିନାର୍ଥିଲେ
ସ୍ତନ ଜଘନ ନଗ୍ନେପି ନରସିଂହ ରମଣ କାମ୍ୟା ନକଲେ ॥

ଏକାନ୍ତ ସ୍ଥାନ ନାହିଁ ଜନ ଗମନ କଦମ୍ବ ବନ ମଧ୍ୟର
କିଶୋର ରସିକ ନାଗର ନାୟକ କର୍ମ୍ମ ନକଲେ ବିହାର
ବୋଲେ ମୁନିବର ହେ ନଳକୁବର ଗୋବିନ୍ଦ ଗୁଣ ଗମ୍ଭୀର
ସେଜ ନିମିତ୍ତ ନହେଲେ କେଳିରତି କହିବା ତହିଁ ବିସ୍ତର ॥
ଅବୋଧ ବାଳା ନଜାଣେ କାମକଳା ମନ୍ତ୍ର ଉପାସନା ନାହିଁ
ରାଧାଙ୍କ ପାଦେ ସେବା ନାହିଁ ସୁହୃଦେ କୃଷ୍ଣଙ୍କୁ ରମିବେ କାହିଁ
କନ୍ୟାଙ୍କଠାରେ ପ୍ରସନ୍ନ ଭାବେ ନହେଲେ ରାସରସ ସୁରତକୁ
ମୁରଲୀ ଛୁଇଁ ନିୟମ କରି କହି ଏକାନ୍ତରେ ରମିବାକୁ ।
ସେ ରାସ ଉତ୍ସବ ରାଧାରେ ସମ୍ଭବ ଏକା କୃଷ୍ଣରେ ନୁହଇ
ଏଣୁ ଗୋବିନ୍ଦ ଭାବରେ ହୋଇ ବୋଧହିତ ଉପଦେଶ ଦେଇ
ଗାନ୍ଧାର ବିଦ୍ୟାରେ ନାନ୍ଦୀବୃନ୍ଦା ଦ୍ୱାରେ କାମବୀଜ ଉପାସନେ
ରାଧାଙ୍କୁ ସେବିବେ ତେବେ ସେ ଲଭିବେ କୃଷ୍ଣସଙ୍ଗ ଏକାସନେ
ଏମନ୍ତପନ୍ଥଁ ନୋହିଣଥିଲେ ସେହୁ ତେଣୁ ଅଯୋଗ୍ୟ ସମ୍ଭୋଗେ
ସୁନ୍ଦରୀଙ୍କ ସ୍ନେହ ଫେଡ଼ିଣ ନକରେହେ ଘଟାଇବା ଅନୁରାଗେ ॥
କାମବୀଜ ଭାବ ରାଧାପାଦେ ସେବି ତେବେ କୃଷ୍ଣ ଅଙ୍ଗପାଇ
ଏ ତନୁ ସେତେ ସାଧନ ବିଧିମତେ କେବଳଭକତହୋଇ ॥
ଧନପତି ଶିଷ୍ୟ ତତ୍ତ୍ୱ ଉପଦେଶ ଏହିଠି ଜାଣ ଗୁପତ
ଏବେ ନନ୍ଦର କନ୍ୟା ଭୋଗ ନକର ଧୀର ଲଳିତ ମହତ୍ତ୍ୱ ॥
ଶୁଣି ସନ୍ତୋଷ ପରମ ଉପଦେଶ ହୃଦୟ ମର୍ମ୍ମରେ ରଖି
ମୁନି ପୟର ବନ୍ଦ ନଳକୁବର ସାତ୍ତ୍ୱିକ୍ୟ ନାରଦ ଦେଖି ॥
ବ୍ରଜ ରହସ୍ୟେ ବଚନ ସରସ ନାରଦ ଗଦ ଗଦରେ
ଶ୍ରୀ ଭାଗବତ ଗୋପଲୀଳା ଚରିତ କହନ୍ତି ଅତି ମୋଦରେ ॥
ଏମନ୍ତେ ହିମଋତୁ ଅନ୍ତେ ଆଗମ ଶିଶିର ମକର ଆଦି
ତୁଷାର ବରଷି ନୀରସ ସାରସୀ କୁହୁଡ଼ି ଦିଗ ଆଛାଦି ।
ଚନ୍ଦ୍ରଲତା ମାଡ଼ି ହିମ ଜଳପଡ଼ି ଝର ଝର ବରଷନ୍ତି
ଘୋଟି ଅନ୍ଧକାର ଏକଇ ଆକାର ରବିଛବି ନଦିଶନ୍ତି ॥
ଦିଗୁଣରେ ଶୀତପଡ଼ି ସେ ଜଗତ ଦିବସ ନିଶି ପ୍ରାୟେକ
ଚକ୍ରବାକ ଦୁଃଖୀ କଉଶିକ ସୁଖୀ ଅଭିସାରିକା ନିଃଶଙ୍କ
ସନ୍ନିଧି ଥିଲେ ନଦେଖେ କେହି ଭଲେ ଇନ୍ଦ୍ରଜାଲ ପ୍ରାୟେ ଘୋଟି
ଉଦୟରେ ସୂର୍ଯ୍ୟ ବେଳୁ ବେଳ ତେଜ ଲଗିଣ କୁହୁଡ଼ି ଫାଟି ॥
ଯେସନେ କଳ୍ମଷ ଘୋଟି ଅଙ୍ଗଦେଶ ଜନମ ଆଦିରୁ ଥାଇ
ଶ୍ରୀହରି ନାମେ ସାଧନ ଅନୁକ୍ରମେ ନିଃଶେଷ ହୋଇଣ ଯାଇ
ଉତ୍ତରଗତି ହୋଇଲେ ଗ୍ରହପତି ମାର ମକର ଆରୋହି
ଶିଶିର ଜାଣି ବସନ୍ତ ଆଗୁଆଣି ଦକ୍ଷିଣ ପବନ ବହି ॥

ମକର ଧାଡ଼ି ସ୍ଥାବର ଲତା ଝାଡ଼ି ସରସୀ କୁଳ ଛାଡ଼ିଲେ
ବସନ୍ତ ଭେଦେ ମଦନ ଅନୁବାଦେ ଦମ୍ପତି ପ୍ରୀତି ବଢ଼ିଲେ
ମକର ଯାନ୍ତେ ସୁର ନର ଜଗତେ ତଣ୍ଡୁଳ ଉତ୍ସବ କରେ
ତପସ୍ୱୀମାନେ ବିପ୍ରାଦି ଗୃହବର୍ଣ୍ଣେ ଚପଳ ତାପ ଆଦରେ ॥
ପଲ୍ଲବ କଅଁଳ ରସାଳ ବକୁଳ କଇରବ ମଉଳିଲେ
ନାସ୍ତିକ ନ ସେବ ଶଶୀକ ନଭାବ ନର ଶୀତଳ ସଳିଳେ ॥
ଅନଳ ଉଦ୍ଭବେ ନଷ୍ଟ ଠାବେ ଠାବେ ଦିନୁଦିନ ଶୀତଧୂଷ୍ଣ
କୁନ୍ଦ କୁମୁଦ ଆଦରେ ଭୃଙ୍ଗମୋଦ କମଳା ଫଳାଦି ପାଶ ॥
ମନସିଜ ସଖା ଆଗୁଆଣି ପଞ୍ଚାସୈନ୍ୟ ଶିଶିର ସାଜଇ
ରଜନୀ ଶେଷ କୁକୁଟ ଧ୍ୱନିକି ସେ ବୀର ନିଶାଣ ବାଜଇ ॥
କୋକୋ କୋକୋ ଡାକେ ଉଚ୍ଚାଟରେ ଲୋକେ ସାହିକେ ଶୀତ ସଙ୍କୋରେ
ଭୁଣ୍ଡ ଜାଡ଼ି ବାହି ଥରଥର ଦେହୀ ତୁଷାରେ ରୋମଟାଙ୍କୋରେ
ମନସିଜ ରାଜ ବଳେ ଐଶ୍ୱର୍ଯ୍ୟ ବସନ୍ତ ପଞ୍ଚମୀ ଜାତେ
ଫଗୁଧୂଳି ରଙ୍ଗେ ନବ ଅନୁରାଗେ ଫୁଲଧନୁ ଧରି ହସ୍ତେ ॥
ଗୁଣ ଭୃଙ୍ଗମାଳେ ଚୂତାଙ୍କୁର ଶରେ ମିତ୍ରଚନ୍ଦ୍ର ଅଶ୍ୱିନୀରେ
ମକରଧ୍ୱଜ ଆଗମେ ଗ୍ରହରାଜ ଆଗେ କୁମ୍ଭ ଧନସ୍ଥାରେ ॥
ଏକାଳେ ଗୋକୁଳେ ଗୋବିନ୍ଦ ବିହ୍ୱଳେ ରାଧାପୁରେ ଅଭିସାର
ନିଶି ଅନ୍ଧାରେ ବିଜୟ ଏକସରେ ଉଚ୍ଚାଟରେ ପଞ୍ଚଶର ॥
ନବୀନ ଘନତନୁ ନୀଳବସନ ନିଶିକ ନିଶି ଅନ୍ଧାରେ
ଲୋକ ଭୟରେ ମନ୍ଦଗତି ପଥରେ ଅମଡ଼ାଖୁଣ୍ଟକଣ୍ଟାରେ ॥
କଷ୍ଟେ କଷ୍ଟରେ ପ୍ରବେଶ ଯାବନ୍ତେ ତରଳ ଚଞ୍ଚଳ ଭତେ
ଚନ୍ଦ୍ରମା ବୁଡ଼ି ରଜନୀ ଚାଞ୍ଛଡ଼ି ଥର ଥର ହୋଇ ଶୀତେ ॥
ଦ୍ୱାରେଣ ଲଗି ସମସ୍ତ ଜାଗି ଜଗ ଉହାଡ଼େ ଲୁଚି ସାଙ୍କୋର
ଶିଶିର ପଡ଼ି ବସନ୍ତେ ତନୁ ଜଡ଼ି କମ୍ପିଣ ରୋମଟାଙ୍କୋର ॥
କିଏ ଡାକିଲେ ପଳାଇ ଯାଇ କେତେ ପୁଣ ପଛ ପାଖେ ଆସି
ଯିବା ଆସିବାରେ ଗହଳ ଦୁଆରେ କ୍ଷଣକେ ମିଶିଣ ପଶି ॥
ରାଧିକା ପୁର ଭୂଅ ବନ୍ଧଆକାର ଆଡ ବାଙ୍କ କନ୍ଧି କନ୍ଧି
ବେଷରେ ଅନ୍ଧାରେ ମଦନ ଧନ୍ଦାରେ ଭେଦ ନପାରିଣ ଧନ୍ଦି
ଯାନ୍ତେ କାହିଁ ସ୍ତ୍ରୀ କାହିଁରୁ ଲେଉଟି କାହିଁ ପୁଣ ଡେଇଁ ଯାଇ
ଚରଣ ହୁଡ଼ି କାହିଁରେ ପୁଣ ମାଡ଼ି କାମେ ଶିବେ କହ ନାଇ ॥
ସାତ୍ତ୍ୱିକ ମତରେ ଲୋକେ କମ୍ପି ତରେ ସ୍ତମ୍ଭ କଣ୍ଟକିତ ଠେଲା ଡରେ
ପ୍ରିୟାଙ୍କୁ ନପାଇ ଲୋତକ ଛୁପଇ ତନୁ ଦାସ ଜରଜରେ ॥
ଦମ ଦମ ବୁକୁ ପୁଛିବେ କାହାକୁ ସଦନ ସାହା ସେ ଭ୍ରମେ
ଖରନିଃଶ୍ୱାସ ମତ୍ତ ଅତି ବିରସ ପ୍ରିୟା ଭାବ ପରିଶ୍ରମେ ॥

ଜଟିଳା ସଦନେ ନନ୍ଦ ଶୟନେ ଦେଖିଣ ଭୟେ ବାହୁଡ଼ି
ଛନଛନ ଚିତ୍ତେ ଚନ୍ଦ୍ରାବଳୀଆଗାରେ ତୁରେ ପୂରେ ପ୍ରିୟା ଲେଉଡ଼ି ॥
ପଦ୍ମ ଗନ୍ଧ ଘ୍ରାଣେ କୃଷ୍ଣ ଭୃଙ୍ଗ ଜାଣେ ଅନୁସରି ଆସେ ପାଶେ
ଏକାନ୍ତେ ରାଈ ଶୟନ କରେ ସଖୀ ଜ୍ୟୋତିର୍ମୟୀ ସୁପୁର ଦ୍ୱାରେ ॥
ନିବିଡ଼ ମନ୍ଦିର ଅଭେଦ ସମୀର ଚନ୍ଦ୍ର ଅମ୍ବର ମଣ୍ଡଣି
ଗଜଦଶନ ପଲଙ୍କେ ହଂସାସନ ଶୁଭ୍ର ଆଚ୍ଛାଦନ ଯୋଡ଼ି ॥
ଅଗ୍ର ଧୂପ ଧୂମ ସୁବାସ ସୁଷମେ ହିଙ୍ଗୁ ହାଟ କର୍ପୂର ମଧ୍ୟରେ
ଚନ୍ଦ୍ରପ୍ରତିମା ବାଡ଼ିରେ ଅନୁପମା ଗୋପୀକା ଶ୍ୟାମ ପ୍ରେମରେ ॥
ମାଣିକ୍ୟବନ୍ତ ଜଳଇ ଚନ୍ଦ୍ରକାନ୍ତ ନିର୍ମଳେ ଶୋଭା ଦିଶନ୍ତି
ଶୟନ ଭୁଜ ଗୁରୁବାସ ମୁରଲି ମଧ୍ୟ ପଦୁଡ଼ ଶ୍ରୀମତି ॥
ନିହାଳି ଯୋଡ଼ି ସଜନୀ ପାଶେ ବସି କୃଷ୍ଣମହିମା କଥନେ
ନିଦ୍ରା ନ ପୂନେ ଦେଖିଣ ସଖୀଗଣେ ଗଲେ ଯେ ଯାହା ଶୟନେ ।
ନାଗର ହୃଦେ ମିଳ ଏହି ସମୟେ ପ୍ରିୟା ଶୟନକୁ ଚାହିଁ
ଦରଶନ ଧ୍ୟାନ ପାଇଲା ପ୍ରାୟେ ବୁଦ୍ଧି ଦୁଃଖ ଲେଖି ସୁଖ ବହି ॥
ଶଯ୍ୟାରେ ବସିଲା ଲଜ୍ଜାରେ ନ ଭରସି କହିବ ଭାଷା ନ ଆସେ
ନବଲେ ସତ ବଢ଼ାଇ ରଖି ହସ୍ତ ଧୀରେ ଧୀରେ ଦେଇ ବାସେ ॥
ଅଳପ ହଲଇ ଭୁଜକ ଚଳାଇ କର ଗଳାଇ ଚରଣ
ଧୀରେ ଧୀରେ ଧରି ଆଶ୍ୱାସେ ମଞ୍ଜୁଳ ନ ଭାଙ୍ଗନ୍ତି ନିଦ୍ରା ପୁଣ ॥
ନେତ୍ର ନ ଫେଡ଼ଇ ଚେତ କେମା ଦେଇ ଦାସୀ ସେବା କଲେ ଜାଣେ
ନିଦ୍ରାର ବହ୍ନି ଲେଉଟି ଉହୁଁ ଉହୁଁ ବୋଲେ ଚରଣ ଧୁଆଇ ଆଣେ ॥
ସୁରତେ ମଧୁହର ମନ୍ତ୍ର ବୃଦ୍ଧି ପୁଣିହିଁ ପାଦ ଧଇଲେ
ଶୀତଳ ଭୟେ କେମା ପାଦ ନ ଦିଏ ନାହିଁ ନାହିଁ ନାହିଁ ବୋଲେ
ବିଷାଦେ ହରି ନେହ ଧରି ନ ପାରି ପ୍ରିୟା ଭାବେ ଅନୁତାପି
ପୁଣି ହିଁ କର ଗଳାଇଣ ନାଗର ଧୀରେ ଧୀରେ ଧରି ଗୁପି ॥
ଏଡ଼େ କେ ଚେତା ନପାଇ ନୁପୁର ଦେଖି ନାଗର ବନ୍ଧୁ ଆ
ନଖ ଚଳାଇ ଜାନୁ ପ୍ରଦେଶେ ଚଳାଇ ଖେମାଇ ଚିହ୍ନାସିନ୍ଧୁ ଆ ॥
ସ୍ୱପନେ କେମା ଶ୍ରୀକୃଷ୍ଣରେ ପ୍ରେମା ବ ସଂଫେଇ କୈନ୍ତ୍ରଶ ଧରେ
ବାମତା ଭାବରେ ରମନ୍ତା ଧବରେ କହେ କେ ନାହିଁ କରେ ॥
ମୀଳନ ଜାଣି ବରଜ ବେଣୁ ବାଣୀ ପଶିହିଁ କରଜ ଗୁଳେ
ଚେତନା ପାଇ ଚମକେ କେମା ଗୁହିଁ ସ୍ୱପନେ ମୁଁ ନେଉ ମିଳେ ॥
କାନ୍ତମୁଖ ଦେଖି ମନେ ହୋଇ ଦୁଃଖୀ ଉପନା ଦଶନେ ଗୁପି
ଶୀତ ଅନ୍ଧାରେ ଅଇଲେ ଏକାକାରେ ଚିନ୍ତ ମନରେ ସନ୍ତାପି ॥
ପଣନ୍ତ ପାଡ଼ ଚରଣ ଧୂଳି ଝାଡ଼ି ଶ୍ରୀଅଙ୍ଗ ବସନେ ଗୁପି
ହିଙ୍ଗୁଳାର ପଟ ଅଣାଇ ନିକଟ କର ଉଷୁମାଇ ଗୃଦ୍ଧି ॥

ମୋଦ ବିଷାଦେ ପୁଚ୍ଛନ୍ତି ଗଦଗଦେ ଏଡ଼େ ଦୁର୍ଗମେ ଆଇଲ
ପିଉଳ ପାଇଁ ମାଳମଣି ହରାଇ ମନେ ଭୟ ନ ପାଇଲ ॥
ତନୁ କଶସ୍ତିର କହନ୍ତି ନାଗର ଯେତେ କଷ୍ଟରେ ଆଇଲୁଁ
କଣ୍ଟା ଖଣ୍ଡ କଣା ପଡ଼ ହୋଇ ବଣା ଯହିଁ ଯେମନ୍ତେ ରହିଲୁଁ
ଧୀର ଧୀର ବାତେ ଥର ଥର ଶୀତେ ସର ଧର ଶିଶିରରେ
ଲୋକ ଭୟରେ ପଳାଇଲୁ ତବ ଆରେ ଚୋର ପ୍ରେମ ଜରଜରେ
ଏ ଦୁଃଖ ସଖୀ କାଞ୍ଚିତ ପ୍ରାୟେ ଲେଖି ତୋ ବିଚ୍ଛେଦ ଦୁଃଖ ଗୁରୁ
କାମବିଶିଖ ଭେଦନ୍ତେ ଯେଉଁ ଦୁଃଖ କେ ପୂର୍ଣ୍ଣି ତା ସହି ପାରୁ ॥
ଶୁଣି ଗୁଣବନ୍ତୀ ବିକଳ ଯେ ମତି ନେତ୍ର ଲୋତକ ବହଇ
କାନ୍ତକୁ ଜଡ଼ି ଅଙ୍ଗରେ ଅଙ୍ଗ ଭିଡ଼ି ଧଇର୍ଯ୍ୟ ଧରି ନ ହୁଇ ॥
କାନ୍ତେ ରମଇ ବଦନ ଚୁମ୍ବଇ ଉରଜ ଯୁଗ ଯୋଡ଼ାଇ
କାନ୍ତ ମନୋରଥ ମତ୍ତ ମନମଥ ରସେ ଲେଉଟେ ବୁଡ଼ାଇ ॥
ବିବିଧ ସୁରତେ ରମିଲେ ଏକାନ୍ତେ ଶୀତଭୀତି ମନୁ ତେଜି
କେଳି ଭଙ୍ଗବନ୍ଧେ ପାଦ ଟାଣି ଛନ୍ଦେ ଏକ ଆରକରେ ମଜ୍ଜି ॥
ଶେଷେ ପଦୁଡ଼ି ନବ ଭେଦ ଭିଡ଼ା ଭିଡ଼ି ପର୍ଯ୍ୟଙ୍କେ ତୋଳ ଯୋଡ଼ ହୋଇ
ଗଣ୍ଡ ଚୁମ୍ବନ ଅଧର ସୁଧାପାନ ପ୍ରେମରସେ କୁହାକୁହି ॥
ପ୍ରବାସେ ରମିବା ଆର୍ଥି ଯାତେ ଯିବା ଦେଖିବା ସେ ସ୍ଥାନେ ସ୍ଥାନେ
କେମନ୍ତେ ଶୀତ ବିଦେଶେ କେଡେ ଭ୍ରାନ୍ତେ ବିହରିବା ବନେ ବନେ
କାନ୍ତଙ୍କୁ ଜଣାଇ ଭାବରେ ମଣାଇ ଅଚିନ୍ତା ବିହାର ରସେ
ନାଗର ଭଣି ହଉ ହଉ ମିଳଣି ଯିବା କଷ୍ଟେ ପରବାସେ ॥
ଏମନ୍ତ ରସେ ରଜନୀ ଅବଶେଷ ମୁହୂର୍ତ୍ତି ନବଲେ ମନ
ଗାଧୀ ଅପଶ୍ୟାନ୍ତ ଚିନ୍ତ ଲୋକଭ୍ରାନ୍ତ ବିଷାଦେ ହରି ଗମନ ॥
ଗଣ୍ଡ ପାଟେ ଗୁଡ଼ି କୃଷ୍ଣ ଗୃହିଁ ଲେଉଟି ପୁଣ ପୁଣ ଚୁମ୍ବେ ମୁଖ
ନଚଳଇ ପାଦ ଚିନ୍ତ ମନ୍ତ ଖେଦ ଦୁଃସହ ବିଚ୍ଛେଦ ଦୁଃଖ ॥
ରାଧା ନିଦ୍ରା ଯହୁଁ ବାହାର ସେ ତହୁଁ ମନ୍ଦ ମନ୍ଦ ଗତି କଲେ
ମାଧବ ସ୍ୱାହା ନ ବାହାର ପୁରଜନେ ଦ୍ୱାରେ ମେଲା ହେଲେ-ଗଲେ ॥
ନିଜ ମନ୍ଦିରେ ଶୟନ ହରି କଲେ ନ ପାରିଲେ କେହି ଜାଣି
କୃଷ୍ଣ ଆସନ୍ତେ ସଖୀ କେମା ପୁରତେ ଅନୁସରି ପଦ୍ମମଣି ॥
ଛଳ ଏକ ଆରେ କୃଷ୍ଣ ଅଭିସାରେ ତଥି ଅନୁସାରେ ସଖୀ
ଚନ୍ଦ୍ରମଣି ବୋଲେ ହରଷ ହାସରେ ବନ୍ଧୁ ଆଜ କେହୁ ଦେଖି ॥
କୃଷ୍ଣ ଚନ୍ଦ୍ର ତନୁ କ୍ଷୀଣ ହେଲୁ ହେବ ଅତନୁରେ ଭାନୁ ଜାରେ
ସୁହୃଦେ ସେବ ଯୋଡ଼ାଇବା ସନ୍ତ ବାଟେଣ ନିନ୍ଦ କି ସଖୀରେ
ଶଶୀରେଖା ଭଣି ପ୍ରତିଦେଶନ ଦଣି ମୁଖେ ଅନୁରାଗୀ
ବଧୂକ୍ଷୀଣ ଅଙ୍ଗେ ରମ୍ୟାଧର ସଙ୍ଗେ ନଜାଣି କ୍ୟେସ୍ତାହାସଙ୍ଗୀ ॥

ବୋଲେ ଦୃଷ୍ଟିଅଳି ସ୍ୱୟଂ ଦୃଷ୍ଟିଆଳି ତଦ୍ବିମା କୋଳରେ ରବଗି
ରସିକବର ଚନ୍ଦ୍ରିଣ ଶାଳେ ମଧୁ ବନ୍ଧୁ କେତକୀକୁ ଥିଲେ ଆସି
ତୃଷ୍ଟୟୁ ବାଲେ ଚନ୍ଦନ ଯୁଗାଙ୍ଗରେ ଷଷ୍ଠ ଏ ଆଜସି ଯାମେ
ନବକୁମାରୀ କଣ୍ଠକୁମ୍ଭ ବଦାର ଣ ମକେଶ୍ୱେ ସଙ୍ଗ୍ରାମେ ॥
ବୋଲନ୍ତି ତତ୍ତୁଗ ଶ୍ୟାମ ବକ୍ଷବସ୍ତ୍ର ବଧକନ୍ୟା ମୟୂରଶେଷ
ହର ଆଳରେ ଚତୁର୍ଥୀ ଯାମନ୍ତରେ ବଧୂ ନ ଦେଖିଏ ହରେ
ସାତ ମଙ୍ଗଳେ କାମଦେବ କ ତରେ ବୁଝ ଅନୁରାଗ ଜଳେ
ଅମୃତପାନ ରମଣୀ ସଉବନ ମାତକୁମ୍ଭ ଏଡ଼ି ଗଲେ ॥
ପାଞ୍ଚ ସଜନୀ ବୋଲେ ଆଜ ପଞ୍ଚମୀ ବସନ୍ତ କାମ ଉତ୍ସବେ
ବାରୁଣୀ ସୋମ ଦେଖି ନବ ମଦନ ମଣ୍ଡ ରତ୍ନ ପ୍ରିୟା ଭାବେ
ଷୋଡ଼ଶବସନ୍ତେ ଚେଣ୍ଟ ଷୋଡ଼ଶସ୍ୱରତେ ଷଷ୍ଠ ସଜନୀ ଯେ ଭାସେ
ଶ୍ରୀଅଙ୍ଗ ଲାଗି ଗତ ରାସ ଉଲଗି ଘୋଡ଼ ଓଢ଼ଣି ସୁବେଶେ
କୃଷ୍ଣ କସ୍ତୁରୀ ଲୁଣ୍ଠ ଣ କୁଚଗିରି ପଞ୍ଚଶର କରତରେ
କନକ ଭୂମି ତରଇ ମୃଗଭୂମି ଦେଖା ନଦଇ ଖାତରେ
ସପ୍ତମ ସଖୀ ବୋଲେ କେ ନ ଦେଖି ଜୀରନ୍ତି ପାଦୁଣାରେ
ନାଗର ସାଗର ନଶ ଅଭ୍ୟାସ ସଙ୍ଗମ ଚନ୍ଦ୍ରଭାଗାରେ ॥
ଅଷ୍ଟକଳା ରସେ ସଖୀଜନ ଭାଷେ ରତ୍ନ ଅନ୍ତ ଚନ୍ଦ୍ରାଗ୍ନିକି
କୃଷ୍ଣଚନ୍ଦ୍ର ବନୁ ଅର୍ଦ୍ଧ ଚନ୍ଦ୍ର ତନ ସଖୀକଳା ପୂର୍ଣ୍ଣରହି ॥
ହାସ ଇଙ୍ଗିତେ ଶୁଣି ଯେମା ଲକ୍ଷିତେ ମନ୍ଦହାସ ଚନ୍ଦ୍ରମୁଖେ
ନଶି ବାସରେ କୃଷ୍ଣ ଗୁଣରସରେ ହାସ ପରିହାସ ମୁଖେ ॥
ଏମନ୍ତେ ପ୍ରବାଦେ ଗୋପ ସର୍ବବଂଶ ଗୋକୁଳର କୁଳବୃଦ୍ଧ
ରାମ ଗୋବିନ୍ଦ ସେନଣ ସଖାବୃନ୍ଦ ବିଜେ କରନ୍ତି ନନ୍ଦ ॥
ଜଉଡେ ତହିଁ ସପତାଙ୍ଗ କହି କର ଯୋଡ଼ଣ ସଣୋଇ
ଦେଖ ନନ୍ଦରାଜ ଅମ୍ବିକା ବନପୂଜା ଷାଠିଏ ବରଷେ ହୋଇ
ସୋମ ଶ୍ରବଣା ଶିବ ଯୋଗ ସମ୍ମାନ କୃଷ୍ଣକୁମ୍ଭ ଚତୁର୍ଦ୍ଦଶୀ
ହର ହରଜନ୍ମ ମହାଯୋଗ ପୁଣ୍ୟ ପୂଜା ଉଜାଗରେ ନଶି ॥
ଏମନ୍ତ ଶୁଣି ଶରଧା ସବେ ପୁଣି କୃଷ୍ଣ ବେ ଲନ୍ତି ଭେଟିତା
ଆଜ୍ଞା ସେ ଦେବା ସକଳେ ତହିଁ ଯିବା ଦେଖିବା ସେ ଶିବଯାତ୍ରା
ହଉ ହୋଲେ ନନ୍ଦ ସକଳେ ଆନନ୍ଦ ଘୋଷଣା ନରେନ୍ଦ୍ର ଆଇ
ଶୁଣି ସକଳେ ଉତ୍ସାହ ମନେ କଲେ ଲୋଡ଼ଣ ସବୁ ଭଆଇ
ଅମ୍ବିକାବନେ ଚଳ ଲୋକେ ତୋଷମନେ ଯେଯାହା କୁଟୁମ୍ବ ଘେନ
ଶକଟ ଆରୋହି ପାଦଗତି କେହି ଦୋଳା ହାନ୍ଦୋଳ କେ ପୁଣି
ଆଗେ ବଣିଜାର ହୋଇଲେ ବାହାର ପସରାମାନ ଘେନାଇ
ଠାବେ ଠାବେ ବାଡ଼ି ବକାକଣା ଲୋଡ଼ ଦୂରଦେଶରୁ ଅଣାଇ

ଯାଆନ୍ତେ ଲୋକ ଗହଳ ପଥ ଯାକ ମୁଖରବ ଉଚ୍ଛୁଳଇ
କୃଷ୍ଣର ସଙ୍ଗେ ଦେଖିବା ଯାହାଙ୍କ ସବୁରି ଶ୍ରଦ୍ଧା ବଳଇ
ଦ୍ରବ୍ୟ ବସନ ଅଳଙ୍କାର ଭୂଷଣ କୁସୁମ ଗନ୍ଧ ଚନ୍ଦନ
ମନ ଆନନ୍ଦ ଗମନ ଗୋବୃନ୍ଦ ମଧ୍ୟରେ ନନ୍ଦ ନନ୍ଦନ ॥
ରାଧାଚନ୍ଦ୍ରାବଳୀ ଯେତେ ଗୋପବାଳୀ ଆସନ୍ତି ଯେଯାହା ମତେ
ଗୋପ ରମଣୀ ନାନ୍ଦୀମୁଖୀ ଘେନ ଆସନ୍ତି ଉତ୍ସାହ ଚିତ୍ତେ ॥
ଆନୋଣ ନନ୍ଦ ଘେନିଣ କୁଳବୃନ୍ଦ ବିଜୟ କରନ୍ତି ଧୀରେ
ସକଳ ସଖା ଅଛନ୍ତି ବେଢ଼ି ପଖା ରାମକୃଷ୍ଣ ଗମନରେ ॥
ଯଶୋଦା ଦେବୀ ଗହଣେ ସବେ ଯେବ ନାରୀଗଣ ଅନୁସର
ନିର୍ମଳ ଜଳ ଦେଖିଣ ଦିବ୍ୟସ୍ଥଳ ରନ୍ଧନ ଭୋଜନ କର ॥
ଏମନ୍ତେ ଯାଇ ଅମ୍ବିକା ବନେ ପାଇ ଦେଖିଲେ ଉତ୍ତମସ୍ଥାନ
ନିର୍ମଳ ଜଳ ଅବନୀ ପରିମଳ ଅତି ମନୋହର ବନ ॥
ସୁ ସ୍ୱାଦୁ ଫଳ ଅମୃତ ସମତୁଲ ପ୍ରଫୁଲ୍ଲ ପୁଷ୍ପ ସୁବାସେ
ମଧୁକରକୁଳ ମୁଖରବ ଗୋଳ ଶାରୀ ଶୁକ ନାଦ ଘୋଷେ ॥
ହର ଗଉରୀ ସର୍ବଦା ଆଶ୍ରେକରି ଷଡ଼ଋତୁ ବିହରନ୍ତି
ଯେଯେତେ ବେଳେ ଯହିଁକି ଇଚ୍ଛାକରେ ସେହି ଫଳ ତହିଁ ପାଏ
ଗୋକୁଳ ଲୋକେ ଦେଖନ୍ତି କଉତୁକେ ତରୁଲତା ମୂଳକୁଳ
ରହିଲେ ମାଡ଼ି ଗୋପାଳ ସୈନ୍ୟ ତଡ଼ି ସଜାଡ଼ିଣ ବସା ଚୁଲ
ଗୋପ ଆକାରେ ଯେହୁ ଯାହା ପାଖରେ ରହିଲେ ସେରୂପେ ଜାଣି
କେହୁ ଛଣପଲ କେହୁ ପର୍ଣ୍ଣଶାଳା କେହୁ ସାଡ଼ି ଘର ଟାଣି ॥
ବସିଲ ହାଟ ବସିଲ ନାଟହାଟ ଗୋକୁଳ ନଗର ପ୍ରାୟେ
ମୁଖରବ ଗୋଳେ କାନନ ଉଚ୍ଛୁଳେ ସ୍ୱର୍ଗ ଦେଖେ ଦେବତାଏ
ସେଦିନ ନଶି ହୋଇଣ ତୀର୍ଥବାସୀ ଉପାସ କରି ରହିଲେ
ତୀର୍ଥ ପୂଜ ମିଳ କଲ୍ୟାଣ ସେ କରି ଶିବ ପୂଜଣ କହିଲେ ॥
ରଜନୀ ଅନ୍ତେ ଉଠିଣ ଯେ ଯାହା ମତେ ନିତ୍ୟକର୍ମକୁ ବଢ଼ାଇ
ଶିବ ଗଙ୍ଗାରେ ସ୍ନାନ ବିଧାନରେ ଯେ ମନ୍ତ୍ର ବାକ୍ୟ ବଢ଼ାଇ
ଅନେକ ଦାନ ଦେଲେ ବ୍ରଜ-ରାଜନ ଜଣେ ଜଣେ ଅନୁମତେ
ବିପ୍ର ବେଦଧ୍ୱନି ତୋଷ ଦାନ ଘେନି ଦେବସ୍ଥଳ ଉପଗତେ
ପ୍ରାସାଦ ବେଢ଼ା ଅଟ୍ଟାଳି ଦ୍ୱାର ଗଡ଼ା ମେଢ଼ ମଣ୍ଡପ ଜଗତ
ବିଚିତ୍ର ସୁର କମନୀୟ ବିସ୍ତାର କଇଲାସ ବାରସ୍ତନ୍ତ ॥
ହର ଗଉରୀ ବିଜୟ ତହିଁ କରି ସିଂହ ବୃଷଭ ଆଗରେ
ପାର୍ଶ୍ୱେ ଅଛନ୍ତି କାର୍ତ୍ତିକ ଗଣପତି ନନ୍ଦୀ ଭୃଙ୍ଗୀ ସଙ୍ଗରେ ॥
ହେମ ରଜତ ମୂରତି ବିରାଜିତ କମନୀୟ ଦ୍ରବ୍ୟ ଶୋଭା
ସୁବେଶରେ ବିଜେ ସିଂହାସନ ମାଝେ ଦେବାସୁର ନରଲୋଭା

ପ୍ରତିହାରି ହାତେ ନନ୍ଦଙ୍କୁ ପ୍ରମୁଖେ ଦଣ୍ଡ ନ କରନ୍ତି ନେଇ
ଆପଣେ ନନ୍ଦ ଯେଣେ ଯାନ୍ତି ସାଷ୍ଟାଙ୍ଗ ପ୍ରଣାମ କରନ୍ତି ଲୋଟାଇ
ଫଳ ତଣ୍ଡୁଳ ନାଡିକେଳ ଦୁକୂଳ ଅନେକ ଧନହିଁ ଦେଲେ
ହରି ଗଜଶ୍ରୀ ଦର୍ଶନ ନନ୍ଦଙ୍କର ବିସ୍ମିତ ଭକତି ହେଲେ ॥
ଅନେକଦେଶ ଲୋକନିହାଳ ପ୍ରବେଶ ଗନ୍ଧଲେପନେ ବର୍ତ୍ତୁଳ
ଦର୍ଶନ କରି ଅଇଲେ ଦଣ୍ଡଧାରୀ ହାଟରେ ଗୋପାଳ ବଳ
ରାମଗୋବିନ୍ଦ ଦେଖି ଲୋକ ଆନନ୍ଦ ନେବ ଦର୍ଶନ ଯାଇ ପୋରି
ଉବୁଡ଼ା ଉବୁଡ଼ି ପାଦ ମଡ଼ା ମଡ଼ି ଲାଗନ୍ତି ଇତି ନର ନାରୀ
ବୋଲନ୍ତି ଧନ୍ୟ ଯେବଣ ଦେଶ ଜନ୍ମ ଧନ୍ୟ ଯେହୁ ତାତ ମାତ
ଧନ୍ୟ ଆମ୍ଭର ଦେଖି ରୂପସୁନ୍ଦର ଧନ୍ୟ ଏହୁ ବନଜାତ ॥
ଶରଧା ବଢ଼ାଇ ଆସନ୍ତି ଗେଡ଼ାଇ ବଢ଼ାଇ ଅନୁରାଗରେ
ମୂରୁଛି ନପାରି ରହି ଅନୁସରି ବୁଡ଼ି ଲାବଣ୍ୟ ସାଗରେ ॥
ଏମନ୍ତେ ନଗରେ ପ୍ରବେଶ ହୋଇଲେ ବନ୍ଧୁଣୀ ଭୋଜନ ରସେ
ନନ୍ଦ ରାଜନ ପୂଜି ଯେଣ ଭୋଜନ ରହିଲେ ତହିଁ ହରଷେ
ବ୍ରତ ଆଚରି ସକଳ ନର ନାରୀ ହବିଷ୍ୟାନ୍ନ ଏକବାର
ରଜନୀ ଶେଷେ ସ୍ନାନ ଦାନ ଉପବାସେ ନିଶି ଦୀପ ଉଜାଗର
ଗୋପ ନନ୍ଦିନୀ ନାନ୍ଦୀମୁଖୀ ବନ୍ଦିନୀ ବୃନ୍ଦାଦେବୀଙ୍କି ସେବିଲେ
କାମ ଗାୟତ୍ରୀ ବୀଜ ଆଦି କରି ଭକତି ଭାବେ ଲଭିଲେ ॥
ଗାନ୍ଧାର ବିଦ୍ୟା ଶିଖିବାରେ ଶରଧା ଯାହା ଯେଣ ଶୁଦ୍ଧ ଚିତ୍ତେ
ସଙ୍ଗୀତ ସାହିତ୍ୟ ନୃତ୍ୟ ରଙ୍ଗ ଗୀତ ବୀଣା ଯନ୍ତ୍ର ଆଦି ଯେତେ
ସେ ବୃନ୍ଦାଦେବୀ ଗୋବିନ୍ଦ ଯୋଗ୍ୟ ଭାବନାରେ ଲାଗି ଶିଖାନ୍ତି
ଯେମାନଙ୍କୁ ଜଣାଇ କୁମାରୀ ଯେଣାଇ ସେବା ମଣାଇ ରଖାନ୍ତି
କନ୍ୟାଙ୍କ ପ୍ରୀତି ଦେଖି ତୋଷ ଶ୍ରୀପତି ନିଜ ଆତ୍ମା ପ୍ରାପ୍ତ କଲେ
କୃଷ୍ଣର ମନ ତୋଷିବାକୁ ପ୍ରସନ୍ନ ରାସଲୀଳା ଆଜ୍ଞା ଦେଲେ
ଯାହାରେ ଠୁଳ ସକଳେ ଏକମେଳ ଦେଶକାଳ ପାତ୍ରମିଳେ
ପରମ କାମନା ରସ ଉପାସନା ରାଧା ଆରାଧନା କଲେ
ସେହୁ କାମ୍ୟବନ ସର୍ବକାମ ପୂର୍ଣ୍ଣ କାମପଦରୀ ସେ ସେହି
ନବ କାମିନୀ ଶ୍ରୀକୃଷ୍ଣ ଭାବ ଯେଣ ସର୍ବସିଦ୍ଧ ହେଲେ ତହିଁ ॥
ଏମନ୍ତେ ଜାଗର ଜାଳ ଉଜାଗରେ ରଜନୀ ଶେଷ ହୋଇଲେ
ଶିବଗଙ୍ଗାରେ ସ୍ନାନ ପ୍ରାତଃକାଳେ ଅନେକ ଦାନହିଁ ଦେଲେ
ଦେବତା ଦର୍ଶନ ଯେତେକ ଅର୍ଚ୍ଚନ କଲେ ପାରଣା ଭୋଜନ
ରଜନୀ ଅର୍ଦ୍ଧ ହୁଅନ୍ତେ ପୁଣ ନନ୍ଦ ଶଯ୍ୟାରେ କଲେ ଶୟନ
ଏମନ୍ତେ ଆସି ସର୍ପେକ ପୂରେ ପଶି ନନ୍ଦ ପାଦ ଧରି ଗିଳେ
ବିକଳେ ନନ୍ଦ ଆରତେ ଉଚ୍ଚନାଦ ଟଳି ନପାରନ୍ତି ତଳେ

ଆରତ ଶୁଣି ଉଠିଲେ ନନ୍ଦରାଣୀ ସ୍ୱାମୀ ସର୍ପଘାତ ଦେଖି
ବୋବାଳ ପାଡ଼ି ହୋଇ କୋଡ଼ କନ୍ଦୁଡ଼ି ଗୋପାଳେ ନିଦ୍ରା ଉପେକ୍ଷି
ଉଠି ସକଳେ ମାରମାର ବୋଲି ଧାଇଁ ନପକନ୍ତି ଲଉଡ଼ି
କେ ଯୁଣି ଆସି ଧରିଣ ପୋଡ଼ା କାଠ ସର୍ପ ଉପରେ ଦେଉଡ଼ି
ଟେଳା ପାଷାଣ ହେଉଛି ବରଷଣ ମୂଷଳ ଯେଣ ଜେ ପିଟି
ଖଣ୍ଡା ସାବଳ କୁନ୍ତଭଲ୍ଲ ପ୍ରହାରି ସର୍ପର ଦେହେ ନକାଟି ॥
ନନ୍ଦ ପଦୁର ଧରିଣ ଅଜଗର ଗିଳୁଅଛି ବେଗେ ବେଗେ
ହରାଇ ବୁଦ୍ଧି ସକଳେ ହୋଇଛନ୍ତି କେହି ନ ରହନ୍ତି ଆଗେ
ନିଶ୍ୱାସ ବାତେ ଗର୍ଜିବ ସେ ରଡ଼ାତେ ବନଭୂମି କମ୍ପମାନ
ବିପଦ ନନ୍ଦ ଦେଖିଣ ଗୋପବୃନ୍ଦ ଶୋକଭରେ ହତଜ୍ଞାନ ॥
ନନ୍ଦ ଆକୁଳେ ଗୋବିନ୍ଦ ରଖ ବୋଲେ ସକଳେ ଝଙ୍କନ୍ତି ରହିଁ
ପିତା ଆରତ ଶୁଣିଣ ଗୋପୀନାଥ ତ୍ୱରିତେ ମିଳିଲେ ଯାଇ
କୃଷ୍ଣଙ୍କୁ ରହିଁ ଭରସା ସର୍ବ ପାଇ ସର୍ପକୁ ଧରନ୍ତି ବଳେ
ଉଛୁଡ଼ ଲୋଡ଼ନ୍ତି ତୋଳି ନପାରନ୍ତି ଗୁଡ଼ଣ ଅଲଗା ହେଲେ
କୃଷ୍ଣ ପଦୁର ମାରନ୍ତେ ଅମ୍ବର ଯାତନା ତନୁ ତେଜିଲା
ଦିବ୍ୟ ମୂରତି ଧରି ହରି ଭକତି ଆନନ୍ଦେ ପାଦେ ପୂଜିଲା ॥
ଗାନ୍ଧାର ବିଦ୍ୟା ଗନ୍ଧର୍ବରେ ପ୍ରସିଦ୍ଧ ହରିଚରଣେ ସମର୍ପେ
ପୂର୍ବେ ଗନ୍ଧର୍ବ ରୂପେଣ ମତ୍ତ ଗର୍ବ ସର୍ପ ସର୍ବ ମୁନି ଶାପେ ॥
ସର୍ବ ବିଭୂତି ଦେଇ ପାଦେ ଭକତି ସ୍ୱର୍ଗେ ଗଲା ମୋକ୍ଷ ହୋଇ
ଗାନ୍ଧାର ବିଦ୍ୟା ଯେଣ ନେଲେ ପାଦୁଁ ବୃନ୍ଦା ନବକନ୍ୟାଗଣେ ଦେଇ
ହରି ଇଷିତେ ତେ ପୁଷ୍ପ ଚଙ୍ଗରେ ଜଣେ ଜଣେ ବାଣ୍ଟି ଦେଲେ
ଗନ୍ଧର୍ବମତେ ବିଶ୍ୱକନ୍ୟା ଯୁତେ ବିଦ୍ୟାଧରୀ ଶୋଭା ହେଲେ
ନନ୍ଦ ଚରଣ ଉଦ୍‌ଗାରି ମରଣ ଲଭିଲା ସର୍ପକୁ ଦେଖି
ଉଶ୍ୱାସ ପାଇ ଉଠି ନନ୍ଦ ବସଇ କୃଷ୍ଣ ମୁଖ ଚାହିଁ ସୁଖୀ ॥
ସକଳେ ଆନନ୍ଦ ମହିମା ଆପଦ ବେଢ଼ି କୃଷ୍ଣଙ୍କୁ ପ୍ରଶଂସି
ଏ ବଡ଼ ଅହି ଗୁଳିତ ସଖ୍ୟ ନୋହି ପାଦପ୍ରହାରେ ବିନାଶି
କେ ବୋଲେ ମାଡ଼ ଖାଇଣ ସର୍ପ ହାଡ଼ ଭାଙ୍ଗି ଚଳି ନପାରିଲା
ଧ୍ରାଣ କଣ୍ଠଗତେ ହରି ପାଦଘାତେ ଦଇବେ ପ୍ରାଣ ହରିଲା
ଏମନ୍ତେ ଥୋକେ କହେ ଏକ ଆରକେ ମୃତସର୍ପ କଢ଼ାଇଲେ
ମହାଦେବ ପାଦେ ସେବା ଅପ୍ରମାଦେ ହେମ ଚମ୍ପା ଚଢ଼ାଇଲେ
ଏମନ୍ତେ ତହିଁ ରହିଲେ ସୁଖ ପାଇ ଇଚ୍ଛା ସୁଖରେ ବିହରି
ସେ ଗୋପ ନାଗର ରସିକ ସାଗର ସଙ୍ଗେ ଯେଣ ଗୋପନାରୀ
ସେ ବନେ ବୁଲି କରନ୍ତି ନାନା କେଳି ବୃଷଭାନୁ ଜେମା ମୂଳେ
ସ୍ଥାନେ ସ୍ଥାନେ ଦେଖି ହୋଇ ମହାସୁଖୀ ମନୋରଥ ପୂର୍ଣ୍ଣ କଲେ

ସଙ୍କେତରେ ସେବ ଅନନ୍ତ ବୃନ୍ଦାବନେ ଯେ ବନ ଅଛି ହାରସେ
ରାଧାକୃଷ୍ଣ ରଙ୍ଗେ ମନଜାଣି ସେବେ ଫଳେ କୁସୁମ ସରସେ ॥
ସ୍ବଚ୍ଛ-ଚନ୍ଦ୍ରମୁଖୀ ଏହିପରି ନେଇ ନାନା ବେଶୁଁ ଆସିଥିଲେ
ମଦନଗୋପାଳ ଦେଖି ହେଲେ ଭୋଳ ନିଜ ରାଜ୍ୟକୁ ନଗଲେ
ରାଧା ଚନ୍ଦ୍ରାବଳୀ ଆଦି ଗୋପବାଳୀ କୃଷ୍ଣର ସୁହାଗ ଜଣ
ଏହି ଅନେକ ରମଣୀ ଲଭି ସୁଖ ରହିଲେ ନବତରୁଣୀ ॥
କୃଷ୍ଣ ଲାବଣ୍ୟ ବାରିଧି ମଧ୍ୟେ ମଗ୍ନ ହୋଇ କୁଳକୁ ତେଜିଲେ
ଗୋବିନ୍ଦଶ୍ରୀବେ ଗୋପୀଙ୍କ ପାଦସେବେ ସାଧବିଦେ ସେ ଭଜିଲେ
ଏମନ୍ତେ ତହିଁ କେତେହେଁ ଦିନ ରହି ଗୋକୁଳକୁ ଆଗମନ
ଘୋଷକୁ ବିଆଇ ଆଜ୍ଞା ଚଳାଇ ରଜନୀ ଶେଷେ ଗମନ ॥
ଦେବ ଉପସ୍ଥିର ଶୁଭ ଅନୁକୂଳ ନାନାଛନ୍ଦେ ବାଦ୍ୟ ବାଜେ
ବିବିଧ ରଙ୍ଗେ ଗୋପାଳ ଗଣ ସଙ୍ଗେ ବ୍ରଜ-ମହୀପତି ବିଜେ
ପୁରେ ଯେଥିଲେ ଉତ୍ସବ ନଗରେ କଲେ ପାଟପ୍ରସ୍ଥି ଆସି ଶେନେଲେ
ରାମ ଗୋବିନ୍ଦ ଦେନନ୍ଦ ସୁନନ୍ଦ ନିଜପୁରେ ବିଜେ କଲେ ।
ଗୋକୁଳବାସୀ ଯେ ଯାହାପୁରେ ଆସି ହରଷେ ବିଧାନେ ରହି
ବିବିଧ ବାଦ୍ୟ ଆଣି ଯେହୁ ଅପୂର୍ବ ପ୍ରିୟ ବାନ୍ଧବେ ବନ୍ଦାଇ

ନାରଦ କହନ୍ତି ଶୁଣ ଧନପତି ଅମ୍ବିକା ବନ ଗମନେ
ଗନ୍ଧର୍ବ ଚାରଣୀ କନ୍ୟାଙ୍କ କାରଣେ ପ୍ରିୟା ବଚନ ପାଳନେ
ସବୁ ସୁଖପ୍ରଦ ମହିମା ଅଗାଧ କରୁଣ-ସମୁଦ୍ର ହରି
ସେ ନଳ କୁବେର ଶୁଣି ଜରଜର ମୁନି ପାଦ ପୂଜା କରି ॥
ଏ ବ୍ରଜବିହାର ଅମୃତ ଭଣ୍ଡାର ସଚେତ ଉତ୍ତର ଭାଗ
ଅଗ୍ନି ଚାରଣ କନ୍ୟା ବସ୍ତ୍ରହରଣ ସମ୍ପୂର୍ଣ୍ଣ ବେନି ବିଭାଗ ॥
ସହସ୍ର ଛଦ ସହସ୍ର ଦଳ ପଦ୍ମ ମକରନ୍ଦ ଗନ୍ଧ ଅଛି
ଏଣେ ମୁଁ ବଞ୍ଚିଇ ରସକୁ ସଞ୍ଚିଇ ହୀନ ଦାସ ମଧୁମାଛି ॥
ମୋ ମୁଖୁଁ ବାହାର ଦୋଷକୁ ନଦେନ ମଧୁ ନେବାରେ ବିଶେଷ
ଗୋବିନ୍ଦ ଚରିତ ମଙ୍ଗଳ ଜଗତ ମୋତୁର କଞ୍ଚିତ ମାସ ॥
ନୁହଇ ପଣ୍ଡିତ ନୁହେ ବିଦ୍ୟାବନ୍ତ ଉତ୍ତମ ସଙ୍ଗହିଁ ନାହିଁ
ହରି ଚରଣେ ଭଜନ ସ୍ମରଣେ ବିଶ୍ୱାସ ଅବା ମୋ କହିଁ
କେମନ୍ତେ ଅବା ପୂର୍ବଜନ୍ମେ ମୋ ସେବା ହୃଦେ ପଦ ପ୍ରକାଶି
ମୋହବିଗ୍ରହେ ଗୂଢ଼ ରସ ଉଚ୍ଚାରେ ଖତକୁଣ୍ଡରେ ଭୁଲାଯୀ
ଶୁଣ ସୁଜନ ତୃତେଣ ହୃଦେ ଦେନ ରାଧା କୃଷ୍ଣ ବ୍ରଜଲୀଳା
ଦାଶରଥି ଦାସ ଏରସ ଲାଳସ ଜନ୍ମେ ଜନ୍ମେ ଗଳେମାଳ ॥

ଶ୍ରୀ ବ୍ରଜବିହାର ସପ୍ତମ ବୋଲି ସମ୍ପୂର୍ଣ୍ଣ ।

## ଅଷ୍ଟମବୋଲ

( କୁଞ୍ଚିତକେଶୀ ବାଣୀରେ ଗାଇବା )

ନମାମି ରାଧେ ପଦାରବିନ୍ଦେ ।
ନମାମି ପରିଜନ କୃପାନିଧେ ॥
ଜୟ ଗାନ୍ଧର୍ବ କୃଷ୍ଣବାନ୍ଧବ ।
ଅଖିଳବନ୍ଦନୀ ସର୍ବ ସାଧବୀ ॥
ବ୍ରଜଈଶ୍ୱରୀ ନବ କିଶୋରୀ ।
ଗୁଣ ଗରିୟସୀ କୃଷ୍ଣ ମନୋହାରୀ ॥
ଶ୍ୟାମ ବିଳାସି ଲାବଣ୍ୟ ରାଶି ।
ବଦନ ସମ୍ପୂର୍ଣ୍ଣ ଶରଦ ଶଶୀ ॥
କୁଟିଳକେଶି ମଧୁରହାସି ।
ରସିକ ନାଗର ମୋହନ ପାଶି ॥
କୁଞ୍ଜନିବାସି-କୁଞ୍ଜବିଳାସି ।
କୃଷ୍ଣ-କେଳିକଳା-ରସ-ଲାଳସି ॥
ମୃଗଲୋଚନି ପିକବଚନି ।
ଗୋବିନ୍ଦ କନ୍ଦର୍ପତାପ ମୋଚନି ॥
ହେମବରଣି ମଣିମଣ୍ଡନି ।
ରସିକ ନାଗର ଦୁଃଖ ଖଣ୍ଡନି ॥
ନୀଳବସନ ଗଜଗମନି ।
ଶ୍ୟାମବିନୋଦିନି ଜଗମୋହିନି ॥
କୋମଳଅଙ୍ଗୀ ରୁଚିର ଭ୍ରୂଭଙ୍ଗୀ ।
ନିତ ନିକୁଞ୍ଜେ ହରି ଅଙ୍ଗସଙ୍ଗୀ ॥
ରାସବିନୋଦୀ ରସେ ପ୍ରସିଦ୍ଧି ।
ପ୍ରେମତରଙ୍ଗିଣୀ କୃପାନୁବାଦ ॥
ଘନଜଘନ ସୁ-ପୀନସ୍ତନି ।
ନାରୀଶିରୋମଣି କୃଷ୍ଣଭାବିନି ॥
ରୁଚିରସୁନ୍ଦର ବିମ୍ବାଅଧର ।
କୃଷ୍ଣପ୍ରିୟା ବୃଷଭାନୁ କୁମାରୀ ॥
ଶ୍ୟାମରଞ୍ଜିନୀ ରମେ ରଜନୀ ।
ପରିପାଳି ଲକ୍ଷଣାଢ୍ୟ ସଜନୀ ॥
ହେ ଦେବି ବୃନ୍ଦେ ସଦୟ ହୃଦେ
କୃପାକର ବ୍ରଜବିହାରି ରାଧେ ॥
ସପ୍ତମବୋଲ ସମ୍ପୂର୍ଣ୍ଣ କଲି ।
ଅଷ୍ଟମବୋଲ ଏବେ ଲେଖି ଭଲି ॥

ଗୋକୁଳେଶ୍ୱରୀ ପରମେଶ୍ୱରୀ ।
କୃପାବିନୁ କେହି କହିବ ପାରି ॥
କରୁଣାମୟୀ ସୁଦୟା ବହି ।
କହିଦେଉଛନ୍ତି ହୃଦରେ ରହି ॥
ଅଷ୍ଟମ ସ୍କନ୍ଦ ଯୁଗଳ ଛନ୍ଦ ।
ପ୍ରଥମେ ଏକ ବିଂଶାକ୍ଷରେ ପଦ ॥
ବସନ୍ତ ଋତୁ ବିହାର ହେତୁ ।
ଫଗୁ ଉତ୍ସବ ଶଙ୍ଖଚୂଡ଼ ମୃତ୍ୟୁ ॥
ଅନେକ ନାରୀ ରମଣ ହରି ।
ଦେଖି ମାନ ବୃଷଭାନୁ-କୁମାରୀ ॥
ରାସକୁ ତେଜି ଦୁଃଖରେ ମଜ୍ଜି ।
ଏକାନ୍ତରେ କାନ୍ତେ ତାପ ଉପୁଜି ॥
ରାଧା ନଦେଖି ଗୋବିନ୍ଦ ଦୁଃଖୀ ।
ଅନୁସରି ବ୍ରଜନାରୀ ଉପେକ୍ଷି ॥
ଧୀର-ସମୀରେ ଯମୁନା-ତୀରେ ।
ବନମାଳୀ ବନେ ବସିଣ ଭାଳେ ॥
ଦୂତୀ କହନ୍ତେ ସନ୍ତୋଷ ଚିତ୍ତ ।
ଅଭିସାରି ବୃଷଭାନୁ ଦୁହିତେ ॥
ନିଶି ଗହନେ ସଙ୍କେତ ସ୍ଥାନେ ।
ନେଉଡ଼େ ଚନ୍ଦ୍ରାବଳୀ ହରିମିଳନେ ॥
ରାଧାକୁ ମଣି ଭେଟିଲେ ରମଣୀ ।
କରନ୍ତେ ପୁଣି ରତି ଅନ୍ତେ ଜାଣି ॥
ଉତ୍ସାହ ଚିତ୍ତେ ସଙ୍କୋଚ ଭାନ୍ତେ ।
ମିଳିଲେ ହରି ରାଧିକା ପୁରତେ ॥
ନବ-ନାୟିକା ଅଭିସାରିକା ।
କୃଷ୍ଣ ଉତ୍କଣ୍ଠା ହୋଇଣ ରାଧିକା ॥
ସୁରତି ରଙ୍ଗେ ଚିହ୍ନ ସଂଯୋଗେ ।
ଗୁରୁମାନିନୀ ଦେଖି କାନ୍ତ ଅଙ୍ଗେ ॥
ସେ ନୃପସୁତା କୋପେ ଖଣ୍ଡିତା ।
ବଲ୍ଲଭ ରୁଷ୍ଟ କଳହାନ୍ତରିତା ॥
ସଖୀ ବଚନେ ମାନ ମୋଚନେ ।
କାନ୍ତ ସଂଗେ ହାସ ରସ ଲୋଚନେ ॥

ଗୀତଗୋବିନ୍ଦ ଚରିତ ଭେଦ ।
ବିସ୍ତର ସୁଜନେ କର ଆସ୍ୱାଦ ॥
ଦ୍ୱିତୀୟ ଗ୍ରନ୍ଥ ଲଳିତ ବନ୍ଧ ।
ଦଶ ଅକ୍ଷରେ ପାଦ ସୁଖପ୍ରଦ ॥
ନିଦାଘ କାଳେ ବନେ ଗୋପାଳେ ।
ଚଳି ନ ପାରନ୍ତି ମଧ୍ୟା ଆକୁଳେ ॥
ବିପ୍ରଙ୍କ ପାଶେ ଅନ୍ନକୁ ମାଗେ ।
ନ ଦେଲେ ନିଜ କର୍ମ ଉଦ୍‌ବେଗେ ॥
ପୁରେ ବ୍ରାହ୍ମଣୀ ଯହିଁ ସେ ଶୁଣି ।
ଅନ୍ନ ବ୍ୟଞ୍ଜନକୁ ସମର୍ପେ ଆଣି ॥
ହରିଙ୍କି ଦେଖି ହୋଇଣ ସୁଖୀ ।
ବର ପାଇ ପୁରେ ଗଲେ ସୁମୁଖୀ ॥
ଦ୍ୱିତୀୟ ସୂତ୍ର ଏହୁ ଚରିତ ।
ଏରୂପେ ବେଦ ଛନ୍ଦ ମୂଳ କୃତ ॥
ବିସ୍ତାରେ ରସ ହେବ ବିଶେଷ ।
ଶୁଣି ସୁଜନେ ନଦେଇବା ଦୋଷ ॥
ଶ୍ରୀଭାଗବତ ଲୀଳା ଅମୃତ ।
ଏହନ ଗୀତ ଗୋବିନ୍ଦ ଚରିତ ॥
ନଳ କୁବେର ଯୋଡ଼ିଣ କର ।
ଭଗତି ହୋଇ ନାରଦ ପୟର ॥
ପୁଚ୍ଛଇ ପୁଣି ଭେଦେବ ମୁନି ।
କହିବା ଅମିୟ ସରସ ବାଣୀ ॥
ଅମ୍ବିକା ବନ ଯାତ ସମ୍ପୂର୍ଣ୍ଣ ।
ତହିଁ ଆସି କଲେ କିକ ବିଧାନ ॥
ବେଲକୁ ବେଲ ଅତି ମଧୁର ।
ଯେସନେ ଇକ୍ଷୁ ରସ ପରିମଳ ॥
ଶୁଣନ୍ତେ ଶ୍ରୁତି ନୁହେ ତୃପତି ।
ଅମୃତୁଁ ଅଧିକ ଗୋବିନ୍ଦ କୀର୍ତ୍ତି ॥
ଶୁଣି ନାରଦ ଭାବେ ଆନନ୍ଦ ।
ଗୋବିନ୍ଦ ପଦ ଗୁଣି ଗଦଗଦ ॥
କହନ୍ତି ଧୀରେ ଶୁଣ କୁମରେ ।
ଗୋବିନ୍ଦ ଚରିତ ଏଥି ଉତ୍ତରେ ॥
ଏମନ୍ତେ ଆସି ବସନ୍ତ ପଟି ।
ବିଶେଷେ ଶୋଭା ବୃନ୍ଦବନ ହରି ॥

ଚୂତ ପଲ୍ଲବ ସୁଫଳ ଲଭି ।
କୁସୁମ ପରାଗେ ମଣ୍ଡିତ ଭୂବି ॥
ଲତା ବଉଳ ପଦ୍ମ କଅଁଳ ।
ପୁଷ୍ପ ମକରନ୍ଦେ ପ୍ରମତ୍ତ ଅଳି ॥
ଫୁଟିଲେ ମଲ୍ଲୀ ଚମ୍ପା ନଆଳି ।
ଅଶୋକ କିଂଶୁକ ଗୃନ୍ତ ପାଟଳି ॥
ନାଗକେଶର ସୁକନିଅର ।
ମାଧବୀ ସେବତୀ କୁନ୍ଦ ମନ୍ଦାର ॥
କରୁଣା ବାଣ କେତକୀ ଜାଣ ।
କୋରୁଆଁ କୁରୁବେଲ ଶୋଭାବନ ॥
ରଙ୍ଗିଣୀ ଜାତି ଜୂତି ମାଳତୀ ।
ତଗର ତରାଟ ପ୍ରଫୁଲ୍ଲ ଅତି ॥
ନବ ବକୁଳେ ମଧୁପ କୁଳେ ।
ଝଙ୍କାର ନାଦେ କାନନ ଉଛୁଳେ ॥
କୁସୁମ ଧନୁ ଧରି ଅତନୁ ।
ମତ୍ତ ଅଛି ଯୁବାଜନଙ୍କ ତନୁ ॥
କାନ୍ତରେ ଭଜ ସୁରତେ ମଜ୍ଜି ।
ବର୍ତ୍ତମାନେ ତପ ଲଜ୍ଜାକୁ ତେଜି ॥
ବିରହୀ ବାଳୀ ହୃଦୟ ଜାଳି ।
ଶୀତ ଉପଚାର ସମିଧ ଢାଳି ॥
ନୁହେ ଶୀତଳ କାମ ଅନଳ ।
କେବଳ ଗତି କାନ୍ତସଙ୍ଗ ଜଳ ॥
ପଥିକ ନାରୀ କାନ୍ତ ସୁମରି ।
ଗତ ରତି ଶନ୍ତ ଜୀବନ ଧରି ॥
କାମ ସନ୍ତାପେ ଶନ୍ତା ବିଳାପେ ।
ଅବଧି ଜାଣି ନାୟକ ସମୀପେ ॥
ବସନ୍ତୋତ୍ସବେ ନାନା ସମ୍ଭବେ ।
ବିଜ ବିୟୋଗୀ ଜନ ପରାଭବେ ॥
ଏମନ୍ତ କାଳେ ଗୋପେ ଗୋପାଳେ ।
ସକଳେ ଏକମେଳ ଫଗୁ ଖେଳେ ॥
ଗୁରୁ ଗୌରବ ମିତ୍ର ବାନ୍ଧବ ।
ନାହିଁ ମାନିତ ବସନ୍ତ ଉତ୍ସବ ॥
ଅବିର ଗୁଣ୍ଡି ଅବନୀ ମଣ୍ଡି ।
ଦଶଦିଗେ ପୂରି ଗଗନେ ଉଡ଼ି ॥

ଏକକୁ ଆରେ କଉତୁକରେ ।
ଫଗୁ ମାର ବାସେ ଚଇଳ ତାଳେ ।
ସୁନ୍ଦର ଅଙ୍ଗ ବସନ୍ତ ଯାଗ ।
ସିନ୍ଦୂରେ ଝୀନ ଗନ୍ଧା ଫଗୁ ରଙ୍ଗ ।।
ଶତ ସହସ୍ରେ ମିଳ ହରଷେ ।
ଫଗୁ ଖେଳନ୍ତି ନଗ୍ର ପୁର ଦେଶେ ।।
ସମ୍ମୁଖେ ଖେଳେ କେ ଲୁଚ ମାରେ ।
କେହୁ ବଞ୍ଚଇ ଯାଇ ଅଙ୍ଗଢାଳେ ।।
ପୁର ପ୍ରାଙ୍ଗଣ ମେଡ଼ ଅଙ୍ଗଣ ।
ତରୁ ଖଗ ମୃଗ ଶ୍ରୋଣିତ ବର୍ଣ୍ଣ ।।
କାନନ ନଗ ଅବନୀ ସ୍ୱର୍ଗ ।
ଗୋପ ମଣ୍ଡଳ ପୁର ଅନୁରାଗ ।।
ଅରୁଣ ଉଦେ ସଦା ଆଚ୍ଛାଦେ ।
ପଦ୍ମ ଅନୁରାଗେ ଇଦେ ଉନ୍ନିଦ୍ରେ ।।
ଶ୍ରୀକାମପାଳ ଗୋପାଳ ମେଳ ।
ଖେଳନ୍ତେ ଫଗୁ ଅବନୀ ଗହଳ ।।
ଗୋପକୁମାରୀ ଶ୍ରୀଚନ୍ଦ୍ରାବଳୀ ।
ମଦନ ଗୋପାଳ ସଙ୍ଗରେ ଖେଳ ।।
ବନ୍ଧୁ ସୁବଳ ସଙ୍ଗେ କେବଳ ।
ଫଗୁ ସଂଯୋଗି ଦେଇ କରତାଳ ।।
କଳ କୁଟ୍ଟଣୀ ଯନ୍ତ୍ର ଗୁଟେଣି ।
ଚାଳନ୍ତେ ଫଗୁ ବରଷେ ଧରଣୀ ।।
କେବଣ ବାଳୀ ଉପରେ ଢାଳ ।
ଚକ୍ଷୁ କର୍ଣ୍ଣ ବୁଜି ନପାରେ ଚଳ ।।
ଫୁଲ ପାଖୁଡ଼ା ଅବିର ଗୁଣ୍ଡି ।
ସଂପୃକ୍ତ ଫାଟି କୁଚତଟେ ପଡ଼ ।।
ମାର କି ମାରେ ନାଟ ନାଟରେ ।
ଜଡ଼ିକ ନାଟ ଅନୁରାଗଭରେ ।।
ସିନ୍ଦୂରେ ଶୋଭା ଶମ୍ଭୁ କିଅବା ।
ହେମ ଅଙ୍କେ କି ଅରୁଣ ପ୍ରଭା ।।
ଏପୁରନ୍ଦର କୁଚକନ୍ଦର ।
ଅନୁରାଗେ ପୂଜେ ଦେଇ ମନ୍ଦାର ।।
ଫଗୁ ବନରେ ଅବୀକ୍ଷଣରେ ।
ବୃଷ୍ଟି ପଡ଼ୁ ଅଛି ଜଣ ଜଣରେ ।।

କେ ନାରୀ ବଞ୍ଚି ଲତାରେ ଲୁଚି ।
ଝଡ଼ଣ ଚହ୍ନେଁ ଫଗୁ ପଡ଼ୁ ଅଛି ।।
ସୁନ୍ଦରୀଗଣେ ଅନ୍ତର ରଣେ ।
କୃଷ୍ଣଙ୍କୁ ବେଢ଼ି ମାରେ ଜଣେ ଜଣେ ।।
କରେ କଙ୍କଣ ଏ ରୁଣ ଝୁଣ ।
କି ଜାଣି ମଦନ ବୀର ନିଷାଣ ।।
ନବ ଅଙ୍ଗନା ପ୍ରେମ ଲୋଚନା ।
ମାରନ୍ତି ଫଗୁ କରନ୍ତି ତର୍ଜନା ।।
ବିଦ୍ୟୁତ ଧାଡ଼ି ଜମୁତ ବେଢ଼ି ।
ନବଘନ ଅଙ୍ଗ ଫଗୁରେ ବେଢ଼ି ।।
ଶରତ ମୁଖରେ ହାସ ସୁଖରେ ।
ଖେଳନ୍ତି ନାରୀ ଫଗୁ ସମ୍ମୁଖରେ ।
ନେତ୍ର ଭଙ୍ଗିମା ହାସ ରଙ୍ଗିମା ।
କୃଷ୍ଣ ପ୍ରେମେ ବୁଡ଼ି ସକଳ ବାମା ।।
ଅଳସୀ ହୋଇ ନିଭଙ୍ଗେ ରମ୍ଭା ।
ଫଗୁ ମୁଠି ଫିଟି ପଡ଼ଇ ସ୍ତମ୍ଭେ ।।
ଶ୍ରବଣ ମୂଳେ କହିବା ଛଳେ ।
ବଦନ ଚୁମ୍ବେ କି ମଦନ ହେଳେ ।।
ନେତ୍ର ଛଟାରେ ବାସ ଓଠାରେ ।
କେଉଁ ଯୁବତୀ ରତିକ କଟାଳେ ।।
ଆପଣା ନଖ କରଣ ଲକ୍ଷ ।
ଟେକି କହଇ ହରି ଦେଖ ଦେଖ ।।
ଜାଣିଛ ଅଛ ହୃଅସି ପକ୍ଷ ।
ମଦନ ବଶିଖେ ଘସି ହୋଇଛ ।।
କେବଣ ବାମା ବୋଲେ ଜାଣିମା ।
ରମ୍ଭବ ଦେଖି କାହାର ଗରିମା ।।
ରଣକୁ ସଜ ହୋଇଛ ଆଜ ।
ଏ ରଣେ ହାରିଲେ ସେ ରଣେ ଯୁଝ ।।
କେଉଁ ବିଳାସୀ ଇଙ୍ଗିତେ ଭାଷି ।
ଭଲା ଅନଙ୍ଗ ଅନୁରାଗ ପାଶୀ ।।
ଏ ରଙ୍ଗେ ଲେଛୁ ଯିବ କେ ବଞ୍ଚି ।
ଦେଖିଣ ଲାଜ ପଳାଇଲା ଘୁଞ୍ଚି ।।
କେଉଁ ସୁନ୍ଦରୀ ଅଙ୍ଗୁଳି ଧରି ।
ହଲାଇ ନଖ ଲକ୍ଷ ଅନୁସରି ।।

ଗତ ସୁରନ୍ତ ଜରଜ କ୍ଷତେ ।
କମ୍ପାଇ ତନୁ ଚେତାଇଣ ଚିତ୍ତେ ।।
କେ ପୁଣ ତହିଁ କଟାକ୍ଷେ ଚାହିଁ ।
କୃଷ୍ଣ କର କମ୍ପମାନ କରାଇ ।।
କେଉଁ ସୁକେଶୀ କୁଚ କଳସୀ ।
କୃଷ୍ଣ ଅଙ୍ଗରେ ମିଶାଇଣ ହସି ।।
ଗୋବିନ୍ଦ ଅଙ୍ଗ ଫଗୁ ସୁରଙ୍ଗ ।
କୁଚ କୁଙ୍କୁମ ଚନ୍ଦନ ସଂଯୋଗ ।।
ଶ୍ୟାମଳେ ମିଶି ସୁନ୍ଦର ଦିଶି ।
ଚତୁର ବରଣୀ ଲାବଣ୍ୟ ରାଶି ।।
କାମିନୀ ମଧ୍ୟେ କେଳି ବିନୋଦେ ।
ବସନ୍ତେ ଫଗୁ ଉତ୍ସବ ଗୋବିନ୍ଦେ ।।
ନୃତ୍ୟ ବେଶରେ ରାସ ରସରେ ।
ମନୋହର ନଟବର ବେଶରେ ।।
ଏମନ୍ତେ ତହିଁ ଗୁପତେ ରହି ।
ଶଙ୍ଖଚୂଡ଼ କୃଷ୍ଣ ଲୀଳାକୁ ଚାହିଁ ।।
ଫଗୁ ଦିନରେ ଘୋରବନରେ ।
କନ୍ୟାଗଣ ଦେଖି ଲୋଭ ମନରେ ।।
ଦୁଷ୍ଟ ପ୍ରକୃତି ଚିତ୍ତରେ ମତି ।
କେମନ୍ତେ ହରି ନେବଇଁ ଯୁବତୀ ।।
ଏହେ ବରଜ ନନ୍ଦ ତନୁଜ ।
ଭୋଗ କରଇ ରାଜଅଇଶ୍ୱର୍ଯ୍ୟ ।।
କନ୍ୟାଙ୍କ ସଙ୍ଗେ ବିନୋଦ ରଙ୍ଗେ ।
ବିହାର କରିଅଛି ଦିବ୍ୟ ଭୋଗେ ।।
ଏହାକୁ ମାରି କନ୍ୟାକୁ ହରି ।
ଘେନିଣ ଯିବଇଁ ଅଳକା ପୁରୀ ।।
ଏ ଶୁଭ୍ରକେଶୀ ସଙ୍ଗେ ବିଳସି ।
ତେବେ ସେ ଜୀବନ ହୋଇବ ତୋଷି ।।
ଜନ୍ମର ପ୍ରତି ଏମନ୍ତ ଚିନ୍ତି ।
ଅବସର ପାଇ ମିଳିଲା କତି ।।
କୃଷ୍ଣ ବିଚ୍ଛେଦ ଜାଣିଲା ଭେଦ ।
ମାୟା ରୂପେ ହରି କାମିନୀବୃନ୍ଦ ।।
ଜାଣି ଶ୍ରୀହରି ଶଙ୍ଖାକୁ ମାରି ।
ଶଙ୍କଟୁ ଉଦ୍ଧାରି ଗୋପ କୁମାରୀ ।।

ନଳ କୁବେର ଯୋଡ଼ିଣ କର ।
ବୋଲନ୍ତି ଶୁଣ ସଂଶୟ ମନର ।।
ଶ୍ରୀବନମାଳୀ ବସନ୍ତ କେଳି ।
ବିଚ୍ଛେଦ କମ୍ପା ହେଲେ ବ୍ରଜବାଳୀ ।।
ଯୁବତୀଗଣେ ଶଙ୍ଖା ହରଣେ ।
ହରି ନଜାଣିଥିଲେ କି କାରଣେ ।।
ଘେମୁନ ଖେଦ ଏମୋର ଛେଦ ।
ଶୁଣନ୍ତେ ମତି ମୋ ଅତି ବିଷାଦ ।।
ଶୁଣି ନାରଦ ଭାବେ ସାନନ୍ଦ ।
ବୋଲନ୍ତି ଶୁଣ ଏ ପରମ ଭେଦ ।।
ଶ୍ରୀବନମାଳୀ ଅନେକ ବାଳୀ ।
ଘେନି କରେ ରାସ ବସନ୍ତ କେଳି ।।
ଏମନ୍ତ ବେଳେ ରାଧିକା ମିଳେ ।
ମୁରଲୀ ଧ୍ୱନି ଶୁଣି ବନେ ଚଳେ ।।
କୃଷ୍ଣ ସଙ୍ଗତେ କେଳି ନିମନ୍ତେ ।
ବନ ଶୋଭା ଦେଖି ଉଲ୍ଲାସ ଚିତ୍ତେ ।
ଦେଖିଲେ ହରି ଅନେକ ନାରୀ ।
ଘେନିଣ ରାସରସରେ ବିହରି ।
ସେ ଚନ୍ଦ୍ରମୁଖୀ ଏମନ୍ତ ଦେଖି ।
ଲତା ଅନ୍ତେ ରହି ଦେଖାନ୍ତି ସଖୀ ।।
ଦୁଃଖେ ବିମ୍ବୋଷ୍ଠୀ କମ୍ପାଳ କଣ୍ଠି ।
ବରଷେ ପୁଣ ପୁରକୁ ଲେଉଟି ।।
ସୁନ୍ଦରୀବୃନ୍ଦ ମଧ୍ୟେ ଗୋବିନ୍ଦ ।
ଦେଖିଲେ ରାଧିକା ବଦନଚନ୍ଦ୍ର ।।
ନୟନ ଶର ଭେଦ ଶରୀର ।
ସ୍ୱେଦ ସ୍ରବଣ ଗଣ୍ଡ ଜରଜର ।।
ଚିତ୍ତ ଶଙ୍କିତ ହସ୍ତ କମ୍ପିତ ।
କୁସୁମେ ଫଗୁ ଯନ୍ତ୍ର ବିଚଳିତ ।।
ଚକିତେ ଚାହିଁ ସଙ୍କୋଚ ପାଇ ।
ଅନଙ୍ଗ ବିଶିଖରେ କ୍ଷୀଣ ହୋଇ ।।
ରାଧା ପୀରତି ହୃଦରେ ଚିନ୍ତି ।
ବନେ ଲୋଡ଼େ ତେଜି ବ୍ରଜଯୁବତୀ ।।
ଚିତ୍ତ ଚମକେ ଉର ଦମକେ ।
ଛନ ଛନ ମନ କାମ ଉତ୍ସୁକେ ।।

ସେସଙ୍ଗି ବୋଲି ଲୋଡ଼ନ୍ତି ହରି ।
ବଲ୍ଲର ପାଦ ଚିହ୍ନ ଅନୁସରି ॥
କାମ ତରସ୍ତେ ଭ୍ରମେ ବନସ୍ତେ ।
କାଳନ୍ଦୀ କୂଳ ମିଳିଲେ ଏମନ୍ତେ ॥
କୁଞ୍ଜରେ ପଶେ ବିଷାଦେ ଭଷେ ।
ଅନଙ୍ଗ ବାଣରେ କ୍ଷୀଣ ମାନସେ ॥
ରାଧା ଗମନେ ସଖୀ ବିମନେ ।
କୃଷ୍ଣ ସେ ପଶି ଲୋଡ଼େ ବନେ ବନେ ॥
ଦୂତିକା ଯୋଗେ ମିଳିଲେ ଆଗେ ।
ଦେଖିଣ ହରି କହେ ଅନୁରାଗେ ॥
ପ୍ରାଣ ସଜନୀ ଗରୁମାନିନୀ ।
ଦେଖି ମୋର ସଙ୍ଗେ ବ୍ରଜକାମିନୀ ॥
ନବ ତରୁଣୀ ଲେଉଟି ପୁଣି ।
ପୁରକୁ ଗଲେ ମୋ ମନକୁ ଘେନ ॥
ତାହାର ବିନୁ ଏ ମୋର ତନୁ ।
ଦହୁଛି ଦାରୁଣ କୁସୁମ ଧନୁ ॥
ସଖି ସଲିଳ ଦେଣ୍ଟ ଶୀତଳ ।
କରସି ଦାରୁଣ ମଦନାନଳ ॥
କହ ଯେମନ୍ତେ ଆଣ ଏକାନ୍ତେ ।
ବସି ରହିଁଥିବ କୁଞ୍ଜ ସଙ୍କେତେ ॥
ଲୋଡ଼ ନପାଇ ନିରାଶ ହୋଇ ।
ଦଇବ ତୁମ୍ଭଙ୍କୁ ଆଣି ମିଳାଇ ॥
ଦୂତିକା ଶୁଣି ସରସେ ଭଣି ।
ରାସ କର ଘେନ ବ୍ରଜ ତରୁଣୀ ।
ରାସ ବିଳାସେ ମନ ହରଷେ ।
ଆସିଥିଲେ ସଖୀ ଗଲେ ବିରସେ ॥
ଆଦର ସହୁଁ ନପାଇ ସେହୁ ।
ପୁରେ ଗଲ ଲୋଡ଼ ପାଇବ କାହୁଁ ।
ମଦନେ ଦୁଃଖୀ ହୋଇ ମୋ ସଖୀ ।
ଉନ୍ମାଦ ମନ ବନ ଶୋଭା ଦେଖି ॥
ଭୃଙ୍ଗ ମାଧବୀ କୁସୁମ ଚୁମ୍ବି ।
ରହିଁ ମୋ ପ୍ରାଣସଖୀ ହୁଏ ସ୍ତମ୍ଭୀ ॥
କୋକିଳବାଣୀ ଚମକେ ଶୁଣି ।
ଜଳନ୍ତାନଳେ ଘୃତ ଢାଳେ ଜାଣି ॥

ମଳୟ ବାତ ବିଷ ସଂଜାତ ।
ବିରସେ କାହିଁ ନ ରସଇ ଚିତ୍ତ ॥
ବିରହ ଭରେ ରହି ନପାରେ ।
ମନ ବୁଦ୍ଧି ଏକା ତୁମ୍ଭର ଠାରେ ॥
ଏ ବୃନ୍ଦାବନ ଯେ ଶୋଭାବନ ।
ତୁମ୍ଭ ବିନ ହେଲା ଶତ୍ରୁ ସମାନ ॥
ଜଳ ବିହୀନ ଯେହ୍ନେ ନଳିନ ।
ପ୍ରିୟତପନ କିରଣେ ମଳିନ ॥
ବସନ୍ତ ଜାତେ ଉନ୍ମାଦ ଚିତ୍ତେ ।
ଆସିଥିଲେ ତୁମ୍ଭ ମୁରଳୀ ଗୀତେ ॥
ଅନ୍ୟ ବଶରେ ରାସ ରସରେ ।
ତେଣୁ ସଖୀ ମୋ ଗଲେ ବିରସରେ ॥
ଏ ଅପମାନେ ନ ରହି ବନେ ।
ଗୁରୁତର ମାନେ ଗଲେ ସଦନେ ॥
ଆଜ କେମନ୍ତେ ଆସିବେ ଏଥେ ।
ମନକୁ ମୋହର ନଯାଇ ପ୍ରତେ ॥
ମୁରଲୀପାଣି କୋମଳ ବାଣୀ ।
ଦୂତି କର ଧରି ବୋଲନ୍ତି ପୁଣି ॥
ଦୁଃଖ ଜଣାଇ କଥା ଘେନାଇ ।
ନିଶ୍ଚୟ ଦେବ ମୋ ପ୍ରାଣ ଅଣାଇ ॥
ରଜନୀ ମାନେ ସଜନୀ ବନେ ।
ଘେନିଆସ କେଳି ସଙ୍କେତ ସ୍ଥାନେ ॥
ମାଧବ ବାଣୀ ଦୂତିକା ଘେନ ।
ଚଳିଲେ ଯହିଁ ସେ ନୃପ ନନ୍ଦିନୀ ॥
ଏଣେ ସୁନ୍ଦରୀ ନ ଦେଖି ହରି ।
ବନେ ଭ୍ରମନ୍ତି କୃଷ୍ଣ ଅନୁସରି ॥
ସେ ଚନ୍ଦ୍ରମୁଖୀ ହରି ନ ଦେଖି ॥
ବିଚ୍ଛେଦଭରେ ହୋଇ ଅତିଦୁଃଖୀ ॥
ବିନ୍ଦା ଖେଦରେ ଗଦ ଗଦରେ ।
କରନ୍ତି ଶୋକ ମନ ବିଷାଦରେ ॥
ହେ ପ୍ରାଣନାଥ କଲ ଅନାଥ ।
କେଉଣେ ଗଲ ବନେ ନଜାଣୁ ପଥ ॥
ତନୁ ଲୁଚାଇ ରହିଲ କାହିଁ ।
ଆମ୍ଭଙ୍କୁ ଅନଙ୍ଗ ମୁଖରେ ଦେଇ ॥

କଲୁ କ ଦୋଷ ଏଡ଼େ ନଗଣ ।
ନକହି ଗଲ ନଷ୍ଟେ ଗଲୁଁ ନାଶ ॥
ଅବଳାଗଣେ ଘୋର ଗହନେ ।
କୃଷ୍ଣ ବିୟୋଗେ ଭୟ କମ୍ପମାନେ ॥
ଏକ ଆରକେ ଲେଉଡ଼ନ୍ତି ଶୋକେ ।
କୁଚ ଅଞ୍ଚଳ ତିନ୍ତିଲ ଲୋତକେ ॥
ତରୁ ତୃଣଙ୍କୁ ମୃଗଗଣଙ୍କୁ ।
ପୁଚ୍ଛନ୍ତି ଲତା ପତଙ୍ଗମାନଙ୍କୁ ॥
କୃଷ୍ଣ ଗମନ ଚରଣ ଚିହ୍ନ ।
ଅନୁ ସରଣ ଚନ୍ଦ୍ରାବଳୀ ଗଣ ॥
ଗୋବିନ୍ଦ ଯହିଁ ପ୍ରବେଶ ତହିଁ ।
ଗୋପ କୁମାରୀ ଗଣ ବଣା ହୋଇ ॥
ଯୁବତୀ ଯୂଥ ନଜାଣି ପଥ ।
ଉଚ୍ଚାଟ କରୁଅଛି ମନମଥ ॥
ବାତୁଳମତି ବନେ ଭ୍ରମନ୍ତି ।
ହେ ନାଥ ବୋଲି ଉଚ୍ଚରେ ରୋଦନ୍ତି ॥
ସେ ଶଙ୍ଖଚୂଡ଼ କନ୍ଦର ମୂଢ଼ ।
ମାୟାରେ ପୂର୍ଣ୍ଣ ହୋଇଲା ଗଉଡ଼ ॥
କୃଷ୍ଣ ବିଚ୍ଛେଦ ଜାଣିଲା ଭେଦ ।
ଆଗରେ ମିଳି କରଇ ସମ୍ବାଦ ॥
ଲୋକ ନିର୍ଜ୍ଜନେ ଘୋର ଗହନେ ।
ଗୋବିନ୍ଦ ଗଲେ କେଳି ରଙ୍ଗସ୍ଥାନେ ॥
ମୋତେ ସେ ରକ୍ଷି ବିଶ୍ୱାସେ କହି ।
ପଠିଆଇଛନ୍ତି ତୁମ୍ଭଙ୍କୁ ନେଇ ॥
ଉତ୍ତରଦିଗେ ଚାଲ ଗୋ ବେଗେ ।
ସୁଖେ କେଳିକର ମାଧବ ସଙ୍ଗେ ॥
ଏମନ୍ତ ଶୁଣି ଗୋପ ତରୁଣୀ ।
ତା ପଛେ ଗୋଡ଼ାନ୍ତି ସ୍ୱରୂପ ମଣି ॥
ବେଗେଣ ଚଳେ ଆସଗୋ ବୋଲେ ।
ଉତ୍ସାହରେ ଏକ ଆରେକେ ବଳେ ॥
ସୁନ୍ଦରୀଗଣେ କାନ୍ତ ଦର୍ଶନେ ।
ସତ୍ୱରେ ଗମନ୍ତି ହରଷ ମନେ ॥
ବଟୁ ସୁବଳ ଜାଣି ଆକୁଳ ।
ଆଗେ ଓଗାଳିଲେ ଯୁବତୀକୁଳ ॥

ବୋଲନ୍ତି ରହ କାହିଁକି ଯାଅ ।
ଅଗମ୍ୟ ଗହନେ ଭୟ ନପାଅ ॥
ବୋଲନ୍ତି ବାଳୀ ଶ୍ରୀ ବନମାଳୀ ।
ଏଣେ ଅଛନ୍ତି ଏ ଗୋପାଳ ବୋଲି ॥
ମାୟା ଗୋପାଳ ଦେଖି ସୁବଳ ।
ବୋଲନ୍ତି ହେ ତୁମ୍ଭେ କାହାର ବାଳ ॥
ଏମନ୍ତ ଯହୁଁ ପୁଚ୍ଛିଲେ ତହୁଁ ।
ତତକ୍ଷଣେ ନିଜ ତନୁଧରେ ସେହୁ ॥
ଭିନ୍ନର ମୁଖ ଚୂଡ଼ରେ ଶଙ୍ଖ ।
କଟି ଭାଗ ସର୍ପ ଦେଖି ବିମୁଖ ॥ ୧୯୦ ॥
ବିସ୍ତାରି କାୟେ ଗର୍ଜିବା ଧାଏ ।
ନବ ସୁନ୍ଦରୀ ଦେଖି କଲେ ଭୟେ ॥
ବାହୁ ବିସ୍ତାରି ପଛ ଆବୋରି ।
ନିଃଶ୍ୱାସେ ଉଡ଼ାଇ ନଅଇ ହରି ॥
ଲେଉଟି ତହିଁ ଆସିତ ନୋହି ।
ପଛକୁ କେହି ନ ପାରନ୍ତି ଯାହିଁ ॥
ବଟୁ ସୁବଳେ ସତ୍ୱରେ ଚଳେ ।
ଲେଉଟି ଯାହିଁ ନ ପାରନ୍ତି ଭଲେ ॥
ନିହେ ଆସିତ ଅଣଆୟତ୍ତ ।
ଗୋପୀ ଆରତ ଦେଖି ଖେଦ ଚିତ୍ତ ॥
ଶିଙ୍ଗା ନାଦରେ ଶପୁ ଭେଦରେ ।
ବଜାନ୍ତେ ଧ୍ୱନି ଶୁଣି ସ୍ତଂବଧରେ ॥
ଶୁଣି ସକଳ ଖେଦେ ଆକୁଳ ।
ଧାଇଁଲେ ରାମ ଆଦି ଯେ ଗୋପାଳ ॥
କୃଷ୍ଣ ଯେ ଥିଲେ ଯମୁନା କୂଳେ ।
ଚନ୍ଦ୍ରାବଳୀ ଆସନ୍ତେଣ ଦେଖିଲେ ॥
ମନରେ ଭ୍ରମ ହେଲା ବିଷମ ।
ଏତ ଅଇଲେ ଜାଣିବେ ମରମ ॥
ଦୂତୀ ଯେ ଗଲେ ରକ୍ଷା ଆଣିଲେ ।
ବିଶେଷେ ଦୁଃଖ କରିବେ ଏ ଥିଲେ ॥
କେମନ୍ତେ ଲୁଚି ଯିବା ସେ ବାଞ୍ଛ ।
ଏମନ୍ତେ ହରି କୁଞ୍ଜେ ରହି ପାଞ୍ଚ ॥
ଏମନ୍ତ ବେଳେ ଶିଙ୍ଗା ଶୁଣିଲେ ।
କନ୍ୟାଙ୍କୁ ଶଙ୍ଖଚୂଡ଼ ହରିନେଲ ॥

ଚନ୍ଦ୍ରାବଳୀଙ୍କି ଅଗ୍ରତେ ଦେଖି ।
ପୁଛନ୍ତି କନ୍ୟାଏ ଗଲେ କାହିଁକି । ୬୦୩ ॥
କାହାର ହରି ନେଉଛୁ ନାରୀ ।
ବଟୁ ସୁବଳ ଅଛନ୍ତି ଆଗୁଳି ॥
ଯାଉଛୁ ତେଣେ କୃଷ୍ଣ ମାରଣେ ।
ଗୋପୀ ଲେଉଟାଇ ଆଣିବୁ ଏଣେ ॥
ଏମନ୍ତ କହି ବେଗେଣ ଧାଇଁ ।
ମିଳିଲେ କନ୍ୟାଗଣେ ଛନ୍ତି ଯହିଁ ॥
ଗତି ବିକ୍ରମ ଧାଇଁଲେ ରାମ ।
ଆଗେ ଓଗାଳି ଅତି ଗରୁତମ ॥
ମେରୁହୁଁ ବଡ ଦେଖିଣ ବାଡ଼ ।
ଗୁଡ଼ ପଳାଏ ଭୟେ ଶଙ୍ଖଚୂଡ଼ ॥
ସମ୍ଭାଳି ବାଳୀ ରଖିଲେ ହରି ।
ଗୋପ କୁମାର ଯେନ ମହାବଳୀ ॥
କେତେହେଁ ଦୂରେ ପଳାଇ ଡରେ ।
ଗୋଡ଼ାଇ ହରି ଶଙ୍ଖଚୂଡ଼ ମାରେ ॥
ମୁଥେକ ମାରି ମୂର୍ଦ୍ଧନି ଚୂରି ।
ଶଙ୍ଖ ମଣି ଯେନ ଲେଉଟେ ହରି ॥
କନ୍ୟା ସମ୍ମୁଖେ ରାମଙ୍କୁ ଦେଖେ ।
ମଣି ସମର୍ପେ ଅତି ମତି ସୁଖେ ॥
ମଣିକି ପାଇ ଉରେ ଲମ୍ବାଇ ।
ହରଷ ରାମ କୃଷ୍ଣ ମୁଖ ଚାହିଁ ॥
ଶଙ୍ଖାକୁ ମାରି କନ୍ୟାକୁ ତାରି ।
ଏମନ୍ତେ ପ୍ରବେଶ ହୋଇଲେ ପୁରି ॥
ଗୋକୁଳବାସୀ ପାଉଛନ୍ତି ଆସି ।
କୃଷ୍ଣ ମହିମା ଶୁଣି ପରଶଂସି ॥
ନିଜ ସଦନ ସ୍ନାନ ଭୋଜନ ।
ପ୍ରଦୋଷେ ସଭା ଯେନ ବନ୍ଧୁଜନ ॥
ନଳକୁବେର ଯୋଡ଼ଶ କରି ।
ବୋଲଇ ସଂଶୟ ଗଲା ମୋହର ॥
ମାଧବ ବୋଲେ ଦୂତୀ ସେ ଗଲେ ।
ବୃଷଭାନୁସୁତା କେମନ୍ତ କଲେ ॥
ଯମୁନା ତଟେ ହେଲେ ନିକଟ ।
ଚନ୍ଦ୍ରାବଳୀ ଜଗିଥିଲେ ସେ ବାଟ ॥

କୃଷ୍ଣତ ଗଲେ ବିଷଣ୍ଣ ହୋଇଲେ ।
ଏଥି ଉତ୍ତରୁ କହ କି କି କଲେ ॥
ଶୁଣିତ ମୁହିଁ ଭାଜନ ନୋହି ।
ତୁମ୍ଭେ ମହତ ପଣ୍ଡିତକୁ ଚାହି ॥
କହନ୍ତି ଯତି ବୃନ୍ଦାଙ୍କୁ ଚିନ୍ତି ।
ରାଧା କୃଷ୍ଣ ପ୍ରେମ ପରମ ପ୍ରୀତି ॥
ଶୁଣ ହେ ଧନପତି ନନ୍ଦନ ।
ଦୂତିକା ପ୍ରବେଶ ରାଧା ଭୁବନ ॥
ଦୂରହୁଁ ରାଣୀ ଦୂତୀକି ଚାହିଁ ।
ଦୁଃଖଭରେ ହୃଦ ବେଦନା କହି ॥
ଅନେକ ନାରୀ ଯେନ ଶ୍ରୀହରି ।
ମୋତେ ଲେଞ୍ଛୁ ରସ ବିହାର କରି ॥
ପ୍ରତ୍ୟକ୍ଷେ ମୁହିଁ ଦେଖିଲି ସବୁ ।
ଧଇର୍ଯ୍ୟଧରି ନ ପାରିଲି ରହି ॥
ନାରୀ ସମାଜେ ନରହି ଲାଜେ ।
ବିଅର୍ଥେ ଆଜ ନିଜ ଦର୍ପ ଗଞ୍ଜେ ॥
ଏ ଅଭିମାନୁ ଅଇଲି ବନୁ ।
ଅତନୁରେ ଧରି ନପାରେ ତନୁ ॥
କୃଷ୍ଣ ବିୟୋଗ ନିମିଷ ଯୁଗ ।
ନ ରହେ ମାନ ମନ ଉଦବେଗ ॥
ମନ୍ଦ ମନ୍ଦରେ ଶୀତ ଗନ୍ଧରେ ।
ଦକ୍ଷିଣ ପବନ ବହେ ଭେଦରେ ॥
ପୁଷ୍ପ ପ୍ରଫୁଲ୍ଲ ମଧୁପକୁଳ ।
କରନ୍ତି ମଧୁପାନେ କୋଳାହଳ ॥
କୋକିଳ ନାଦ କାମ ପ୍ରମୋଦ ।
ଧରିକି ଧଇର୍ଯ୍ୟ କାନ୍ତ ବିଚ୍ଛେଦ ॥
ଏକାଳେ ମୋତେ ତେଜିଲେ କାନ୍ତେ ।
କେଳିକରେ ବ୍ରଜନାରୀ ସଙ୍ଗତେ ॥
ଦୂତିକା ଭଣି ଶୁଣ ମିତଣି ।
କୃଷ୍ଣ ସନ୍ଦେଶ ମୁଁ ଅଛଇ ଜାଣି ॥
ଧୀର ସମୀରେ ଯମୁନା ତୀରେ ।
ବନମାଳୀ ବସିଛନ୍ତି ବନରେ ॥
ହେ ଚନ୍ଦ୍ରମୁଖି ତୋତେ ନ ଦେଖି ।
ସାତ୍ତ୍ୱିକ ବାଧାରେ କେଳି ଉପେକ୍ଷି ॥

ଲାବଣ୍ୟ ଖଣି ତୋ ପ୍ରେମେ ରସି ।
ବ୍ରଜନାଥ ତେଜି ଯାଉଛନ୍ତି ଆସି ॥
କ୍ଷଣେହେଁ ସହି ରହିଲୁ ନାହିଁ ।
ବନେ ବୁଲନ୍ତି ହରି ତୋରେ ବିରହି ॥
ଯମୁନା ତଟରେ କୁଞ୍ଜ କୁଟୀରେ ।
ବସି ତୋର ରୂପ ଭାବନା କରେ ॥
ପବନେ ଉଡ଼ି ପତ୍ରଗ ପଡ଼େ ।
ମଣଇ ତୋ ତନୁ କୁସୁମ ଗୁଣ୍ଡି ॥
କୋକିଳ ବାଣୀ ଚମକେ ଶୁଣି ।
ଏ ତୋର ବଚନ, ପଶ୍ଚାତେ ମଣି ॥
ଗନ୍ଧ ପବନ ପାଇ ଆଘ୍ରାଣେ ।
ଏ ତୋର ତନୁ ସଉରଭ ଭଣେ ॥
ନେତ୍ର ନିଶ୍ଚଳେ ପଥ ନିହାରେ ।
କିଞ୍ଚିତ ଧ୍ୱନିକି ଶ୍ରବଣ ଡେରେ ॥
ଶଯ୍ୟାକୁ ରଚି କୁସୁମ ସିଞ୍ଚି ।
ତୋର ଗମନ ପ୍ରତି ଆଶେ ବଞ୍ଚି ॥
ଯୋଗେଣ ମୋତେ ଦେଖି ପୁରତେ ।
ଆଦର ଯେତେବା କହିବ କେତେ ॥
ତୋର ବମନ ଯେ ଅଭିମାନ ।
ବିଷାଦେ ଲେଉଟି ପୁର ଗମନ ॥
କହିଲ ଯେତେ ଶୁଣ ଏକାନ୍ତେ ।
କ କହିବ ହରି ଉତ୍ସାହ ଯେତେ ॥
ମୋ କର ଧରି ବିନୟେ ହରି ।
ବୋଇଲେ କାହିଁ ମୋ ପ୍ରାଣ ଈଶ୍ୱରୀ ॥
ଦୁଃଖ ଜଣାଇ ଆସ ଘେନାଇ ।
ରଜନୀ ପ୍ରବେଶେ କଥା ମଣାଇ ॥
ଚେଳ ବରସ ହୁଅ ସୁବେଶ
କାନ୍ତ ସଙ୍ଗେ ରଙ୍ଗେ ନିଶି ବିଳସ ॥
ପୁଷ୍ପ ବିକାଶେ ବନ ସୁବାସେ ।
କୋକିଳ ମଧୁପ ମଙ୍ଗଳ ଭାଷେ ॥
ମଳୟାନିଳ ବହେ ଶୀତଳ ।
କାନନ ଶୋଭା ଅତି ପରିମଳ ॥
ମାଧବ ଘେନି ରସ ସଜନୀ ।
ଦେଖ ପ୍ରବେଶ ହୋଇଲା ରଜନୀ ॥

ଦୂତୀ ଏମନ୍ତେ କହିଲେ ଯେତେ ।
ତରୁଣୀ ମଣି ଶୁଣି ତୋଷ ଚିତ୍ତେ ॥
ଉତ୍ସାହ ହୋଇ ସୁବେଶ ହେଇ ।
ବନେ ଚଳେ କାନ୍ତ ଆଦେଶ ପାଇ ॥
କୃଷ୍ଣ ଚରିତ ଜାଣି ଉଦ୍ଧତ ।
ଧରଣ ବାରଣ ନ ଯାଇ ଚିତ୍ତ ॥
ଗଜଗମନୀ ଘେନ ସଜନୀ ।
ବନେ ଅଭିସାର କରି ରଜନୀ ॥
ଉତ୍କଣ୍ଠା ରାଇ ସଖୀଙ୍କି କହି ।
ହରିଙ୍କି କରୁପେ ଗୃହିଁବ ମୁହିଁ ॥
ଦେଖିବେ ହସି ମଧୁର ଭାଷି ।
କୋଳକରି ନେବେ ଯାଉଛନ୍ତି ଆସି ॥
ଶଯ୍ୟା ଉପରେ ବସାଇ କୋଳେ ।
ଚିର ଆଉଁସି ଚୁମ୍ବିଦେବେ ଗାଲେ ॥
ଲଜ୍ଜା ପାଇବ କି କି କହିବ ।
କର ଧରିଥିବ ଫେଡ଼ନ୍ତେ ନୀବ ॥
ବହୁତ ଦିନେ ନବ ମିଳନେ ।
କହି ନପାରି ରହିବ ମଉନେ ॥
ପ୍ରଥମେ ଗୃହିଁ ହୋଇବ ମୋହି ।
ସହିବ ପୁଣ ଯାହାକଲେ ସେହି ॥
ତାଙ୍କ ଆସୃତ ହୋଇବ ମିଠ ।
ମଧୁର ରସରେ ମୋହିବେ ଚିତ୍ତ ॥
ହୃଦୟେ ଭିଡ଼ି ଭିହିବେ ଜଡ଼ି ।
ନିଘନେ ବସନ ଚନ୍ଦନ ଏଡ଼ି ॥
ଯାନ୍ତେଣ କହି ହରଷ ବହି ।
ନିଭୃତ କୁଞ୍ଜରେ ମିଳିଲେ ଯାଇ ॥
ରଖିଣ ଦୂତୀ ଚଳେ ତଡ଼ିତ ।
ନିଶି ଗହନ ଅନ୍ଧକାର ଭିତ ॥
ଠଣିକା ଧରି ଲେଉଡ଼ଇ ଧରି ।
ସଙ୍କେତ କୁଞ୍ଜେ ପଶି ଅନୁସରି ॥
ଦେଖିଲେ ତହିଁ ମାଧବ ନାହିଁ ।
ଶଙ୍ଖଚୂଡ଼ ବଧି ଅଛନ୍ତି ଯାଇଁ ॥
କୃଷ୍ଣ ନ ଦେଖି ଦୂତିକା ଦୁଃଖୀ ।
ଶଠ ବଚନରେ ଆଣିଲା ସଖୀ ॥

କି ବୋଲି ଯାଇଁ କହିବି ମୁହିଁ ।
ଶୁଣି କି ବିସ୍ମରିବେ ହେମାଦେହି ॥
ଏ ଅପଯଶ ପ୍ରାଣେ କି ଆଶ ।
ଏଣେ ସଖୀ ନ ପାଇବେ ସନ୍ଦେଶ ॥
ମୋତେ ସେ ପେଶି ନେଇ ନିବେଶି ।
କେଳି ଆସେ କୁଞ୍ଜେ ଅଛନ୍ତି ବସି ॥
ଭେ ଭେ ଦଇବ କିଦଣ୍ଡ ଦେବ ।
ସଖୀ ମୋ କେମନ୍ତେ ବାହୁଡ଼ି ଯିବ ॥
ଚିନ୍ତି ବିଷାଦ ମନରେ ଖେଦ ।
ଲେଉଟି ଆସି ନ ଚଳଇ ପାଦ ॥
ଦୂତୀ ବିଳମ୍ବେ ମନ ନ ରମେ ।
ଛନ ଛନ ରାଈ ଚିତ୍ତ ବିଭ୍ରମେ ॥
ମଦନେ ବାଧା ପାଇଣ ରାଧା ।
ସଖୀରେ ଭାଷଇ ବିପ୍ରଲବ୍ଧା ॥
ଜାଣୁଛି ମୁହିଁ ମାଧବ ନାହିଁ ।
ଦୂତୀ ତାଙ୍କୁ ଭେଟ ପାଇବ କାହିଁ ॥
ମୋତେ ସେ ଲେଖୁ ତୁଚ୍ଛ ମୃଗାକ୍ଷୀ ।
ନିଭୃତେ ଘେନ କ୍ରୀଡ଼ା କରୁଅଛି ॥
ନବ ନାଗରୀ ଯୌବନେ ଭରି ।
ବନେ ଗୃହିଁ ହରି ଚିତ୍ତକୁ ହରି ॥
ଅଳସୀ ହୋଇ ଥିବେ ସେ ରହି ।
ଦେଖାଇ କୁଚ ଅଞ୍ଚଳ ଖସାଇ ॥
ଜଘନ ଶୋଭା ଉଲଟ ରମ୍ଭା ।
ଛନ୍ଦ ସୁନ୍ଦରୀ ହୋଇଥିବେ ଉଭା ॥
ସେ ବେନି ସନ୍ଧି ନୟନ ଭେଦି ।
ରଖିଥିବ ହରି ଚିତ୍ତେଁରେ ବୁନ୍ଧି ॥
ଛଳିତେ ଗୃହିଁ ଲଜ୍ଜାକୁ ପାଇ ।
ଲେଉଟିଥିବେ ଉଦରେ ବାସ ଘୋଡ଼ାଇ ॥
ହରି ସୁରତେ କୋଳ କରନ୍ତି ।
ନାହିଁ ନାହିଁ କରି ନିବାରି ହସ୍ତି ॥
ଉରଜେ ହରି କରଜ ମାରି ।
କମ୍ପାଇ ତନୁ ଆଲିଙ୍ଗନ କରି ॥
ନୀବି ମୋଚଣେ ସୁରତ ରଚଣେ ।
ବେନି ମନଭେଦି କୁସୁମ ବାଣେ ॥

ଚତୁରମଣି ସୁରତେ ଜାଣି ।
ରସେ ରସାଇ କୃଷ୍ଣ ମନ କିଣି ॥
ତାହାଙ୍କୁ ଆଉ ପାଇବି କାହିଁ ।
ଶୋକେ ଲୋତକ ବହେ କହି କହି ॥
ଏମନ୍ତେ ଦୂତୀ ବିରସେ ମନ୍ଥ ।
ପ୍ରବେଶ ହୋଇଲେ ରାଧିକା କନ୍ତ ॥
ଦୂତୀ ବଦନ ଦେଖି ମଳିନ ।
କହନ୍ତି ପୁଣ ଗାନ୍ଧର୍ବୀ ବଚନ ॥
ଜାଣୁଛି ମୁହିଁ ମାଧବ ନାହିଁ ।
ଭ୍ରମର କି ଦୋଷ ବିରସ ବହି ॥
ଶଠ ନାୟକ ଦୁଃଖ ଦାୟକ ।
ନ ଆସି ପେଶିଲେ ଫୁଲସାୟକ ॥
ଅଣାଇ ମୋତେ ନାଶ ନିମନ୍ତେ ।
ଯୁବତୀ ବଧେ ଭୟ ନାହିଁ ଚିତ୍ତେ ॥
ବାଳକ କାଳେ ପୂତନା ମାରେ ।
ଏବେ ବିନାଶେ ମୋତେ ବନଘୋରେ ॥
ଯାହାର ସଙ୍ଗେ ରମଇ ରଙ୍ଗେ ।
କ୍ଷଣେ ବିଯୋଗ ମଣୁଥିବ ଯୁଗେ ॥
ହରି ସୁହାଗୀ ନବାନୁରାଗୀ ।
ଇଚ୍ଛିବେ କିମ୍ପା ମୁହିଁ ମନ୍ଦଭାଗୀ ॥
ଏତେକ କହି ବିଷାଦ ବହି ।
ଖର ନିଃଶ୍ୱାସ ଆକାଶକୁ ଗୃହିଁ ॥
ଖେଦ ବିମନେ ଅଶ୍ରୁ ନୟନେ ।
କିଶଳୟ ଦଳ ଶଯ୍ୟା ଶୟନେ ॥
ଏଣେ ଗୋବିନ୍ଦ ଗୋପାଳବୃନ୍ଦ ।
ମଧ୍ୟରେ ବସି ଚିନ୍ତେ ରାଧା ଛନ୍ଦ ॥
ନ ପୁଣ ରାଈ ବାହୁଡ଼ି ଯାଇ ।
ଆମ୍ଭଙ୍କୁ ନ ଦେଖି ବିଷାଦ ପାଇ ॥
ମୋର ବିରହ କହନ୍ତେ ଦୂତୀ ।
ନିଶ୍ଚୟ ବନେ ଆସିବେ ଶ୍ରୀମତୀ ॥
ଏମନ୍ତ ଭଳି ଶ୍ରୀବନମାଳୀ ।
ନିଦ୍ରା ଅଳସରେ ସଭାରେ ଢଳି ॥
ଶୟନ ପୁରେ ପଲଙ୍କ ମିଳେ ।
ଛଦ୍ମ ମ ଶୁନ୍ତି ବନଦେବଶେ ଚଳେ ॥

ରାଧା ବିରହେ ମଦନ ମୋହେ ।
ସଙ୍କେତ କୁଞ୍ଜେ ପୁଣ ଆସି ରହେ ॥
ଦୂତୀ ଯେ ନେଉଡ଼ି ଗଲେ ବାହୁଡ଼ି ।
କୃଷ୍ଣ ନ ଦେଖି ଖେଦ କଲେ ବୁଢ଼ି ॥
ମାଧବ ଭୃଙ୍ଗ ପଦ୍ମିନୀ ଅଙ୍ଗ ।
ସୁଗନ୍ଧ ନ ପାଇଣ ଉଦବେଗ ॥
ମନେ ବିଚାରେ ଦୂତୀ ଯେ ଗଲେ ।
ନ ଆସିତ ବନେ ବିଳମ୍ବ କଲେ ॥
ମୋତେ ନ ଭେଟି ଗଲେ ନେଉଟି ।
ଆସିଥିଲେ ଥାନ୍ତା ଗନ୍ଧ ଚହଟି ॥
ଭୟ ମନକୁ ଗୁରୁଜନଙ୍କୁ ।
ଆଜ ବା ଆସି ନପାରେ ବନକୁ ॥
ଗୋପୀ ହରଣ ଶଙ୍କା ମାରଣ ।
ଜାଣି ବା ସଜନୀ କଲେ ବାରଣ ॥
ବିଚାରେ ପୁଣି ମୋ ପ୍ରାଣଧନୀ ।
ପୁରେ କି ରହିଲେ ସନ୍ଦେଶ ଶୁଣି ॥
ଗୁରୁ ସୁକେଶୀ ରତି ଲାଳସୀ ।
ଏହିକ୍ଷଣି କୁଞ୍ଜେ ମିଳିବେ ଆସି ॥
ବଢ଼ାଇ ଆଶା ଜଗିଣ ନିଶା ।
ଶ୍ରବଣେ ଡେରି ନିରେପନ୍ତ ଦିଶା ॥
ଏମନ୍ତେ ମିଳି ସେ ଚନ୍ଦ୍ରାବଳୀ ।
ଅନୁସରି ରହି ଶ୍ରୀବନମାଳୀ ॥
ନାଶିଣ ବିଘ୍ନ ପ୍ରୂଜଣ କଘ୍ନ- ।
ସେନୀ ମଣାଇ ପାଇକୃଷ୍ଣ ସଙ୍ଗ ॥
ଗୋବିନ୍ଦ ରତି ମଧୁର ପ୍ରୀତି ।
ପୁରେ ନଯାଇ କୁଞ୍ଜେ ଜଗିଛନ୍ତି ॥
ସେ ସହଚରୀ ଗୋଡ଼ାଇ ହରି ।
ଗୁପତେ ରହି ଜଗି ଅନୁସରି ॥
ମାଧବ ପୁଣି କୁଞ୍ଜେ ରଜନୀ ।
ବିଜୟେ ଜାଣି ଜଣାଇ ସଜନୀ ॥
ଏ ଭ୍ରମେ ଆଶେ କୁଞ୍ଜ ନିବାସେ ।
କୃଷ୍ଣ ଅଭିସାର କଲେ ହରଷେ ॥
ବିରସ ତେଜି ହରଷ ଭଜି ।
ସୁବେସ ହୋଇ କାନ୍ତ ମନରଞ୍ଜି ॥

ଏମନ୍ତ ଶୁଣି, ତରୁଣୀମଣି ।
ହଜିଲା ଧର୍ମ ଲଭିଲାକ ପୁଣି ॥
ସୁବେଶେ ଚଳେ ସଜନୀ ମେଳେ ।
କୃଷ୍ଣ ଯହିଁ ତହିଁ ଚତୁରୀ ମିଳେ ॥
ରଣ ପ୍ରାପ୍ତେକ ମଣି ରସିକ ।
କାମେ ବାଉଳ ହଜାଇ ବିବେକ ॥
ଦେଖିଲେ ଯହୁଁ ଉଠିଲେ ତହୁଁ ।
ମାଧବ ଆନନ୍ଦ କେ ଅବା କହୁ ॥
ମଦନ ଭୋଳେ ଧଇଲେ କୋଳେ ।
ଦେଖି ସଖୀଜନ ଅପସରିଲେ ॥
ଶଯ୍ୟାରେ ବସି ସୁରତେ ରସି ।
ବେନିଜନ ମନ ସନ୍ତାପ ନାଶି ॥
ବିବିଧ ବନ୍ଧେ ରତି ବିନୋଦେ ।
ଜାଣିଲେ ନାଗର ସୁରତ ଛନ୍ଦେ ॥
ରଜନୀ ଶେଷେ ରତି ସନ୍ତୋଷେ ।
ଚନ୍ଦ୍ରାବଳୀ ଚଳେ ନିଜ ନିବାସେ ॥
ଶ୍ରୀବନମାଳୀ ବିଷାଦେ ଭାଳି ।
କି କରିବେ ବୃଷଭାନୁ ଦୁଲାଳୀ ॥
ଥିବେ ସେ ତହିଁ ମୋରେ ବିରହୀ ।
ତାହାଙ୍କୁ କରୂପେ ଦେଖିବି ମୁହିଁ ॥
ଏମନ୍ତେ ରାଧା ଭାବକୁ ବହି ।
ଆରତରେ ଦେହ ବୁଦ୍ଧି ହଜାଇ ॥
ନିଭୃତ କୁଞ୍ଜେ ସଖୀ ସମାଜେ ।
ଦେଖିଲେ ରାଧାଙ୍କୁ ବାସକଶେଯେ ॥
ଦୁହିଁ ଚମକି ହୋଆ ଦମକି ।
ରହିଲେ ରାଧିକା ଅଗ୍ରତେ ଥକି ॥
ଦେଖିଲେ ଯହୁଁ ସଜନୀ ତହୁଁ ।
ସଖୀଙ୍କି ଚେତାଇ ବସାଇ ସେହୁ ॥
ସୁରତି ରଙ୍ଗେ କୁଙ୍କୁମ ସଙ୍ଗେ ।
ରତି ଅନ୍ତ ଚିହ୍ନି ମାଧବ ଅଙ୍ଗେ ॥
ଦେଖିଣ ମାନେ ରହି ମଉନେ ।
ଶିର ଲମ୍ବାଇ ଲୋତକ ନୟନେ ॥
ଦେଖି ନାଗର ଖେଦ ସାଗର ।
ବୁଢ଼ି କରଯୋଡ଼ି କହେ ଆଗର ॥

ହେ ପ୍ରାଣେଶ୍ୱର ଗୁଣ-ଗଉର ।
ଦଣ୍ଡ ଦିଅ ମୋର ଦୋଷ ବିଚାର ॥
ତୁମ୍ଭଙ୍କୁ ଦେଖି କେଳି ଉପେକ୍ଷି ।
ଆସନ୍ତେ ଭେଟ ନ ପାଇଲି ସଖୀ ॥
ଦୂତୀ ଆଗରେ କହି ତୁମ୍ଭରେ ।
ପେଶିଲି ରହି ଯମୁନା କୂଳରେ ॥
ତୁମ୍ଭ ବିମୁଖେ ଗୋପୀ ଅରକ୍ଷେ ।
ହରିନେଲା ଶଙ୍ଖଚୂଡ଼ ପ୍ରତ୍ୟକ୍ଷେ ॥
ସିଂହ ନାଦରେ ବଂଶୀ ବାଦ୍ୟରେ ।
ରିପୁ ଭେଦରେ ଧାଇଁଲୁଁ ଖେଦରେ ॥
ଶଙ୍ଖାକୁ ମାରି କନ୍ୟାକୁ ତାରି ।
ରଜନୀ ହୋଇଲା ଆସନ୍ତେ ପୁରି ॥
ବାନ୍ଧବ ଜନ ତୋଷିଣ ମନ ।
ତୁମ୍ଭ ସଙ୍କେତକୁ ଅଇଲୁ ବନ ॥
କୁଞ୍ଜରେ ନିଶି ଉନଦ୍ରେ ବସି ।
ତୁମ୍ଭପ୍ରାପ୍ତ ମୋଁତ ସକଳ ହିଶି ॥
ଏଠାରେ ରହି ନଗଲ ତହିଁ ।
ଅନଙ୍ଗ ଅନ୍ଧକାରେ ପ୍ରାଣସହି ॥
ମାଧବ କହି ପଥରେ ରହି ।
ବିଚ୍ଛେଦାନଳେ ନିରନ୍ତର ଦହି ॥
ତର ତୃଷାର୍ତ୍ତ ମିଳିଲି ଏଥି ।
ପ୍ରେମ ଜଳ ଦେଇ କରସି ଶାନ୍ତି ॥
ଏମନ୍ତେ କହି ନିକଟେ ରହି ।
ଦେଖି ପଛମୁଁଖେ ବସିଲେ ରାଈ ॥
ଆଗେ ଉଭାରି ଦର୍ପଣ ଧରି ।
ସେବିଲେ ଶଶିରେଖା ସହଚରୀ ॥
କୃଷ୍ଣର ଦେହୀ ପ୍ରକାଶେ ତହିଁ ।
ପ୍ରତିବିମ୍ବରେ ରତିଚିହ୍ନ ଗୁହିଁ ॥
ଖଣ୍ଡିତା ବାମା ହେଲେ ଉପମା ।
ବିଲୋକନ୍ତି କାନ୍ତ ସୁରତ ସୀମା ॥
ଆହେ ରସିକ କୃଷ୍ଣ ପ୍ରାପ୍ତେକ ।
ଅଙ୍ଗେ ବହିଅଛ ଚିହ୍ନ ଅନେକ ॥
ସୁରତେ ସଜ ହୋଇଲ ଆଜ ।
ମୁକୁରେ ଲୁଚି ନ ପାଇଲ ଲାଜ ॥
ଭଲ ତରୁଣୀ ରଣରେ ଜିଣି ।
ଚିହ୍ନି ଲକ୍ଷ ସ୍ଥଳ ଦେଇଛ ପୁଣି ॥
କରଜ କ୍ଷତ ରଦନ ଘାତ ।
କୁଚ କୁଙ୍କୁମରେ ବିବର୍ଣ୍ଣ ଗାତ୍ର ॥
ଚୁମ୍ବନେ ହେଲା କଜ୍ଜ୍ୱଳ କଳା ।
ଅଧର ସୁରଙ୍ଗ ଗଣ୍ଡେ ରଖିଲା ॥
ଛିନ ରଙ୍ଗରେ ଶୋଭା ଅଙ୍ଗରେ ।
ତାମ୍ବୂଳ ସୁରଙ୍ଗ ଗଣ୍ଡ ଯୁଗଳେ ॥
ବକ୍ଷେ ବିହିତ ସିନ୍ଦୂର ଛତ୍ର ।
ନିର୍ମଳ ଗଗନେ କି ପ୍ରାତଃ ମିତ୍ର ॥
ଅଳତା ରଙ୍ଗ ହୃଦୟ ଭାଗ ।
ପ୍ରକାଶ ହୋଇଅଛି ଅନୁରାଗ ॥
ଚୂଡ଼ ସୁଆର ଚିହ୍ନ ରୁଚିର ।
ଆଲିଙ୍ଗନେ କମନୀୟ ଶରୀର ॥
ସତ୍ୟ କହିଲ ରଣେ ରହିଲ ।
ଗାଢେ ଶଙ୍ଖଚୂଡ଼ ଚିହ୍ନ ବହିଲ ॥
ନିଦ୍ରା ଆଲସେ ନେତ୍ର ମାରସେ ।
ଚଞ୍ଚଳ ଚୂଳ ବିଗଳିତ ପୁଷ୍ପେ ॥
ଏମନ୍ତ କହି ଅବନୀ ଲିହି ।
ବଦନ ଲମ୍ବାଇ ଲୋତକ ବହି ॥
ଗୁରୁ ମାନିନୀ ଅରୁଣାନନୀ ।
ଦେଖି ବୃନ୍ଦା ଆଦି ହୋଇଲେ ତୁନ ॥
ଦର୍ପଣେ ଗୃହିଁ ରୂପକୁ ତହିଁ ।
ସଙ୍କୋଚେ ହରି ନ ପାରନ୍ତି କହି ॥
ଏମନ୍ତେ ସଖୀ ଦର୍ପଣ ଢାଙ୍କି ।
ଗୁରୁତର ମାନ ଶ୍ରୀମତୀ ଦେଖି ॥
ଉଠିଣ ଚଳେ ସଦନେ ମିଳେ ।
ସେ ସମାଚାର ନିତି ପ୍ରାତଃକାଳେ ॥
ଶ୍ରୀବନମାଳୀ ବିଷାଦେ ଭାଳ ।
ବିବେକ ବିନାଶି କି କର୍ମ କଲି ॥
ରାଧିକା ମଣି ହେଲେ ରମଣୀ ।
କଲି ଚନ୍ଦ୍ରାବଳୀ ନିଶି ନ ଚିହ୍ନି ॥
ସେ ଚିହ୍ନ ଦେହ ନ ଦେଖାଇ ପୁଣି ।
ଏଥିକି କିମ୍ପା ନୋହିବେ ମାନିନୀ ॥

ଶିରି ବିରହେ ରତି ଉତ୍ସାହେ ।
ସଙ୍କେତ ପାଇ ନିକୁଞ୍ଜରେ ରହେ ।।
ନବବନ୍ଦିତ ମଦନେ ମତ୍ତ ।
ଅନ୍ୟରତ ଚିହ୍ନ ଦେଖି ଖଣ୍ଡିତା ।।
ଏ ମୋର ଦୋଷେ ଗଲେ ସେ ରୋଷେ ।
ଆଉ କି ଆସିବେ ମୋର ନିବାସେ ।।
ଏମନ୍ତ ଚିନ୍ତି ଆକୁଳ ମତି ।
ନୀରସ ଅଧର ବିରସ ମତି ।।
ଗୋଷ୍ଠେ ପ୍ରବେଶ ନାହିଁ ହରଷ ।
କହନ୍ତି ବଟୁ ସୁବଳେ ନିଶ୍ୱାସ ।।
ଯେତେ ଚରିତ ଶୁଣି ସେ ମିତ ।
ବୋଲନ୍ତି ଚିନ୍ତା ନକରସି ଚିତ୍ତ ।।
ବିଧି ଘଟନା ନୁହେ ମେଣ୍ଟଣା ।
ମନୁଷ୍ୟ ଆୟତ୍ତ ନୁହଇ ଜନା ।।
ଉପାୟେ ବିଧି ସକଳ ସିଦ୍ଧି ।
କରିବା ସିଦ୍ଧ ସଖୀ ଜନ ବଦ୍ଧ ।।
ଏମନ୍ତ ଭାଷି କୃଷ୍ଣଙ୍କୁ ତୋଷି ।
ଗାବଙ୍କୁ ଦୁହାଁଇ ପୁରକୁ ଆସି ।।
ଯଶୋଦା ଆଣି ପୁତ୍ରକୁ ଚୁମ୍ବିଁ ।
ନୀରସରେ ଅଙ୍ଗ ସରସ ନାହିଁ ।।
କ୍ଷୀର ସ୍ରବନ୍ତେ ଲୋତକ ନେତ୍ରେ ।
ପୁଚ୍ଛନ୍ତି ମାଏ ସ୍ନେହଭରେ ଚିତ୍ତେ ।।
ପ୍ରଭାତେ ତୋର ମୁଖକମଳ ।
ନ ଦେଖି ଆଜ ହେଉଛି ଆକୁଳ ।।
ରାତହିଁ ଯାଉ ନିଦେ ଘୁମାଉ
ସୁକୁମାର ତନୁ ଦୁଃଖେ ଗଞ୍ଜାଉ ।।
ବିରସ ହେଟି ଉଦର ପଶି
କି ଅବା ଜାଣି ମାସ ଉପବାସୀ ।।
ମୁଁ ହୀନଦୁଃଖୀ ଏମନ୍ତ ଦେଖି ।
ପିଣ୍ଡେ କି ପ୍ରାଣକୁ ପାରିବି ରଖି ।।
ଶରୀର ଯାକେ କ୍ଷତ କଣ୍ଟକେ ।
ପୁଣ ପୁଣ ଚୁମ୍ବି ପୁଚ୍ଛେ ବାଳକେ ।।
ବଟୁ ଉଡ଼ାଇ କହେ ଯୋଡ଼ାଇ ।
ସ୍ୱରୂପ କହି କଥାରେ ବୁଡ଼ାଇ ।।

ଶୁଣସି ମାତଃ ଏତୋର ସୁତ ।
ଯମୁନାକୂଳେ ଗଲ୍ ଆଜ ରାତ ।।
ହେମ ଗଉରୀ ଯହିଁ ଉଛାର ।
କୃଷ୍ଣ କଟାକ୍ଷେ କହେ ମରହର ।।
ହେମ ଗଉରୀ ଚିହ କସ୍ତୁରୀ ।
ଯମୁନା କୂଳେ ରଜନୀରେ ଚରି ।।
ତାର ସୁଗନ୍ଧେ ମନପ୍ରମୋଦେ ।
ଜଟିଥିଲେ ଆଜ ନପଡ଼ ଫାନ୍ଦେ ।।
ହେମ ହରିଣୀ ଯୋଗରେ ପୁଣି ।
ପଡ଼ନ୍ତେ ଫାନ୍ଦେ ଛାଡ଼ିଦେଲେ ଜାଣି ।।
କସ୍ତୁରୀ ଆଶେ କାନନଦେଶେ ।
ଭ୍ରମଇ ନିଶି କେହି ନାହିଁ ପାଶେ ।।
ସଙ୍ଗରେ ଥାଉଁ ଅନ୍ତର ନୋହୁଁ ।
କେବଳ ପୁରକୁ ଭୁଞ୍ଜିଣ ଯାଉଁ ।।
ସଦନ ଦୂର ହେଲ ଉଛୁର ।
ଏତେ ଅନ୍ତରେ ଭ୍ରମର କୁମର ।।
ଯଶୋଦା ମାତ ଶୁଣି ଚକିତ ।
ଲୋତକେ ମୂରତ ଭୟେ କମ୍ପିତ ।।
ଦୁଃଖରେ ମାଏ ଶୋକରେ କହେ ।
ଏମନ୍ତ ଶୁଣି କି ଜୀବନ ରହେ ।।
ବନରେ ଗାଈ ରଖିବା ପାଇଁ ।
କେତେ ପ୍ରକାରେ ଚିତ୍ତ ନବଳଇଁ ।।
ଜଣ ଜଣକୁ ପେଶି ବନକୁ ।
ଭୟ ଜାତ ହେଉଥାଏ ମନକୁ ।
ନିଶି ଗହନ ଏକା ଗମନ ।
ମୃଗୟା ଯାଇ ଏଡ଼େ ଅବାରଣ ।।
କେମନ୍ତେ ମୁହିଁ ଧରିବି ଦେହୀ ।
କାହିଁ କସ ହେଲେ ପଶିବ କାହିଁ ।।
ଯଶୋଦା ଶୋକେ ସର୍ବ ବାଳକେ ।
କହନ୍ତି ହସ୍ତଧରି ଏକେ ଏକେ ।।
ରଜନୀ କାଳେ କୃଷ୍ଣର ମେଳେ ।
ଭୁଞ୍ଜିବ ପୁରେ ନପିବ ସକଳେ ।।
ଖାଇବ ଯାହା ଦେବଇଁ ତାହା ।
ନିରେଖ ଗୋଟିକ ହୋଇବ ସାହା ।।

ଏତେକ କହି ପୁତ୍ରକୁ ନେଇ ।
ଆପଣେ ଥାଇ ମାର୍ଜଣା କରାଇ ॥
ସୁବେଶ କରି ଶ୍ରୀରାମ ହରି ।
ପ୍ରବେଶ ହୋଇଲେ ଭୋଜନ ପୁରି ॥
ସଖାଙ୍କ ସଙ୍ଗେ ଭୋଜନ ରଙ୍ଗେ ।
ରୋହିଣୀ ଭୁଳା ପରସି ସଂଯୋଗେ ॥
ଷଡ଼ ରସରେ ଭୁଞ୍ଜି ତୋଷରେ ।
ବଟୁ ସୁବଳ ଗୋବିନ୍ଦ ପାଶରେ ॥
ଯଶୋଦା ଆଣି ଦିଅନ୍ତି ଥାଇ ।
ମାଗନ୍ତି ଯେ ଯାହା ସୁଆଦ ପାଇ ॥
କୁମାର ବୃନ୍ଦେ ଭୁଞ୍ଜେ ସାନନ୍ଦେ ।
କୃଷ୍ଣଙ୍କୁ ନ ରୁଚେ ରାଧା ବିଚ୍ଛେଦେ ॥
ଜନନୀ ଭୟେ ଭୁଞ୍ଜିଲ ପ୍ରାୟେ ।
ଛଟକେ ବଟୁ ପତ୍ରକୁ ପକାଏ ॥
ସୁବାସ ନୀରେ ଆଚମନରେ ।
ତାମ୍ବୂଳ ଭୁଞ୍ଜି ଭୁଲି ଆପସରେ ॥
ସନ୍ଧ୍ୟା ବିରହେ ଚିତ୍ତ ନରହେ ।
ଏକାନ୍ତେ ବଟୁ ସୁବଳରେ କହେ ॥
ନୃପ ନନ୍ଦିନୀ ଗରୁ ମାନିନୀ ।
ପ୍ରସନ୍ନ ଆଜକ ହେବେ ଭାମିନୀ ॥
ବିଗ୍ରହ ବୁଦ୍ଧି କରିବା ସିଦ୍ଧି ।
ଉଠ ଚଳିଯିବା ସର୍ଖଙ୍କି ବୋଧି ॥
ସେମାନେ ଦେଖି କହିବେ କି କି ।
ଜାଣି ସେ ପାଇବା ଉପାୟ ସୋଖି ॥
ବୋଲେ ସୁବଳ ନୁହ ଚଞ୍ଚଳ
ଦୂତୀକ ପେଶି ବୁଝିବା ସକଳ ॥
ଏମନ୍ତ କହି ଦୂତୀକ ରଇ ।
ସବୁ ଚରିତ କହିଲେ ମଣାଇ ॥
ରାଧା ପୁରତେ ଯିବ ତୁରିତେ ।
ଯେ ସମାଚାର ବୁଝିବ ଗୁପତେ ॥
ବିଷମ ମାନ ପୁର ଗମନ ।
କେ କିସ ତହିଁ କହନ୍ତି ବଚନ ॥
ଆସିବ ଜାଣି ଚରିତ ମଣି ।
ବୁଝିବ ତହିଁ କଥା ପରିମାଣି ॥

ଶୁଣି ସେ ଦୂତୀ ଚଳେ ତଡ଼ତ ।
ପ୍ରବେଶ ହେଲେ ରାଧା ସନ୍ନିଛନ୍ତି ॥
ସ୍ୱଚ୍ଛ ମୃଗାକ୍ଷୀ ନଳିକ୍ଷ କଚ୍ଛ ।
ବିଷାଦଭରେ ମଉନ ହୋଇଛି ॥
ଏହି ସମୟେ ପ୍ରବେଶ ହୁଏ ।
ଚନ୍ଦ୍ରାବଳୀଗଣ ସଖୀ ନିଶ୍ଚୟେଁ ॥
ତାରକାପାଳୀ ସେ ଶିବା ବାଳୀ ।
ପଦ୍ମା ଶୈବ୍ୟାଦି ଯେତେ ପ୍ରିୟ ଆଳୀ ॥
ମୂଳରେ ଜଳ ଲତା ପ୍ରଫୁଲ୍ଲ ।
ତେସନେ ହରଷେ ସଖୀ ସକଳ ॥
ଅବର ଖେଳ ଯତନେ ବାଳୀ ।
ଯାବତେ ଆସି ରାଧାପୁରେ ମିଳ ॥
ପୀରତି ମତେ ବଢ଼ିମା ଚିତ୍ତେ ।
କହି ଲୋଡ଼ନ୍ତି ଶ୍ୟାମ ପ୍ରେମ ଯେତେ ॥
ଦେଖିଣ ଶ୍ରୋତା ପୁଚ୍ଛେ ଲଳିତା ।
କହ ଚନ୍ଦ୍ରାବଳୀ ଶୁଭ ବାରତା ॥
କହନ୍ତି ବାଳୀ ସେ ଚନ୍ଦ୍ରାବଳୀ ।
ନାଗର ମାଧବ କେଳି ସଙ୍ଗାଳି ॥
ସବୁ କୁଶଳ ଦୁଃଖ କେବଳ ।
ଆଜ ରଜନୀ ଉନ୍ନିଦ୍ର ସକଳ ॥
ତେଣୁ ଗୋ ସଖି ଘୂର୍ଣ୍ଣିତ ଆଖି ।
ହେଲେଣ ତୁମ୍ଭଙ୍କୁ ନପାରୁଁ ଦେଖି ॥
ବଚନ ଶୁଣି ଅଳପ ହସି ।
ସକଳେ ଉନ୍ନିଦ୍ର କପାଇଁ ନିଶି ।
ବୋଲନ୍ତି ଶୈବ୍ୟା ନାଗର ଲୋଭ ।
ରଜନୀ ମିଳନେ ଉନ୍ନିଦ୍ର ସଭ ॥
ସୁରତ ରସେ କୁଞ୍ଜେ ବିଳସେ ।
ଘୁଡ଼ ନ ଦିଅନ୍ତି ରଜନୀ ଶେଷେ ॥
ଅଇଲୁଁ ବନେ ଗୋଡ଼ାଇ ଥିଲେ ।
ଏତେକ ଉନ୍ନିଦ୍ର ହେଲୁଁ ସକଳେ ॥
ଏମନ୍ତ କହି ଘୂର୍ଣ୍ଣିତ ବହ୍ନି ।
ଶୁଣି ଏକ ମୁଖ ଆରକ୍ତ ରୁହିଁ ॥
ମେଲାଣି ହେଲେ ସଦନେ ଗଲେ ।
ରାଧା ସେବା ନିଜ ସଖୀ ରହିଲେ ॥

ସେ ଚନ୍ଦ୍ରମୁଖୀ ବୋଲନ୍ତ ସଖୀ ।
ଯହିଁ କହିଲେ ସେ ଶୁଣିଲ ଟିକ ॥
ସଙ୍କେତେ ବସି ଦୁଷ୍ଟଙ୍କ ପେଶି ।
ମୋତେ ନେଇ ଚନ୍ଦ୍ରାବଳୀ ଶ୍ୱଳସି ।
ସେ ରକ୍ତ ରଙ୍ଗ ଚନ୍ଦ୍ରଙ୍କୁ ଅଙ୍ଗ ॥
ଧରି ଦେଖାନ୍ତି ମୋରେ ଅନୁରାଗ ॥
ଯୁବତୀ ଦେଖି ଧରନ୍ତ ରହି ।
ଏତେ ଅବସ୍ଥା ନପାରିଲି ସହି ॥
ଯୋଗେ ଆସନ୍ତେ ଦେଖିଲେ ପ୍ରାତେ ।
ଶୁଣିଲତ କଥା କହିଲେ ଯେତେ ॥
ପ୍ରତ୍ୟେକେ ଏବେ ଶୁଣିଲ ସର୍ବେ ।
କହିଲେ ଯାହା ବାଳୀ ଅନୁଭବେ ॥
ନୁହଇ ମିଛ କଥା ପ୍ରତ୍ୟକ୍ଷ ।
ଆଜ ଏ ସତ୍ୟ ନୁହେ ପ୍ରତିପକ୍ଷ ॥
ମୋହର ଆଗ ତା କଥା ରଙ୍ଗ ।
ନ କହିବ ଆଜ ପୂର୍ବାନୁରାଗ ॥
ଶଠ କପଟୀ ସେହୁ ଜାଣନ୍ତି ।
ମାନ ବଢ଼ିଲା ମୋ ହୃଦୟୁ ଫାଟି ॥
ଏମନ୍ତ କହି ମଉନ ରହି ।
ହେଠ ମାଥେ ବସି ଲୋତକ ବହି ॥
ନ କହେ ଫେଡ଼ି ଅନ୍ତରେ ଜଡ଼ି ।
ଶ୍ୟାମ ପ୍ରେମରଙ୍ଗେ ମାହସ ବଡ଼ି ॥
କୃଷ୍ଣର ଦୁଃଖ କେଳି ବିମୁଖ ।
ଦେଖିଥିଲେ କାନ୍ତ ନୀରସ ମୁଖ ॥
ତନ୍ୱେଇ ତତ୍ତ୍ୱେ ଭାବଇ ଅନ୍ତେ ।
କୃଷ୍ଣ ବିଚ୍ଛେଦରେ ବିରହ ଯେତେ ॥
କ୍ଷିତି ଶୟନ କାନ୍ତ ମଳିନ ।
ନାହିଁ ହାସ ରସ ବେଶ ଅଶନ ॥
ଏମନ୍ତ ଦେଖି ସେ ପ୍ରିୟସଖୀ ।
ଚନ୍ଦ୍ରାଭିରେ ସଖୀ ଦୁଃଖରେ ଦୁଃଖୀ ॥
ବିଷମ ମାନ ମହା ଗହନ ।
ବୃନ୍ଦା ଆଦି ଦେଖି ବିସ୍ମୟମନ ॥
ଦୂତିକା ଜାଣି ଲେଉଟି ପୁଣି ।
କହନ୍ତେ ବିରସ ଗୋକୁଳମଣି ॥

ସେ କୁନ୍ଦଲତା ଅନ୍ତ ବାରତା ।
କହନ୍ତେ କେତେ ଭରସା ମମତା ॥
ସଖୀଙ୍କୁ ଘେନ ଜଗି ରଜନୀ ।
ଅନୁସରି ରହି ସନ୍ଧି ସଜନୀ ॥
ପ୍ରିୟା ବିରହେ ଚିତ୍ତ ନ ରହେ ।
ଉପଗତ ହୋଇ ଆରତେ କହେ ॥
ଲଳିତା ପାଶେ କହେ ବିଶ୍ୱାସେ ।
ତୁମ୍ଭ ଯେ ସେବ ଭଜନୀ ହବସେ,
ମୋ ପ୍ରାଣଧନୀଙ୍କ ଦୋଷ ଘେନ ।
ନିଜ ଦାସ୍ୟେ କପି ଏଡ଼େ ମାନିନୀ ॥
ଦାରୁଣ କାମଶର କୁସୁମ ।
ହିରତେ ବିନ୍ଧଇ ଖୋଜ ମରମ ॥
ବସନ୍ତକାଳେ ଅତି ପ୍ରବଳେ ।
ଗନ୍ଧବହ ନାଶ ଯାଉଛି ତାଳେ ॥
ମୋହର ପାଇଁ ବାସ ପକାଇ ।
ମାଗିବ ଦୋଷ କ୍ଷମା କରାଇ ॥
ଲଳିତା ଭଣି ହେ ବେଣୁପାଣି ।
ଅତି ଗୁରୁମାନ ନୃପ-ଦୁଲଣୀ ॥
ନିୟମ ଦେଇ ଅଛନ୍ତି କହି ।
ତୁମ୍ଭ ବିଷୟୁ ନ କହିବା ପାଇଁ ॥
ଯେତେକ ଶ୍ୟାମ ଶବ ପ୍ରଭୃମ ।
ଲେପିଲେ ତହିଁ ଚନ୍ଦନ କୁଙ୍କୁମ ॥
ନ ଘେନେ ଗନ୍ଧ ଶ୍ରୀ ମୃଗମଦ ।
ନୀଳ ବାସ ନୀଳ ପୁଷ୍ପେ ବିଷାଦ ॥
ହେମ ପଦକ ମାଳା ନାୟିକ ।
ଖସାଇ ବସାଇ ମଣି ମାଣିକ୍ୟ ॥
କଜ୍ଜଳ ତବ ନ ଘେନେ ନେତ୍ର ।
ନ ଦେଖେ ଯେତେ ଶ୍ୟାମ ବର୍ଣ୍ଣମାତ୍ର ॥
ଏଥି କେମନ୍ତେ ତୁମ୍ଭ ନିମନ୍ତେ ।
କହିବ କଥା ଜାଣୁ ଜାଣୁ ଏତେ ॥
ତଡ଼ଆ ଗାଞ୍ଜି ଖଦିର ତେଜ ।
ଶ୍ୟାମ ବର୍ଣ୍ଣ ବୋଲି ତାହା ନ ଭୁଞ୍ଜି ॥
ତଥାପି ତୁମ୍ଭେ କହିଲ ଯେବେ ।
ଜଣାଇମା ଦେଖି କଥା ପ୍ରସ୍ତାବେ ॥

ଏମନ୍ତ ଯହୁଁ କହିଲେ ସେହୁ ।
ବିଶାଖା ପୁରତେ ଚଳିଲେ ତହୁଁ ॥
ମୁରଲୀ ଧରି ବିସ୍ମୟ କରି ।
ବୋଲନ୍ତି ସଖୀ ଦୋଷ ନାହିଁକରି ॥
ତୁମ୍ଭେ ଯେ ରାଧା ପ୍ରାଣର ସଖୀ ।
ପ୍ରସନ୍ନ କରାଅ ମୋ ଦୁଃଖ କହି ॥
କମଳ ବୋଲି କୁମୁଦ ଅଳି ।
ଚୁମ୍ବିଲି ରଜନୀ ବିବେକ ହାରି ॥
ଭୃଙ୍ଗ ମାତୁଲା ପଦ୍ମ ସୁଶୀଳା ।
ଏ ଦୋଷ ଯେବେ କି କରିଇ ହେଲା ॥
ବିଶାଖା ବୋଲେ କହିଲ ଭଲେ ।
ମେରୁର ସମାନ ଅନଳ ଜଳେ ॥
ତୁଷାର ବଳେ ଲିଭଇ ପାରେ ।
ତୁମ୍ଭ କଥା ଘୃତେ ଅତି ପ୍ରଜ୍ୱଳେ ॥
ପୁସ୍ତକ କଣ୍ଠ କାଳୀ ଲେଖନ ।
ନ ଗୃହ୍ନି ନ ପଢ଼ି ନାମୋଚ୍ଚାରଣ ॥
ଚନ୍ଦନ ବୋଳି କସ୍ତୁରୀ ଗୋଳି ।
ଜାଣି କରି ମେରି ହିଅନ୍ତି ପେଲି ॥
ଭରସା କରି କହି କି ପାରି ।
ସାଗର ସମାନ କୋପ ସୁନ୍ଦରୀ ॥
ଗୋକୁଳ ପୂର୍ଣ୍ଣଚନ୍ଦ୍ର କିରଣ ।
ପ୍ରକାଶେ ଅଧିକେ ଉଚ୍ଛୁଳେ ପୁଣ ॥
ସାକ୍ଷାତ କରି କେ କହିପାରି ।
ଜଣାଇବା ଦେଖି କଥା ବିସ୍ତାରି ॥
ଆମ୍ଭ ଉଦ୍ୟମ ତୁମ୍ଭ କରମ ।
ସକଳ ସଖୀଙ୍କି କରଯା ସମ ॥
ଏମନ୍ତ ଶୁଣି ସଖୀଙ୍କୁ ଘେନି ।
ତହୁଁ ଶ୍ୟାମ ପାଶେ ପ୍ରବେଶ ଜାଣି ॥
କଥା ଘେନାଇ କହି ମଣାଇ ।
ମଦନ ବେଦନା ମୋର ଜଣାଇ ॥
ମୋତେ ଲୁଚାଇ କଥା ବଞ୍ଚାଇ ।
ମିଳାଇବ ପଛେ ମାନ ଘୁଞ୍ଚାଇ ॥
ବୋଲନ୍ତି ଶେଷ ହେ ପଦ୍ମନେତ୍ରେ ।
ଅପ୍ରମାଣ ମାନ ଗଗନ ଯେତେ ॥

ସୁଚଞ୍ଚ ପକ୍ଷୀ ଗମି ପାଶକ ।
ନିର୍ଘାତ ପଡ଼ନ୍ତେ କେ ପୁଣ ରକ୍ଷି ॥
କାଳମାରେଖି ପ୍ରତିମା ଲେଖି ।
ସଖୀ ଦୁଃଖିତରେ ତାହା ଉପେକ୍ଷି ॥
ନୀଳ ଅମ୍ବର ହୋଇଲେ ଦୂର ।
ଚନ୍ଦ୍ରାତପରେ ଆଚ୍ଛାଦେ ଅମ୍ବର ॥
ଦେଖ ଧୂର୍ଜଟୀ ନନ୍ଦୀ ଭୃକୁଟୀ ।
ଶିଖିବାହନକୁ ନକରେ ଦୃଷ୍ଟି ॥
କହସି ସଖୀଗଣଙ୍କୁ ଦେଖି ।
ସମସ୍ତ ପାଇଲେ କହିବା ଯେ ଖି ॥
ଶୁଣି ଗୋବିନ୍ଦ ବଢ଼ାଇ ପାଦ ।
ଚମ୍ପକଲତାରେ ମିଳି ସମ୍ବାଦ ॥
ବୋଲନ୍ତି ସହି ଚନ୍ଦ୍ରମାମୁହିଁ ।
ସ୍ମୁରେ ମିଳାଅ ମୋ ଦୁଃଖ କହି ॥
ଯମୁନା ତଟେ ମିଶି ତା ଭେଟେ ।
ଜଗି ରହିଲ ଅନୁସରି ବାଟେ ॥
ନ ଗଲେ ତହିଁ ପଥରେ ରହି ।
କି ଦୋଷ କଲି ନକହିଲ କେହି ॥
ବୋଲେ ସେ ବାଳୀ ହେ ବନମାଳୀ ।
ପଦ୍ମ ପାଶେ ବିନା ଗମଇ ଅଳି ॥
ପଦ୍ମ ପ୍ରସୂନଙ୍କ ମଧ୍ୟ ଉଦ୍‌ଗାରେ ।
ବାଟେ ଗୃହ୍ନିଁ ଗୃହ୍ନିଁ ମୁଦ୍ରିତ ହେଲେ ॥
ଭୃଙ୍ଗ ଚୁମ୍ବିନେ ନାହାନ୍ତି କେତେ ।
ଚମ୍ପକ କେତକୀ ଏ ବନ୍ଧୁ ଯେତେ ॥
ପନ୍ନଗ ଶବ୍ଦ ଧରଯା ପୁଣ ।
ଦେଖା ହଅସି ଏଣ୍ଡ ବଡ଼ମନ ॥
ମହତ ଭୃଙ୍ଗ ବାସଙ୍ଗ ସଙ୍ଗ ।
ପଦ୍ମ ହୋଇଲେ କରେ ପରିତ୍ୟାଗ ॥
ବୋଲନ୍ତି ହରି ଗୂଢ଼ ଚତୁରୀ ।
ମାନ ଭାଜିବ କେମନ୍ତେ ସୁନ୍ଦରୀ ॥
ବୋଲେ ଚତୁରୀ ଶୁଣହେ ହରି ।
ସାକ୍ଷାତ କରି ଜଣାଇ ନପାରି ॥
କୃଷ୍ଣ ଭ୍ରମର ଯେବେ ପାଶର ।
ତୁମ୍ଭ ଘେନା ଏବେ ହୋଇଲି ଦୂର ॥

ସଖୀଙ୍କ ସଙ୍ଗେ କଥା ପ୍ରସଙ୍ଗେ ।
ଜଣାଇବା ଥିବ ଯେ ତୁମ୍ଭ ଭାଗ୍ୟେ ॥
ଶୁଣି ଏମନ୍ତ ଯେଜଣ ମିତ ।
ତହୁଁ ଗଲେ ରଙ୍ଗଦେବୀ ଅଗ୍ରତ ॥
କୃଷ୍ଣ ବୋଲନ୍ତି ଶୁଣ ଗୁଣବନ୍ତି ।
ତୁମ୍ଭର ରାଧାର ଅତି ପୀରତି ॥
ଦୋଷ ଜଣାଇ କ୍ଷମା କରାଇ ।
ପାରିବକି ମୋତେ ବାରେ ମେଳାଇ ॥
ଅମୃତ ଦେଇ ଯାକୁ ଜିଆଇ ॥
ପୁଣି କି ତାକୁ ପ୍ରେତ ମୁଖେ ଦେଇ ॥
ତନୁ କାରଣ ରାଖ ଶରଣ ।
ମିଳାଅ ଧରୁଛୁ କର ଚରଣ ॥
ବୋଲେ ତରୁଣୀ ରାଇ କୋପିନୀ ।
ଗୁରୁତର ମ ନ ପୁର ଅବନୀ ॥
ତୁମ୍ଭର ପାଇଁ କହିବୁ କାହିଁ ।
କକାର ବର୍ଣ୍ଣ ଉଚ୍ଚାରଣ ନାହିଁ ॥
ଭରସା ତହିଁ କେମନ୍ତେ ମୁହିଁ ।
ପାରିବ ତୁମ୍ଭଙ୍କୁ ତାଙ୍କୁ ମିଳାଇ ॥
କଥା ପ୍ରସ୍ତାବେ କହିବ ଭାବେ ।
ଶଙ୍କର ଧବଳ ଚନ୍ଦ୍ର ପ୍ରଭାବେ ॥
ଶିରରେ ଥାଇ ଚନ୍ଦ୍ର ବ୍ୟାପଇ ।
କଣ୍ଠ ତଟକୁ ଯେଣୁ ନ ଦେଖଇ ॥
ଯେ କୃଷ୍ଣ ଶବ୍ଦ ନିଜ ସେବନ ।
କି ବୋଲି ଯହୁଁ ବୁଜିଲେ ଶ୍ରବଣ ॥
ଅକ୍ଷରେ ଯହୁଁ ନ ଶୁଣେ ତହୁଁ ।
ବୁଦ୍ଧି ସରିଲା ମୋ କେମନ୍ତେ କହୁଁ ॥
କଥା କଢ଼ାଇ ଭିଡା ବଢ଼ାଇ ।
କହିବା ଦେଖି ସେ କି ପଡ଼ଇ ॥
ଏମନ୍ତ ତହିଁ ବଚନ ପାଇ ।
ମିଳିଲେ ସୁଦେବୀ ଅଛନ୍ତି ଯହିଁ ॥
ବୋଇଲେ ଦେଖି ହେ ପ୍ରାଣ ସଖି ।
ମାନ ଘୁଞ୍ଚାଇ ପାରିବକି ରଖି ॥
ଅମୃତ ବୋଲି ମଧୁ ପିଇଲି ।
ଉନ୍ମତ୍ତ ହୋଇ ବୁଦ୍ଧି ହରାଇଲି ॥

ଆପଣା ଜନ କରେ ଶୋଚନ ।
ଶାନ୍ତି କି ଦେଇ ନାନା ରସ ପାନ ॥
ସୁଦେବୀ ବୋଲେ ସେ ପ୍ରାତଃ କାଳେ ।
ଯେ ରୂପ ଧରିଥିଲ ତେତେବେଳେ ॥
ସେ ପ୍ରିୟ ସଖୀ ଯେ ଶବ୍ଦ ଦେଖି ।
ଧଇର୍ଯ୍ୟ ଧରିକି ପାରଇ ରଖି ॥
ଯେ ମଧୁ ପିଇଁ ବୋଲି ନୁହଇ ।
ଘୃତ ରସରେ ତଇଲ ମିଶାଇ ॥
ବିଷମ ଯେଣୁ ହୋଇଛୁ ତେଣୁ ।
ନିରନ୍ତରେ ମାନ ପୂରିତ ତନୁ ॥
ଯମୁନା ଜଳେ ସ୍ନାନ ନ କରେ ।
ତୁମ୍ଭ ରୂପ ଯହୁଁ ପଡ଼େ ମନରେ ॥
ସାକ୍ଷାତେ ମୁହିଁ କେମନ୍ତେ କହି ।
ବଡ଼ି ନଖା ବାଲି ବନ୍ଧେ କି ରହି ॥
ତୁମ୍ଭ ଆସୁତେ ଉପାୟ ଯେତେ ।
କହିବା ସଜନୀ ଯେନ ଏକାନ୍ତେ ॥
କଞ୍ଜଲୋଚନ ଶୁଣି ମଉନ ।
ଭୃଙ୍ଗ ବିଦ୍ୟାପୁରେ କଲେ ଗମନ ॥
ବୋଇଲ ଶୁଣ ସଖୀ ମୁଁ ବଡ଼ ଦୁଃଖୀ ।
ଚକୋର ଯେସନେ ଚନ୍ଦ୍ର ନ ଦେଖି ॥
ଦୋଷ କହିତ ଦଣ୍ଡ ବହିତ ।
ଶିରିଷ କୁସୁମେ କୁଳିଶ ଘାତ ॥
ସଖୀରେ ଶ୍ରେଷ୍ଠ ଗୁଣେ ଗରିଷ୍ଠ ।
ତୁମ୍ଭ ଜଣାଇଲେ ଫିଟିବ କଷ୍ଟ ॥
ରାଜରେ କହ ତାର ଏ ଦେହ ।
ଅନଙ୍ଗ ଅନଳେ କରୁଛି ଦାହ ॥
ସଖୀ ପିୟୂଷ ଦେଇ ବରଷ ।
କାମ ଦାବାନଳ ହେଉ ବିନାଶ ॥
କହନ୍ତି ଭୃଙ୍ଗ-ବିଦ୍ୟା ପ୍ରସଙ୍ଗ ।
ସୁରତେ ଖିନ୍ନଭିନ୍ନ ତୁମ୍ଭ ଅଙ୍ଗ ॥
ଥିଲୁ ଯେ ଗୃହେଁ ଏମନ୍ତ ହୋଇ ।
ଆସୁଥିଲ ରତି ଅବସ୍ଥା ବହି ॥
ତଦ ଭାବନା ଯେଉଁ ଅଙ୍ଗନା ।
ସେକି ସହିପାରେ ବିଗୃର ବିନା ॥

ରାଣ୍ଡି ଏ ଯୌବନ ଗୁରୁ ମାନିନୀ ।
କହିବାକୁ କ୍ଷେମ ନୋହୁଁ ସଜନୀ ॥
ତୁମ୍ଭର ହିତେ କେଦାର ଗୀତେ ।
ଗାଇଲୁଁ ବୀଣା ବାଇଲୁ ଲଳିତେ ॥
ଏ ଚନ୍ଦ୍ରପକ୍ଷ ଉଜ୍ଜ୍ୱଳ ଦେଖ ।
କୃଷ୍ଣ ପକ୍ଷେ ନାହିଁ କେବଣ ସୁଖ ॥
ଏମନ୍ତ ଶୁଣି ଶ୍ରବଣ ବେଦନ ॥
ବୁଜ ସୁମରେ ରାଇ ଜପୁ ମୁନ ।
ବଜ୍ର ପଡ଼ିଲ ପ୍ରାୟ ମଣିଲା ।
ବୀଣା ନଶୁଣି ବେଗେ ଉଠିଗଲା ॥
ଏମନ୍ତ ଯହିଁ ସଖାତେ ମୁହିଁ ।
କହିଲେ ନନ୍ଦ ସେ ବଦନ ଗୁହିଁ ॥
କଥା ଦେଖାଇ ହିତ ଶିଖାଇ ।
କହିବା ପୁରାଣ କଥା ପକାଇ ॥
କାଲି ଦିନାନ୍ତେ ବସନ୍ତ ଯାତେ ।
ବିଜେ କଲେ ଜମ୍ମୁ ଜାଣିବା ରତେ ॥
ଏମନ୍ତ ଭାଷା ପାଇ ଭରସା ।
ଚାତକ ଯେହ୍ନେ ଘନ ଉଦେ ଆଶା ॥
ବ୍ରଜ ମୋହନ ତହୁଁ ଗମନ ।
ପ୍ରବେଶ ଚନ୍ଦ୍ରରେଖା ସନ୍ନିଧାନ ॥
ବିନୟ ଭାଷି, ଶୁଣ ସୁକେଶି ।
ରାଣ୍ଡମୀନ ଜଳେ ଯାଉଛି ଭାଷି ॥
ତୁମ୍ଭେ ଦ୍ୱୟ ସଖୀ ପାରିବ ରଖି ।
କୂଳେ ଉଦ୍ଧର ମୋ ଅବସ୍ଥା ଦେଖି ॥
କୋପେ ପ୍ରଖର ସ୍ରୋତେ ଅସ୍ଥିର ।
ଖଣ୍ଡନ କରେ ଖଣ୍ଡିତା ମକର ॥
କାମ କୁମ୍ଭୀର ଗ୍ରାସେ ଶରୀର ।
ବୁଡ଼ାଇବ ବୁଦ୍ଧି ଖେଦ ସାଗର ॥
ବୋଇଲେ ସୁନ୍ଦରୀ ଶୁଣ ଶ୍ରୀହରି ।
ବଦନ ଚାହାନ୍ତେ ଦର୍ପଣ ଧରି ॥
ଦଶନ୍ତେ କେଶ ତୁମ୍ଭେ ଆଭାଷ ।
ମୁକୁର ପକାଇ ମନେ ହରଷ ॥
ଏତେ ମାନିନୀ ଯେଉଁ କାମିନୀ ।
ମୋର କହିଲେ କି ବିନୟ ବେନ ॥

ତୁମ୍ଭର ଦୋଷ ଅଛୁ ବିଶେଷ ।
ଅଭିସାରୀ ନାରୀ ବର୍ଜିଛ ଆଶ ॥
ଦୂତୀକୁ ମେଣି ଯୋନାଇ ଆସି ।
ଉଜାଗରେ ରହି ପୁହାଇ ନିଶି ॥
ଅନ୍ୟ ସଙ୍ଗତେ କେଳି ସୁରତେ ।
ସେ ଚିହ୍ନେ ଆସି ଦେଖାଇଁ ପ୍ରଭାତେ ॥
ନାରୀ ସଂସାରେ କେ ସହି ପାରେ ।
ଏଥକୁ ଆନ ନାହିଁ ପ୍ରତିକାରେ ॥
ମାନ ସରିତ ପ୍ରଖର ସ୍ରୋତ ।
ଅନଳ ଡ଼ାଙ୍କି ପାରଇ ରଖିତ ॥
ପାରିଲେ ଧର ପାଦ କମଳ ।
ଲତା ବିନୁ ଆନ ନାହିଁ ସେ ପାର ॥
ସଜନୀଗଣେ ଥିବୁଁ ଗହଣେ ।
କହିବ ସ୍ପଷ୍ଟ ବିନୟ ବଚନେ ॥
ଆମ୍ଭେ ତହିଁକ କହିବୁଁ ଯୋଗି ।
ଯିବ ତୁମ୍ଭେ ଜେମା ଶୟନ ଦେଖି ॥
ନନ୍ଦ ନନ୍ଦନ ଶୁଣି ଏସନ ।
ମନ ଶାନ୍ତ ନୋହିଁ ଅତି ଉଚ୍ଛନ୍ନ ॥
ସଖୀ ଜନଙ୍କୁ ଜଣ ଜଣକୁ ।
ଏମନ୍ତେ କହି ଆସେ ସଦନକୁ ॥
ସଖୀ ଏମନ୍ତେ ଚଳେ ଦିନାନ୍ତେ ।
ମିଳନ୍ତେ ରାଧା ଅନ୍ତଃପୁର ଗତେ ॥
ଜେମା ହରଷେ ସେବନ୍ତି ପାଶେ ।
ନାହିଁ ସୁଖ ଭୋଗ ନିଶି ଦିବସେ ॥
କୃଷ୍ଣ ବିଚ୍ଛେଦ କାମେ ବିଷାଦ ।
ନୟନ ପାଶକୁ ନଆସେ ନିଦ ॥
ଜାଗିଣ ବସି ପ୍ରଥମ ନିଶି ।
ସଖୀଜନ ଛୁହିଁ ତୁଳସୀ ଭାଷି ॥
କହସି କଥା ତୁଚ୍ଛ ସେ ବ୍ୟଥା ।
ଜେମାନନ୍ଦଙ୍କ ହେବେ ଯେତେ ଶୋରତା
ନବ ବୟସରେ ଲଳିତାଠାରେ ।
କହସି ତୁମ୍ଭେ ପ୍ରଥମ ପ୍ରହରେ ॥
ଶୁଣି ଲଳିତେ କଥା ସମ୍ମତେ ।
ବିଶାଖା ହୁଁ ହୁଁ କରନ୍ତି ଆଗ୍ରତେ ॥

ଲଳିତା ଭଣି କାନ୍ତ କାମିନୀ ।
ନିଶି ଭ୍ରମି ରମି ଅନ୍ୟ ନଜାଣି ॥
ଶୁଣି ସକଳେ କହସି ବୋଲେ ।
ସ୍ୱକୀୟା କନ୍ୟା ପରକୀୟା ହେଲେ ॥

ତଥାହି ଶ୍ରୀ ଗୀତଗୋବିନ୍ଦ ଶ୍ଳୋକଃ ।
ଆଶ୍ଳେଷାଦନୁଚୁମ୍ବନାଦନୁନଖୋ-
ଲ୍ଲେଖାଦନୁ ସ୍ୱାନ୍ତଜ
ପ୍ରୋଦ୍‌ବୋଧାଦନୁସମ୍ଭ୍ରମାଦନୁରତା-
ରମ୍ଭାଦନୁ ପ୍ରୀତୟୋଃ ।
ଅନ୍ୟାର୍ଥଂ ଗତୟୋର୍ଭ୍ରମାନ୍ମିଳିତୟୋଃ
ସମ୍ଭାଷଣୈର୍ଜାନତୋ-
ର୍ଦମ୍ପତ୍ୟୋରିହ କୋନ କୋନ ତମସି
ବ୍ରୀଡାବିମିଶ୍ରୋ ରସଃ ।

ଶ୍ରୋତା ହରଷେ କହେ ସରସେ ।
କାମପୁର ବୋଲ ଏକଇ ଦେଶେ ॥
ତହିଁର ରାଜା ସେବେ ଗିରିଜା ।
ନିଷ୍ଠିନ୍ତେ ପାଳଇ ଜନ ପରଜା ॥
ତହିଁରେ ସ୍ଥିତି ଏ ଗୃହ ଜାତି ।
ସର୍ବ ସମ୍ପଦେ ଜାଣିବାରମ୍ପତି ॥
ମାଧବ ଧନୀ ରସିକମଣି ।
କଳାବତୀ ନାମେ ତାର ରମଣୀ ॥
ଅନ୍ୟ ରମଣେ ନିଶି ଗମନେ
ସାଧବ ଧନୀ ଲୋଡ଼େ ସ୍ଥାନେ ସ୍ଥାନେ ॥
ତାର କାମିନୀ ଗୁରୁ ମାନିନୀ ।
ଯହୁଁ କାନ୍ତ ରମେ ଅନ୍ୟ ତରୁଣୀ ॥
ସେ କଳାବତୀ ସୁରତି ତନ୍ତ୍ର ।
ଅନ୍ୟ ପୁରୁଷରେ ବଳାଇ ମତି ॥
ସଙ୍କେତ କରି ସେ ଅଭିସାରୀ ।
ଭ୍ରମନ୍ତେ ଅତି ଘୋର ବିଭାବରୀ ॥
ମିଳିଲେ ବେନି କାନ୍ତ କାମିନୀ ।
ଯା'ପାଇଁ ଗମିଲେ ତା' ପରି ମଣି ॥
କରନ୍ତି ରତି ବିବିଧ ଗତି ।
ନଖ ଦନ୍ତକ୍ଷତେ ପ୍ରମତ୍ତ 'ଅତି ॥

ଗଣ୍ଡେ ଚୁମ୍ବନ ଭୁଜେ ବନ୍ଧନ ।
ହୃଦରେ ଭିଡ଼ି ଗାଢ଼େ ଆଲିଙ୍ଗନ ॥
ବିବିଧ ଛନ୍ଦେ ରତି ବିନୋଦେ ।
କରନ୍ତି କେଳି ନାନା ଅନୁବନ୍ଧେ ॥
ପରକୀୟା ରସ ସୁଖ ବିଶେଷ ।
ବେନିମନ କେବେ ନୁହଇ ତୋଷ ॥
ସୁରତି ରସେ ବିତନ ଭାଷେ ।
ଜାଣେ ବେନିଜନ ଲଜ୍ଜା ବିଶେଷେ ॥
ବୋଲେ ତଚ୍ଛୁଷ୍ଣ ଦୋଷକୁ ଧରି ।
ନକର ପର ତୁମ୍ଭେ ଅନ୍ୟନାରୀ ॥
ଜାଣିମା ପାଇଁ ଅଇଲ ମୁହିଁ ।
ଏତେ ରଙ୍ଗକର ଆନର ତହିଁ ॥
ଏମନ୍ତ କହି ସଙ୍କୋଚ ବହି ।
ପୁରେ ଗଲେ ମୋତେ କଥା ନ କହି ॥
ହାସ୍ୟ ଅଧିକେ ବୋଲେ ବିଶାଖେ ।
କହନ୍ତି ଯାହା ଚନ୍ଦ୍ରାବଳୀ ସଖେ ॥
ରାଧିକା ଶୁଣି ମନରେ ଗୁଣି ।
କୃଷ୍ଣରେ ଅନୁରାଗ ବଢ଼େ ପୁଣି ॥
ଏମନ୍ତେ ନିଶି ପ୍ରହରେ ଆସି ।
ତାହା ମୁଖ ଗୃହିଁ ତୁଳସୀ ଭାଷି ॥
ଯେବଣ କଥା କହେ ଲଳିତା ।
ଏ ଅନୁରୂପେ କହ ସଖି ତର୍ହା ॥
ନୃପତି ସୁତା ଶୁଣି ମମତା ।
ବକ୍ରତା ଭାବେ କହନ୍ତି ବିତନ୍ଦା ॥
ରମଣ ବୋଲି ଏକ ନଗରୀ ।
ସୁଭଗା ନାମେ ତହିଁ ଦଣ୍ଡଧାରୀ ॥
ତାର କୁମର ରୂପେ ସୁନ୍ଦର ।
ନାମ ଅଟଇ ତା କୁସୁମାକର ॥
ମନ୍ତ୍ରୀର ନାମ ଗୁଣାନୁପମ ।
ଦୁହିତା ତାର ଯୁବତୀ ଉତ୍ତମ ॥
ନାମ ସୁଶୀଳା ନବୀନା ବାଳା ।
ବସନ୍ତ ଉତ୍ସବ ଯାତ୍ରାରେ ମେଳା ॥
ରାଜା ନନ୍ଦନ ଦେଖି ବଦନ ।
ବେନିଜନ ମନ ପୀଡ଼େ ମଦନ ॥

ମାଲୁଣୀ ଗଇ ବିଶ୍ୱାସ କହି ।
କୁମର ବିନସ୍ତ ପତ୍ରିକା ଲହି ॥
ହେମବରନ ମହୀମଣ୍ଡନ ।
ନେତ୍ର-ଫାନ୍ଦେ ଗଲୁ ମନକୁ ଘେନ ॥
ଚନ୍ଦ୍ରକ ଗହେ ଚୋର ବିରହେ ।
ବଦନ ବିଚ୍ଛେଦ ମଦନ ଦହେ ॥
ପତ୍ରିକା ବନ୍ଧେ ଗନ୍ଧ ପ୍ରବନ୍ଧେ ।
ଘେନ ମାଳତୀ ମାଲୁଣୀ ପ୍ରମୋଦ ॥
ପ୍ରସାଦ ପାଇ ମେଲାଣି ହୋଇ ।
ମନ୍ତ୍ରୀ ପୁରେ ଚଳେ କୁସୁମ ଦେଇ ॥
ସେ ମନ୍ତ୍ରୀସୁତା କୁମରର ଚିନ୍ତା ।
ଚରଳ ଚନ୍ଦ୍ର ଛନ ଛନ ଚେତା ॥
ଏମନ୍ତବେଳେ ମାଲୁଣୀ ମିଳେ ।
କୁସୁମ ଗନ୍ଧ ଲେଖ ନେଇ ଦେଲେ ॥
ଖଞ୍ଜନନୟନୀ ଗନ୍ଧ ପ୍ରଶଂସି ।
ଚିହ୍ନାଉ ପଢ଼ି ପ୍ରେମଜଳେ ଭାସି ॥
ମାଲୁଣୀ ଗୃହେଁ ହରଷ ବହି ।
କୁମର କଥା ପୁଣ ପୁଣ କହି ॥
ଖଞ୍ଜନନୟନା ସେ ପ୍ରତିଭାଷା ।
ଲେଖି ମାଲୁଣୀ ଦୂତୀ ଉପଦେଶା ॥
ଜଗତ୍ସୁନ୍ଦର ଗୁଣ ମନ୍ଦିର ।
କନ୍ଦର୍ପ ସନ୍ତାପ କୂପୁଁ ଉଦ୍ଧର ॥
ଆରତ୍ତ ପତି କାମ ବିପତ୍ତି ।
ଖଣ୍ଡନେ ନାହିଁ ତୁମ୍ଭବିନୁ ଗତି ॥
କମଳ କଢ଼ି ଜଳରେ ବୁଡ଼ି ।
ତପନ କରେ ପ୍ରଫୁଲ୍ଲ ପାଖୁଡ଼ି ॥
ତୁମ୍ଭେ ସେ ଭୃଙ୍ଗ ଆନେକ ଯୋଗ୍ୟ ।
ଇଚ୍ଛା ଯହିଁ ତହିଁ କରସି ଭୋଗ ॥
ଲେଖକୁ ମୁଦ୍ର ଦେଲା ସମ୍ପାଦି ।
ସେବତୀ ଫୁଲେ କାର୍ଯ୍ୟ କରସିଦ୍ଧି
ନୃପତି ସୁତ ଲେଖ ତୁରିତେ ।
ଦେଲା ସେ ଘେନ ପଢ଼ିଣ ସମ୍ମତେ ॥
ସେ ରେବା ନଦୀ ଗଗନ-ଭେଦୀ ।
ତଟରେ ବେତସ ବନ ଆଚ୍ଛାଦି ॥

ତହିଁରେ ଦୁହେଁ ମିଳନ ହୁଏ ।
କଦମ୍ବ ଗନ୍ଧ ଘେନ ଗନ୍ଧ ବହେ ॥
ବଢ଼ଇ ଆଶା ନୂପୁରେ ଭୂଷା ।
ମିଳନେ ଭଗ୍ନ ମହାଦୁଃଖ ଦଶା ॥
ଏମନ୍ତେ ହନେ ବେନି ମିଳନେ ।
ସୁରତି ଅନ୍ତେ ବସି ଏକାସନେ ॥
କୁମାର ମାଗେ କୁମାରୀ ଭାଷେ ।
ବିଭାହୋଇ ଭୋଗକର ନିବାସେ ॥
କେତେ କଷ୍ଟରେ ନଶି ଭେଟରେ
ଆସି ଲୁହଇ ପୁଭ ଆକଟରେ ॥
ହୋଇଲେ ବିଭା ସେରନ୍ତା ସେବା ।
ନାନା ସୁଖରେ କେଳି ଆରମ୍ଭିବା ॥
ଏମନ୍ତେ ବେନି ବିସ୍ମର ଘେନ ।
ପୁରେ ଯାଇ ଦୁଃଖେ କୁମରମଣି ॥
ବଦନ ମାଡ଼ି ଭୂମି ପହୁଡ଼ି ।
ନ ଉଠେ ବେଳ ହେଲା ବେନଘଡ଼ି ॥
ସେବକେ ବେଗେ ନୃପତି ଆଗେ ।
ଜଣାନ୍ତେ ରାଜା ଜାଣି ଉଦବେଗେ ॥
ତୁରିତେ ଆସି ଶଯ୍ୟାରେ ବସି ।
ପୁନକୁ ଆଶ୍ୱାସି ବଚନ ଭାଷି ॥
କି ଅପମାନେ ଭୂମି-ଶୟନେ ।
ଶୋଇଲୁ ବାବୁ କିସ ଚିନ୍ତା ମନେ ॥
କହିବୁ ଯାହା କରିବୁଁ ତାହା ।
ସତ୍ୟ କରୁଅଛୁ ମାଗିବୁ ଯାହା ॥
କୁମରମଣି ବୋଲଇ ବାଣୀ ।
ବିଭା କରଦେବ ମନ୍ତ୍ରୀ ଦୁଲଣୀ ॥
ଶୁଣି ରାଜନ ହରଷମନ ।
ବୋଇଲେ ବିଭା ହୁଅ ଆଜନ୍ଦନ ॥
ଆସ୍ଥାନେ ରଇ ମନ୍ତ୍ରୀକି କହି ।
ଉଠିଣ ଯାଇ ମାଜଣା ମଣୋହି ॥
କୁମର ତୋଷି ଆସ୍ଥାନେ ବସି ।
ମନ୍ତ୍ରୀକି ରାଇଣ ବଚନ ଭାଷି ॥
ପୁଣ ଆମ୍ଭର ପୁତ୍ରୀ ତୁମ୍ଭର ।
ବିଭା କରିବା ଦ୍ରବ୍ୟ ନିର୍ଣ୍ଣା କର ॥

ଶୁଣି ସେ ମନ୍ତ୍ରୀ ସାନନ୍ଦ-ମତି ।
ସିଦ୍ଧ ହୋଇଲା ଯାହା ମନେଚିନ୍ତି ॥
ଜ୍ୟେଷ୍ଠମାସରେ ବିଭାକୁ ଯେତେ ।
କନ୍ୟା ଦାନ ଦେଲା ନୃପତି ସୁତେ ॥
ସେ ନୃପବାଳା ହେନ ସୁଶୀଳା
ଚନ୍ଦ୍ର କିରଣେ ପୂର ଚନ୍ଦ୍ରଶାଳା ॥
ମନ ହରନ୍ତେ ଦିବ୍ୟ ବିଳାସେ ।
ରମନ୍ତେ ନୂତନ ସେ ପ୍ରେମ ସରସେ ॥

ଯଃ କୌମାରହରଃ ସ ଏବ ହି ବର-
ସ୍ତା ଏବ ଚୈନକ୍ଷପା-
ସ୍ତେଚୋନ୍ମୀଲିତମାଲତୀସୁରଭୟଃ
ପ୍ରୌଢ଼ାଃ କଦମ୍ବାନିଳାଃ ।
ସା ଚୈବାସ୍ମି ତଥାପି ତତ୍ର ସୁରତ-
ବ୍ୟାପାରଲୀଲାବିଧୌ
ରେବା ରୋଧସିବେତସୀତରୁତଳେ
ଚେତଃ ସମୁତ୍କଣ୍ଠତେ ॥

ନାୟିକା ମୁଖ ଶୁଣି ନାୟକ
ଭାବେ ବୋଲଇ ସଖି ଦେଖ ଦେଖ ॥
ରଜନୀ ମାନେ ବେତସ ବନେ ।
ସେ ସୁଖନୁହେ ଏ ନିଜ ସଦନେ ॥
ଚଇତ୍ର ନିଶୀ ଶଶୀ ପ୍ରକାଶି ।
ମୁହିଁ ସେ କାନ୍ତ ତୁମ୍ଭେ ସେ ପ୍ରେୟସୀ ॥
ଉଭୟ ଚରନ୍ତେ ସେ ସୁଖସେତେ ॥
ସେ ପୁଣ କାହିଁ ନୋହିଲା ଏଥେ ॥
ପରକୀୟା ରସ ସୁଖ ବିଶେଷ ।
ଶୁଣ ଗୋ ସଖି କଥା ହେଲା ଶେଷ ॥
ଚମ୍ପାଳତିକେ ହାସ ଅଧିକେ ।
ଏକ ଆରକେ ଛଳ କଉତୁକେ ॥
ଚୈତ୍ର ସୁରତି ଲାଳସ ମତି ।
ସ୍ୱକୀୟାରେ କାହିଁ ହେବ ସେ ପ୍ରୀତି ॥
ଲୋଡ଼ିଲେ ଆଜ ପାଇବେ କାହୁଁ ।
ଏ ରସ ରସିକ ନାଗର ଯେହୁ ॥

ଏଯେ ମୃଗାକ୍ଷୀ ତାହାକୁ ଲୋଚ୍ଛି ।
ସୁଖ ତେଜି ଦୁଃଖେ ଦିନ ନେଉଛି ॥
ଏ ମଧୁମାସ ବନ ବିଳାସ ।
ନକରି କରୁଛି କାନ୍ତରେ ରୋଷ ॥
ଶୁଣି ସେ ରଙ୍ଗ ବିହ୍ୱଳ ପାଇ ।
କେ ନେଇ କୃଷ୍ଣକୁ ଦେବ ମିଳାଇ ॥
ଏମନ୍ତେ ବେନି ଯାମ ଯାମିନୀ ।
ନମାଡ଼େ ନିଦ୍ରା କୃଷ୍ଣଭାବ ହେନି ॥
ରଙ୍ଗଦେବୀରେ ତୁଳସୀ ବୋଲେ ।
ତୃତୀୟ ପ୍ରହର ତୁମ୍ଭ ଭାଗରେ ॥
ସେ ରଙ୍ଗଦେବୀ ହରଷ ଲଭି ॥
ବୋଲନ୍ତି ସତୀଙ୍କ କଥା କହିବି ॥
ତଦ୍ଭାବମୟୀ ସମ୍ଭୋଗ ସେହି ।
ଏଥି ମଧ୍ୟେ ପୁଣି ଶରଧା କାହିଁ ॥
ସମ୍ଭୋଗମୟୀ କଥାରେ କହି ।
ଶୁଣିବା ଶ୍ରଦ୍ଧାମନ ସର୍ବେ ହୋଇ ॥
ସେ ରଙ୍ଗବତୀ କଥା କହନ୍ତି ।
ସନ୍ନିଧେ ସୁଦେବୀ ହୁଁ ହୁଁ କରନ୍ତି ॥
ଅବନ୍ତୀ ରାଜ୍ୟେ ଶ୍ରୀ ଅଇଶ୍ୱର୍ଯ୍ୟେ ।
ସାନନ୍ଦ ବୋଲଣ ଏକଇ ଦ୍ୱିଜେ ॥
ବୟସେ ଯୁବା ଅପୂର୍ବ ଶୋଭା ।
ଦେଖିଲେ ଯୁବତୀ ହୁଅନ୍ତି ଲୋଭା ॥
ତାର ବନିତା କମଳଲତା ।
ନିଜ ନିବାସେ ବିଳସେ ଅଶାନ୍ତା ॥
ଏମନ୍ତେ ଦିନେ ରାଜା ସଦନେ ।
ଗଲା ଦ୍ୱିଜ ଦେବ ସେବା ଅର୍ଚ୍ଚନେ ॥
ଗଣିକା ନୃତ୍ୟ ଦେଖି ମୋହିତ ।
ଧନ ଦେଇ ତାରେ କଲା ସୁରତ ॥
ତା' ଭାବପାଇ ସକଳ ଦେଇ ।
ନିଜ ଭାରିଜା ସଙ୍ଗ ନ ଇଚ୍ଛଇ ॥
ଧନ ସରିଲା ଦରିଦ୍ର ହେଲା ।
ଗଣିକା ଜାଣି ସେ ଅଙ୍ଗ ନଦେଲା ॥
ବେଶ୍ୟାନୁରାଗେ ସ୍ତ୍ରୀୟାକୁ ମାଗେ ।
ଅଳଙ୍କାର ଦିଅ ଯେତେ ତୋଅଙ୍ଗେ ॥

ସମ୍ଭୋଗମପ୍ତୀ ତାଙ୍କ ଘେନଇ ।
ପିତାମ୍ବରେ ଗଲା ଅବଜ୍ଞାବନ୍ଧ ॥
ଦ୍ୱିଜ ଦାରବ୍ରେ ରାକ୍ଷସ ସମୁଦ୍ରେ ।
ଉଠାଇ ପଡ଼ଇ ମହା ଅଗାଧେ ॥
ପ୍ରାଣ ବିକଳେ ଗୋବିନ୍ଦ ବୋଲେ ।
ନାବ ଗୋଟିଏକ ଦେଖିଲା ଡୋଳେ ॥
ବସି ତହିଁରେ ବିକୁଣ୍ଠାଚଳେ ।
ଲାଗିଲା ଯୋଗେ ପବନର ବଳେ ॥
ନାବୁଁ ଓହ୍ଲାଇ ଶ୍ରମକୁ ପାଇ ।
ଶାଳ ତରୁତଳେ ଶୋଇଲା ଯାଇ ॥
ମେଘା ରାକ୍ଷସ ତହିଁ ନିବାସ ।
ମନୁଷ୍ୟ ମାଂସରେ ଜୀବନ ତୋଷ ॥
ସେ ସର୍ବଚର ନିଶା ସାଗର ।
ପ୍ରବେଶ ଯାଇ ବାରାଣସୀ ପୁର ॥
ମାୟା ରୂପରେ ରାଜ ନଗରେ ।
ପଶି ରହିଲା ନୃପ ଦୁହିତା ପୁରେ ॥
ଶିବ ପାଳନ ମହାରାଜନ ।
ବର ନପାଇ ଦୁହିତା ସମାନ ॥
ଅବିବାହିତ ବିମୋହ ମତ ।
କୃଷ୍ଣ ନ ସୁମର ପଲଙ୍କେ ଶୁତ ॥
ରାକ୍ଷସ ତହିଁ ଛିଦ୍ରକୁ ପାଇ ।
ପଲଙ୍କ ସହିତେ ଆଣିଲେ ବହି ।
ନିକୁଞ୍ଜ ତଳେ ପ୍ରଭାତେ ମିଳେ
ବିପ୍ରକୁ ଦେଖି ଶାଳ ତରୁତଳେ ॥
ହୃଦୟରେ ମନ ସଫଳ ଦିନ ।
କନ୍ୟାଲାଭ ଏଣେ ବିପ୍ର ଭୋଜନ ।
ନୃପ ଦୁହିତା ପାଇଣ ଚେତା ।
ଶୋକ ଆରତେ ମହାଘୋର ଚିନ୍ତା ।
ରାକ୍ଷସ ସ୍ୱଭାବ ପ୍ରବେଶ କରେ ।
ଭାର୍ଯ୍ୟା ତାର କୋପେ କହେ ଭରେ ॥
ଏହାକୁ ଦେଖି ମୋହିତ ଉପତି ।
ନଖାଇ ରଖିଛ ସୁନ୍ଦର ଦେଖି ॥
ରାକ୍ଷସ ଗୋଟି ରାକ୍ଷସୀ ରାତି ।
ବେନି ଜନ ଗ୍ରାସ ମିଳିଛି ଆସି ॥

ଏହାକୁ ମୁହିଁ ଖାଇବି, ତୁମ୍ଭ ।
ଖାଅ ତରୁ ତଳେ ଯେ ଅଛି ଶୋଇ ॥
ଶୁଣି ରାକ୍ଷସୀ ତୁରିତେ ଆସି ।
ବିପ୍ର ରୂପଦେଖି ହୋଇଲା ତୋଷି ॥
ହୃଦୟରେ ମତ କରିବି ପତି ।
ସେ ଯେବେ କଲାଣି ଅନ୍ୟ ଯୁବତୀ ॥
ଏମନ୍ତ ବୋଲି ଚରଣ ଗୁଳ ।
ନିଦ୍ରା ତେଜି ବିପ୍ର ଦେଖିଲା ବାଳୀ ॥
ରାକ୍ଷାସୀ କହି ପୀରତି ହୋଇ ।
ମୋହିନୀ ରୂପ ଦେଖାଇଣ ମୋହି ॥
ରାକ୍ଷସୀ ବଚନ ଜୀବନ ଆଶ ।
କାନ୍ତ କାନ୍ତା ଭାବେ କେଳି ଲାଳସେ ॥
ରାକ୍ଷସ ଏଣେ କନ୍ୟା ରମଣେ ।
ଲୋଡ଼ନ୍ତେ ବାଳୀ କହେ ହୃଦୟରଣେ ॥
ଯେବଣ ଦ୍ୱିଜ ଦେଖିଲି ଆଜ ।
ତାକୁ ଆଣିଲେ ହେବ ଶୁଭ କାର୍ଯ୍ୟ ॥
ବିଭା ହୁଅସି ଭୋଗ କରସି ।
ଅବିଭା ଛୁଇଁଲେ ଧର୍ମ ବିନାଶି ॥
ସେ ବିପ୍ର ଥାଇ ବିଭା କରାଇ ।
ଖାଅବା ରଖିବା ତୁମ୍ଭ ବଡ଼ାଇ ॥
କୁମାରୀ ବାଣୀ ମଧୁର ଶୁଣି ।
ବଶ ହୋଇଲେ ବ୍ରାହ୍ମଣ ଆଣି ॥
ଗମିଲା ବେଗେ ବିପ୍ରର ସଙ୍ଗେ ।
ଦେଖିଲା ନିଜ ପ୍ରିୟା କେଳି ରଙ୍ଗେ ॥
ଧାଇଁଲା କୋପେ ବେନି ସମୀପେ ।
ଗମନ ଛନ ଛନ ମହୀ କମ୍ପେ ॥
ତାର ରମଣୀ ଥିଲା ଯେ ଜାଣି ।
ରାକ୍ଷସ ମୃତ୍ୟୁଭେଦ ପରମାଣି ॥
ଶକତି ଥିଲା ବିପ୍ରକୁ ଦେଲା ।
ମାତନ୍ତେ ତୋଳି ଦୁଷ୍ଟ ଜଳଗଲା ॥
ଦେବେ ହରଷେ ପୁଷ୍ପ ବରଷେ ।
ବେନି ଜନ ମିଳି ସେ କନ୍ୟା ପାଶେ ॥
ନିର୍ଭୟେ କରି ନୃପ କୁମାରୀ ।
ବୋଇଲେ ଗୁଡ଼ିବା ଯେ ମୋର ପୁରୀ ॥

ରାକ୍ଷସୀ ଚନ୍ଦ୍ରୀ ହସ୍ତିନୀ ହୋଇ ।
ଚଳଲ ଦୁହିଁଙ୍କ ପୃଷ୍ଠେ ବସାଇ ॥
ସେ ରାଜ୍ୟ ଲୋକେ କନ୍ୟାର ଶୋକେ ।
ଦେଶ ବିଦେଶ ଲୋଡ଼ନ୍ତି ଉତ୍ସୁକେ ॥
ଯୋଗେଣ ଭେଟ ଗଙ୍ଗାର ତଟ ।
ବେଦନ ଶୁଣି ମିଳିଲେ ନିକଟ ॥
ସେ ରାଜାରାଣୀ ଅଇଲେ ଶୁଣି ।
ଦୁହିତା କହନ୍ତେ ସକଳ ଜାଣି ॥
ରାକ୍ଷସୀ ବୋଧି ବିପ୍ରକୁ ବନ୍ଧ ।
କନ୍ୟା ବିଭାକଲେ ହିତ ସମ୍ବାଦ ॥
ବସ୍ତ୍ର କନକ ଧନ ଅନେକ ।
ଅବନ୍ତୀ ପୁରେ ଚଳେ ଜଉତୁକ ॥
ମେଘା ରାକ୍ଷସ ସଞ୍ଚିଲ କୋଷ ।
ସକଳ ଘେନ ଅବନ୍ତୀ ପ୍ରବେଶ ॥
ମିତ୍ର ବାନ୍ଧବେ ପୀରତି ଭାବେ ।
ପୂର୍ବ ଭାରଜା ଶୁଣି ମନ କ୍ଷୋଭେ ॥
କପାଇଁ ମୁହିଁ ଗର୍ବକୁ ବହି ।
ମାଗିଲେ ଅଙ୍ଗ ଆଏ ନ ଦେଲଇଁ ॥
ପିତାର ଘରେ ଧନକ ସରେ ।
ସେତ୍ତକ ଆଦର କରିବେ ମୋରେ ॥
ଯୁବତୀ ଯେତେ ଅଛ ଜଗତେ ।
ମାନ ଗରବ ନ କରିବ କାନ୍ତେ ॥
ଏମନ୍ତେ ଚିନ୍ତି ସନ୍ତାପି ହୋଇ ।
କେତେ ଦିନେ ପୁଣ କାନ୍ତ ନିଆଇ ॥
ଭଗିନୀ ଆସି ରଇକ ତୋଷି ।
ବେନିକୁ ବୋଧି ଭବନେ ନିବେଶି ॥
କାନ୍ତ ଅନ୍ତରେ ସପତ୍ନୀରେ ।
ପୂର୍ବ ଚରିତ କହଇ ହାସରେ ॥
ମରମ ଶୁଣି ସେହୁ ବ୍ରାହ୍ମଣୀ ।
ମୃତ୍ୟୁ ଲଭିଣ ଗଲ ସଞ୍ଜୀବନୀ ॥
ଏ ଅପରାଧ ଯାତନା ମଧ୍ୟେ ।
କାଷ୍ଠ କଲା ସ୍ୱାମୀ ସୁଖ ବିରୋଧେ ॥
ପତି ଭଗତି ସେ ସନ୍ଧ୍ୟାବତୀ ।
ତୁଅନ୍ତେ ପୁଣ ସେ ହେଲ ଯୁବତୀ ॥

ବଞ୍ଛିଭ ସୁଖ ଖଣ୍ଡନେ ଦୁଃଖ ।
ବଞ୍ଛିଭ ଭକ୍ତିରେ ଏମନ୍ତ ଦେଖ ॥
ସେ ଦ୍ୱିଜୋତ୍ତମ ଗୋବିନ୍ଦ ନାମ ।
ସୁମରିବା ମାତ୍ରେ ଏତେ ଉତ୍ତମ ॥
ନଳକୁବେରେ ନାରଦ ବୋଲେ ।
ଉକତ ରୁକ୍ମାଙ୍ଗଦ ନାରଦରେ ॥
ଏବେ ଶ୍ରୀମନ୍ତ କଥା ସଙ୍ଗତ ।
କହିଲୁଁ ରଙ୍ଗଦେବୀଙ୍କ ଉକତ ॥
କଥା ବଢ଼ିଲେ ବ୍ୟଥା ଛାଡ଼ିଲେ ।
ରାଣ୍ଡୀ ଶୁଣି ମାନ ଜ୍ୱର ତେଜିଲେ ॥
ଏମନ୍ତେ ନିଶି ତ୍ରିଯାମ ଆସି ।
ଭୁଜଙ୍ଗବଦ୍ୟା ସ୍ୱହିଁ ତୁଳସୀ ଭାଷି ॥
ଶେଷ ପ୍ରହର ତୁମ୍ଭ ଭାଗର ।
କହସି କଥା ବ୍ୟଥା ହେଉ ଦୂର ॥
ସେ ଭୁଜଙ୍ଗବଦ୍ୟା ରସେ ପ୍ରସିଦ୍ଧା ।
ବୋଲେ କି କଥା କହିବ ପ୍ରମଦା ॥
ସନ୍ତୋଗମୟୀ କହିଲେ ଏହି ॥
ତୁମ୍ଭେ କହ ଏବେ ତଭାବମୟୀ ॥
ନଳ ଦମନ୍ତୀ ସତୀ ସାବିତ୍ରୀ ॥
ଏଥି ମଧ୍ୟେ କି କହିବ ବୋଲନ୍ତି ॥
ଜେମା ପ୍ରସନ୍ନେ ତୁଳସୀ ଭଣେ ।
ନଳ ଦାରୁଣ ଦମନ୍ତି କର୍ଷଣେ ॥
ଶୁଣିଛୁଁ ପୂର୍ବେ ଶରଧା ଏବେ ।
ସତୀ ସାବିତ୍ରୀ କଥା କହ ଭାବେ ॥
ଶରଧା ରଙ୍ଗ ଜାଣି ସେ କହି ।
ହୁଁ ହୁଁ କରନ୍ତି ଚନ୍ଦ୍ରରେଖା ତହିଁ ॥
କାଞ୍ଚି ଭୁବନ ଧର୍ମ କେତନ ।
ନାମେଣ ରାଜା ଧର୍ମ ପରାୟଣ ॥
ତାର ଦୁହିତୀ ନାମ ସାବିତ୍ରୀ ।
ସୁମତି ରାଣୀ ଗର୍ଭ ଉତପତ୍ତି ॥
ଗୁରୁ ସୁଦର୍ଶି ହେମ ଗଉରୀ ।
ସମାନ ବର ନପାଇ ନବରି ।
ଗନ୍ଧ ଅର୍ଗଳା କୁଙ୍କୁମ ଗୋଳା
ବୁହାଇ ତନୁଧାର ନବବାଳା ॥

ଯେ ଅବା ଯାଇ ବନସି ତେଜିଁ ।
କାନ୍ତ କରି ତାକୁ ବରିବ ମୁହିଁ ॥
ସତ୍ୟବିବାର ସାକ୍ଷୀ ବିଧାର ।
ବନସି ତୁମ୍ଭେ ବହୁତ ବିସ୍ତାର ॥
ଦେଖି ନୃପତି ପାଇଲେ ଖେତ ।
କେଅବା ତେଜିଁ ଯିବ ପାଦଗତି ॥
ଏମନ୍ତେ କେତେ ଦିନର ଅନ୍ତେ ।
ଗୋଷ୍ଠା ଗୋଷ୍ଠାଏ ପଥ ବହିଯାନ୍ତେ ॥
ତଟରେ ରହି ବହିର ପାଇ ।
କେମନ୍ତେ ଧୀର ଯିବ ପାରହୋଇ ॥
ନୁହଇ ନଦୀ ସାଗର ଭେଦ ।
ବହୁଛି କାହାର ତନୁ ସୁଗନ୍ଧି
ଏଦୋଷକୁତେ ପଶି କେମନ୍ତେ ।
ଆଣୁ କ ପାଣିରେ ବୁଡ଼ିଣା ମୋତେ ॥
ଏମନ୍ତ ଚିନ୍ତି ଆକୁଳ ମତି ।
ନଯାଇ ହରି ବୋଲେ ଉଠେ ଅତି ॥
ଚନ୍ଦ୍ର ପବନେ ପଙ୍ଗୁ ଗମନେ ।
ତେଣୁ ପାରି ହେଲ ଦେଖିଲେ ଜନେ ॥
ମେଢରେ ରହି ସାବସୀ ସୁହିଁ ।
ଦେଖିଲା ପଙ୍ଗୁ ତନଧାର ତେଜିଁ ॥
ପିତା ଜଣାଇ ମେଢୁଁ ଓହ୍ଲାଇ ।
ବରିଲେ ପଙ୍ଗୁ କଣ୍ଠେ ମାଳା ଦେଇ ॥
ଦେଖିଣ ଜନ ବିକଳ ମନ ।
କେ ବୋଲେ ପୂର୍ବେ ଯେ ଯାହା ଅଧୀନ ॥
ସତ୍ୟ ପାଳିଲେ ବିଭା ହୋଇଲେ ।
ସେ ଦିନୁ ସତୀ ସାବସୀ ବୋଇଲେ ॥
ଭିନ୍ନେ ନିବାସେ ରହେ ହରଷେ ।
କର୍ମ ଆଦରି ରହେ ପଙ୍ଗୁ ପାଶେ ॥
ସତୀ ସାବସୀ ଆରାଧି ପତି ।
ତଦ ଭାବରେ ହୋଇ ଆସକତି ॥

ଏମନ୍ତେ କେତେ ଦିନର ଅନ୍ତେ ।
ପଙ୍ଗୁ ଦେଖିଲା ଗଣିକା ଯାଆନ୍ତେ ॥
ମଦନେ କ୍ଷୀଣ ବିଷାଦ ମନ ।
ନରୁଚଇ ସୁଖଭୋଗ ଭୋଜନ ॥

ସେ ପତିବ୍ରତା କାନ୍ତର ଚିନ୍ତା ।
ଦୁଃଖେ ଦୁଃଖୀ ହୋଇ ପୁଛେ ବାରତା ॥
ସେ ପଙ୍ଗୁ କହି ଶୁଣ ଗୋ ସତି ।
ବେଶ୍ୟା ନାରୀ ନେଲେ ମୋ ମନ ମୋହି ॥
ଏତେକ କହି ମଉନେ ରହି ।
ମଦନ କଦନେ ଲୋତକ ବହି ॥
କହେ ସାବସୀ ଯେ ତୁମ୍ଭ ପ୍ରୀତି ।
କରିବି ନିଷ୍ଟେ ନୁହ ଖେଦମତି ॥
ଏମନ୍ତ କହି ତଦ୍ଭାବମୟୀ ।
ରାତ୍ର ପହରେ ଥାଇଁ ଉଠିଯାଇ ॥
ବେଶ୍ୟା ଦୁଆରେ ନିତି ପହଁରେ ।
ଚନ୍ଦନ ଛଡ଼ା ଦେଇ ଆସେ ପୁରେ ॥
ସେ ବେଶ୍ୟା ନାରୀ ବେଗି ବିଚାରି ।
ସବହୁଁ ଆସି କେହୁ ଏହା କରି ॥
ଜାଣିବା ପାଇଁ ଜଗିଣ ରହି ।
ସତୀ ସାବସୀ କର ଧରେ ଯାଇଁ ॥
ବୋଲେ ତୁମ୍ଭର ନୁହେଁ ବେଭାର ।
କି କାର୍ଯ୍ୟ ତୁମ୍ଭ କହ ମୋ ଆଗର ॥
ବୋଲେ ସାବସୀ ମୋହର ପତି ।
ତୁମ୍ଭଙ୍କୁ ଦେଖି ବଳାଇଲା ମତି ॥
ଏହି ନିମିତ୍ତେ ସେବଇଁ ନିତ୍ୟେ ।
ପତି ଦାନକୁ ଦେବ ତୁମ୍ଭେ ମତେ ॥
ଧନ ବସନ ଆଣିଛୁ ଘେନ ।
କାନ୍ତି ସମର୍ପେ ଅଙ୍ଗ ଆଭରଣ ॥
ବେଶ୍ୟା ଚତୁରୀ ବୋଲଇ ରଙ୍ଗୀ ।
ହୋଇଲ ଶୁଝିବ ଆଜ ରଜନୀ ॥
ତାକୁ ମଣାଇ କାନ୍ତେ ଜଣାଇ ।
ନିଶିରେ ପତି କାନ୍ଧେ ବହି ନେଇ ॥
ବେଶ୍ୟା ପାଶରେ ପ୍ରବେଶ କରେ ।
ମିଳାଇ ଜଗି ରହିଲା ଦୁଆରେ ॥
ଅଳପ ରାତି କେତେ ପୀରତି ।
ପଙ୍ଗୁ ଚିନ୍ତାରେ ଉତ୍କଣ୍ଠ ମତି ॥
ବାଳ୍କି ଚିନ୍ତା ସେ ପତିବ୍ରତା ।
ଜାଣି ସୁମରଣା କଲା ବିଧାତା ॥

ଗଣିକା ପ୍ରୀତି ମୋ ପତି ରତି ।
ଆଜ ରାତ୍ରୀ ହେଉ ସପତ ରାତି
ଛୁପତି ହେଉ ରଜନୀ ପାହୁ ।
ମୁଁ ଯେବେ ପତିବ୍ରତା ଆନ ନୋହୁ ॥
ସତୀ ସାବିତ୍ରୀ ବଚନ ଯେତି ।
ଏକା ରାତି ହେଲା ସପତ ରାତି ॥
ପଙ୍ଗୁ ଭୂପତି ପାହିଲା ରାତି ।
ପତି ଘେନ ପୁରେ ଚଳେ ସାବିତ୍ରୀ ॥
ଯେଉଁ ଅଙ୍ଗନା କାନ୍ତ କାମନା ।
ପୂରାଇ ତାକୁ ବୋଲି ତଦମନା ॥
ପୁରାଣ କଥା ଛୁଟିଲା ବ୍ୟଥା ।
ସଙ୍କୋଚେ ଜେମା ନ ତୋଳନ୍ତି ମଥା ॥
ବନ୍ଧୁରେ ମନ କୃଷ୍ଣରେ ମାନ ।
ଅପରାଧେ ହେଲା ଗର୍ବଗଞ୍ଜନ ॥
କାଲି କେମନ୍ତେ କୃଷ୍ଣ ସଙ୍ଗତେ ।
ମିଳିବ ବସନ୍ତ ଉତ୍ସବ ଯାତେ ॥
ଏମନ୍ତ ଚିନ୍ତେ ଚଞ୍ଚଳ ମାତ୍ରେ ।
ଜାଣିଲେ ସଜନୀ ପ୍ରସନ୍ନ ଗାତ୍ରେ ॥
ପାହିଲେ ନିଶି ଦିଶ ପ୍ରକାଶି ।
ଶଶୀ ତାରାଗଣ ମଳିନ ଦିଶି ॥
ନୃପଦୁଲଣା ମନ ଫୁଲଣା ।
ଶଯ୍ୟା ତେଜି ବେଗେ ହୁଏ ମାଜଣା ॥
ଦନ୍ତ ବଢାଇ ସୁବେଶ ହୋଇ ।
ବସନ୍ତ ଉତ୍ସବ କାନନେ ଯାଇ ॥
ଦିନାନ୍ତ କାଳେ ଯମୁନା କୂଳେ ।
ଧୀର ସମୀର ବନ ପରିମଳେ ॥
କାନନ ବୁଲି କୁସୁମ ତୋଳି ।
ମଦନ ମତ୍ତ ଏକ ଆରେ ଛଳି ॥
ବୃନ୍ଦା କହନ୍ତେ କୃଷ୍ଣ ଶୁଣତେ ।
ବିଜେ କଲେ କୁଞ୍ଜ ରାସ ପୁରତେ ॥
ମାଧବୀ କୁଞ୍ଜେ ସଖୀ ସମାଜେ ।
ବସି ରାସ ମଧ୍ୟ ଚିତରେ କରଜେ ॥
କୃଷ୍ଣଙ୍କୁ ଦେଖି ଉର ଦମକ ।
ଲାଜେ ବଦନ ନପାରଇ ଟେକ ॥

ସଖୀ ଇଙ୍ଗିତେ ରାଧା ଅଗ୍ରତେ ।
କୃଷ୍ଣ ଦୃଷ୍ଟ କହେ ବିନୟ ମତେ ॥
ଗୋ ପ୍ରାଣ ପ୍ରିୟେ କର ସଦୟେ ।
ମଦନ ଅନଳ ଦହଇ କାୟେ ॥
ତେଜସି ମାନ ହୁଅ ପ୍ରସନ୍ନ ।
ଦିଅସି ମୁଖ-ପଦ୍ମ-ମଧୁ ପାନ ॥
ବଦନ-ଶଶୀ କାନ୍ତିରେ ହସି ।
ଦନ୍ତ ଛଟର କିରଣ ବିକାଶି ॥
କାମ ଅନ୍ଧାର ହେଉସେ ଦୂର ।
ତୋଷ ହେଉ ଗୃହିଁ ଚକ୍ଷୁ ଚକୋର ।
ନିଶ୍ଚେ କୋପିଣୀ ମୋ ଦୋଷ ଘେନ ।
ଦଣ୍ଡଦେବ ଯାହା କହଇ ପୁଣି ॥
ତୀକ୍ଷ୍ଣ ତୋହର ନୟନ ଶର ।
ଭେଦ ଛାତୁରେ ମୋର ଘାତ କର ॥
ଭୁଜ ବନ୍ଧନ ଗଣ୍ଡେ ରଦନ ।
ଖଣ୍ଡନକର ଯେଣେ ତୋଷମନ ॥
ତୁ ମୋର ପ୍ରାଣ ଅଙ୍ଗ ଭୂଷଣ ।
ମଦନ କେଳି-ଜଳଧି-ରତନ ॥
ନେତ୍ର ନଳିନ ମଦନ ବାଣ ।
ମୋର ରୁଧିରେ ଏ ଶୋଣିତ ବର୍ଣ୍ଣ ॥
ହେ ବରୁଣୀଲେ କୁଚ ମଣ୍ଡଳେ ।
ଲମ୍ବାଅ ମଣି ମୋତିବର ମାଳେ ॥
ଘନ ଜଘନେ ଖଞ୍ଜ ଯତନେ ।
ରସନା କାମ ଆଦେଶ ଘୋଷଣେ ॥
ପାଦଯୁଗଳ ସ୍ଥଳ କମଳ ।
ରଞ୍ଜି ରଞ୍ଜାଇ ମୋ ହୃଦ-ମଣ୍ଡଳ ॥
ସୁରତି ରଙ୍ଗେ ଯେ ଅନୁରାଗେ ।
ଅଳତା ଦେବ ସେ ପାଦସୁରଙ୍ଗେ ॥
ସ୍ମର-ଗରଳ ଖଣ୍ଡସି ମୋର ।
ପାଦପଲ୍ଲବ ଦେଇ ମଣ୍ଡ ଶିର ॥
ତନୁ ପ୍ରଜ୍ୱଳ ହେଉ ଶୀତଳ ।
ଦାରୁଣ ମଦନ କଦନାନଳ ॥
ତୁ ମୋର ସ୍ୱତ୍ୱ କରସି ବାନ୍ଧ ।
ଚରଣେ ଶରଣ ପଶିଲି ମୁହିଁ ॥

ଏମନ୍ତ ବୋଲି ଶ୍ରୀ ବନମାଳୀ ।
ପାଦକୁ ପାଣି ବଢାନ୍ତେ ସେବାଳୀ ॥
ପାଦ ଘଷ୍ଟାଇ ବାସେ ଲୁଗ୍ଗଇ ।
ମାନ ମୁଞ୍ଛ ମନ୍ଦହାସେ ବଞ୍ଚାଇ ॥
କାନ୍ତ ବଦନ ଅବଲୋକନ ।
ଘନ ଘନ ଅଙ୍ଗେ ପୀଡ଼େ ମଦନ ॥
ସଖୀଙ୍କି ଲାଜେ କହନ୍ତି ବ୍ୟାଜେ ।
ଉଠ ଚାଲ ଯିବା ସଦନମାଝେ ॥
ନୃପ ଦୁଲ୍ଲଣୀ ମନକୁ ଜାଣି ।
କୃଷ୍ଣଙ୍କୁ ସଜନୀ କହନ୍ତି ପୁଣି ॥
କୁଞ୍ଜ ସଙ୍କେତେ ଯାଅ ଗୁପତେ ।
ରାଣିକ ଭେଟିବ ପ୍ରଦୋଷଅନ୍ତେ ॥
ହେମକୁ ଚାହିଁ ସଜନୀ କହ ।
କୃଷ୍ଣଙ୍କୁ ମାନ ନକର ହେ ସହ ॥
ଏ ଯୁବାଜନୁ ମାଧବ ଧନୁ ।
ସ୍ୱଅର୍ଥ ହେବ ଦହିବ ଅତନୁ ॥
ଅଙ୍ଗ ଭୂଷଣ ଅମୃତାଶନ ।
ସୁଖ ଭୋଗ ସବୁ ବିଷ ସମାନ ॥
ଢୋଳସି ମଥା ହସିଣ କଥା ।
କହସି ହରି ଶୁଣି ଯାଉ ବ୍ୟଥା ॥
ସଖୀ କହନ୍ତେ ନୟନ ଅନ୍ତେ ।
ଚାହିଁ ମୃଦୁହାସ ବିମ୍ବାଧର ରାଜେ ॥

ମାଧବ ଅଙ୍ଗେ ମଦନ ସଙ୍ଗ ।
ଭେଟନ୍ତେ ଗଲେ କଳ୍ପତରୁକୁଞ୍ଜ ॥
ଶଯ୍ୟାକୁ ରଚି କୁସୁମ ସିଞ୍ଚି ।
ପ୍ରାଣ ପ୍ରିୟା ରତିରସକୁ ସଞ୍ଚି ॥
ପ୍ରଦୋଷେ ରାଣି ସୁବେଶ ହୋଇ ।
ଅଭିସାର କଲେ ଉଲ୍ଲାହ ବହି ॥
ଚିର ବିଚ୍ଛେଦ ମନ ବିଷାଦ ।
ଦୁଃଖ ଏଡ଼ି ବୁଡ଼ି ସୁଖ-ସମୁଦ୍ର ॥
ମାଧବ ପାଶେ ମିଳେ ହରଷେ ।
ଚଉଚକ୍ଷୁ ଭେଟ ମଧୁର ହାସେ ॥
ସଜନୀ ରହି ଅନ୍ତର ହୋଇ ।
କେବଳ ସଙ୍ଗେ ଅନଙ୍ଗ ଅଛଇ ॥
ଶଯ୍ୟା ଉପରେ ବିଜେ ସେ କରେ ।
ଦେନି ମନ ଏକ କେଳିରସରେ ॥
ବ୍ରଜବିହାର ଅଷ୍ଟ ବୋଲିର ।
ପୂର୍ବଭାଗ ପୂର୍ଣ୍ଣ ଅମୃତ ସାର ॥
ଶ୍ରୀଜୟଦେବେ କହେ ଯା ପୂର୍ବେ ।
ସେହି ଅବଶେଷ ରଚଇ ଏବେ ॥
ସୁଜନ ଜନ କର ଶ୍ରବଣ ।
ଦାଶରଥି ଦାସ ଦୋଷ ନ ଘେନ ॥

ଇତି ଶ୍ରୀ ପୂର୍ବ ବିଭାଗ ସମ୍ପୂର୍ଣ୍ଣ ।

—o—

**ଅଷ୍ଟମ ବୋଲି ଦ୍ୱିତୀୟ ବିଭାଗ**

ଯଥା ବାଣୀରେ ଗାଇବ ।

ସାଧୁଜନେ ଏଣେ କର୍ଣ୍ଣ ଦିଅ ।
ବ୍ରଜବିହାର ଅମୃତ ପିଅ ॥
ଅଷ୍ଟମ ବୋଲି ପର ବିଭାଗ ।
ଦଶ ଅକ୍ଷରେ ଛାନ୍ଦ ସଂଯୋଗ ॥
ନଳକୂବରେ ନାରଦ କହେ ।
ଶେଷ ବସନ୍ତ ଏମନ୍ତ ହୁଏ ॥
ନବ ନିଦାଘ ଋତୁ ପ୍ରବେଶ ।
ଅତି ଗ୍ରୀଷମ ଦୀର୍ଘ ଦିବସ ॥

ନଭେ ପ୍ରଚଣ୍ଡ ଏଚଣ୍ଡକର ।
ଦଶ ଦିଶରେ ଖର ପ୍ରଖର ॥
ସରସୁଖି ପଙ୍କିଳ ଫାଟିଲେ ।
ନଦୀନଦ ପ୍ରବାହ ତୁଟିଲେ ॥
ଦାବାନଳେ କାନନ ଦହନ ।
ବହେ ପ୍ରଖର ଝଞ୍ଜା ପବନ ॥
ଲତାତରୁ ଗଣ ଝାଉଁଳିଲେ ।
ନବଦଳ ଫୁଲ ମଉଳିଲେ ॥

ଭୂମି ଟାଙ୍ଗର ତପନ୍ତମୟେ ।
ରେଣୁ ଅଗ୍ନି କଣିକା ସମୟେ ॥
ପଥ ନଚ୍ଚଳ ପଥିକ ଡରେ ।
ତରୁତଳଗ୍ରଇ ଆଶାକରେ ॥
ମୀର ନିକୁଞ୍ଜେ ମୃଗ ବଞ୍ଚନ୍ତି ।
ମୀନ ଗମ୍ଭୀର ଜଳେ ଲୁଚନ୍ତି ॥
ମଧ୍ୟଗତେ ମହାତେଜା ରବି ।
ଗୃହିଁ ନ ପାରେ ପ୍ରଚଣ୍ଡ ଛବି ।
ଜଳ ଯନ୍ତ୍ର ଉଷିର ସେବନେ ।
ଶ୍ୟାମା ରମଣୀ କୁଚ ଚନ୍ଦନେ ॥
ଶୀତ ବାତ ଆଲଟ ବଞ୍ଜଣୀ ।
ହିନ ବଞ୍ଚନ୍ତି ଯେ ସୁଖୀ ପ୍ରାଣୀ ।
ମୃଗତୃଷ୍ଣା ଦେଖି ମୃଗ ଧାମେ ॥
ଜଳ ପ୍ରାପ୍ତ ମଣି ପରିଶ୍ରମେ ॥
ଯେହ୍ନେ ସଂସାରେ ଅଜ୍ଞାନୀ ଜନେ ।
ମିଥ୍ୟା କଥା ସତ୍ୟ ପ୍ରାପ୍ତ ଘେନେ ॥
ହିନ ଅନ୍ତେ ହୁଏ ମନୋରମ ।
ଧୀର ପବନ ଗ୍ରୀଷ୍ମା ଆରମ ॥
ମଲିଚକା ନ ଶବା ଗୁଡ଼ଲେ ।
ଆମ୍ବ ପଣସ ପାଚ ଝଡ଼ିଲେ ॥
ପଥେ ପାଣି ପଣା ଛତ୍ରଦାନ ।
ମୁଖେ ଦିଅନ୍ତି ସେ ମହାଜନ ॥
କ୍ଷଣ କ୍ଷଣକରେ ଗୁଳୁଗୁଳ ।
ଲୋକେ ନଶି ଶଶୀ ଆଶ୍ରେକର ॥
ବାଞ୍ଛଣୀ କ ନାହିଁ ଅବସର ।
ଝାଳ ଗଳଇ ସର୍ବଶରୀର ॥
ଶୀତ ଉପଚାରେ ତୋଷମନ ।
ରୁଚେ ଶୀତ ପ୍ରପାନ ଅସନ ॥
ଏହିକାଳେ ଗୋପେ ଗୋପୀନାଥ ।
ସଙ୍ଗେ ଘେନିଣ ଯୁବତୀ ଯୁଥ ॥
ଯମୁନ ରେ ପଶି ଜଳକେଳି ।
କୃଷ୍ଣପରେ ଶୀତଜଳ ଢାଳି ॥
ନବକାମ ରାଜନ ରସିକ ।
କୁଚ-କୁମ୍ଭେ ହୁଏ ଅଭିଷେକ ।

ରୂପ ପୀଡ଼ି ବାଡ଼ି ମନେ ହର ।
ଜଳଯନ୍ତ୍ର ବନ୍ଧନ ମନ୍ଦର ॥
ଜଳ ଉଠେ ନାନା କଉତୁକେ ।
ଲତା ପଲ୍ଲବ ପୁଷ୍ପ ସ୍ତବକେ ॥
ହିନାନ୍ତରେ ତାପ ଜଳମଧ୍ୟେ ।
କୃଷ୍ଣ ବିହରେ ଗୋପୀକାବୃନ୍ଦେ ॥
ମାରେ ପିଚକା ଚନ୍ଦନ-ନୀରେ ।
ଗୋପୀ ଘନକୁଚ ଯୁଗପରେ ॥
ଉରଦେଶରେ ଶମ୍ଭୁ ଅନେକ ।
ଜାଣି ରସାଣ ଶୁଦ୍ଧ କନକ ॥
ଅଭିଷେକେ ଦିଗମ୍ବର ସେବେ ।
ନେତ୍ର ନୀଳୋତ୍ପଳେ ପୂଜେ ଭାବେ ॥
ପାଣି ପଦ୍ମ ପୁଣପୁଣ ଦିଏ ।
ନଖକ୍ଷତ ଖଣ୍ଡଚନ୍ଦ୍ର ଶୋହେ ॥
ରାଧା ଘେନି ରାଧାକୁଣ୍ଡ ମାଝେ ।
ରୂପ ମଣ୍ଡପ ଉପରେ ବିଜେ ॥
ଏମନ୍ତେଣ ଏ ସଲିଳ ଲୀଳା ।
କେତେବେଳେ ସଖୀ ସଙ୍ଗେମେଳା ॥
ବିପ୍ର କାମିନୀ ନିସ୍ତାର ପାଇଁ ।
ବନେ ବିଜୟେ ଗାବ ଚରାଇ ॥
ବଇଶାଖ ଶୁକ୍ଳ ଦ୍ୱାଦଶୀ ।
ଗାବ ଦୁହଁନ୍ତି ନ ଯାହୁଁ ନଶି ॥
ସଙ୍ଗେ ଗୋଧନ ଗୋପାଳ ଘେନି ।
ରଙ୍ଗେ ବିଜେକଲେ ଭାଇ ବେନି ॥
ଖରା ନକରୁଁ ବେଗରେ ଚଳେ ।
ଶିଙ୍ଗା ବେଣୁ ଶୁଣି ସୁଏ ମିଳେ ॥
ତରତରେ ପନ୍ଥରେ ଗୋଡ଼ାଇ ।
ଗାବ ଗହନ ବନେ ଅଡ଼ାଇ ॥
କାଳୀ ହ୍ରଦ ଉତ୍ତର ବିଭାଗେ ।
ଘନ ଅଶୋକ ବିପିନ ଲାଗେ ॥
ଶୀତଳ ଜଳ ତୃଣକୁ ପାଇ ।
ସୁଖେ ଚରାଇଲେ ତହିଁ ଗାଈ ॥
ବନ କୁସୁମ କୁମାରେ ତୋଳି ।
ନାନା ପରିବନ୍ଧେ ଗୁନ୍ଥେ ମାଳୀ ॥

ରାମ କୃଷ୍ଣଙ୍କୁ ଆଗରେ ଦେଇ ।
ଫୁଲ ଅଳଙ୍କାର ବେଶ ହୋଇ ॥
ନଟବର ରୁଚିର କାଛେଣି ।
ନୃତ୍ୟରଙ୍ଗେ ଏକ ଆରେ ଜଣି ॥
ଉଚ୍ଚସ୍ୱରେ କେ ଗାୟନ କରେ ।
କେହୁ ଗାବଇ ଲଳିତ ସ୍ୱରେ ॥
ତାଳ ମୃଦଙ୍ଗ ଅମୃତ ବୀଣା ।
ଏକବାଦ୍ୟ ଆରକକୁ ଜଣା ॥
ବନ ପୂରିଲେ ମଧୁର ସ୍ୱନେ ।
ଗୀତ ଶୁଣି ବନଜୀବ ମାନେ ॥
ଗାବ ତୃଣ ଧରି କଣ୍ଠ ଡେରି ।
ନଦୀ ଉଜାଣି ବହିଣ ପୂରି ॥
ବନେ ବହିଲେ କୂଳକୁ ଲଙ୍ଘି ।
ରାଧା ମାଧବ ଚରଣେ ଲାଗି ॥
ସୁଖେ ସର୍ବେ ଜଳ ପାନ କଲେ ।
ତୃଷା ନାଶି ମନେ ତୋଷିହେଲେ ॥
ଅତି ଆଶ୍ଚର୍ଯ୍ୟ କର୍ମକୁ ଦେଖି ।
ଗୋପସୁତେ ମନେ ମହା ସୁଖୀ ॥
ଏମନ୍ତେଣ ମଧ୍ୟଗତେ ରବି ।
ବେଳୁଁ ବେଳ ସେ ତାପିତ ଭୂବ ॥
ଗୋପପୁଏ ରାମକୃଷ୍ଣ ସଙ୍ଗେ ।
ଶ୍ରମ ଭୂଷିତ ହୋଇଣ ଅଙ୍ଗେ ॥
କ୍ଷୁଧାଭରେଣ ଆକୁଳ ହୋଇ ।
କରଯୋଡ଼ି କୁମାରେ ଜଣାଇ ॥
ଆଜ ରାସହୁଁ ବନ ଗମନ ।
କେହି ଆଣି ନାହୁଁ ସଙ୍ଗେ ଅନ୍ନ ॥
ଭୋକ ଲାଗିଲା ନଚଳେ ଦେହ ।
ଏବେ କବୁଦ୍ଧି କରିବୁଁ କହ ॥
ଘର ନିକଟ ନୁହଇ ଯିବୁଁ ।
ଭୋକ ସହିଁଣ କେମନ୍ତେ ଥିବୁଁ ॥
ଆଜ ଆଣିଲ ଅଶୋକ ବନେ ।
ଶୋକ ଜାତ ହେଉଅଛି ମନେ ॥
କେଳି କରୁଛ ସନ୍ତାନ ଛଳେ ।
ଗୋପ ସନ୍ତାନ ନାଶିଲ ତାଳେ ॥

ଶୁଣି ରାମକୃଷ୍ଣ ବେନି ଭାଇ ।
ବିମ୍ବାଧରେ ହସ ହସ ହୋଇ ॥
ରାମ ବୋଲନ୍ତି ଆରତ ନୁହ ।
ଅନ୍ନ ଭୁଞ୍ଜିବ କ୍ଷଣକେ ରହ ॥
ଗାବ ରଖି ହୋଇଛ ବାହାର ।
ଫଳମୂଳ ସେ ଜଳ ଆହାର ॥
ଲୋଡ଼ି ଯେଝା ଅନୁରୂପେ ଆଣ ।
ଭୁଞ୍ଜି ରଖ ଆଜ ନିଜ ପ୍ରାଣ ॥
ପୁଏ ବୋଲନ୍ତି ହେ ରାମ ଶୁଣ ।
ନୁହେ ତାଳ କପିତ୍ଥ ଏ ବନ ॥
ତରୁ ପଲ୍ଲବ ଗୁଇ ଗହଳ ।
ଏଥି ମିଳିବ କାହିଁ ବା ଫଳ ॥
ଗୀତ ଗାୟନ ତୁମ୍ଭର ଶୁଣି ।
ନଦୀ ବହିଲା ସେହେଁ ଉଜାଣି ॥
ଜଳ ପିଇଁ ତୃଷା ଶାନ୍ତ ହେଲା ।
ଏଡ଼େ ଆଚମ୍ବିତ ଯେହୁ କଲା ॥
ଅନ୍ନ ସେହିରୂପେ ଏବେ ଆସୁ ।
ଭୁଞ୍ଜି ଆମ୍ଭର ଉଦର ତୋଷୁ ॥
କେହୁ ବୋଲଇ ଅନ୍ନ ବ୍ୟଞ୍ଜନ ।
କେହୁ ବୋଲେ ଘୃତଶାଳି ଅନ୍ନ ॥
କେହୁ ବୋଲନ୍ତି ମୂଣ ପାୟସ ।
କେହୁ ବୋଲେ ଦେବ ଷଡ଼ରସ ॥
ବାଳ ବଚନେ କରୁଣା ସିନ୍ଧୁ ।
ମନ୍ଦ ମନ୍ଦହାସେ ମୁଖବିଧୁ ।
ଭୃତ୍ୟ ବତ୍ସଳେ ଉଡ଼ଇ ବାନା ।
ପୂର୍ଣ୍ଣ କରିବେ ନିଷ୍ଠ କାମନା ॥
ପାଶେ ଗଣ୍ଡି ଗୋପାଳଙ୍କୁ କହେ ।
ତୁମ୍ଭେ ଯାଅ ଖଣ୍ଡେ ଦୂର ଯାଏ ॥
ଏହି ବନ ଉତ୍ତର ବିଭାଗେ ।
ବିପ୍ରେ ଅଛନ୍ତି ସେ ମହାଯାଗେ ॥
ପୂର୍ଣ୍ଣ ଆହୁତି ଆଜର ଦିନ ।
ଶୁଭୁ ଅଛି ବେଦଧ୍ୱନିମାନ ॥
ତୁମ୍ଭେ ତୁରିତେ ତହିଁକି ଯାଅ ।
ମୋର ମାଗିଲା ବୋଲିଣ କହ ॥

ଯାଗ କର୍ମରେ ଏମନ୍ତ ଅଛି ।
ଯେହୁ ଯାହା ମାଗେ ମନେ ଇଚ୍ଛି ॥
ତତ୍କାଳେ ତାକୁ ତାହା ଦେଇ ।
ବିମୁଖରେ ଗଲେ ଫଳ ନାହିଁ ॥
ନିମନ୍ତ୍ରଣ କରିସେ ଅମ୍ଭଙ୍କୁ ।
ଆମ୍ଭସବେ ପେଶୁଛୁଁ ତୁମ୍ଭଙ୍କୁ ।
ଏଣୁ ଆମ୍ଭ ମାଗିଲ କହିବ ।
ପାଇଁ ଅନ୍ନ ବ୍ୟଞ୍ଜନ ପାଇବ ॥
ଶୁଣି କୃଷ୍ଣ ବଚନ କୁମାରେ ।
ହେଲେ ଏକୁଆର ଆଗୁସାରେ ॥
ସେହି ଅଶୋକ ବିପିନେ ଚଳେ ।
ଯଗଶାଳେ ଯାଇ ବେଗେ ମିଳେ ॥
ଚିତ୍ର ବିଚିତ୍ର ସେ ଯାଗଶାଳ ।
ପୁର ମଣ୍ଡପ ସେ ପରିମଳ ॥
ସର୍ବଦେବ ହବିର୍ଭାଗ ସ୍ଥାନ ।
ସମ ଦେବାକୁ ନାହିଁ ସେ ଆନ ॥
ଦ୍ୱିଜବର ଶୁଚିମନ୍ତ ହୋଇ ।
ଅଗ୍ନିମୁଖେ ଆହୁତିକି ଦେଇ ॥
ଯାଗାନେକେସ କୁଣ୍ଡ ସମୀପେ ।
ମନ୍ତ୍ର ଉଚ୍ଚରି ସମିଧ କ୍ଷେପେ ॥
ମହା ସମ୍ଭବ ଗୋପାଳେ ରହିଁ ।
କୃଷ୍ଣ ଗନ୍ଧ ତହିଁ ଆଉ ନାହିଁ ॥
ସୁଖ ପ୍ରଦ ନୁହଇ ମନକୁ ।
ଉଚ୍ଚେ କହନ୍ତି ବିପ୍ର ଜନଙ୍କୁ ॥
ରାମ କୃଷ୍ଣର ଆଜ୍ଞା ପ୍ରମାଣେ ।
ଆମ୍ଭେ ଅଇଲୁଁ ଏହି କାରଣେ ॥
ଆଜ ରାତ୍ରୁ ଅଇଲୁଁ ବନ ।
ସଙ୍ଗେ ଆଣି ନପାରିଲୁଁ ଅନ୍ନ ॥
ଏହି ବନେ ଚରଉଁ ଗୋଧନ ।
ଦୂର ଏଠାକୁ ଗୋଷ୍ଠ ଭୁବନ ॥
ସେଠି ଅଛନ୍ତି ରାମ ମାଧବ ।
ଅନ୍ନ ପୁଡ଼ାଏ ଆମ୍ଭଙ୍କୁ ଦେବ ॥
କ୍ଷୁଧାଭରେ ଛୁଇତଳେ ରହି ।
ଆମ୍ଭମାନଙ୍କୁ ପେଷିଲେ କହି ॥

ତୁମ୍ଭ ଅନ୍ନେ ଉଦର ପୋଷିବୁଁ ।
ଆମ୍ଭମାନଙ୍କ କ୍ଷୁଧା ନାଶିବୁଁ ।
ନିମନ୍ତ୍ରଣ କରିଅଛ ପୁଣ ।
ଏବେ ଯାଚ କହିଲେ ନଶୁଣ ॥
ଶୁଣି ଦେବା ନଦେବା ନବୋଲେ ।
ଗୋପାଳଙ୍କ କଥା ନ ଶୁଣିଲେ ॥
ଫଳ କରଗତ ଆସି ହେଲେ ।
କର୍ମ ଆଙ୍କୁଡ଼ ଯନ୍ତ୍ରିତ ଭଲେ ॥
ପୁଏ ଆଶା ବଢ଼ାଇଣ କହି ।
ଗଲେ ନପାଇ ନିରସ ହୋଇ ॥
କ୍ଷୁଧାଭରେ କୁମାରେ ଲେଉଟି ।
ରାମ କୃଷ୍ଣଙ୍କୁ ଯାଇଣ ଭେଟି ॥
କ୍ଷୁଧାଭରେ ନପାରେ ଚଳିତ ।
ପୁଏ କହନ୍ତି ସର୍ବ ଚରିତ ॥
ଅନ୍ନ ମାଗିଲୁଁ ବିପ୍ରଙ୍କୁ ଯାଇ ।
ତୁମ୍ଭ ଦୁଇ ଭାଇ ନାମ କହି ॥
ଦେବା ନଦେବା ସେ ନ ବୋଇଲେ ।
ଯାଗ କର୍ମେ ମହାମତ୍ତ ହେଲେ ॥
ତୁମ୍ଭ ମାଗିଲ ବୋଲି କହିଲୁଁ ।
ନ ଶୁଣିଲେ ନିରାଶେ ଅଇଲୁଁ ॥
ଗୋପାଳଙ୍କ ତହୁଁ ରାମ ଶୁଣି ।
କ୍ରୋଧେ ଅରୁଣଲୋଚନ ବେନି ॥
ହସି କହନ୍ତି ସେ ଗୋପୀନାଥ ।
ଆଶ୍ୱାସିଣ ଗୋପାଳ ପୁଅନ୍ତ ॥
ଏବେ ଆରବେଳେ ତୁମ୍ଭେ ଯାଅ ।
ବିପ୍ର କାମିନୀ ଗଣଙ୍କୁ କହ ॥
ସେହୁ ଜାଣନ୍ତି ଆମ୍ଭଙ୍କୁ ଭଲେ ।
ଅନ୍ନ ଦେବେ ସେ ତୁମ୍ଭେ ମାଗିଲେ ॥
ବିପ୍ରେ ଅଛନ୍ତି ସେ ଯଜ୍ଞ କର୍ମେ ।
ବିପ୍ରକାମିଛନ୍ତି ଗୃହ ଧର୍ମେ ॥
ଦୁଃଖ ପାଇଯାଅ ତାଙ୍କ ଯାଏ ।
ସେ ଯେ କରିବେ ନିଶ୍ଚେ ସହାୟେ ॥
ସେହୁ ଜାଣନ୍ତି ସେ ମୋତେ ଭଲେ ।
ତୁମ୍ଭେ କହ ଯାଇ ଏକାବେଳେ ।

କର୍ଣ୍ଣେ ବ୍ରାହ୍ମଣୀ ଶୁଣିଲ ମାନେ ॥
ଅନ୍ନ ଘେନ ଆସିବେ ତ୍ୱରିତେ ।
ଆଗେ ଭଦ ଲଗ୍ନ ଶଙ୍କା ଛାଳ ।
ଯାଅ ଏହି ଶୁଭ ଅନୁକୂଳ ॥
କୃଷ୍ଣ ବଚନ ଶୁଣି କୁମାରେ ।
ବିପ୍ର ଶାସନେ ଗମନ କଲେ ॥
ଯାଇଁ ପ୍ରବେଶ ହୋଇଲେ ତହିଁ ।
ପୁଏ ଆନନ୍ଦ ଶାସନ ଗୃହିଁ ॥
ଉଗ୍ରସେନ ରାଜନର ଦାନ ।
ଅଷ୍ଟ ତ୍ରୁଶର ସଦନ ମାନ ॥
ପୂର୍ବ ପଶ୍ଚିମେ ଶାସନ ବସେ ।
ଦେବ ଭୁବନ ସରିଏ ଦିଶେ ॥
ସମ ସୁଷମ ଏକ ପଙ୍କତି ।
ଚୀତ୍ର ବାଡ଼ ପ୍ରାଙ୍ଗଣ ଜଗତି ॥
ଚିତ୍ର ଲେଖନ ଚାରୁ ଗବାକ୍ଷ ।
ମେଢ଼ି ଅଙ୍କାଳ ଦ୍ୱାର ପାବଚ୍ଛ ॥
ଥୋରଦସ୍ତ ହଂସ ପାଣି ପାଟି ।
ଶୁକ ପାଲଟିଆ ଝିଣ୍ଟି ପିଟି ॥
ଗୃହୁ ଶଙ୍କଣ ସକଳ ଚୂଳନ ।
ଶତ ପ୍ରତିମା ବିବିଧ ବର୍ଣ୍ଣେ ॥
ବସେ କନକ କଳସମନ୍ତେ ।
ନାନା ବାସେ ପତାକା ଉଡ଼ନ୍ତି ॥
ମଣ୍ଡି ନେତ ପଟ୍ଟ ପୀତାମ୍ବର ।
ଚନ୍ଦ୍ରାତପ କୁସୁମ ଗୃମର ॥
ହେମ କାଙ୍ଗୁଳ ମୁକୁତା ଜାଳ ।
କେଶ କେଶ ଝୁମ୍ପା ମାଳ ମାଳ ॥
ଦାଣ୍ଡ ସମତୁଲ ପରିମଳ ।
ନଡ଼ା ପକାଇ ଚନ୍ଦନ ଜଳ ॥
ପୂର୍ଣ୍ଣ କୁମ୍ଭ ଚୂତ ପତ୍ର ଡାଳେ ।
ରମ୍ଭା ରୋପି ତୋରଣା ମାଳେ ମାଳେ ॥
ବିପ୍ର ତରୁଣୀଗଣ ଯେ ତହିଁ ।
ଶୁଚିମନ୍ତେ ଦିବ୍ୟ ବେଶ ହୋଇ ॥
ଅର୍ଘ୍ୟସ୍ଥାଳୀ ଘେନ ସଖୀ ସବେ ।
ପୂର୍ଣ୍ଣି ଅଦ୍ଭୁତ ଯଜ୍ଞ ଉତ୍ସବେ ॥

ଦଶ ବଂଶ ଏକ ମେଳ ହୋଇ ।
କୃଷ୍ଣ ଚରିତ ଯେ କୁହା କୁହି ॥
ଏମନ୍ତେ ଯେ ଗୋପସୁତ ମିଳ ।
ଦେଖି ଦ୍ୱାରରେ ପୁଛନ୍ତି ବାଳୀ ॥
କାହୁଁ ଅଇଲ କୁମର ମାନେ ।
ଦେଖି ନାହିଁତ ତୁମ୍ଭଙ୍କୁ ଦିନେ ॥
ସ୍ୱର୍ଗୁଁ ଅଇଲା ପ୍ରାୟେକ ଦିଶ ।
ହୋଇ ଅଛ ଏ ଅପୂର୍ବ ବେଶ ॥
ଶ୍ରମ ପାଇଣ ଅଛତ ଫାଟି ।
ସର୍ବାଙ୍ଗରେ କାଳ ଅଛି କଣ୍ଟି ॥
କାହୁଁ ଅଇଲ କଳ ଯେଁ ଏଥେ ।
କହ କହ ଶୁଣୁଁ କର୍ଣ୍ଣ ପଥେ ॥
ଶୁଣି ବ୍ରାହ୍ମଣୀଙ୍କ ପ୍ରିୟ ବାଣୀ ।
ସ୍ଥିର କରିଣ କୁମାରେ ଭଣି ॥
ନନ୍ଦ ରାଜନ ଗୋପ ଭୁବନ ।
ଆମ୍ଭେ ସର୍ବେ ଗୋପାଳ ନନ୍ଦନ ।
ରାମକୃଷ୍ଣ ରାଜପୁତ୍ର ସଙ୍ଗେ ।
ବନେ ଗୋଧନ ଚରାଉଁ ରଙ୍ଗେ ॥
ଆଜ ରାତ୍ରହୁଁ ଅଇଲୁଁ ବନେ ।
ବାଳ ତପତିକ ଭୟ ମନେ ॥
ନିଦ୍ରା ଆଳସ୍ୟ ଅଇଲୁଁ ଯେଣୁ ।
ଅନ୍ନ ଆଣି ନପାରିଲୁଁ ତେଣୁ ॥
ରାମ ମାଧବ ଆମ୍ଭଙ୍କୁ ପେଷି ।
ଷ ଧାଭରେ ଗୁହଛଡ଼ିଲେ ବସି ॥
ଶ୍ୟାମସୁନ୍ଦର ଲାବଣ୍ୟ ରାଶି ।
ଅନ୍ନ ମଗାଇ ଆମ୍ଭଙ୍କୁ ପେଷି ॥
ଗୃହେ ଆଇ ଯେଶାବନ୍ତା ଶୁଣି ।
ଅନ୍ନ ଭୁଞ୍ଜାନ୍ତୁ ଲଳିତ ବାଣୀ ।
ଦିବ୍ୟ ଶାଳିଅନ୍ନ ଯେ ନ ଖାଇ ।
ଏବେ ମାଗି ବଟକା ନ ପାଇ ॥
ଘର ଲୋବଣୀ ଥକାରେ ଯେହୁ ।
ବନେ କୋଳ ତୋଳ ଖାଏ ସେହୁ ॥
ଯାଗ ଶାଳରେ ମାଗିଲୁଁ ଅନ୍ନ ।
ଶୁଣି ନ ଦେଲେ ବ୍ରାହ୍ମଣ ଜନ ॥

ଆମ୍ଭେ ସମ୍ମୁଖେ ବାହୁଡ଼ି ଗଲୁଁ ।
ରାମକୃଷ୍ଣଙ୍କୁ ଯାଇ କହିଲୁ ।
ଶାନ୍ତ କରଣ ଆମ୍ଭଙ୍କୁ କହେ ॥
ବିରେ ଯାଅ ବ୍ରାହ୍ମଣୀଙ୍କ ପାଏ ॥
ମୋତେ ଜାଣନ୍ତି ସେମାନେ ଭଲେ ।
ଦୟା କରିବେ ତୁମ୍ଭେ କହିଲେ ॥
କୃଷ୍ଣ ବଚନେ ଅଇଲୁଁ ମାଏ ।
କ୍ଷୁଧାଭରେଣ ଆକୁଳ କାୟେ ॥
ସୁକୁମାର ସେ ଯଶୋଦା ବଳ୍ଲି ।
ଏତେବେଳ ଯାଏ ଭୋକେ ଅଛି ॥
ଅନ୍ନ ଦିଆଏ ବେଗ ମାତ ଦେବ ।
ବନେ ଭୁଞ୍ଜିବେ ରାମ ମାଧବ ॥
ଗୋପ କୁମାର ବଚନ ଶୁଣି ।
ଅତି ଆନନ୍ଦ ମନେ ବ୍ରାହ୍ମଣୀ ॥
ଚର୍ମ-ଲୋଚନ ହରି ଦେଖିବା ।
କି କହିବେ କର୍ଣ୍ଣରେ ଶୁଣିବା ॥
ଗୋପ ମନ୍ତଙ୍କୁ କୋମଳ କହି ।
ବାକ୍ୟ କ୍ଷଣେ ଥାଅ ତୁମ୍ଭେ ରହି ॥
ଅନ୍ନ ବ୍ୟଞ୍ଜନ ସଂଯୋଗି ଆଣୁ ।
ରାମକୃଷ୍ଣ ମାଗୁଛନ୍ତି ଯେଣୁ ।
ଏତେ କହି ଯେଝା ପୁରେ ଗଲେ ।
ଅନ୍ନ ବ୍ୟଞ୍ଜନକ ସଂଯୋଗିଲେ ॥
କ୍ଷୀରି କ୍ଷୀରିସା ପୁରି କାକରା ।
ବଡ଼ ମହୁର ମୁଗ ଶାକରା ॥
ଲକ୍ଷ୍ମୀବିଳାସ ସରୁ ମଣ୍ଡୁଳା ।
ହେମ ଦଧି ଅଦୀରେ ବାଟୁଲା ॥
ଦଧି କୋଡ଼ମା ଚମ୍ପା ପଖାଳ ।
ଶିଖରଣୀ ସେ ସର ବହୁଳ ॥
ଘୃତ ଲବଣୀ ଦଳିତ ଅନ୍ନ ।
ଦୁଧ ଦଧି ସଂଯୋଗ କେ ପୁଣ ॥
କାନ୍ତି ଲଡ଼ୁ ମନୋହର ଗଜା ।
ଆମ୍ବ କଦଳୀ ଆଦିରେ ଭଜା ॥
ନାଡ଼ୁ ଝିଲି ପାରିଜାତ ବଡ଼ା ।
ଅମାଲୁ କୋରା ଖଣ୍ଡମଣ୍ଡା ॥

ଘୃତ ନବାନ୍ନ ପାକରେ ରଚି ।
ଯେସନେ ରାମକୃଷ୍ଣ ମନ ରୁଚି ॥
ଦ୍ରବ୍ୟ ସଂଯୋଗି ବେଗେ ବାହାର ।
ଉଚ୍ଛା କହିବା କେତେ କାହାର ॥
କାଖେ ବସାଇ ସେ ଅନ୍ନଥାଳୀ ।
ହୁଳହୁଳି ଦେଇ ବିପ୍ର ବାଳୀ ॥
ଗୀତ ଗାଇ ଚଳେ ଏକସଙ୍ଗେ ।
ଗୋପ କୁମାରେ କଢ଼ାନ୍ତି ଆଗେ ॥
ଯା'ନ୍ତେ କୃଷ୍ଣର ରୂପ ଭାବନ୍ତି ।
ଗୀତ ଗୋବିନ୍ଦ ଭଣେ ଗାବନ୍ତି ॥
ଦଶହିଶ ପୂରି ଗୀତ ସ୍ୱନେ ।
ଅତି ଉଲ୍ଲାସ କୃଷ୍ଣ ଦର୍ଶନେ ॥
ଯାଗଶାଳେ ଯେ ବ୍ରାହ୍ମଣ ଥିଲେ ।
ଜାଣି ଆସି ଆଗେ ଓଗାଳିଲେ ॥
କର କପାଳେ ମାରି ଧିକ୍‌କାର ।
କିକେ ବନେ ଯାଅ ତେଜି ପୁର ॥
କେହୁ ଉଚାଟ କଲା ତୁମ୍ଭଙ୍କୁ ।
ନିନ୍ଦା କରିବେ ଲୋକେ ଆମ୍ଭଙ୍କୁ ॥
ମାତ ଯୁବତୀ ପରବଶ ହୋଇ ।
ଅନ୍ନ ନେଇ ବନ ଦେଶେ ଯାଇ ॥
ଶୁଣି କହନ୍ତି ତରୁଣୀ ଗଣେ ।
ରାମକୃଷ୍ଣ ଅଛନ୍ତି ଏ ବନେ ॥
ଭୋକେ ତରୁ ତଳେ ଛନ୍ତି ବସି ।
ଅନ୍ନ ମଗାଇ ତୁମ୍ଭରେ ପେଷି ॥
ଧର୍ମ ସ୍ଥାପନ ହୋଇବ ଯାଗେ ।
ଅନ୍ନ ଦେଇଣ ଆସିବୁ ବେଗେ ॥
ଯଜ୍ଞେ ମାଗିଲେ ନ ଦେଲ ଅନ୍ନ ।
ହୋମଯାଗେ ଯେତେ ତୁମ୍ଭ ପୁଣ୍ୟ ॥
ସେତୁ ପୁଣ୍ୟ ଆଣିବାକୁ ଯାଉଁ ।
ଯଜ୍ଞ କର୍ମ ଫଳ ଆମ୍ଭ ରହୁ ॥
ବିପ୍ର ବୋଲନ୍ତି ନଜାଣ ତୁମ୍ଭେ ।
ଅନ୍ନ ମାଗିଲେ ନଦେଲୁଁ ଆମ୍ଭେ ॥
ଗାଈ ରଖନ୍ତି ବନେ ଆଭୀର ।
ଦଧି ଦୁଧ ଖାଇ ବଳୀୟାର ॥

କଂସରାଜା ସେନାପତି ମାରି ।
ବଳେ ହରନ୍ତି ସେ ପରସ୍ତ୍ରୀ ॥
ଏହି ରୂପେ ବହୁତ ଅନ୍ୟାୟ ।
ବଢ଼େନ ରହି ରାଜା ଅମାନୁଆ ॥
ଛାଡ଼ିଗଲେ କି ଜାତି ରହିବ ।
ନିଶ୍ଚେ ବୃନ୍ଦ ବାହାର ହୋଇବ ॥
କଂସ ଜାଣିଲେ କରିବ ରୋଷ ।
ନ ଣ ଯିବ ଯଣ ପଞ୍ଚ ରଷ ॥
କେହୁ କୃଷ୍ଣଙ୍କୁ ଗୋ ବାଇକଲା ।
ବିଷ୍ଣୁ ପ୍ରାପ୍ତ ମଣ ନହବଲା ॥
ବିପ୍ରେ କହିଲେ ନବାର ଯେତେ ।
ବାଳୀ ନ ହୋନଲେ ତାହା ଶତେ ॥
ହରିଭାବେ ଜନମତ ହୋଇ ।
ନଦୀ ବଢ଼ିଲେ କି ବାନ୍ଧ ରହି ॥
ଶତେ ମୂର୍ଖ ବଳଆଇଁ ଗଲେ ।
ବିପ୍ର ରଖି ସମର୍ଥ ନୋହିଲେ ॥
ଏକ ବ୍ରାହ୍ମଣୀ ଏ କ୍ଷୀଣା ହୋଇ ।
ସଙ୍ଗେ ମିଶି ନ ପାରିଲା ଯାଇ ॥
ତାଙ୍କ କାନ୍ତ ବାହୁଡ଼ାଇ ନେଲେ ।
ସୂତରେ ବାନ୍ଧିଣ କବାଟ ଦେଲେ ॥
ଯାଗଶାଳେ ପୁଣ ମିଳେ ଆସି ।
ପୂର୍ଣ୍ଣ ଆହୁତ ସମସ୍ତେ ମିଶି ॥
ସୂତରେ ବ୍ରାହ୍ମଣୀ ଅଛୁ ବନ୍ଧନେ ।
ମୁଣ୍ଡମାରି ବିକଳେ ରୋଦନେ ॥
ମନ ପେଶିଲା ଶ୍ରୀକୃଷ୍ଣ ପାଶେ ।
ଅନ୍ନ ବ୍ୟଞ୍ଜନ ଘେନ ହରଷେ ॥
ମାନସିକେ ସେବ ବନମାଳୀ ।
ପାଦ ସୁବାସ ଜଳେ ପଖାଳ ॥
ଦିବ୍ୟ ଆସନେ ବସାଇ ପୂଜେ ।
ବସ୍ତ୍ର ଅଳଙ୍କାର ଦେଇ ସାଜେ ॥
ସୁବାସିତ କୁସୁମ ଚନ୍ଦନ ।
ଷଡ଼ରସରେ ଅନ୍ନ ବ୍ୟଞ୍ଜନ ॥
ମାନସିକେ ବ୍ରାହ୍ମଣୀ ପରଷେ ।
ହରି ଭୋଜନ କରେ ହରଷେ ॥

ଆଚମନ, କରି ମୁଖବାସ ।
ଖଟ ଦୋଳରେ ସେବଇ ଦାସ ॥
ଧୀରେ ଧୀରେ ବ୍ୟଞ୍ଜନ ସେବଇ ।
ବିଶ୍ରାମରେ ବନ୍ଧନେ ଲାବଇ ॥
କୃଷ୍ଣ କୃଷ୍ଣ ବୋଲି ଉଚେ ଘୋଷି ।
ନିଜ ଆତ୍ମା ଚରଣେ ନବେଶି ॥
କେହି ନ ପାଉଁ ଏ ଆଗେ ଯାଇ ।
କୃଷ୍ଣ ତୋଷ ଏହା ପୂଜା ପାଇ ॥
ଏମନ୍ତେଣ ବ୍ରାହ୍ମଣୀଏ ଗଲେ ।
ବିପ୍ର ବାହୁଡ଼ିଣ ଠୁଳ ହେଲେ ॥
ବ୍ରାହ୍ମଣଙ୍କ କୋଟ-ମୁଖ ଦେଖି ।
ସୁଏ ପଳାଇ ଥିଲେ ଉପେକ୍ଷି ॥
ପୁଣ ଆସିଣ ପଥ କଡ଼ ଇ ।
ବିପ୍ର କାମିନୀ ସାନ୍ତ ଗୋଡ଼ାଇ ॥
ଯାଇ ପ୍ରବେଶ ସନ୍ତାନ ବନ ।
ଅତି ପରିମଳ ଶୋଭାବନ ।
ରାମକୃଷ୍ଣ ଗୋପସୁତ ସଙ୍ଗେ ।
ଗୁଳଇତଳେ ଖେଳ ନାନା ରଙ୍ଗେ ॥
ମନ୍ଦ ଗନ୍ଧ ବାତ ଅନୁକୂଳ ।
କୃଷ୍ଣ ଭେଟିଲେ ମନ୍ଦାରମୂଳ ॥

ମନ୍ଦାର ମୂଳେ ମଦନାଭିରାମଂ ।
ବିମ୍ବାଧରେ ଶୋଭିତ ବେଣୁନାଦଂ ॥
ଗୋଗୋପଗୋପୀଜନ ମଧ୍ୟସଂସ୍ଥଂ ।
ଗୋପଂ ଭଜେ ଗୋକୁଳ ପୂର୍ଣ୍ଣଚନ୍ଦ୍ରଂ ॥

ନବ ଅଭିରାମ କାମଶୋଭା ।
ତନୁ ତ୍ରିଭଙ୍ଗି ଛନ୍ଦରେ ଉଭା ॥
ସର୍ବ ଲାବଣ୍ୟ ଆଶ୍ରିତ ସ୍ଥାନ ।
ତରୁ ଅବଲମ୍ବେ ଶୋଭାବନ ॥
ଗୋପୀ ଗୋଧନ ବେଢ଼ିଣ ରହି ।
ଖଗମୃଗ ଆଦି ସର୍ବ ଗୃହି ॥
ଚକ୍ଷୁ ଚକୋର ସୁଧା ଆନନ୍ଦ ।
ଭଜେ ଗୋକୁଳର ପୂର୍ଣ୍ଣଚନ୍ଦ୍ର ॥
ବିପ୍ର କାମିନୀ ସନ୍ନିଧ୍ୟେ ମିଳା ।
ଦେଖି କାଖୁଁ ଥୋଇଲେ ଅନ୍ନ ସ୍ଥାଳୀ ॥

ରୂପ ଦର୍ଶନ ନେତ୍ର ନିଶ୍ଚଳ ।
ହୃଦେ ବୁଡ଼ିଲେ ଆନନ୍ଦ ଜଳ ॥
ଜନ୍ମ କର୍ମ ଲୀଳା ଶୁଣିକର୍ଣ୍ଣେ ॥
ସୁଖୀ ହେଉଥାନ୍ତି ଦିନେ ଦିନେ ॥
ତାଙ୍କୁ ସାକ୍ଷାତେ ନେତ୍ରେ ଦର୍ଶିଲେ ।
ତୃଷ ଭରେ ଅମିୟ ପିଇଲେ ।
ସ୍ତମ୍ଭୀଭୂତେ ରହିଲେ ବିମ୍ବୋଷ୍ଠୀ ।
ଦରଶନେ ଦେଲେ ଦେବଦୃଷ୍ଟି ॥
ନେତ୍ର-ଅଳି ମୁଖ ପଦ୍ମେ ପଡ଼ି ।
ଲୋଭେ ଆସି ନ ପାରେ ବାହୁଡ଼ି ॥
ଇଚ୍ଛା କରୁଥାନ୍ତି ଯାକୁ ନିତ୍ୟ ।
ବାରେ ଦେଖିବା ତାଙ୍କୁ କେମନ୍ତେ ॥
ହବଯେନ ହରି ପରସନ୍ନ ।
ଅନ୍ନ ମାଗି ଦେଲେ ଦରଶନ ॥
କୃଷ୍ଣ ବିପ୍ରନାରୀଗଣ ଦେଖି ।
ମୁଖ ପ୍ରସନ୍ନ କମଳ-ଆଖି ।
ବିମ୍ବାଧରେ ମୃଦୁ ମୃଦୁ ହସି ।
ବଂଶୀ ହୃଦରେ ଧରିଣ ଭାଷି ॥
ଅମା ଅଇଲ ମୋ ଦୁଃଖ ଶୁଣି ।
ଅନ୍ନ ବ୍ୟଞ୍ଜନକୁ ସଙ୍ଗେ ଘେନି ॥
ପର ଆରତ ନପାର ସହି ।
ବନେ ଆଣିଅଛ ଅନ୍ନ ବହି ॥
ଏହୁ ଉତ୍ତମ ଜନଙ୍କ ରୀତି ।
ଲୋକ ବନ୍ଦନ୍ତି ତୁମ୍ଭର କୀର୍ତ୍ତି ॥
ପର ଉପକାର କରେ ଯେହୁ ।
ସର୍ବଧର୍ମ ପରେ ଶ୍ରେଷ୍ଠ ସେହୁ ॥
କ୍ଷୁଧା ସମୟେ ଅନ୍ନ ଯେ ଦେଇ ।
ପୁଣ୍ୟ ଅଶେଷ ଶେଷତା ନୋହି ॥
ମହା ବଇଶାଖ ଖରବେଳେ ।
ବନେ ଯଥା ତୃଷା ଗୋପବାଳେ ॥
ଏଥି ଦେଲ ତୁମ୍ଭେ ଅନ୍ନ ଦାନ ।
କେହୁ କହିବ ତୁମ୍ଭର ପୁଣ୍ୟ ॥
ତୁମ୍ଭେ ଅଟ ଜଗତଜନନୀ ।
ସ୍ଥିତି ଅଛୁ ତୁମ୍ଭ ଧର୍ମ ଘେନି ॥

ଏଡ଼େ ଦୁର୍ଗମେ ଅମା ଅଇଲ ।
ବ୍ୟଥା ପାଇ କ୍ଷୋଭିତ ନୋହିଲ ॥
ପତିବ୍ରତା ସତୀଗଣେ ସର ।
ମୋହ ପାଇଁ କଲ ଦୂରଗୃର ॥
ପତି ବୋଲ ଭଙ୍ଗି ବନେ ଆସ ।
ମୋତେ ଦେଲ ଆଣି ଷଡ଼ରସ ॥
ପ୍ରତି ତୁଲ୍ୟ କି ଅବା କରିବ ।
ଋଣୀହୋଇ ତୁମ୍ଭର ମୁଁ ଥିବ ॥
ଏହୁ ସତ୍ୟ କଳ୍ପଦ୍ରୁମ ଯେବେ ।
ସର୍ବ ଧର୍ମ ପରାପର ତେବେ ॥
ବିପ୍ର ଧନ ଅରଜିବେ ଦୁଃଖେ ।
ତୁମ୍ଭେ ବିଳସିବ ତାହା ସୁଖେ ॥
ଏବେ ଦେଲତ ମୋହରେ ଅନ୍ନ ।
ବେଗେ ଯାଅଯା ନିଜ ସଦନ ॥
ବିପ୍ରେ କରୁଥିବେ ମନେ ରୋଷ ।
ଦେଖି ହୋଇବେ ତୁମ୍ଭଙ୍କୁ-ତୋଷ ॥
ସେବା କର ବେଗେ ଯାଇ ମାତ ।
ମନେ ଥିବ ମୁଁ କେବଳ ମାତ୍ର ॥
କୃଷ୍ଣ ମୋହନ ବଚନ ଶୁଣି ।
ସ୍ନେହଭରେ ସକଳ ବ୍ରାହ୍ମଣୀ ।
ପାଦ ଅଙ୍ଗୁଳି ଅବନୀ ଘସି ।
ଶୋକଭରେ ହୋଇ ବାଳୀ ଭାଷି ॥
ପୂରେ ଯିବୁଁ କି କାର୍ଯ୍ୟ ଆମ୍ଭର ।
ସେବି ରହିବୁଁ ପାଦେ ତୁମ୍ଭର ॥
ପତି ସୁତ ବାନ୍ଧବଙ୍କୁ ତେଜି ॥
ବନେ ଅଇଲୁଁ ତୁମ୍ଭଙ୍କୁ ଭଜି ॥
ପାଶେ ନରଖି ଦିଅ ମେଲାଣି ।
ଏହି କଥା ଦୁଃଖ ପରମାଣି ॥
କୃଷ୍ଣ ବୋଲନ୍ତି ନୁହଇ ମିତ ।
ଲୋକେ ଆଚରିବେ ତୁମ୍ଭ ଘାତ ॥
ମୋର ବୋଲ ଘେନ ଅମା ଯାଅ ।
ଗତ୍ ଶତେ ଗୁଣେ ସୁଖ ପାଅ ॥
ମନେଥିଲେ ଅଛୁ ତୁମ୍ଭ ପାଶ ।
ତାଓ ତଥିଲେ ହୋଇବ ଦୃଶ୍ୟ ॥

ଆତ୍ମା ନିର୍ମଳ ଦର୍ପଣ ପ୍ରାୟେ
ଯେହ୍ନେ ଯେମନ୍ତେ ସ୍ୱବଇ ପାଏ ॥
ପୀରତି କି ନୁହଇ ମୁଁ ଦୂର ॥
ଯେହ୍ନେ କୁମୁଦକୁ ନିଶାକର ॥
ଏବେ ପୁରକୁ ଚଳକୁଗୋ ଅମା ।
ଆମ୍ଭ ଅପ୍ରାଧ କରିବା କ୍ଷମା ॥
ପୂର୍ଣ୍ଣଆହୁତି ବେଳ ହୋଇଲେ ।
ପୁରେ କର ଉତ୍ସବ ମଙ୍ଗଳେ ॥
ସ୍ୱାମୀଜନଙ୍କୁ ସେବା ସେ କର ।
ଏହୁ ଉଚିତ ଧର୍ମ ତୁମ୍ଭର ॥
କ୍ଷୁଧାବେଳେ ଦେଲ ଅନ୍ନ ଦାନ ।
ଏଣେ ରଖିଲ ସକଳ ପୁଣ୍ୟ ॥
ଏତେ ବାଳକ ପ୍ରାଣ ରଖିଲ ।
ଆମ୍ଭ ଅବସ୍ଥା ବନେ ଦେଖିଲ ॥
ନାନା ଦ୍ରବ୍ୟ ସମ୍ଭାର ଆଣିଲ ।
ଧର୍ମ କରି ଆମ୍ଭଙ୍କୁ କିଣିଲ ॥
ଯହିଁ ଲୋଡ଼ିବ ତହିଁ ମିଳିବୁଁ ।
ଯାହା ବୋଲିବ ତାହା କରିବୁଁ ॥
ଭୃତ୍ୟବତ୍ସଳ ମଧୁର ବାଣୀ ।
ଶୁଣି ପୁରେ ଚଳିଲେ ବ୍ରାହ୍ମଣୀ ॥
ମନ ରଙ୍ଗି ଉନମତ୍ତେ ଯାଇ ।
ହୁଳହୁଳି ଦେଇ ଗୀତ ଗାଇ ॥
ବିପ୍ରଗଣ ନିଜ ନାରୀ ଦେଖି ।
ହେତୁ ପାଇ ମନେ ଉପଲକ୍ଷି ॥
ପୁରାଣରେ ଶୁଣିଛୁଁ ଏମନ୍ତ ।
ବିଷ୍ଣୁ ହୋଇବେ ଗୋକୁଳେ ଜାତ
ନନ୍ଦସୁତ ରାମ କୃଷ୍ଣ ନାମେ ।
ଜାଣୁଁ ଜାଣୁଁ ହେଲୁ ମତି ଭ୍ରମେ ॥
ଯଜ୍ଞଭୋକତା ଅନ୍ନ ମାଗଇ ।
ଆମ୍ଭ ଅଭାଗ୍ୟ କର୍ମ ଭଙ୍ଗାଇ ॥
ଦେବା ନଦେବା ନକହି ଜଣେ ।
ବାହୁଡ଼ିଣ ଗଲେ ଦୁଃଖମନେ ॥
ନାରୀଗଣେ ଶୁଣି ହେତୁ କଲେ ।
ବନେ ଅନ୍ନ ବହି ନେଇ ଦେଲେ ॥
ଶାସ୍ତ୍ର ବାଦ କରି କର୍ମ ଲୋଡ଼ି ।
ଶ୍ରୁତି ସ୍ମୃତି ପୁରାଣ ପଢ଼ି ॥
ଋଷିଗଣଙ୍କୁ ସମ ନୋହିଲୁଁ ।
ଯଜ୍ଞ କର୍ମରେ ଅନ୍ଧ ହୋଇଲୁଁ ॥
ସେହି ନନ୍ଦରାଜା ଧନବଳେ ।
ଯାଗ କରୁଅଛୁଁ ତାର ବୋଲେ ॥
ତାଙ୍କ ପୁତ୍ର କ୍ଷୁଧାଭର ହୋଇ ।
ଅନ୍ନ ମାଗିଲେ ବନେ ନ ପାଇ ॥
ଏବେ ଦେଖିବା ସ୍ଥଳ ହେ ବନେ ।
ଏତେ ଋଷିଗଣ ଆଗମନେ ॥
କୁଳ ବୃଦ୍ଧ ଋଷିରେ ବାହୁଡ଼ି ।
କଂସ ଭୟେ ଲୁଚି ଗୋପେ ବଢ଼ି ॥
ଆମ୍ଭ ସିବାର ଉଚିତ ନୋହି ।
ବ୍ରାହ୍ମଣୀଏତ ଦର୍ଶନ ପାଇ ॥
ଏତେ ଚିନ୍ତି ନିଜ ନାରୀଗଣେ ।
ଶ୍ରେଷ୍ଠ ଗଉରବ ଜଣେ ଜଣେ ॥
ଏମନ୍ତେଣ କୃଷ୍ଣ ଗୋପମେଳେ ।
ଅନ୍ନ ଦେଇ ବ୍ରାହ୍ମଣୀ ଅଇଲେ ॥
ହସି ଗୋପାଳେ ଗୋବନ୍ଦେ କହି ।
ଅନ୍ନ ବ୍ୟଞ୍ଜନ ଆଣିଲେ ବହି ॥
ଠୁଳ ହୋଇଅଛି ଅନ୍ନ-କୂଟ ।
ଭୁଞ୍ଜି ମନଲେ ପୁରାଅ ପେଟ ॥
ଶୁଣି କୁମାରେ ହୋଇ ହରଷ ।
ନେତାଳ ଆଣିଲେ ରାଇ ପଳାଶ ॥
ରାମ କୃଷ୍ଣଙ୍କୁ ବେଢ଼ି ବସିଲେ ।
ଉଠି ପୁଣି କୃଷ୍ଣ ପରଶିଲେ ॥
ବିପ୍ରନାରୀ ଆଣିଥିଲେ ଯେତେ ।
ଶତେଗୁଣ କୃଷ୍ଣ ପରଶନ୍ତେ ॥
ପୁଏ ବୋଲନ୍ତି ହେ ପଦ୍ମମୁଖ ।
ତୁମ୍ଭ ପତ୍ର ଆଗ ବାଢ଼ି ରଖ ।
ଏକାବେଳେ ମନେ ଯେବେ ଭୁଞ୍ଜି ।
ତେବେ ବହୁତ ସୁଖ ଉପୁଜି ॥
ସଖା ବଚନ ଶୁଣି ମାଧବ ।
ସବୁ ବନିଣ୍ଡି ବାଢ଼ି ନିଜ ଠାବ ॥

ପରଶିଲେ ସେ ନିମିଷ ମାତ୍ରେ ।
ପୁଣ ବସିଲେ ଆପଣା ପତ୍ରେ ॥
ନେଜନେଜକାର କରିଣ ଭୁଞ୍ଜିଲେ ।
ହାସ ରସରେ କହ୍ନ ରଞ୍ଜିଲେ ॥
ଇଚ୍ଛା ସୁଖେ ଭୋଜନକୁ ପାଇ ।
ଅମୃତକୁ ନିନ୍ଦାକଲେ ଖାଇ ॥
ଭୋଜନରେ ଏକ ସମାଗର ।
ନାହିଁ ସାନ ବଡ଼ କୁଳାଗର ॥
ଦେବେ ଦେଖନ୍ତି ଭୋଜନ ଲୀଳା ।
ପଞ୍ଚ ଭୋକତା ବାଳକ ମେଳା ॥
ଭୁଞ୍ଜି ହୋଇଲେ ସକଳେ ତୋଷ ।
ବନଜୀବେ ଭୁଞ୍ଜି ଅବଶେଷ ॥
ବ୍ରହ୍ମା ଶଙ୍କର ମାଗିବେ କାହିଁ ।
ସେହି ବନଜୀବେ ତାହା ଖାଇ ॥
ଆଚମନ କଲ ନଦୀ ଜଳେ ।
ମୁଖବାସ ଯାହା ଆଣିଥିଲେ ॥
ଭୁଞ୍ଜି ଉଦର କରେ ଆଉଁସି ।
ତରୁତଳେ ଆସନରେ ବସି ॥
ମନ୍ଦ ଗନ୍ଧ ସୁଶୀତଳ ବାଏ ।
ସୁଖୀ ହୋଇଲେ ଗୋପାଳ ପୁଏ ॥
ରାମକୃଷ୍ଣଙ୍କୁ ପ୍ରଶଂସି କହେ ।
ବହୁ ଧନକୁ ଏ ମନ ରହେ ॥
ବନେ ଅମୃତ ଭୋଜନ ଦିଅ ।
ସର୍ବପୁରେ ତୁମ୍ଭେ ପୂଜା ପାଅ ॥
ତୃଣ ଜଳ ଗାବଙ୍କୁ ଖୁଆଇ ।
ବନେ ଏମନ୍ତ ଦିନ ପୁହାଇ ॥

ସନ୍ଧ୍ୟା ସମୟେ ଗୋପେ ବାହୁଡ଼ି ।
ଚଳେ ଗୋଧନ ଗୋପଞ୍ଚ ମାଡ଼ି ॥
ପୁରେ ପ୍ରବେଶ କରନ୍ତି ମନେ ।
ନିଜ ମତେ ଯେ ଯାହା ସଦନେ ॥
ସ୍ନାନ ସୁବେଶି ଭୋଜନ କଲେ ।
ଗାବ ଧେନୁ ସମ୍ଭାଳି ଗୁହାଳେ ॥
ପୂର୍ବ ରଜନୀରେ ସଖା ନିସ୍ତି ।
ଯେଝା ଅନୁରୂପେ କଥା ଭାଷି ॥
ଅନ୍ନ ମାଗି ଭୁଞ୍ଜିବା ଚରିତ ।
ନନ୍ଦ ଆଦି ଶୁଣି ତୋଷ ଚିତ୍ତ ॥
ନିଦ୍ରା ଆଳସ୍ୟରେ ରାମହରି ।
ନିଜ ଜନନୀ ନିଏ ହକାରି ॥
ଦୁଧସର ପୁଣି ସେ ଖୁଆଇ ।
ଦିବ୍ୟ ପଲଙ୍କେ ନେଇ ଶୁଆଇ ॥
ଦାସ ଚରଣେ ସେବା କରନ୍ତି ।
ଜାନୁ ଉପରେ ପୟର ଧରନ୍ତି ॥
ଧୀର ଧୀର କରିଣ ମଞ୍ଚାଳ ।
ଦଶ ଶତଦଳ ପଦେ ଅଳି ॥
ଦାଶରଥି ଦାସ ନିତ୍ୟ ବନ୍ଦେ ।
ବ୍ରଜ ବିହାର ଅଷ୍ଟମ ଛନ୍ଦେ ॥
ପୂର୍ଣ୍ଣ ହୋଇଲେ ଦ୍ୱିତୀୟ ଭାଗ ।
ସାଧୁଜନଙ୍କର ଅନୁରାଗ ।
ବେନି ବିଭାଗ ସମ୍ପୂର୍ଣ୍ଣ ହେଲେ ।
ହୃଦେ ହରି ଯାହା ଆଜ୍ଞା ଦେଲେ ॥
ତାହା କଲି ପୁସ୍ତକେ ଲେଖନ ।
ଦାଶରଥିର ଦୋଷ ନ ଘେନ ॥

ଇତି । ଶ୍ରୀ ଅଷ୍ଟମ ବୋଲ ସମ୍ପୂର୍ଣ୍ଣ ।

—ଃ୦ଃ—

## ନବମ ବୋଲି

ବୃତ୍ତ କନ୍ଦୁଳା ରାଗେଣ ଗୀୟତେ ।

ଶ୍ରୀ ବୃନ୍ଦାବନ ଗୋବର୍ଦ୍ଧନ ।
ଗୋବିନ୍ଦ ସୁଖ ବିବର୍ଦ୍ଧନ ॥
ସକଳ ଗିରିବରେ ରାଜା ।
କୃଷ୍ଣ ଯାହାକୁ କଲେ ପୂଜା ॥
ଦ୍ୱାଦଶ ବନ ଆବରଣ ।
ଗୋକୁଳ ଯାହାର ଶରଣ ॥
ଏ ଘୋର ବରଷା ତାରଣ ।
ଜନଙ୍କ ଜୀବନ ତାରଣ ॥
ବାସବ ଗରବ ଗଞ୍ଜନ ।
ଗୋପର ଆରତ ଭଞ୍ଜନ ॥
ସୁଶୀଳ ଶ୍ରୀକୃଷ୍ଣ ଧାରଣ ।
ଗୋକୁଳ ମଙ୍ଗଳ କାରଣ ॥
ଶ୍ରୀକୁଣ୍ଡ ଶ୍ୟାମକୁଣ୍ଡ ବେନି ।
ନୟନ ଶୋଭା ପରମାଣି ॥
ଥୋଉ ହସ୍ତ ଏ ଗିରିତଟ ।
ଯମୁନା ସରିତରେ ଭେଟ ॥
ଲୋହିତଶିଳା କିବା ଧରି ।
ଜଳ କମଳ କିବା ତୋଳି ॥
ଦନ୍ତ ପୁଷ୍ପଳ ଗିରି ଶୃଙ୍ଗେ ।
ସିନ୍ଦୂର ଶିଳା ଭାର ସଙ୍ଗେ ॥
ଉଚ୍ଚ ଅଟ୍ଟାଳ କୁମ୍ଭସ୍ଥଳେ ।
ପଳାଶ ଦଳ କର୍ଣ୍ଣଗଳେ ॥
ତରୁ ଲତିକା ରୋମାବଳି ।
ପୁଷ୍ପ ପରାଗ ପଦଧୂଳି ॥
କୃଷ୍ଣ ମଧୁପ ସଦା ରଙ୍ଗେ ।
ପାଇ ପଦ୍ମିନୀ ମୁଖ ଚୁମ୍ବେ ॥
କୋଟର ଗିରି ଗଜତୁଣ୍ଡ ।
ଯହିଁ ସକଳ ହୋଇ ରୁଣ୍ଡ ॥
ମୃଗ ବିହଙ୍ଗ କରେ ନାଦ ।
ନିଶ୍ଚଳ ଅବନୀରେ ପାଦ ॥

କୁସୁମ ଗୁମ୍ଫରେ ମଣ୍ଡିତ ।
ପକ୍ଷୀ ଚପଳେ ପୁଣ୍ୟବନ୍ତ ॥
ଘଣ୍ଟିକ ଲମ୍ବେ ବେନି ପାଶେ ।
ଅରୁଣାମ୍ବରେ ଶୋଭା ଦିଶେ ॥
ପୃଷ୍ଠରେ ମାଧବୀ ମଣ୍ଡପ ।
କୁସୁମ ତଳ୍ପ ଚନ୍ଦ୍ରାତପ ॥
କେଶର କୁସୁମ ବିତନ୍ଦ ।
ଜାଣି କନକ ଦଣ୍ଡଛନ୍ଦ ॥
ଲୀଳାରେ ବ୍ରଜଇନ୍ଦ୍ର ବିଜେ ।
କରେ ମୁରଲୀ ବଜେ ସାଜେ ॥
ନାଦ ଅବଳା ବଳୀ ଗଞ୍ଜେ ।
ବରଷା ଋତୁ ସବେ ଭଜେ ॥
ମାଦ୍ଦଳ ପଗଡ଼ଏ ବେନି ।
ବଟୁ ସୁବଳ ସେବା ଯେନି ॥
ବସନ୍ତଋତୁ ଯେବେ ହୁଏ ।
ଗିରି ମକର ଶୋଭା ପ୍ରାପ୍ତେ ॥
ମଦନ ଗୋପାଳ ଏ ବିଜେ ।
ମାନିନୀ ମାନ ତେଜି ଭଜେ ॥
ସଦା ନବୀନ ତରୁଲତା ।
ଫଳ କୁସୁମେ ହୁଏ ନତା ॥
କୁଞ୍ଜ କୁଟିର ଲୀଳା ପୀଠ ।
ଶକ୍କଣ ତଡ଼ସମ ବେଢ଼ ॥
ଶୀତ ମନ୍ଦରେ ଗନ୍ଧ ବହେ ।
ରାଧା ମାଧବ ଯହିଁ ରହେ ॥
ଏମନ୍ତେ ସେଇଁ ଗୋବର୍ଦ୍ଧନ ।
ନିତେ ମୁଁ କରଇ ବନ୍ଦନ ॥
ଗୀତେ ମଙ୍ଗଳ ଆଚରଣ ।
ବ୍ରଜବିହାର ସୁମରଣ ॥
ଶ୍ରୀ ରାଧାଗୋବିନ୍ଦ ଚରିତ ।
ଅଷ୍ଟମ ବୋଲି ସମାପତ ॥

ଏବେ ନବମ ବୋଲ ଲିହ୍ୱ ।
ସେ ଗୋବର୍ଦ୍ଧନ ହୃଦେ କହ୍ୱ ॥
ଶ୍ରୀ ଭାଗବତ ସୁଖଚ୍ଛନ୍ଦ ॥
ନବମ ଅକ୍ଷରେ ଏ ପାଦ ॥
ବରଷା ଋତୁର ବର୍ଣ୍ଣନ ।
ଗାବ ଚରାଇ ଗୋବର୍ଦ୍ଧନ ॥
ରାଧା ପ୍ରକଟେ ଗିରିଶିଳା ।
କୃଷ୍ଣ ଅଙ୍ଗରେ କରି ଲୀଳା ॥
ରାମ ଶ୍ରୀକୃଷ୍ଣ ସ୍ୱନକ୍ଷତ୍ର ।
ଉତ୍ସବ ରାଧା ଜନ୍ମଜାତ ॥
ଗୋବିନ୍ଦ ଗୋକୁଳ ବଚନ ।
ପ୍ରକଟେ ଗିରି ଗୋବର୍ଦ୍ଧନ ॥
ବାସବ ଯଜ୍ଞ ଭଗ୍ନ କୋପେ ।
ଘୋର ବରଷା ବାତ କୋପେ ॥
ଗୋକୁଳ ଦୁଃଖ ଦେଖି ହରି ।
ଛତ୍ର ଆକାରେ ଗିରି ଧରି ॥
ସପତ ଦିନ ସେ ବରଷି ।
ଡରେ ଶରଣ ଇନ୍ଦ୍ର ପଶି ॥
ସପ୍ତ ସମୁଦ୍ର ସାତ ଦିନ ।
ବରଷି ସେ ସୁର ରାଜନ ॥
ସୁରଭୀ ସଙ୍ଗେ ବ୍ରଜଧାରୀ ।
ଗୋବିନ୍ଦ ଅଭିଷେକ କରି ॥
ବରୁଣ ହରିନେଲେ ନନ୍ଦ ।
ତହିଁରୁ ଆଣିଲେ ଗୋବିନ୍ଦ ॥
ଅରିଷ୍ଟି ନାମେ ଷଣ୍ଢ ସୁର ।
ନାଶ ହୋଇଲା ଗୋପପୁର ॥
ରାଜା ପରଜା ଖେଳ କରି ।
ଶ୍ରୀହରି ବ୍ୟୋମାସୁର ମାରି ॥
ଶ୍ରୀ ଭାଗବତ ରାଜମାସ ।
ବିସ୍ତାର ହୋଇଛୁ ଜଗତ ।
ବକତା ସୁଜନ ସୁମନେ ।
ଶ୍ରୋତା ଅମୃତ ପାନ ଘେନେ ॥
ନଳ କୁବେର କରଯୋଡ଼ି ।
ନାରଦ ମୁନି ପାଦେ ପଡ଼ି ॥
ଭାବେଣ ଲୋତକ ବହଇ ।
ଉଠିଣ ପୁଲକେ କହଇ ॥
ହେ ମୁନି ଗ୍ରୀଷମ ଅନ୍ତରେ ।
ବିକଳେ ବରଷା ଭିତରେ ॥
ଛତ୍ର ପ ଦୁକା ବିନୁ ଦୁଃଖେ ।
ଚିନ୍ତ କେମନ୍ତେ ଗାବ ରଖେ ॥
ସନନ୍ଦେ କହେ ମୁନିବର ।
ଶୁଣ ହେ କୁବେର କୁମର ॥
ଋତୁ ଋତୁରେ ଲୀଳା ଆନ ।
ଶୁଣି ଶରଧା ମୋର ମନ ॥
ଏମନ୍ତେ ଗ୍ରୀଷମର ଶେଷ ।
ନବ ବରଷା ପରବେଶ ॥
ଗଗନେ ଘନ ଉଦେ ହୋଇ ।
ତପନ ଶଶୀଙ୍କି ଘୋଡ଼ାଇ ॥
ନ ଦିଶେ ନକ୍ଷତ୍ର ନିକର ।
ରଜନୀ ଘୋର ଅନ୍ଧକାର ॥
ମେଘ ଗର୍ଜନ ଘଡ଼ଘଡ଼ ।
ନିବିଡ଼େ ଜଳଧାରା ପଡ଼ ॥
ବୃଷ୍ଟିରେ ଦାବାନଳ ଲିଭ ।
ପ୍ରକାଶି ଜନ୍ତୁ ଜନ୍ତୁ ଛବି ॥
ମଉନ ଗିରି ଦ୍ୱିଜକୁଳ ।
ପାଷାଣ୍ଡ ଭେକ କୋଳାହଳ ॥
ନିଗମ ବଚନ ନିବର୍ତ୍ତି ।
ବଉଦେ ଯେସନେ ପ୍ରବର୍ତ୍ତି ॥
ତୃଣ ଅଙ୍କୁର ପଥ ରୁନ୍ଧି ।
ପଥିକଜନ ହୋନ୍ତି ଧନ୍ଦ ॥
ବ୍ରାହ୍ମଣେ ବେଦମାର୍ଗ ଛାଡ଼ି ।
ଯେସନ୍ତେ ଅସତ୍ ପଥ ମାଡ଼ି ॥
ନିର୍ମଳ ଜଳ ହୁଏ ଗୋଳା ।
ସୁଜନ କୁଜନରେ ମେଳା ॥
ଝଟକେ ଝଟକ ବିଜୁଳି ।
କ୍ଷଣେ ଉଦୟ ଅଭ୍ରାବଳୀ ॥
ସଂସାର ମିଥ୍ୟା ଏ ଜାଣଇ ।
ଚିର ନିଶ୍ଚଳ କେହି ନାହିଁ ॥

ରେଣୁ ଜଗତେ ବ୍ୟାପିଥିଲେ ।
ଅବନୀ ସଙ୍ଗରେ ମିଶିଲେ ॥
ଜୀବ ଯେସନେ ପ୍ରଳୟରେ ।
ମିଶନ୍ତି ବିରାଟ ଦେହରେ ॥
ତାପେ ତାପିତ ଦେଖି ମହୀ ।
ଶୀତଳ ଜଳ ମେଘ ଦେଇ ॥
ଅବନୀ ପାଇଣ ଜୀବନ ।
ଗଗନେ ଦେଖି ଶ୍ୟାମଘନ ॥
ତଡ଼ିତ ପୀତପଟ ଜାଣି ।
ମୁକୁତା ମାଳ ବକ ଶ୍ରେଣୀ ॥
ତଡ଼ିତ ଏ ଶକ୍ର କୋଦଣ୍ଡ ।
କିରୀଟ ମୁକୁଟ ଶିଖଣ୍ଡ ॥
ମେଘ ଗମ୍ଭୀର ବେଣୁନାଦ ।
ବାତ ଶୀତଳ ଆହ୍ଲାଦ ॥
ଭକ୍ତ-ଚାତକ ତୋଷକର ।
ସକଳ ଲୋକ ଦୁଃଖ ହର ॥
ଇନ୍ଦ୍ର ଗୋପ ଏ ମହୀରାଗେ ।
ଏ ରୂପ ଚାହିଁ ଅନୁରାଗେ ॥
ଅଷ୍ଟ ସାତ୍ତ୍ୱିକ୍ୟ ଭାବେ ମହୀ ।
ଲୋତକ ବଢ଼ି ନଦୀ ବହି ॥
ସ୍ୱରଭଙ୍ଗ ଏ ଗଦ ଗଦ ।
ପ୍ରବାହ ଝର ଝର ସ୍ୱେଦ ॥
ତୃଣ କୁଳରେ ପୁଲକିତ ।
ଅଚଳ ରୂପରେ ସ୍ତମ୍ଭିତ ॥
କମ୍ପିତ ବାତେ ତରୁଦ୍ରୁମ ।
ଲତାବଲୀରେ ବଇବର୍ଣ୍ଣ ।
ମହା ବରଷା ଜଳ ପୂର ।
ପ୍ରଳୟ ଜାଣି ବସୁନ୍ଧରା ॥
କୃଷ୍ଣ ସ୍ୱରୂପ ଘନ ଦେଖେ ।
ମହୀ ସାନନ୍ଦ ଫଳ ମୁଖେ ॥
ବିବିଧ କୁସୁମ ଫୁଟିଲେ ।
ସୁଗନ୍ଧେ ଦିଗ ଚହଟିଲେ ॥
ମାଳତୀ ସୁଜାତି ଯୂଥିକା ।
କଦମ୍ବ ନେପାଳୀ ମଲ୍ଲିକା ॥

କେତକୀ ଚମ୍ପକ ବକୁଳେ ।
କୁମୁଦ କୋକନଦ ଜଳେ ॥
ମଧୁପକୁଳ ମଧୁ ତୃପ୍ତେ ।
କାମୀ କାମିନୀ ରସେ ରମେ ॥
ଜୀବନ ପାଇଣ ଅନଙ୍ଗ ।
ମତ୍ତୁଣ ଅଛି ସବ ଅଙ୍ଗ ॥
ଏକାଳେ ମଦନ ଗୋପାଳ ।
ନ ପାଇ ରାଧା ସଙ୍ଗ ମେଳ ॥
ମହୀ କର୍ଦ୍ଦନେ ତୃଷା ଯେଣୁ ।
ବନ ବିହାର ଛାଡ଼େ ତେଣୁ ॥
ନଣନ୍ଦ ଶାଶୁଙ୍କ ଆକଟ ।
ଜଗି ନ ପାଇ କୃଷ୍ଣ ଭେଟ ॥
ରାଧିକା ଦର୍ଶନ ଲାଳସେ ।
ଗାଈ ଚରାଇ ଆସି ପାଶେ ।
ଯତନେ ଉଚେ ରହି ଚାହିଁ ।
ଅନୁବରତେ ଭାବେ ରାଈ ॥
ଗାଈ ଚରାଇ ଗୋବର୍ଦ୍ଧନେ ।
ସୁଖ ଲଭନ୍ତି ସ୍ଥାନେ ସ୍ଥାନେ ॥
ତରୁ ଲତିକା ଶିଳାକୁଳ ।
ଆବୋରି ଦିଶନ୍ତି ଚଟୁଳ ॥
ନବଡ଼ ପଲ୍ଲବ ଛାଏଣି ।
ପୁର ମଣ୍ଡପ ପ୍ରାୟ ଜାଣି ॥
ବିବିଧ କୁସୁମେ ମଣ୍ଡିତ ।
ପ୍ରବାଳମାଳ ଅଖଣ୍ଡିତ ।
ଭେଦଇ ନାହିଁ ତହିଁ ଜଳ ।
ମୂଳ ମଞ୍ଜୁଳ ପରିମଳ ॥
କାହିଁର ତଡ଼ସମ ଶିଳା ।
ତଉକ ଖଟ ଯେ ମୁଚୁଳା ॥
ପୀଠ ଆସନ ମେଢ଼ ପୀଡ ।
ଆଉଜା ଅପସର ବାଡ଼ ॥
ତରୁଲତାରେ ବେଢ଼ି ତାଙ୍କେ ।
ପଥ ଗହଳ ବନଯାକେ ॥
ବରଷାବେଳେ ତହିଁ ବସି ।
ଖେଳ ଖେଳନ୍ତି ସୁଖେ ହସି ॥

ବଟ ପଳାଶ ତରୁତଳେ ।
ଗାବ ରଖନ୍ତି ଏକମେଳେ ॥
ପ୍ରିୟା ଛଟକ ଶୋଭା ଶୂଳ ।
ମୁଖ ହଲଇ ନୁହେ ବୋଲ ॥
ଦୋହଲେ ମକର କୁଣ୍ଡଳ ।
ଝଟକେ ଏଗଣ୍ଡ ମଣ୍ଡଳ ॥
ଜାମକ ଯାକୁ ଚମକାଇ ।
ଚନ୍ଦ୍ର ହାସକୁ ଝମକାଇ ॥
ଜାଣି ସେ ମର୍ମ ସଖାମାନେ ॥
କହନ୍ତି ଇଙ୍ଗିତ ବଚନେ ॥
ଦେଖ ସୁନାଖି ଧାଡ଼ ଧାଡ଼ ।
ହେମ କୁସୁମେ ହୁଏ ମଣ୍ଡି ॥
ଭୃଙ୍ଗ ଏହାକୁ ଦେଖି ଲେଛୁ ।
ଏକା ପଦ୍ମିନୀ ସଙ୍ଗ ଇଛୁ ॥
ଭୁବନ ମଧ୍ୟେ ପଦ୍ମ ଥାଇ ।
ଏଥି ଲେଉଟଲେ କାହିଁ ପାଇ ॥
ବୋଲନ୍ତି ସେ ମଧୁମଙ୍ଗଳ ।
କୁଟିଳ ମଧୁପ ବାତୁଳ ॥
ଯହିଁ ଦେଖଇ ପୁଷ୍ପବନ୍ତି ।
ତହିଁ ରମଣେ ବଳେ ମତି ॥
ଲେଛଇ ଚମ୍ପକ କେତକୀ ।
ବାଛଇ ବାସଙ୍ଗ ବାର୍ତ୍ତିକ ॥
ଶୁଣି ସୁବଳ ବୋଲେ ଛଳ ।
ଦକ୍ଷ ନାୟକ ଏହୁ ଅଳ ॥
ସର୍ବ ସମାନ ଭାବେ ମତି ।
ସକଳ ଫୁଲ କୂଳବନ୍ତି ॥
ଯେ ଯାହା ରସ ସେନ ଚଳେ ।
ନଶି ରହଇ ପଦ୍ମକୋଳେ ॥
ଏମନ୍ତ ନ୍ୟେହୁ ସେ ଲଳନା ।
ସ୍ୱଚ୍ଛନ୍ଦା ଭ୍ରମର ଭାବନା ॥
ସୁଦାମ କହେ ସ୍ନେହ ମୁଖେ ।
ଲବଣୀ ବନଗିରି ଶିଖେ ॥
ସୁଭାବେ ପଦ୍ମ ପ୍ରକାଶିବେ ।
ମଧୁପ ମନକୁ ଚୋଷିବେ ॥

ଇଷିତେ କହେ ବସୁଦାମ ।
ଦେଖ ଏ ପ୍ରକାଶ କୁସୁମ ॥
ମଧୁ ଯାଚନ୍ତି ମତ୍ତଭରେ ।
ଏ ଭୃଙ୍ଗ ନାହିଁ ନାହିଁ କରେ ॥
କୃଷ୍ଣ କାମିନୀ ଅବଲୋକେ ।
ଉଜ୍ଜ୍ୱଳ ଛଳ କଉତୁକେ ॥
ଦେଖି ବଦନ ପୂର୍ଣ୍ଣଚନ୍ଦ୍ର ।
ଉଛୁଳେ ଲାବଣ୍ୟ-ସମୁଦ୍ର ॥
କମଳ ବଦନ ଚଳଇ ।
ଗଣ୍ଡରେ ମକର ଖେଳଇ ॥
ମନ୍ଥେ ମନ୍ଥନ ହୃଦସ୍ଥରେ ।
ଅମୃତ ଜାତ ହାସ ଧରେ ॥
ଶ୍ରୀକୃଷ୍ଣ ପ୍ରୀତି ଅନୁସାରେ ।
ଗନ୍ଧର୍ବ ରସକୁ ପ୍ରସାରେ ॥
ନେତ୍ର-ଖଞ୍ଜନ ଦେଖି ଉଡ଼େ ।
କୃଷ୍ଣ କମଳ ମୁଖେ ପଡ଼େ ॥
ପ୍ରିୟଭ୍ରମଣୀ ଭାବ ଇଚ୍ଛି ।
ଜାଣି ନୁହଇ ମୁଖ ବାଞ୍ଛି ॥
ହେଲେହେଁ ବଡ଼ ରାଜଯୋଗ ।
ଏଥେ ନୁହେ ସେ ଅନୁରାଗ ॥
କୃଷ୍ଣ ପ୍ରସନ୍ନ ମୁଖ ଦେଖି ।
କଙ୍କିଣୀ କହେ ଉପଲକ୍ଷି ॥
ଗୋକୁଳଚନ୍ଦ୍ର ଗିରି ଶିଖେ ।
ଉଦେ ହୁଅନ୍ତେ ସର୍ବେ ଦେଖେ ॥
କାମାର୍ତ୍ତେ ମୃଗାକ୍ଷୀର ମୂର୍ତ୍ତି ।
ଅମୃତ ଲୋଭରେ ମିଶନ୍ତି ।
ହଲଇ ମୁଖ ଚନ୍ଦ୍ର ବାରେ ।
ଏ ଦୋଷେ ମୃଗ ଲୋଭ କରେ ॥
ଗୋକୁଳ ସଖା ଗୁଣ ଗୁଣି ।
ଗୋ ବନ୍ଦ ଭାବ ପରମାଣି ॥
ଦେଖ ଏ ଚନ୍ଦ୍ରମା ବଦନ ।
ସକଳ ଗ୍ରହଙ୍କ ସଦନ ॥
ଜ୍ୟେଷ୍ଠା ଧନିଷ୍ଠା ଚିତ୍ରାଆଦ୍ରା ।
ରାଧା ବିଶାଖା ଅନୁରାଧା ॥

ଏ ମୁଖଚନ୍ଦ୍ର ଗୁହଳବାରୁ ।
ଚଳେ କୁଣ୍ଡଳ ବେନି ଗୁରୁ ॥
ଏଣୁ ଅମୃତ ହାସ ବୃଷ୍ଟି ।
ପିବେ ଚାତକ ଏକ ଦୃଷ୍ଟି ॥
ଏକାଳେ ମଉନ ଆମ୍ବର ।
ହୋଇବା ଉଚିତ ବେଭାର ॥
ଏ ମର୍ମ ଅଷ୍ଟ ସଖା ଆଦି ।
ଛଳନ୍ତେ କୃଷ୍ଣ ମନ ଭେଦି ॥
ହସି ମିତ୍ରକୁ ଆଲିଙ୍ଗନ ।
ସୁଖେ ବିହରି ଗୋବର୍ଦ୍ଧନ ॥
ସୁରଭି ପେଟ ପୂରାଇଲେ ।
ନବୀନ ତୃଣ ଚରାଇଲେ ॥
ପର୍ବତୁ ଓହ୍ଲାଇ ଦିନାନ୍ତେ ।
ପୁରେ ପ୍ରବେଶ ନନ୍ଦମତେ ॥
ରାଧିକା ପୁର ଅଟ୍ଟାଳିରେ ।
କୃଷ୍ଣ ଦର୍ଶନ ଲାଳସରେ ॥
କଥା ପ୍ରସ୍ତାବେ ସଖୀ ସଙ୍ଗେ ।
କହନ୍ତି କୃଷ୍ଣ ଅନୁରାଗେ ॥
ଦେଖ ନିବିଡ଼ ଜଳଧର ।
ଦିଗ ଘୋଟିଣ ଅନ୍ଧକାର ॥
ବିଦ୍ୟୁଝଟକେ ଘଡ଼ଘଡ଼ ।
ଚମକ ବଜ୍ର ସୂଚପଡ଼ ॥
ନ ଦିଶେ ରବି ଶଶୀତାରା ।
ଅବିଚ୍ଛିନ୍ନରେ ଜଳଧାରା ॥
ଏଥେ ଗୋପାଳ ଗାଈ ରଖେ ।
ବନ କନ୍ଦରେ ଅତି ଦୁଃଖେ ॥
ଭିଜନ୍ତି ବସନ ଜର ଜର ।
ଶୀତେ ହୁଅନ୍ତି ଥର ଥର ॥
ସଙ୍କୋଚି ଉର ବାହୁ ଛନ୍ଦେ ।
ନଉଡ଼ି ବସିଛନ୍ତି କନ୍ଦେ ॥
ଛାଡ଼ଏ ସେ ଯାହା ବଡ଼ାଇ ।
ଗାବ ନ ପାରନ୍ତି ଅଡ଼ାଇ ॥
ଏଥି କେମନ୍ତେ ଏ ନାଗର ।
ବିହରେ ବାଳକ ସଙ୍ଗର ।
ସଦନ ସୁଖ ଭୋଗ ଲେଡ୍ଡି ।
ବରଷାକାଳେ ବନେ ବଞ୍ଚି ॥
ଶୁଣି ବୋଲନ୍ତି କୁନ୍ଦଲତା ।
ତୁମ୍ଭ ଭଜନେ ବଳବନ୍ତା ॥
ବରଷା ଋତୁ ସୁଖ କରେ ।
ବିହରେ ଗୋବର୍ଦ୍ଧନ ଘରେ ॥
ସେ ଗିରି ଅତି ମନୋହର ।
ସମ ହୋଇବ କେଉଁ ପୁର ॥
ପଲ୍ଲବ କୁଟି ତଳେ ରହି ।
ସୁଖେଣ ସୁରଭି ଚରାଇ ॥
ଦେଖି ଶରଧା ଯେବେ ମନେ ।
ଚାଲ ସେ ଯିବା ଗୋବର୍ଦ୍ଧନେ ॥
ତୁମ୍ଭର ସଙ୍ଗେ ରଙ୍ଗ ଇଚ୍ଛି ।
ବରଷା ଗୋବର୍ଦ୍ଧନେ ବଞ୍ଚି ॥
ବିଚ୍ଛେଦ ବିରହ କାତରେ ।
ନରହେ ନଗର ଭିତରେ ॥
ତପୀଙ୍କ ପ୍ରାୟେ ଦୁଃଖ ସହେ ।
ତୁମ୍ଭର ବିନୁ ସୁଖ ନୁହେ ॥
ଶ୍ରୀମତୀ ଶୁଣେ ଇଷିତରେ ।
ହୁଅର ପଡ଼ିଲ ମନରେ ॥
କହୁଛ ଯେବେ ତାଙ୍କ ହିତେ ।
ବାରେକ ଯାଅ ସେ ପର୍ବତେ ॥
ହୁଅର ସଙ୍ଗେ ଲୀଳା କରି ।
ବିରହି ତାଙ୍କ ଦୁଃଖ ହରି ॥
ଏହି ସମୟେ ପୌର୍ଣ୍ଣମାସୀ ।
ପ୍ରବେଶ ଯାବଟରେ ଆସି ॥
କଲ୍ୟାଣ କରି ପୁରେ ଦେବୀ ।
ଦେଖି ଜଟିଳା ପାଦେ ସେବି ॥
କହି ସକଳ ସର୍ବ ଶୁଭ ।
ଗୋଧନ ବୃଦ୍ଧି କ୍ଷୀର ଲାଭ ॥
ଜଟିଳା କହେ ବୃନ୍ଦାବନୀ ।
ଫଳ ମୋ ଗଲେ ଯେଉଁ ଦିନ ।
ସେ ଦିନୁ ଦୁଧ ନ ହେ ପାଇ ।
ଘୃତ ଭେଟହିଁ ଏବେ ନାହିଁ ॥

ଏମନେ ନର୍ତ୍ତନ ହୋଇଲ ।
ସଞ୍ଚିତ ଧନ ମୁଁ ବ୍ୟୟିଲ ॥
ଜଟିଳା ବଚନେ ହସାସି ।
ତୋଷେ କହନ୍ତି ପୌର୍ଣ୍ଣମାସୀ ॥
କହିବା ମେନ ଏକ ଦୀକ୍ଷା ।
ହେବ ପକ୍ଷ ବର୍ଦ୍ଧନ ବକ୍ଷା ॥
ଏ ଚତୁର୍ମାସ ଗୁରୁବାର ।
ଶ୍ରୀ ନାରାୟଣ ପୂଜାକର ॥
ଏଣେ ହୋଇବ ସର୍ବ ସିଦ୍ଧି ।
ନିଶ୍ଚଳେ ରହିବ ପ୍ରସିଦ୍ଧି ॥
ଏହି ଯେ ଗୋବର୍ଦ୍ଧନ ଗିରି ।
ଗୁପତେ ଶୀଳା ରୂପ ଧରି ॥
ଅଛନ୍ତି ଲକ୍ଷ୍ମୀ ନାରାୟଣ ।
ସେବିଲେ ବ୍ରତପରାୟଣ ॥
ପୂଜା କରାଅ ବଧୂ ପେଷି ।
ସେ ଦେବରାଜ ହେବେ ତୋଷି ॥
ଏ ନାନ୍ଦୀମୁଖୀ ସଙ୍ଗେ ଥିବେ ।
ବିଧାନେ ପୂଜା କରାଇବେ ॥
ଶୁଣି ଜଟିଳା ତୋଷଚିତ୍ତେ ।
ନାନ୍ଦୀଙ୍କି ଘେନଣ ସଙ୍ଗତେ ॥
ମିଳିଲେ ରାଈ ଛନ୍ତି ଯହିଁ ।
ପୌର୍ଣ୍ଣମାସୀଙ୍କ ଆଜ୍ଞା କହି ॥
ଏ ଚତୁର୍ମାସ ଗୁରୁବାର ।
ସିଦ୍ଧ ଶୀଳାକୁ ପୂଜାକର ॥
ଲଳିତା ଆଦି ସଙ୍ଗମେଳେ ।
ବିଜୟେ ଗୋବର୍ଦ୍ଧନ ସ୍ଥଳେ ॥
ଏ ନାନ୍ଦୀମୁଖୀ ସଙ୍ଗେ ଥିବେ ।
ଯାଇଁ ହରିଙ୍କୁ ଚଢ଼ାଇବେ ॥
ଆଳସ ନ କରିବ ମାଏ ।
ଯିବ ଏ ଗୋବର୍ଦ୍ଧନ ଯାଏ ॥
ହରିଙ୍କ ବ୍ରତ ଗୁରୁବାର ।
ଗନ୍ଧ ସୁବାସ ଅଳଙ୍କାର ॥
ଏଣେ ହୁଅଇ ସର୍ବ ସିଦ୍ଧି ।
ବଧୂକୁ କହନ୍ତି ପ୍ରବୋଧି ॥
ରାଈ ବୋଲନ୍ତି ଏହା ଶୁଣି ।
ଏଣେ ତ ପୂଜେଁ ହରମଣି ॥
ଏ ଘୋର ବରଷା କାଳରେ ॥
ପୂଜିବା ଶ୍ରୀଗୁରୁବାରରେ ॥
ଖଣ୍ଡ କଣ୍ଟକ ଶୀଳା ଲାଗି ।
ଉଠାଣି ଉଠି ଦୁଃଖଭାଗୀ ॥
କେମନ୍ତେ ପାରିବଇଁ ଯାଇ ।
ହିଣ୍ଡ ହୋଇଲେ ଫଳ ନାହିଁ ॥
ଏ ଗୋବର୍ଦ୍ଧନ ସିଦ୍ଧଶୀଳା ।
ପୂଜା କରନ୍ତୁ ଏ କୁଟିଳା ॥
ଯାଇ ଆସି ମୁଁ ନ ପାରିବି ।
ଦୂଷଣ ବାଦୁଁ ନିସ୍ତରିବି ॥
ଜଟିଳା ବୋଲନ୍ତି ଗୋ ମାଆ ।
ମନେ କରୁଛ କମ୍ପା ତାହା ॥
ସେହୁତ ପରର ଯୁବତୀ ।
ଯେ ପୂଜେ ତାହାର ସମ୍ପତ୍ତି ।
ହୋଇବ ଧନ ପୁତ୍ରବତୀ !
ହରସ ନ କରିବ ମତି ।
ଶୁଣି ମଉନ ହେଲେ ରାଈ ।
ଅନ୍ତ ସାନନ୍ଦ କେବା କହି ॥
କଳ୍ପନା କରିଥିଲ ଯାହା ।
ଭେଟିଲ ଚରକାଳେ ତାହା ॥
ଏ ସର୍ବ ଯିବାର ହରଷେ ।
ଅନ୍ତରେ ଉତ୍ସାହ ମାନସେ ॥
ଏମନ୍ତେ ଶାଶୁ କହିଗଲେ ॥
ସକଳ ସଖୀଗଣ ମେଳେ ॥
କୁନ୍ଦଲତାକୁ ଚାହିଁ ହସି ।
କେମନ୍ତ ଯୋଗରେ ମନାସି ॥
ସଜନୀ ହରଷ ହୋଇଣ ।
ବୋଇଲେ ଯିବା ଗୋବର୍ଦ୍ଧନ ।
ଗିରି ବିହାର ବରଷାରେ ।
ରାଧା ମାଧବ ଅନୁସରେ ॥
ଏକାନ୍ତେ ଯୁଗଳ କରାଇ ।
ଦେଖିବା ନୟନ ପୂରାଇ ॥

ଏମନ୍ତେ ଆଷାଢ଼ ଶୁକ୍ଳ ।
ଯୋଗେ ଦଶମୀ ଗୁରୁବାର ॥
ପ୍ରଭାତୁଁ ମିଳି ସଖୀଗଣ ।
ରାଧାଙ୍କୁ କରାଇ ସ୍ନାହାନ ॥
ବାସ କୁସୁମ ଅଲଙ୍କାର ।
ସୁବେଶ ଶ୍ୟାମ ମନୋହର ॥
ସେ ପୂଜା ଦ୍ରବ୍ୟ ଉପହାର ।
ଘେନାଇ ସଜନୀ ବାହାର ॥
ଜଟିଳା ସାବଧାନ ହୋଇ ।
ସକଳ ହଅନ୍ତି ଚଳାଇ ॥
ନାନ୍ଦୀମୁଖୀଙ୍କି ଘେନି ସଙ୍ଗେ ।
ଗୋବର୍ଦ୍ଧନକୁ ବଜେ ରଙ୍ଗେ ॥
ପ୍ରବେଶ ହବ ପୂଜା ଛଳେ ।
ଏ ରୂପେ ଜେମାଦେଈ ଚଳେ ॥
ତହିଁକି ଶତେ ଗୁଣେ ସାଜ ।
ବ୍ରଜପୁରେ ସିଦ୍ଧଶୀଳା ପୂଜ ॥
ଯାତ୍ରା ମଙ୍ଗଳ ଅନୁକୂଳେ ।
ଉତ୍ସବ ପଥ ପରମଳେ ॥
ନିଜଗଣଙ୍କୁ ଘେନି ସଙ୍ଗେ ।
ବୃନ୍ଦା ଦର୍ଶନ କଲେ ବେଗେ ॥
ଫୁଲ ପଲ୍ଲବ ଫଳ ମୂଳେ ।
ଦେଖି ଶ୍ରୀମତୀ ହସି ବୋଲେ ॥
ଭିଆଣ କରିଅଛ ଜାଣି ।
ଗିରି ପୂଜିବା ପରମାଣି ॥
ଏମନ୍ତେ ଆଜ୍ଞା ବୃନ୍ଦା ଘୋଷେ ।
ପଥ ମଣାଇ ବନ ଦେଶେ ॥
ଏମନ୍ତେ ନିଜ କୁଣ୍ଡେ ମିଳି ।
ସେ ଜଳେ ବଦନ ପଖାଳି ॥
ଶ୍ୟାମ କୁଣ୍ଡରୁ ଜଳ ତୋଳି ।
ଶିରେ ସିଞ୍ଚିଣ ଉରେ ବୋଳି ॥
ଗହନ ବନେ ତହୁଁ ପଶେ ।
ବିବିଧ ପକ୍ଷୀ ନାଦ ଘୋଷେ ॥
ଦେଖିଣ ମୃଗଗଣ ରହି ।
ନିଶ୍ଚଳ ଲୋଚନରେ ଚାହିଁ ॥
ମିଳିଲେ ଗିରିବର ତଟେ ।
ଅର୍ଘା ଅଷ୍ଟିକ ଭେଟି ବାଟେ ॥
ବୋଲନ୍ତି ଏହୁ କସ ହାଡ଼ ।
ମାଡ଼ ପଡ଼ିଛି ଭୂମି ଖଣ୍ଡ ॥
ନାନ୍ଦୀ କହନ୍ତି ଆଗସର ।
ସେ ଅର୍ଘାସୁର କୃଷ୍ଣ ମାର ॥
ସବୁଙ୍କୁ ଗିଳିଥିଲା ଏଠି ।
ବାହାର ହେଲେ ତାକୁ ଫୁଟି ।
ଶୁଣି ଶ୍ରୀକୃଷ୍ଣ ଗୁଣ କର୍ମ ।
ଶ୍ରୀମତୀ ଉର ଦମ ଦମ ॥
ଏମନ୍ତେ ସହୁଁ ଯାନ୍ତି ଚଳି ।
ଶବର ପଲ୍ଲିରେଣ ମିଳି ॥
ବାହାର ପୁଳିନ୍ଦ ନନ୍ଦିନୀ ।
ଭ୍ରୂଭଙ୍ଗି ମଲ୍ଲିକା ଏ ବେନି ॥
ହାରିଦ୍ର ଫଳ ଥୋଇ ଭେଟି ।
ଦର୍ଶନ କରି ମଥା ନଲିଟି ॥
ଧୂଳି ସାଉଁଟି ଘେନି ଶିରେ ।
ନସ୍ତର ନସ୍ତରଳ ବୋଲେ ॥
ଭାଗ୍ୟେ ମିଳିଲ ଆଜ ଆସି ।
ଶୁଭେ ପାହିଲ ଆଜ ନିଶି ॥
ପୁଚ୍ଛନ୍ତି ଶରଧାରେ ସଖୀ ।
ପୁଳିନ୍ଦ କନ୍ୟା ଭାବ ଦେଖି ॥
ଏ ଘୋରବନେ ରହିଥାଅ ।
ଏଥିରେ ଭୟ ଗୋ ନ ପାଅ ॥
କି ରୂପେ ବଞ୍ଚ ବନବାସେ ।
କହିଁ ନରହ ନଗ୍ର ପାଶେ ॥
ସୌହାର୍ଦ୍ଦ୍ୟ ପ୍ରିୟବାଣୀ ଶୁଣି ।
ଭ୍ରୂଭଙ୍ଗି ମଲ୍ଲିକା ସେ ଭଣି ॥
ଆମ୍ଭର ବଂଶ ଅନୁସାରେ ।
ବନ କନ୍ଦର ଆଶ୍ରା କରେ ॥
ସିଦ୍ଧ ଶିଳାଙ୍କ ପରସାଦେ ।
ଗହନେ ବଞ୍ଚୁ ଅପ୍ରମାଦେ ॥
ଭୟ ସେ ନ କରୁ କାହିଁକି ।
ବଞ୍ଚୁ ପଲ୍ଲବ କନ୍ଦ ଭକ୍ଷି ॥

କର୍ମେ ଅର୍ଜିଣ ଯାହା ପାଇଁ ।
ଲୋଡ଼ଣ ଫଳମୂଳ ଖାଇଁ ॥
ସ୍ୱର୍ଗ ଭୋଗନ୍ତି ନ ଯୋଗାଇ ।
ଏ ଗିରି ଝର ନୀର ଖାଇ ॥
ଲଳିତା ବୋଲନ୍ତି ଗୋ ବାଳୀ ।
ଆମ୍ଭେ ଅଇଲୁଁ ତୁମ୍ଭ ପଛି ॥
ତୁମ୍ଭର ଦଅଁ ଅଛୁ କାହିଁ ।
ଦେଖି ଶରଧା ଜେମାଦେଈ ॥
ଆଗେଣ ପଥକୁ କଢାଅ ।
କଣ୍ଟକ ଲତିକା ଛଡ଼ାଅ ॥
ଏ ବୃଷଭାନୁର ଝିଅକୁ ।
ଦର୍ଶନ କରାଅ ଦଅଁଙ୍କୁ ॥
ବୋଲନ୍ତି ଭ୍ରୂଭଙ୍ଗି ମଲ୍ଲିକା ।
କାହାର ନୁହନ୍ତି ସେ ଏକା ॥
ବ୍ରହ୍ମାଦି ଭାବନ୍ତି ଯାହାକୁ ।
ଦର୍ଶନ ନଦିଏ କାହାକୁ ॥
ଭାବରେ ଦେଖା ସେ ଦିଅନ୍ତି ।
ଅଭାବେ ଦୃଶ୍ୟ ସେ ନୁହନ୍ତି ॥
ଆମ୍ଭର ପିତାମହ ପୂର୍ବେ ।
ଯା'କହିଛନ୍ତି ଶୁଣ ଏବେ ॥
ଶବର ବିଶ୍ୱାବସୁନାମ ।
ସପ୍ତ ଦ୍ୱୀପରେ ତାର ଧାମ ॥
ନୀଳମାଧବ ନୀଳଗିରି ।
ପୂଜଣ ସୁଖ ଭୋଗକରି ॥
ଏକ ବିପ୍ରଙ୍କୁ ପ୍ରୀତି ପଣେ ।
ଦେଖାଇଲେ ଗୁପ୍ତ ତତ୍‌କ୍ଷଣେ ॥
ଏହି ପର୍ବତେ ଆସି ରହି ।
ଲୋଡ଼ନ୍ତେ ଭେଟ ଏଥେ ପାଇ ॥
ଆମ୍ଭର କୌଳିକ ବେଭାରେ ।
ପୂଜା କରୁଛୁଁ ଗିରିବରେ ॥
ନନ୍ଦ ନନ୍ଦନ ଏବେ ଆସି ।
ଶୀଳାର ପରମଣି ଦିଶି ॥
ଏ କୃଷ୍ଣ ରୂପେ ଶୋଭା ପାଇ ।
ଏଡ଼େ ଦେବତା ହେଲେ ମୋହି ॥

ଗୁପତେ ରହେ ସଖୀ ଭାବେ ।
ତାଙ୍କୁ ଭେଟିବ କାହିଁ ଏବେ ॥
ପ୍ରସନ୍ନ ହେଲେ ନନ୍ଦବଳା ।
ଦର୍ଶନ ଦେବେ ସିଦ୍ଧଶୀଳା ॥
ଶୁଣି ସେ ବୃନ୍ଦା କଣ୍ଠ'ସ୍ୱରେ ।
ଗୃହାନ୍ତେ ଶବରୀ ଓହ୍ଲାଲେ ॥
ହସ୍ତ ସମାଜ ନାନ୍ଦୀମୁଖୀ ।
କହନ୍ତି ସନ୍ନିଧିକ ଡାକି ॥
ଶ୍ରୀ ପୌର୍ଣ୍ଣମାସୀଙ୍କର ଆଜ୍ଞା ।
ଭ୍ରୂଭଙ୍ଗି ନକର ଅବଜ୍ଞା ॥
ରାଧିକା ଶ୍ରୀକୃଷ୍ଣ ବିହାର ।
ବରଷା କାଳେ ଗିରିପର ॥
ଭଗବତୀଙ୍କ ଆଜ୍ଞା ଶୁଣି ।
ସାନନ୍ଦ ପୁଲିନ୍ଦ ନନ୍ଦିନୀ ॥
ଆଗେଣ ପଥକୁ ମଣାଇ ।
ସକଳ ଚିହ୍ନାଇ ଜଣାଇ ॥
ସଧୀରେ ବିଜୟେ ବିମ୍ବୋଷ୍ଠୀ ।
ପାଦ ପାଦକେ ଗିରି ଉଠି ॥
ପାଇ ଶ୍ରୀରାଧା ପଦ୍ମପାଦ ।
ଅଚଳ ପରମ ଆନନ୍ଦ ॥
ପାଦ ଧଉତ ମଧୁଧାରେ ।
କୁସୁମ ଛତ୍ରଦ୍ରୁମ ଶିରେ ॥
ସୁବାସ କୁସୁମ ପରାଗ ।
ଗହଳେ ପଡ଼'ଛନ୍ତି ମାର୍ଗ ॥
ପ୍ରବାଳ ବକୁଳ ଗୁମର ।
ସୁଗନ୍ଧେ ବହଇ ସମୀର
ଲତା କୁସୁମ-ବୃଷ୍ଟି କରେ ।
ଲୋଟନ୍ତି ତରୁ ଫଳଭରେ ॥
ସୁସ୍ୱରେ ଭୃଙ୍ଗ ବେଣୁ ରନ୍ଧ୍ରେ ।
ମଙ୍ଗଳ ମଧୁର ଶବଦେ ॥
କୁମ୍ଭ ଶ୍ରୀଫଳ ଚୂତ ଡାଳେ ।
ଶୋଣା ପଲ୍ଲବ ମାଳେ ମାଳେ ॥
ତରୁ ଲତାରେ ଛନ୍ଦାଛନ୍ଦ ।
ଦେଖାଇ ପ୍ରିୟ ଅନୁବାଦ ॥

ଅଳି ଗୁଞ୍ଜିତ ହୁଳହୁଳ ।
କରନ୍ତ ପରିକ୍ରମା ବୁଲ ॥
ମଙ୍ଗଳ ପଢ଼େ ଶୁକ ଶାରୀ ।
କଳାପୀ କୁଳ ନୃତ୍ୟ କରି ॥
ବହୁତ ପକ୍ଷୀ କୋଳାହଳେ ।
ବିବିଧ ବାଦ୍ୟ କି ଉଚ୍ଛୁଳେ ॥
ପାଦ ମଣାଇ ଯାଏ ସଖୀ ।
ପଦ ଧରଇ ବୋଲି ଡାକି ॥
ଶଙ୍କଣ ପୀଢ଼ ସ୍ଥାନେ ସ୍ଥାନ ।
ସୁବାସ କୁସୁମ ଅଶନ ।
ଅଗ୍ର ଚନ୍ଦନ ଗନ୍ଧ ଫୁଲ ।
ନାନା ସୁପକ୍ୱ ସ୍ୱାଦୁ ଫଳ ॥
ଏ ରୂପେ ଯେହ୍ନ ଉପସ୍କର ।
ପୂଜା କରନ୍ତ ଗିରିବର ॥
ସାତ୍ତ୍ୱିକ୍ୟ ସ୍ୱଭାବେ ଅଚଳ ।
ପୁଲକ କରି ତୃଣଦଳ ।
ଲୋତକ ଜାଣି ନଦୀ ଧାରା ॥
ମକରନ୍ଦ ଏ ସ୍ୱେଦ ମାଳା ।
ନାନା କୁସୁମରେ ବିବର୍ଣ୍ଣ ॥
ପୁଲକ ଲତା କମ୍ପମାନ ।
ପକ୍ଷୀ ଶବଦ ସ୍ୱରଭଙ୍ଗ ॥
ଜୟ ରାଧିକା ପଦଯୁଗ ।
ଏମନ୍ତ ପ୍ରବର୍ତ୍ତି ସାତ୍ୟକେ ।
ଦେଖି ବଦନ ଅବଲୋକେ ॥
ପାବଚ୍ଛ ଚନ୍ଦ୍ରମଣି ଶୀଳ ।
ଭାବେଣ ତରଳ କୋମଳ ॥
ନମ୍ର ହୋଇଣ ପାଦ ଧରେ ।
ପୁଲକ ହୁଅନ୍ତେଣ ଚୋଳେ ।
ଏ ଯେହ୍ନ ଶ୍ରମକୁ ନ ପାଇ ।
ସୁଖେ ବଜାଇ ଖେମାଦେଣ୍ଡ ॥
ଆଗେଣ ଭ୍ରୂଭଙ୍ଗି ମଞ୍ଜିକା ।
ସ୍ଥାନ ମଣାଇ କରେ ଦେଖା ॥
ଯେ ଖେମାଦେଣ୍ଡ ଗିରିସ୍ଥଳ ।
ସର୍ବ ଗୋପାଳେ ଏଥି ମେଳ ॥

ଏ ଯେ ପଲ୍ଲଶ ତରୁତଳ ।
ଉଚ୍ଚ ପାଷାଣ ସମତୁଲ ॥
ବିସ୍ତାର ମଣିମୟ ଶୀଳ ।
ପୂଜନ୍ତେ ସର୍ବସିଦ୍ଧ ଫଳ ॥
ବରଷା ବେଳେ ଗୋପୀନାଥ ।
ରହନ୍ତ ଯେହ୍ନ ମିତ୍ର ଯୂଥ ॥
ଏ ଯେ ମାଧବୀ ବିସ୍ତୃତ ଶୀଳା ।
ଭୋଜନେ ହୋନ୍ତ ଏଥେ ମେଳା ॥
ଦେଖ ଏ ଶାଳ ତରୁ ତଳେ ।
ଉଚ୍ଚ ପାଷାଣ ସମତୁଲେ ॥
ଏଥି ଉପରେ ଉଠି ହରି ।
ଡାକନ୍ତ ଗାବ ନାମ ଧରି ॥
ସୁସ୍ୱରେ ଶୁଣି ବେଣୁନାଦ ।
ଆସି ବେଢ଼ନ୍ତ ଗାବବୃନ୍ଦ ॥
ଏ ଉଚ୍ଚ ଶୀଳାପରେ ଉଠି ।
ଚଉଦିଗକୁ ଦେଇ ଦୃଷ୍ଟି ॥
ତାଙ୍କ ରହିଛୁ ଦେବଦାରୁ ।
ଦେବ ନିର୍ମାଣ ପ୍ରାୟ ସ୍ଥିରୁ ॥
ଶଙ୍କଣ ଚଉସମ ସ୍ଥାନ ।
ଏ ଯେ ମାଧବ ସୁଖାସନ ॥
କ୍ଷଣେବା ପହୁଡ଼ନ୍ତ ଏଥ ।
ଜଗି ବସନ୍ତ ମିତ୍ର ଯୂଥ ॥
ଆକାଶେ ଗଙ୍ଗାକୁଣ୍ଡ ଦେଖ ।
ସ୍ନାନେ ଲଭନ୍ତ ଏଥି ସୁଖ ॥
ଏ ରୂପେ ଦେଖାନ୍ତ ଚାହାଁଇ ।
ସ୍ଥାନକୁ ସ୍ଥାନ ଏ ମଣାଇ ॥
ପାଷାଣ ପୀଢ଼ ପୀଢ଼ ସ୍ଥଳୀ ।
ବୁଲ ଦେଖନ୍ତ ସର୍ବ ବଳି ॥
ଶଙ୍ଖା ପାଲ କାଠି କାହିଁ ।
କେଉଁ ପୀଢ଼ରେ ପଞ୍ଚ ଶାଇ ॥
କାହିଁ ଲାବଣ୍ୟ ରେଖାବଳୀ ।
କାହିଁରେ କାଠି ପଶାପାଳି ॥
କାହିଁରେ ନାନାରଙ୍ଗ ଘୋର ।
ପାଷାଣ ମାନ ଚିତ୍ର କରି ॥

ଶ୍ରୀକୃଷ୍ଣ ନାନା ବେଶ ଭଙ୍ଗୀ ।
କାହ୍ନିବା ଶ୍ରୀଅଙ୍ଗ ଉଲଗି ॥
କୁସୁମ ଚନ୍ଦନ ତାମ୍ବୂଳ ।
ମଣ୍ଡିତ କେବଶହିଁ ଶୀଳ ॥
ଶ୍ରୀକୃଷ୍ଣ ଚନ୍ଦ୍ରମାନ ରୁହିଁ ।
ଶ୍ରୀମତୀ ଲୋଭମନ୍ତ ହୋଇ ॥
ଯତନେ ବସେ ଶ୍ରମଭରେ ।
ଅଙ୍ଗ ଉଲଗି ଦେଖିବାରେ ॥
ଉତ୍ସାହ ଜାତ ଅନୁକ୍ଷଣେ ।
ଗତ ସୁରତ ଚନ୍ଦ୍ର ମନେ ॥
ଅଛନ୍ତି ସିଦ୍ଧଶୀଳା ଯହିଁ ।
ଏମନ୍ତେ ପରବେଶ ତହିଁ ॥
ଦେଖିଲେ ଅଗ୍ର ତରୁ ତଳେ ।
ଶ୍ୟାମଳ ଜ୍ୟୋତିର୍ମୟ ଶୀଳେ ॥
ଶ୍ରୀନାରାୟଣ ମୂର୍ତ୍ତିମନ୍ତେ ।
ଶୋଭିତ ଶଙ୍ଖ ଚକ୍ର ହସ୍ତେ ॥
ଦେଖିଣ ନମସ୍କାର କଲେ ।
କୃଷ୍ଣ ଦର୍ଶନେ ମନାଶିଲେ ॥
ପୂଜା ଆରମ୍ଭେ ବିପ୍ର ବାଳୀ ।
ମଙ୍ଗଳ ଗୀତ ହୁଳହୁଳ ॥
ସୁଦଶୀ ବ୍ରତର ଯେ ବିଧି ।
ନାନ୍ଦୀ ମୁଖୀରେ ପୂଜା ସିଦ୍ଧି ॥
ସଂଯୋଗି ନୃପତି ଦୁଲାଳ ।
ଦେଲେ ସେ କୁସୁମ ଆଞ୍ଜୋଳ ॥
ପୂଜା ବଢ଼ାଇ ବିଧିମତେ ।
ପ୍ରସାଦ ଦେଲେ ଜେମାହସ୍ତେ ॥
ପୁଣି ଓଲଗି ବର ମାଗେ ।
ଶ୍ରୀକୃଷ୍ଣ ଅଙ୍ଗ ଭୋଗ ଯୋଗେ ॥
ଏମନ୍ତେ ଉଦବେଗ ମନ ।
କୃଷ୍ଣ ନ ଦେଖି ଛନ ଛନ ॥
ଶିଖରୁ ଶିଖର ଆରୋହି ।
ଚଉଦିଗକୁ ଦେଖିଲ ରୁହିଁ ॥
ଦେଖନ୍ତି ନଗ୍ରପୁର ଜନ ।
ହେଜ ଜାଣନ୍ତି ସ୍ଥାନ ସ୍ଥାନ ॥

ପୁରେ କଳସ ପନ୍ତ ପନ୍ତ ।
ଉଡ଼େ ପତକା ନୀଳକାନ୍ତ ॥
କୃଷ୍ଣ ଠାରେ କ ହସ୍ତ ଲଇ ।
ଆମ୍ଭେ ଯିବୁଁ ସେ ଥାଅ ତହିଁ ॥
ଏମନ୍ତେ କୃଷ୍ଣ ବନ ବଜେ ।
ଶିଙ୍ଗା ମୁରଲୀ ବେଣୁ ବାଜେ ॥
ଗୋଧନ ଚଳାଇଣ ଆଗେ ।
ପଛେ ଗୋପାଳ ବାଳ ସଙ୍ଗେ ॥
ମିଳିଲେ ଗିରିବର ତଳେ ।
ଦେଖି ରାଧିକା ସଖୀ ମେଳେ ॥
ନିଶ୍ଚଳ ଲୋଚନେ ନିରେଖେ ।
ସାତ୍ତ୍ୱିକ୍ୟ ବ୍ୟାଧି ଉର କମ୍ପେ ॥
ଜାଣି ସେ ପ୍ରିୟନର୍ମ ସଖୀ ।
ଭାଷେ ଉପମା ହାସ ଯୋଖି ॥
ଲଳିତା କହେ ଲଳିତରେ ।
ଦେଖାଇ ସଖୀ ଇଙ୍ଗିତରେ ॥
ଗୋକୁଳେ ଶ୍ୟାମଘନ ଯୋଡ଼ି ।
ଲାବଣ୍ୟ ଜଳ କରେ ବୃଷ୍ଟି ।
ନେତ୍ର ଚାତକ ପିଏ ଧୀରେ ॥
କୁଚ କଳାପୀ ନୃତ୍ୟ କରେ ।
ରୋମାଞ୍ଚ ନାଗପୁଷ୍ପ ଜାଣି ।
ଲୋତକ ନଦୀ ପରମାଣି ॥
ମୀନକେତନ ବାସ ଚୂଡ଼ ।
ଶ୍ୟାମ ଲାବଣ୍ୟ ଜାଲ ଭିଡ଼ ॥
ଗଣ୍ଡରେ ମକରକୁଣ୍ଡଳ ।
ଖେଳ ଲୋଡ଼ନ୍ତି ସଙ୍ଗମେଳ ॥
ନୟନ ମୀନ ତହିଁ ପଡ଼ ।
ଆହି ନ ପାରଇ ବାହୁଡ଼ ॥
ଚମ୍ପକଲତା ବୋଲେ ସିଧି ।
ଧବଳୀ ବୃନ୍ଦ ଏ ପୟୋଧି ॥
ମନ୍ଥନେ ମାଧବ ଆଗତ ।
ବିବିଧ ରସ ଦେବ ଜାତ ॥
ଅନଙ୍ଗ ଦେବ ଆଦ୍ୟ ମେଳେ ।
କୁଚ ମନ୍ଦର ଆଗ ତୋଳେ ॥

ବେଢ଼ି ଖେଚର ମୋତିମାଳ ।
ଡୋଳିବା ଭରେ ଝଳ ଝଳ ॥
ନୃପଦୁହିତା ମତି ଭାବ ।
ଦେଖାଇ କହେ ରଙ୍ଗଦେବୀ ॥
କୃଷ୍ଣସାରଙ୍କୁ ଦେଖି ଦୂରେ ।
ହରିଣୀ ନେତ୍ର ନିଶ୍ଚଳରେ ॥
ଅନୁକମ୍ପନେ ଅଶ୍ରୁ ମୁଞ୍ଚେ ।
ପୁଲକ ହୁଅଇ ରୋମାଞ୍ଚେ ॥
ସଙ୍ଗିନୀ ଗଣ ତେଜି ଆଗେ ।
ଧାଇଁ ମିଶିବ ପବ୍ର ବେଗେ ॥
ସୁଦେବୀ କହଇ ଇଙ୍ଗିତ ।
ସୁରଷ୍ଠି ଏ ସୁର ସରିତ ॥
ଯେନ ଗୋବିନ୍ଦ ଭାଗୀରଥୀ ।
ଲିଭିବ କାମାନଳ ଏଥି ॥
ଶୀତଳ କୁଚ ପାତ ହେବ ।
ଶରଣ ସରିତ ବନ୍ଧବ ॥
ରାଧା ସାତ୍ତ୍ୱିକ୍ୟ ଭାବ ଦେଖି ।
କହନ୍ତି ଭୃଙ୍ଗବିଦ୍ୟା ସଖୀ ॥
ନିରେପି ଶ୍ୟାମ ନବକାମ ।
ଉରଜ ଶମ୍ଭୁ ଦମ ଦମ ॥
ସୁନ୍ଦରୀ ଅଙ୍ଗ ଆଶ୍ରେ ଧନୀ ।
ଚନ୍ଦନ ଭସ୍ମ ବେଣୀଫଣୀ ॥
କପାଳ ଖଣ୍ଡ ସୁଧାକର ।
କଟି ଡମ୍ବରୁ ଘଣ୍ଟିସାର ॥
ଭ୍ରୂହୁ ପିନାକ ଧନୁସାଜ ।
ଭୃରୁ ଅଞ୍ଜନ ଗୁଣମାଜ ॥
ନୟନ ମନଭେଦୀ ବାଣ ।
ବନ୍ଧ ଦୃଷ୍ଟି ପୁରାଇ ଆକର୍ଣ୍ଣ ॥
କାମ-ସଙ୍ଗ୍ରାମେ ଆଗ ଜିଣି ।
ରତି ରମଣୀ ନିଶ୍ଚେ ଯେନ ॥
ବୋଲନ୍ତି ଚନ୍ଦ୍ରରେଖା ସଖୀ ।
ଏ ବୃନ୍ଦାବନରାଜ ଦେଖି ॥
କମ୍ପନ୍ତି ଉରବାସୀ ଭୟେ ।
ଯେଣୁ ଏ କରପୀଡ଼ା ଦିଏ ॥

ଦଶାର୍ଦ୍ଧ ଲକ୍ଷ ଲକ୍ଷ ଦେଇ ।
ହାର ବସନ ନ ରଖଇ ॥
ସକଳ ଶିଷ୍ଟ ହରି ମାନେ ।
ମୋନାମ ମାତ୍ର ହରମ୍ବରେ ॥
ଅଷ୍ଟ ଉପମା ଶୁଣିରସେ ।
ତୁଳସୀ ସ୍ୱରୂପେଣ ଭାଷେ ॥
ଆଷାଢ଼ ଶୁକ୍ଳ ଦଶମୀ ।
ପ୍ରିୟା ବିଚ୍ଛେଦ ଶାନ୍ତ ସ୍ୱାମୀ ॥
ଶ୍ୟାମ ସୁନ୍ଦର କନ୍ଦରରେ ।
ମନୋରଥରେ ବିଜେକରେ ॥
ଦେଖ ମାଧବ ଘୋଷ ଜାତ ।
ଉତ୍ସବ ସବଂତନୁ ମାତ୍ର ॥
ହାସେ କହନ୍ତି କୁନ୍ଦଲତା ।
ଶିର ବିଚ୍ଛେଦ କାନ୍ତକାନ୍ତା ॥
ଆଜ ଏ ହୋଇବେ ମିଳନ ।
ପାଇବା ସଖୀ ଜନେ ଧନ ॥
ଶୁଣି ସୁଲକ୍ଷା ଗୁଣଶାଳୀ ।
ସାତ୍ତ୍ୱିକ୍ୟ ନପାରେ ସମ୍ଭାଳି ॥
ଏମନ୍ତେ ସଖୀ ହାସରସେ ।
ଭାସନ୍ତି ଶ୍ରୀମତୀ ହରଷେ ॥
କୃଷ୍ଣେ ସେ ଗିରିତଳେ ରହି ।
ପୂଜା ଉତ୍ସବ ଶୁଣି ତହିଁ ॥
ମଙ୍ଗଳ ଧ୍ୱନି ସେ ଉଚ୍ଛୁଳ ।
ସୁସ୍ୱର ନାଦେ ହୁଳହୁଳି ॥
କୃଷ ଶବଦ ଏ ପଶୁର ।
କହନ୍ତି ସୁବଳ ବଟୁର ॥
ଇଚ୍ଛା ଯେ କଲ ଦେବୀସଙ୍ଗ ।
ଗିରିଙ୍କି ଯାଚ ଇନ୍ଦ୍ରଭୋଗ ॥
ଜାଣି ସେ ତୁମ୍ଭ ମନ ପ୍ରୀତି ।
ଉପାସ୍ୟ ରକ୍ଷ ଭଗବତୀ ॥
ଏକାନ୍ତେ ବୁଝାଇ କହିଲା ।
ଗଣ୍ଡ ପୂଜିବେ ସିଦ୍ଧ ଶିଳା ॥
ଏ ଚତୁର୍ମାସ ଗୁରୁବାରେ ।
ଶିଳା ପୂଜିବେ ଗିରିପରେ ॥

ତୁମ୍ଭର ହୋଇବ ମିଳନ ।
ଏ ପୌର୍ଣ୍ଣମାସୀଙ୍କ ବିଧାନ ॥
ଶୁଣି ସାନନ୍ଦ ଦେବହରି ।
ବର୍ତ୍ତିର କର ପୁଣି ଧରି ।
ଶିରରେ ନନ୍ଦ ଉତ୍ସାହରେ ।
ସଖେହେଁ ବୋଲଣ ପଚାରେ ॥
ମନକୁ ନଆସେ ପରତେ ।
ପୁଣି ପଚାରେ ବୋଲେ ସତେ ॥
ବର୍ତ୍ତି ବୋଲନ୍ତି ସତ ଏହି ।
ଅପ୍ରତେ କଲେ ଦେଖ ଯାଇ ।
ଶୁଣି ହରଷ ମନେ ହରି ।
କୁମାରଗଣେ ଗୃହ୍ଟକରି ॥
କୋମଳ ନବଦଳ ଘାସେ ।
ପଶୁଙ୍କୁ ଚରାଇ ସନ୍ତୋଷେ ॥
ଆଜ ଏ ଗିରିକି ନଉଠି ।
କାହ୍ନୁ ଅଛନ୍ତି ଗାଈ ଫିଟି ॥
ଏଠାରେ ଜଗିଣ ଚରାଅ ।
ସକଳ ସୁମେଳ କରାଅ ॥
ହଅଁ ପୂଜନ୍ତି ନାରୀଗଣେ ।
ଶ୍ରୁଭଇ ହୁଳହୁଳି ଏଣେ ॥
ବହୁତ କରିଥିବେ ଭୋଗ ।
ମାଗି ଆଣିବା ଆମ୍ଭ ଭାଗ ॥
ଖଣ୍ଡକଦଳୀ ଲଡ଼ୁ ଫେନ ।
ଆମ୍ଭେ ଆସିବୁଁ ଏହିକ୍ଷଣି ॥
ପୂଅଙ୍କୁ ବୁଝାଇଣ ରଙ୍ଗେ ।
ବେନ ମିତ୍ରଙ୍କୁ ଘେନ ସଙ୍ଗେ ।
ଉଠିଲେ ଗୋବର୍ଦ୍ଧନ ପରେ ।
ରାଧା ଗମନ ଅନୁସାରେ ॥
ଯିବାର ପଥ ଅଛିପଡ଼ ।
ଡାଳି ଲତିକା ତୃଣ ଛିଡ଼ ॥
ପାଦ ଚିହ୍ନକୁ କାହିଁ ଦେଖେ ।
ଲତା ପଲ୍ଲବ ଏକମୁଖେ ॥
ରାଧିକା ଅଙ୍ଗ ସୁଗନ୍ଧରେ ।
ଭୃଙ୍ଗ ଧାମନ୍ତି ଲୁବଧରେ ॥

ଗଉର ହରିଶ ଗିରିବର ।
ଗନ୍ଧ ପବନ ମନୋହର ॥
ଯୋଗେ ଧାମନ୍ତି ମୃଗଯୂଥ ।
କୃଷ୍ଣ ଗମନ ସେହିପଥେ ॥
ସଜନୀଗଣ ମଧ୍ୟେ ରାଈ ।
କୃଷ୍ଣ ଗମନ ଦେଖେ ରହି ॥
ନହରି ନକଟ ହୁଅନ୍ତେ ।
ବିଷମ ଲତା ଉହାଡ଼ନ୍ତେ ॥
ବିଚ୍ଛେଦ ଭୟେଣ ସୁକେଶୀ ।
ପଥକୁ ତୁଳସୀଙ୍କି ପେଶି ॥
ଏମନ୍ତେ କୃଷ୍ଣ ଶିଖେ ଉଠି ।
ପଥ ନପାଇ ଭ୍ରମି ଫୁଟି ॥
ସୁଗନ୍ଧ ଯେ ହରେ ପବନ ।
ସେ ହରେ କରନ୍ତି ଗମନ ॥
ଦେଖିଲେ ତରଳ ପାଷାଣେ ।
ଶ୍ରୀମତୀ ପାଦଚିହ୍ନି ଜାଣେ ॥
ହରିତ ଉନବିଂଶ ଚିହ୍ନ ।
ଦେଖି ସାନନ୍ଦ କୃଷ୍ଣମନ ॥
ସେ ଚିହ୍ନ ପରିକ୍ରମା କରେ ।
ତୁଳସୀ ଭେଟିଲେ ସେଠାରେ ॥
ଦେଖି ଝଟିତେ କୃଷ୍ଣ ଘାପି ।
ଗିରି ଶିଖରେତ ତୁଳସୀ ॥
ତୁଳସୀ ବୋଲେ ତୁମ୍ଭେ ଯହିଁ ।
ପରିକ୍ରମାରେ ତହିଁ ମୁହିଁ ॥
କରୁଣା-ଜଳରେ ପ୍ରଫୁଲ୍ଲି ।
କୃଷ୍ଣ ତୁଳସୀ ତେଣୁ ବୋଲି ॥
କୃଷ୍ଣ ବୋଲନ୍ତି ମୋ ଭୂଷଣ ।
ଭ୍ରମାଇ ରାଈ ପାଦଚିହ୍ନ ॥
ଯେ ପାଦ ମାଗିଲେ ନପାଇ ।
ସେ ପାଦ ଗିରି ଶିରେ ଦେଇ ॥
ଭାଗ୍ୟବନ୍ତ ଏ ଗିରିବର ।
ବହିବ ମୋର ଶିରପର ॥
କୋମଳ ପାଦ ଦୁଇଗୋଟି ।
ବଥାଉଥିବ ଗିରି ଉଠି ।

କ୍ଷଣେ ମୁଁ ମଞ୍ଜାଳିବି ବସି ।
ବେଦଗଣ ଭେଟାଅ ତୁଳସୀ ॥
ଏମନ୍ତେ କଥାହୋଇ ଚଳି ।
ସଙ୍ଗେ ରାଧିକା ତହିଁ ମିଳି ॥
ନିକଟେ ହୋନ୍ତି ଦେଖାଦେଖି ।
ହାସ୍ୟ କଟାକ୍ଷ ଯୋଖାଯୋଖି ॥
ଚିର ବିଚ୍ଛେଦ ଦୁଃଖନାଶି ।
ଜଳରେ ଜଳ ପ୍ରାୟେ ମିଶି ॥
ସୁବର୍ଣ୍ଣ ମଧ୍ୟେ ମରକତ ।
ନାୟକ ଯେସନେ ଶୋଭିତ ॥
ରସିକ ଶେଖର ନାଗରୀ ।
ଗିରି ବିହାର ରଙ୍ଗେ କରି ॥
ଦେଖନ୍ତି ଠାବେ ଠାବେ ବୁଲି ।
ଡାଳ ନୁଆଁଇ ଫୁଲତୋଳି ॥
ମାଳ ଗୁନ୍ଥିଣ ନାନାବନ୍ଧେ ।
ଆନନ୍ଦେ ଲମ୍ବାଇ ସୌହାର୍ଦ୍ଦ୍ୟେ ॥
ବିବିଧ ଧାତୁ ରଙ୍ଗଗୋଳି ।
ଲେଖନ୍ତି ଚିତ୍ର ପତ୍ରାବଳୀ ॥
ସୁବେଶ ହୋଇ ଏକଆରେ ।
ନାନା ବିଚିତ୍ର ଲୀଳାକରେ ॥
ପାଷାଣ ପୀଢ଼ି ତଡ଼ସମ ।
ଢ଼ାଙ୍କିଣ ରହିଛନ୍ତି ଦ୍ରୁମ ।
ତହିଁରେ ବସିଣ ପ୍ରମୋଦରେ ।
ବୀଣା ବାଦନ ଗୀତସ୍ୱରେ ॥
ଉଚିତ କାଳ ପରିମାଣି ।
ରାଗରେ ଗାବନ୍ତି ଗାଏଣୀ ॥
ନୃତ୍ୟକରନ୍ତି ନୃତ୍ୟକାରୀ ।
ଯେଝା ସେବାରେ ସହଚରୀ ॥
ରାଧା ମାଧବ ଏକାନ୍ତରେ ।
ବଲ୍ଲଭ କୁସୁମ ଶଯ୍ୟାରେ ॥
ଜାଣି ଅଛନ୍ତି ବୃନ୍ଦା ମର୍ମ୍ମ ।
ଶୀଳା ପଲ୍ଲବ ତୁଳ ରମ୍ୟ ॥
ଶୟନ କରେ ପ୍ରିୟାସଙ୍ଗେ ;
ଜଗି ସଜନୀ ଅଷ୍ଟଦିଗେ ॥

ବିବିଧ କେଳି କଳାରଙ୍ଗେ ।
ରାଧା ମାଧବ ଏକ ଯୋଗେ ॥
ପ୍ରିୟାକୁ ଜାନୁରେ ବସାଇ ।
ବେଶ କରନ୍ତି କୃଷ୍ଣ ତହିଁ ॥
ଦିବ୍ୟ ପଲଙ୍କ ସିଂହାସନେ ।
ସୁଖ ସେବନ୍ତି ସ୍ଥାନେ ସ୍ଥାନେ ॥
କେବଣ ସ୍ଥାନେ ଭୁଞ୍ଜି ବସେ ।
ବଟୁ ସୁବଳ ବେଢ଼ପାଶେ ॥
ସଂଯୋଗି ସଖୀଗଣ ଦେଇ ।
ହରଷେ ପରଷନ୍ତି ରାଈ ॥
ପୁଣ ଖଡ଼ିକା ଶାଳପତ୍ର ।
ଭିଆଣ ନାନା ଦନା ପତ୍ର ॥
ଅମୃତ ସ୍ୱାଦ ନାନା ପାକେ ।
ମିଷ୍ଟାନ୍ନ ଆଣିଥିଲେ ଯେତେ ॥
କର୍ପୂର ନାନା ରସାବଳୀ ।
ଅମୃତ ମନୋହର ପୁଳି ॥
ଗୋଧୂମ ମାଣ୍ଡୁଆ କାକରା ।
ପୂରିତ ଅଚ୍ଛୁ କେଳକୋରା ॥
ପାରିଜାତକ ହଂସକେଳି ।
ନାଡ଼ୁ ପାପୁଡ଼ ଖଣ୍ଡଧୂଳି ॥
ଶାକର ଖଣ୍ଡମଣ୍ଡା ଖଇ ।
ସର ଗୋଟିକା ଚମ୍ପା ଦହି ॥
ସର ବନ୍ଧୁଲ ଶିଖରଣି ।
ରମ୍ଭା ମିଶ୍ରିତ ସର ପୁଣି ॥
ଘୃତ ନବାତ ସୁପାକରେ ।
କର୍ପୂର ମରିଚ ଆଦ୍ରରେ ॥
ବିବିଧ ସୁପ ନାନା ଭଜା ।
ଖଣ୍ଡ କଦଳୀ ମୁଗଗଜା ॥
ରତ୍ନ ଝରିରେ ବାସପାଣି ।
ସନ୍ନିଧେ ଥୋଇ'ଛନ୍ତି ଆଣି ॥
ଗୋବିନ୍ଦ ରୁଚି ଭୋଜନରେ ।
ଭୁଞ୍ଜନ୍ତି ସଖାଙ୍କ ସଙ୍ଗରେ ॥
ବୃନ୍ଦା ସମ୍ପାଦି ଛନ୍ତି ଯାହା ।
ପରଷେ ରାଈ ଘେନ ତାହା ॥

ଭୋଜନ ଲୀଳା ହାସରସେ ।
ସଖୀ ପକାନ୍ତି ଛନ୍ଦପାଶେ ॥
ଭୋଜନ ଅନ୍ତେ ଆଚମନ ।
କର୍ପୂର ତାମ୍ବୂଳ ଭକ୍ଷଣ ॥
ଶ୍ରୀକୃଷ୍ଣ ଅବଶେଷ ଯହିଁ ।
ସଜନୀ ସେବନ ଭୁଞ୍ଜନ୍ତି ରଙ୍ଗେ ॥
ଏମନ୍ତେ ବରଷିଲେ ମେଘେ ।
ନିବିଡ଼ ଧାର ଦଶ ଦିଗେ ॥
ପଶିଲେ ନିବିଡ଼ କୁଞ୍ଜରେ ।
ବସିଲେ ଉଚିତ ଶେଜରେ ॥
ସମ ଉତ୍ତମ ସୂର୍ଯ୍ୟଶୀଳା ।
ରାଧା ମାଧବ ଏକମେଳା ॥
ସକଳେ ଏକ ମେଳହୋଇ ।
ଜଳ ପବନ ଭେଦନାହିଁ ॥
ଗଳଇ ନାହିଁ ଜଳଧାର ।
ନିବିଡ଼ ପତ୍ରେ ପୂରପର ॥
ପଶାଖେଳକୁ ଚାହିଁରଙ୍ଗ ।
ହାର ଜିଣରେ ଉଚ୍ଚବାଦ ॥
ବରଷା ରହିଲେ ବାହାର ।
କରନ୍ତି ପର୍ବତେ ବିହାର ॥
ଗିରି ଶୃଙ୍ଗର ପରେ ଉଠି ।
ଚଉଦିଗକୁ ଚାହିଁ ଦୃଷ୍ଟି ॥
ନିବିଡ଼ ଅଗ୍ର ତରୁତଳେ ।
ସ୍ଫଟିକ ତଉସମ ଶୀତଳେ ॥
ପ୍ରିୟାକୁ କୋଳରେ ବସାଇ ।
ଦେହରେ ଦେହକୁ ମିଶାଇ ॥
ଦିଗ ବାରନ୍ତି ଚାହିଁଥାଇ ।
ଅଙ୍ଗୁଳି ଦେଖାଇ ଚାହାଇ ॥
ଦେଖନ୍ତି ନଗ୍ର ଉପବନ ।
ଗତ ସୁରତ କେଳିସ୍ଥାନ ॥
ଯହିଁରେ କରିଛନ୍ତି ଯାହା ।
ସୁମରି ମନରେ ଉତ୍ସାହା ॥
ଆରମ୍ଭି ସେହି ଲୀଳାମାନ ।
ରମ୍ୟ ଉତ୍ତମ ସ୍ଥାନସ୍ଥାନ ॥

ଏମନ୍ତ ବରଷାକାଳରେ ।
ପର୍ବତ ଶିଖରେ ବିହାରେ ॥
ଏମନ୍ତେ ଓହ୍ଲାଇ ବନାନ୍ତେ ।
ମିଳିଲେ ସଖାଙ୍କ ସଙ୍ଗତେ ।
ସିଦ୍ଧ ଶୀଳାଙ୍କ ଭୋଗ ଯେତେ ।
ଗୋପାଳେ ଭୁଞ୍ଜି ତୋଷଚିତ୍ତେ ॥
ଗାବ ଅଡ଼ାଇ ନଗ୍ରେ ଚଳେ ।
ଯେଯାହା ସଦନରେ ମିଳେ ॥
ରାଧିକା ଭୁବନେ ପ୍ରବେଶ ।
ଜଟିଳା ଦେଖିଣ ହରଷ ॥
ସୁଦଶା ବ୍ରତ ଗୁରୁବାରେ ।
ଦଧି ବଧାନ ସମାରମ୍ଭରେ ॥
ଗାବ ଦୁହିଁଣ ସମ୍ଭାଳିଲେ ।
ଗୁହାଳ ପୋଛି ଧୂଆଁ ଦେଲେ ॥
ଅନଳ ବେଢ଼ାଇଣ ଚାପି ।
ଗାଈଙ୍କ ଦେହ ବାସେ ଘୁପି ॥
ବାତ ଶୀତକୁ ଉଷୁମାଇ ।
ଶୋଇଲେ ଗାବ ସୁଖପାଇ ॥
ଜଗିଆ ରଖି କୃଷ୍ଣଗଲେ ।
ସୁଖେ ଭୋଜନ ସର୍ବେ କଲେ ॥
ବରଷାକରେ ଘନ ଘନ ।
ଗୋବନ୍ଦ ମନ୍ଦରେ ଶୟନ ॥
ଦାସ କରଇ ପାଦ ସେବା ।
ସୁଜନେ ଶୁଣି ତୋଷହେବା ॥
ଆଷାଢ଼ ଅନ୍ତେଣ ଶ୍ରାବଣ ।
ଉତ୍ସବ ଗହ୍ମା ପର୍ବଦିନ ॥
ବଳଦେବଙ୍କ ସ୍ନନକ୍ଷତ୍ର ।
ପୂର୍ଣ୍ଣିମୀ ଶ୍ରବଣା ଜନିତ ॥
ଯେଣୁ ଏ ବସୁଦେବ ସୁତ ।
ତେଣୁ ଉତ୍ସବ ଏ ଜଗତ ॥
ମହୀରେ ବଳଭଦ୍ର ରୂପେ ।
ଗୋଗୋଷ୍ଠ ପୂର୍ବଦିଗେ ସ୍ଥାପେ ॥
ଉତ୍ତନଶାୟୀ ବାଳଦେହୀ ।
କର ଚରଣ ସଙ୍କୋଚଇ ॥

ମୁଖ ନାସିକା ଚକ୍ଷୁକର୍ଣ୍ଣ ।
ସପତଫଣୀ ଶୋଭିବନ ।।
ବିବିଧ ବସ୍ତ୍ର ଅଳଙ୍କାର ।
ପୁଷ୍ପ ଚନ୍ଦନ ଘନସାର ।।
ଧୂପଦୀପାଦି ନଇବେଦ୍ୟ ।
ବ୍ରାହ୍ମଣେ ପୂଜାଇ ଆନନ୍ଦେ ।।
ଧରଣୀଧର ଏହୁ ଯେଣୁ ।
ମହା ପୂଜନେ ଶତ ଧେନୁ ।।
କଅଁଳା ବାଛୁରୀ ଗୋଟିଏ ।
ଡିଆଁଇ ଦେଇ ଜୟେ ଜୟେ ।।
ନନ୍ଦର ଅଗ୍ରତେ ଗାର୍ଗବେ ।
ଏରୂପେ କହିଥିଲେ ପୂର୍ବେ ।।
ଧେନୁ ଭିଆଣ କଲେ ଯେତେ ।
ନତ୍ର ଶାସନ ଏହିମତେ ।।
ଗୋପାଳ ହୋଇ ଏକତୁଣ୍ଡ ।
ଗହଳ-ଶୋପ ନଗ୍ରଦାଣ୍ଡ ।।
ନବୀନ ବସ୍ତ୍ର ଅଳଙ୍କାର ।
ଗନ୍ଧ ଚନ୍ଦନ ପୁଷ୍ପହାର ।।
ଏକ ଆରେକ ବେଶ ସାଜ ।
କେୟୂର କଙ୍କଣ ବିରାଜ ।।
କିଙ୍କିଣୀ ନୂପୁର ଶବଦେ ।
ଗୋପାଳ ନାଚନ୍ତି ଆନନ୍ଦେ ।।
ଗାବଙ୍କ ମଣ୍ଡଣି ଯତନେ ।
ବସନ ସୁବର୍ଣ୍ଣ ରତନେ ।।
କୁସୁମ ଚନ୍ଦନ ସିନ୍ଦୂର ।
ଘଣ୍ଟି ଘାଗୁଡ଼ି ପୁଷ୍ପମାଳ ।।
ବଜାଇ ନିଖମଠାରେ ଗାଇ ।
ବିବିଧ ବାଜଣା ବଜାଇ ।।
ମହାଉତ୍ସବ ଗୋପସଭା ।
ଅନନ୍ତ ରୂପ ବନ୍ଧ ବ୍ରହ୍ମା ।।
ଦେଖନ୍ତି ଯେଂଖା ପରାକ୍ରମ ।
ଛଳ ବହି କେ କରେ ଭ୍ରମ ।।
ବାଜା ବଜାଇ ଡିଅଁ ଡେଇଁ ।
କେ ଆଗେ କେ ପଛେ ଚଳଇ ।।

ଏକ ଆରକେ ସାକ୍ଷୀ ହୋଇ ।
ହସଇ କହେ ଠିହା ଠିହ ।।
ବରଷ କରେ ଦିନେ ଏହି ।
ଆଜ ଯେ ଗହ୍ମା ଡେଇଁ ଥାଇ ।।
ଇଷ୍ଟ ମୁଣ୍ଡରେ ଦେଇ ପାଦ ।
ଖଣ୍ଡଇ ସକଳ ପ୍ରମାଦ ।।
ରାମ ଗୋବିନ୍ଦ ସଙ୍ଗମେଳେ ।
ଗହ୍ମା ଡିଅଁନ୍ତି ଗୋପବାଳେ ।।
ସକଳ ଘରେ ଏ ଉତ୍ସବ ।
ନିମନ୍ତି ଇଷ୍ଟ ଯେ ବାନ୍ଧବ ।।
ନାନା ବିଧାନେ ପିଠାପଣା ।
ଭୁଞ୍ଜିଣ ହୁଅନ୍ତି ଫୁରୁଣା ।।
ଏମନ୍ତେ ଶ୍ରାବଣ ଯେ ଶେଷ ।
ଭାଦ୍ରବମାସ ପରବେଶ ।।
ଅଷ୍ଟମୀ ରୋହିଣୀ ନକ୍ଷତ୍ର ।
କୃଷ୍ଣପକ୍ଷ ବୃଷରାଶିସ୍ଥ ।।
ନନ୍ଦର ମନ୍ଦିରେ ଉତ୍ସବ ।
ମଙ୍ଗଳ ଆରମ୍ଭେ ସମ୍ଭବ ।।
ନିମନ୍ତି ସୁହୃଦ ବାନ୍ଧବ ।
ନବ ବନସ୍ତ ପ୍ରିୟଭବ ।।
ଉପନନ୍ଦ ଯେ ବସୁନନ୍ଦ ।
ଗରିଷ୍ଠ ଆଦି କୁଳ ବୃଦ୍ଧ ।।
ଆସିଲେ ରାଜା ବୃଷଭାନୁ ।
ଗୋବର୍ଦ୍ଧନ ମଲ୍ଲାଭିମନୁ ।।
ଶ୍ରୀପୌର୍ଣ୍ଣମାସୀ ଭଗବତୀ ।
ମୁଖରା ଜଟିଳା ଶ୍ରୀମତୀ ।।
ଲଳିତା ଆଦି ଯେତେ ସଖୀ ।
ବୀରା ବୃନ୍ଦାଦି ନାନ୍ଦୀମୁଖୀ ।।
ମିଳିଲେ ନନ୍ଦପୁରେ ଯାଇ ।
ଅନୁରୂପରେ ପୂଜା ପାଇ ।।
ବନ୍ଧୁଗଣଙ୍କ ସଙ୍ଗେ ରାଣୀ ।
ଯଶୋଦା ପୁର ସଜକରି ।।
ଆଜଏ କୃଷ୍ଣ ଜନ୍ମଦିନ ।
ସକଳେ କରିବେ ଭୋଜନ ।।

ବିଶେଷ ପାକ ସମ୍ପାଦିବ ।
ଯେମନ୍ତ ପ୍ରଶଂସା ହୋଇବ ॥
ଏମନ୍ତ କହି ଓଷ୍ଠଧରେ ।
ସତୀ ନିଯୋଗି ପାକଶାଳେ ॥
ଶ୍ରୀକୃଷ୍ଣ ସ୍ନାନ ଯେ ସୁବେଶ ।
ଉତ୍ତମ ଆସନେ ପ୍ରବେଶ ॥
କୁଳର ପୁରୋହିତ ଗଣେ ।
ବିଧିବିଧାନ ଆଚରଣେ ॥
ମନ୍ତ୍ରିଣ ବସ୍ତ୍ର ଅଳଙ୍କାର ।
ଭୂଷଣ ଶ୍ରୀକୃଷ୍ଣ ଶରୀର ॥
ବରୁଣ ପୂଜା ଆଦି ହୋମ ।
ଯେ ସ୍ୱନକ୍ଷତ୍ର ନିତ୍ୟଧର୍ମେ ॥
ଶଙ୍ଖ କାହାଳି ନାନା ବାଦ୍ୟେ ।
ଗୋପାଳେ ନାଚନ୍ତି ଆନନ୍ଦେ ॥
ଶୁଦ୍ଧ ଯୁବତୀଗଣେ ମିଳି ।
ଅର୍ଘ୍ୟ ବଢାଇ ହୁଳହୁଳି ॥
ଦୁବ୍ବା ଅକ୍ଷତ ଦେଇ ଶିରେ ।
ସପତ ଦୀପାବଳୀ କରେ ॥
ଶ୍ରୀମତୀ ଯୁବତୀଙ୍କ ମାଝେ ।
ଅର୍ଘ୍ୟ ଦିଅନ୍ତି ଲାଜେ ଲାଜେ ॥
ଇଙ୍ଗିତ ନୟନର କୋଣେ ।
ସ୍ୱର୍ଗିବା ସୁଖଭୋଗ ଜାଣେ ॥
ଦେଖି ଶ୍ରୀକୃଷ୍ଣ ସ୍ୱନକ୍ଷତ୍ର ।
ସୁଫଳ କଲେ ସର୍ବନେତ୍ର ॥
ହରଷ ହୋଇ ନନ୍ଦରାଏ ।
ବ୍ରାହ୍ମଣ ଭୋଜନ କରାଏ ॥
ଦରିଦ୍ରେ ଅନ୍ନ ବସ୍ତ୍ରଦାନ ।
ମିତ୍ର ବାନ୍ଧବଙ୍କୁ ସମ୍ମାନ ॥
ନବୀନ ବସ୍ତ୍ର ଅଳଙ୍କାର ।
ଗନ୍ଧ-ଚନ୍ଦନ ଘନସାର ॥
ସୁବାସ ପୁଷ୍ପ ଗନ୍ଧମାଳ ।
ବିବିଧ ଆସନ ତାମ୍ବୂଳ ॥
ଗୋପକୁମାର କୃଷ୍ଣ ସଙ୍ଗେ ।
ଭୋଜନ କରେ ନାନାରଙ୍ଗେ ॥

ଉଦର ଭରି ଷଡ଼ରସେ ।
କର୍ମ ଇଙ୍ଗିତ ପରିହାସେ ॥
ସୁବାସ ଜଳେ ଆଚମନ ।
କର୍ପୂର ତାମ୍ବୂଳ ଭୋଜନ ॥
ବିଜୟ ଆସ୍ଥାନ ନବରେ ।
ସେବକେ ସେବା ତତପରେ ॥
ଶୁଣି ଗାନ୍ଧର୍ବ ଗୀତବନ୍ଧେ ।
ଅଛନ୍ତି ସର୍ବ ମିତ୍ରବୃନ୍ଦେ ॥
ଗଣନ୍ତୁ ବାନ୍ଧବ ସଙ୍ଗରେ ।
ନନ୍ଦ ଆନନ୍ଦ ଭୋଜନରେ ॥
କୃଷ୍ଣର ଜନ୍ମ ସ୍ୱନକ୍ଷତ୍ର ।
ଉତ୍ସବ ମଙ୍ଗଳ ଚରିତ ॥
ଦଧି ହଳଦୀ ସଙ୍ଗେ ଗୋଳି ।
ଏକ ଆରକେ ବୋଳାବୋଳି ॥
ନାନା ପିଚକା ଜଳଯନ୍ତ୍ରେ ।
ମାରନ୍ତି ଧରି କରପାନ୍ତେ ॥
ଏମନ୍ତେ ସାତଦିନ ଯାଏ ।
ଉତ୍ସବ ଗୋପପୁର ଯାଏ ॥
ଅବନୀ ପରମ ସାନନ୍ଦ ॥
ସ୍ୱର୍ଗେ ଦେଖନ୍ତି ଦେବବୃନ୍ଦ ॥
ଉତ୍ସବ ସର୍ବ ସାତପୁରି ।
ଭୁଞ୍ଜି ଯେ ଯାହା ପୁରେ ଚଳି ॥
ଏହି ଭାଦ୍ରବ ଶୁକ୍ଳପକ୍ଷେ ।
ଅଷ୍ଟମୀ ବୁଧ ରାଧାଋକ୍ଷେ ॥
ଉତ୍ସବ ବୃଷଭାନୁ ପୁରେ ।
ଦୁହିତା ଜନମ ତିଥିରେ ॥
ନବ ସମ୍ଭବ ଯେତେମତେ ।
ଏହି ସମ୍ବାଦ ଯଥୋଚିତେ ॥
ନିମନ୍ତ୍ରି ଆଣି ଜଣେ ଜଣେ ।
ପୂଜଣ ବାନ୍ଧବ ବିଧାନେ ॥
ନନ୍ଦ ସଙ୍ଗରେ ରାମ ହରି ।
ଗଉରବରେ ପୂଜା କରି ॥
ଆରାଧି ରାଧା ସ୍ୱନକ୍ଷତ୍ର ।
ଦେଲେ ସେ ଅନ୍ନବସ୍ତ୍ର ଛତ୍ର ॥

ରଜାଙ୍କ ରାଣୀ କଳାବତୀ ।
ଜାତ କାଳିନ୍ଦୀ ଭାଗ୍ୟବତୀ ॥
ବାତ୍ସଲ୍ୟଭାବ କୃଷ୍ଣେ ଦେଖି ।
ଆନନ୍ଦ-ଜଳେ ପୂରେ ଆଖି ॥
ଧାତ୍ରୀକି ପେଶି ଘେନିଗଲେ ।
ପୂରେ ଆସନେ ବସାଇଲେ ॥
ନିଜ ନନ୍ଦନୀ ରୂପ ଚହିଁ ।
ସ୍ନେହେ କୃଷ୍ଣଙ୍କୁ ନିରେଖଇ ॥
ଏହାଙ୍କୁ ଆଗୁଁ ଦେଖିଥିଲେ ।
ଛଳ କରଇ ଥାନ୍ତି ବଳେ ॥
ବିସ୍ମୟ ବଢ଼ଇ ମନରେ ।
ଏରୂପେ ଏଥି ପଟାନ୍ତରେ ॥
ଏମନ୍ତେ ସ୍ନେହକୁ ଭଜାଇ ।
ସୁବେଶ କରାଇ ଭୁଞ୍ଜାଇ ॥
ସୁଷ୍ଟି ପ୍ରଧାନ ଶାଳିଅନ୍ନ ।
କ୍ଷିର କ୍ଷିରସା ନାନାବର୍ଣ୍ଣ ॥
କୃଷ୍ଣ ନ ଭୁଞ୍ଜେ ଲଜ୍ଜାପାଇ ।
ରାଣୀ ଭୁଞ୍ଜାନ୍ତି ରାଣଦେଇ ॥
ଯଶୋଦା ମାତାଙ୍କ ସପଥ ।
ଉଦର ଭରି ଭୁଞ୍ଜ ତାତ ॥
ତୁମ୍ଭ ଶରଧା ଯହିଁ ଯହିଁ ।
ଜାଣି ସମ୍ଭାନ୍ଦି ଅଛି ରାଣ ॥
ଶୁଣି ଗୋବିନ୍ଦ ଲଜେଲଜେ ।
ଅଳପ ଅଳପ ସେ ଭୁଞ୍ଜେ ॥
ଅମୃତ ବାଣ ପ୍ରରଣରେ ।
ବେନି ଦର୍ଶନ ପରସ୍ପରେ ॥
ସୁବାସ ଜଳେ ଆଚମନ ।
ମୁଖ ମାର୍ଜ୍ଜନ ସୁବସନ ॥
ରାଣୀ ଭାଙ୍ଗିବା ପାନ ବିଡ଼ା ।
ତହିଁ ଘେନିଣ କୃଷ୍ଣ ଫେଡ଼ା ॥
ଭକ୍ଷିଣ ଉଠନ୍ତି ଗମନ ।
ଘେନି ଅଇଲେ ସବୁ ମନ ॥
ତାମ୍ବୂଳ ଅଧରୁ ବଳଇ ।
ଅନୁରାଗ କି ଉଛୁଳଇ ॥

ନିଜ ସଭାରେ ଯାଇଁ ବସି ।
ବନ୍ଧୁ ସୁବଳ ହସା ହସି ॥
ଶ୍ୱଶୁରଘର ମଧୁପୁର ।
ପ୍ରବେଶ ସକଳ ପାଶୋର ॥
ଗୋବିନ୍ଦ ସଙ୍କୁଚିତେ ହସେ ।
ଅପାଙ୍ଗେ ଅମୃତ ବରଷେ ॥
କୃଷ୍ଣ ଭୋଜନ ଶେଷ ଯେତେ ।
ସଜନୀ ନେଲେ ତା ଗୁପତେ ॥
ରାଧିକା ଭୋଜନରେ ଦେଇ ।
ଅନ୍ୟ ନ ଭୁଞ୍ଜେ ଜାଣି ରାଇ ॥
ଏମନ୍ତେ ବୃଷଭାନୁ ରାଣ ।
ସଙ୍ଗତେ ଘେନି ବନ୍ଧୁଗଣ ॥
ହାର ବସନ ଗନ୍ଧ ପୁଷ୍ପେ ।
ଭୋଜନ କରି ନାନା ରସେ ॥
ପୂଜା ଆଦରେ ଗୋପବୃନ୍ଦ ।
ବହୁତ ଭୋଜନେ ଆନନ୍ଦ ॥
ପ୍ରିୟ ବାନ୍ଧବ ମିତ୍ର ସୁଖେ ।
ସଭାରେ ବସି ନଶିମୁଖେ ॥
କହନ୍ତି ରାଜପୁତ୍ରେ ମିଳି ।
ଇନ୍ଦ୍ର ଉତ୍ସବ ହେବ କାଲି ॥
ଜ୍ୟେଷ୍ଠା ନକ୍ଷତ୍ରେ ଆଦ୍ୟ ପୂଜା ।
ଏଣେ ସନ୍ତୋଷ ଦେବ ରାଜା ॥
ମାହେନ୍ଦ୍ର ସମୟେ ହେ ରାଜ ।
ସ୍ଥାପନ କରି ଇନ୍ଦ୍ରଧ୍ୱଜ ॥
ଶୁଣି ସେ ନନ୍ଦ ଉଦବେଗ ।
ବିଧି ବିଧାନ ଉଦଯୋଗ ॥
କରଣ ରାଇ ପାଞ୍ଜି ଫେଡ଼ି ।
ଗତ ଭିଆଣ ପତ୍ର ପଢ଼ି ॥
ବାସବ-ଉତ୍ସବ ସମ୍ଭାର ।
ଶୁଣି ବହୁତ ଚତପର ॥
ପିତାଙ୍କ ଉଦବେଗ ଗୃହିଁ ।
ହସି କହନ୍ତି କୃଷ୍ଣ ତହିଁ ॥
ଆମ୍ଭର ଇଷ୍ଟ ଗୋବର୍ଦ୍ଧନ ।
ଏଣେ ସେ ଗୋଧନ ବର୍ଦ୍ଧନ ॥

ଏବେ ଏ ଗିରି ପୂଜା କର ।
ଇନ୍ଦ୍ରରେ କି କାର୍ଯ୍ୟ ଆମ୍ଭର ॥
ଏ ଗିରି ତୃଣ ଜଳ ଖାଇ ।
ଗାଈ ଦୁଧକୁ ଦେବେ ପାଂଇ ॥
ଯେ ଇଷ୍ଟ ପୂଜା ନ କରଇ ।
ସକଳ ଧର୍ମ ତା ସରଇ ॥
ଶୁଣି ସକଳେ କୃଷ୍ଣ ବାଣୀ ।
ଗୁରୁ ବଚନ ପରମାଣି ॥
ଦୋପାଧ୍ ବାଇଣ ବୋଇଲେ ।
ନଗ୍ରେ ଘୋଷଣା ଦିଆଇଲେ ॥
ଇନ୍ଦ୍ର ଉତ୍ସବ ଯାତ ଦିନ ।
ପୂଜା ହୋଇବେ ଗୋବର୍ଦ୍ଧନ ॥
ବାସବ ପୂଜା ଯେତେମାନେ ।
ଛନ୍ଧିଂ କି ହେବ ସାତ ଦିନେ ॥
ଶୁଣି ସେ ଗୋପପୁର ଲୋକେ ।
କହନ୍ତି ଏକଆରେ ଥୋକେ ॥
ଏ ବଡ଼ ଅବସ୍ଥର କଥା ।
ଶୁଣି ଲାଗିଲା ମନେ ବ୍ୟଥା ॥
ଏକେତ କଂସ ଅସହଣି ।
ଦୁଯେ କୋପିବ ବଜ୍ରପାଣି ॥
ଗିରି କି ଇନ୍ଦ୍ର ଭୋଗ ଦେଇ ।
ଗୋପେ ପାରିବଟି କି ରହି ॥
କେ ବୋଲେ କୃଷ୍ଣର ବଚନ ।
ଅଚଳ ନବୀନ ଅର୍ଚ୍ଚନ ॥
କେ ବୋଲେ କୁଳବୃଦ୍ଧେ ଥାଇ ।
ବାଳ ବଚନେ ହେଲେ ବାଇ ॥
ଘଟିଲା ଦୃଷ୍ଟ ସମାଚାର ।
ପୂଜିବେ ଗିରି କି ଦଣ୍ଡର ॥
ଇନ୍ଦ୍ର ପରିଏ ଦେବ ତେଜ ।
ତାର ବଇରି ଗିରି ପୂଜ ॥
କେ ବୋଲେ ଏକ ବଜ୍ରଘାତେ ।
ଭାଣିବ ପର୍ବତ ସବୁତେ ॥
କେ ବୋଲେ କୃଷ୍ଣ ବଳୀୟାର ।
କି କରି ପାରେ ବଜ୍ରଧର ॥

ଯେ ଇନ୍ଦ୍ର କଂସକୁ ଶଙ୍କଇ ।
ସେ କଂସ କୃଷ୍ଣ ଚମକଇ ॥
ଏ କୃଷ୍ଣ ଗୋକୁଳ ତାରଣ ।
ଏଥିରେ ଥିବ କି କାରଣ ॥
ଏରୂପେ ଏକଆରେ ତୁଣ୍ଡେ ।
ଘୋଷିଣ ଶୁଣି ଗୋପଦାଣ୍ଡେ ॥
ରଜନୀ ଉଜାଗର ହୋଇ ।
ସକଳ ଦ୍ରବ୍ୟକୁ ଦିଗଇ ॥
ଏମନ୍ତେ ରଜନୀ ପାହିଲେ ।
ଯେ ନିତ୍ୟକର୍ମ ବଢ଼ାଇଲେ ॥
ବିଦ୍ୱାର ହୋଇ ସର୍ବଜନ ।
ଗିରି ପୂଜାକୁ ଆଗମନ ॥
ଉପକରଣ ଘେନି ସଙ୍ଗେ ।
ଗୋପାଳ ଯୂଥ ବେଗେ ବେଗେ ॥
ସକଳ ହୋଇ ଏକଜୁଣ୍ଡ ।
ପୂରି ଚଳନ୍ତେ ଗୋପଦାଣ୍ଡ ॥
ଶକଟ ବଳଦ ଘରରେ ।
ବନ୍ଧୁ ଚଳାଇ ଯେ ଯାହାରେ ॥
ବାଜଇ ବିବିଧ ବାଜଣା ।
ଗୋପାଳେ ହୋଇଣ ଫଗୁଣା ॥
ନାଚନ୍ତି ଗେଲେ ଯାଉଁ ଯାଉଁ ।
ବାଡ଼ି ବୁଲାଇ ପାଞ୍ଚକେଣ୍ଟୁ ।
ଏକ ଆରକେ ପରିହାସ ।
ନୟନ ଠାରି ରଞ୍ଜେ କାନ୍ଥ ॥
ବୃଦ୍ଧ ଜନଙ୍କୁ ଘେନି-ନନ୍ଦ ।
ଆଗେ ଚଳାଇ ଗୋରୁ ବୃନ୍ଦ ॥
କୁମାର ମେଳେ ରାମହରି ।
ଦିବ୍ୟ ମୋହନ ବେଶଧରି ॥
ପଛେ ଗୋଡ଼ାଇ ଗୋପବାଳୀ ।
ଯାହା ଉତ୍ସବେ ହୁଳହୁଳି ॥
ପୂଜିବେ ଗୋବର୍ଦ୍ଧନ ଗିରି ।
ଉତ୍ସାହ ମନ ସବୁଙ୍କରି ॥
ବିପ୍ରାଦି ଗୁରୁବର୍ଗ ଚଳେ ।
ଏମନ୍ତେ ଗିରିତଳେ ମିଳେ ॥

ବେଢିଲେ ଗିରିବର ପାଶେ ।
ପ୍ରଣାମ କରି ଗୋପ ଈଶେ ॥
କରଯୋଡ଼ିଣ ଭାବେ କହି ।
ଆମ୍ଭ ପୋଷକ ପ୍ରଭୁ ତୁହି ॥
ଜୟହୋ ମହୀଧର ଇନ୍ଦ୍ର ।
ତୋହର ସବୁ ଗୋପବୃନ୍ଦ ।
ଚରଣେ ଦେଉଛନ୍ତି ପ୍ରଣତି ।
ଯେନ ଏ କମ୍ପିତ ଭକତି ॥
ବିବିଧ ବସ୍ତ୍ର ନିଜଗୁଳ ।
ପକାନ୍ତି କୁସୁମ ଅଞ୍ଜଳି ॥
ଗିରି ପଞ୍ଚରେ ନନ୍ଦରାଣ ।
ବରଣ କରି ସୁ ବ୍ରାହ୍ମଣ ॥
ଶ୍ରୀକୃଷ୍ଣ ଉପଦେଶ ମାର୍ଗେ ।
ଗିରି ପୂଜିଲେ ଅନୁରାଗେ ॥
ଗନ୍ଧ କୁସୁମ ଧୂପ ଦୀପେ ।
ନୈବେଦ୍ୟ ଦେଲେ ଅନୁରୂପେ ॥
ଦଧି ଦୁଗ୍ଧ ଶିଖରଣୀ ।
ଅଧାମ ଗୋଷ୍ଟିକା ଲବଣୀ ॥
ରମ୍ଭାଳ ତଗୁଣି ତାଗର ।
ସର କାକରା କେରା କେରା ॥
ଖିଇ କଦଳୀ ଫେଣି ଗଜା ।
ଲଡୁ ପାପୁଡ଼ି ଖଣ୍ଡଖଜା ॥
ମଣ୍ଡା ମାଣ୍ଡୁଆ ରସକୋରା ।
ଅଧାମ ଗହମ କାକରା ॥
ପୂଗ ପ୍ରଧାନ ମନୋହର ।
ଇକ୍ଷୁ ପରଡ଼ା ଭାର ଭାର ॥
ପଣସ ରସ ତାଡ଼ତାଡ଼ ।
ଦ୍ରବ୍ୟ ଅମୃତ କୁଣ୍ଡ କୁଣ୍ଡ ॥
ଶ୍ୱେତ ଶାକର ଘୃତସର ।
ଅମୃତ ପାନ ଘନସାର ॥
ଦୁଧ ଦହିରେ ହୁଏ ସମ ।
ଅମୃତ ରସ ଏକନାମ ॥
ବିବିଧ ବର୍ଣ୍ଣରେ ସମ୍ବାଦ ।
ବୋଲ୍ଛି ମତ୍ସ୍ୟ କଚ୍ଛପାଦ ॥

ବହୁତ ସୂପକାର ଜନେ ।
ରନ୍ଧଣା କରି ସ୍ଥାନେ ସ୍ଥାନେ ॥
ପାଷାଣ ସ୍ଥଳୀ ଯେ ଧୂଆଇ ।
କୁଡ଼ାନ୍ତି ଅନ୍ନକୁ ବୁହାଇ ॥
ରଚନା କଲେ ଅନ୍ନକୂଟ ।
ନାନା ବ୍ୟଞ୍ଜନ ଅନ୍ନକୂଟ ॥
ଶିଖରୁ ଘୃତନଦୀ ବହେ ।
ବିବିଧ ପୁଷ୍ପ ଶୀଳାମୟେ ॥
ବେଢ଼ି ପାୟସ ଉପବନେ ।
ଖଣ୍ଡ ଦ୍ରୁମରେ ଶୋଭାବନ ॥
ବିବିଧ ସ୍ୱାଦ କନ୍ଦମୂଳ ।
ସର ପାପୁଡ଼ି ପ୍ରତିଫଳ ॥
ରମ୍ଭାଦି ନାନା ଫଳମୂଳେ ।
ଖଞ୍ଜିଣ ଖଣ୍ଡ ଚଉଡାଳେ ॥
ସାଗର ନଗ ବନଭୋଗ ।
ବିବିଧ ବିଧାନେ ସଞ୍ଜୋଗ ।
ମଣ୍ଡିତ ଏଖଣ୍ଡ ପରବେ ।
ଶ୍ୱେତ ଶର୍କର ଖଗମୃଗେ ॥
ଏଗିରି ପୂଜାର ସମ୍ଭାର ।
ନାହିଁ ନୋହିବ ତିନିପୁର ॥
ବିନୟେ କହେ ଗୋପ ରାଜା ।
ହେ ଗିରି ଯେନ ଆମ୍ଭ ପୂଜା ॥
ଉଆଣ କରିଅଛୁଁ ଯେତେ ।
ମଣୋହି କଲେ ଯିବୁଁ ପ୍ରତେ ॥
ନଜାଣୁ ତୁମ୍ଭ ମନ୍ତ୍ରସାଜ ।
ଆମ୍ଭର ଭାବ ହେନ ଭୁଞ୍ଜ ॥
ଶୁଣି ସେ ଏମନ୍ତ ବଚନ ।
ଯେ ଗିରି ସେ ନନ୍ଦ ନନ୍ଦନ ॥
ବିଶ୍ୱ ରୂପକୁ ପ୍ରକାଶିଲେ ।
ସେ ଗିରି ଉପରେ ବସିଲେ ॥
ଆକାଶେ ଲାଗୁଅଛି ଶିର ।
ଅତି ବିଶାଳ ଲମ୍ବକର ॥
ଶଶୀ ତପନ ନେତ୍ରବେନି ।
ତନୁ ନବୀନ ମେଘ ଜିଣି ॥

ଗୋପାଳେ ଏହା ରୂପ ଦେଖି ।
ଭୟେ ପଳାଇ ବୃନ୍ଦ ଆଗି ॥
ଏମନ୍ତ ଦେଖି ସେ ପୁରୁଷ ।
ଡାକନ୍ତି ନ ପାଅରେ ତ୍ରାସ ॥
ମୋତେ ନ ପୂଜି ଅନ୍ୟ ପୂଜା ।
ମୋହର ଚନ୍ଦ୍ରକଳା ଭାଞ୍ଜି ॥
ଗୋପରେ ଦେବତାଙ୍କ ଅରିଷ୍ଟି ।
ଖଣ୍ଡନ କରଇ ମୁଁ ହିଁ ॥
ଏବେ ପାଇଲ ସଦବୁଦ୍ଧି ।
ତୁମ୍ଭର ହେବ ସର୍ବସିଦ୍ଧି ॥
ଶ୍ରଦ୍ଧାରେ ମୋତେ ଦେଲ ଯାହା ।
ସାକ୍ଷାତେ ଭୁଞ୍ଜିବି ମୁଁ ତାହା ॥
କର ବଢ଼ାଇ ସବୁ ନେଇ ।
ଏକା ବେଳକେ ଦେଲେ ଖାଇ ॥
ଦେଖି ଗୋପାଳେ ଅଚମ୍ଭିତ ।
ଭୂମିରେ ହୋଇଣ ପ୍ରଣତ ॥
ଉଠି ବୋଲନ୍ତି ଯୋଡ଼କର ।
ରଖ ରଖ ହେ ଗିରିବର ॥
ପଶୁପାଳକ ବନଚର ।
ଆମ୍ଭ ଅପ୍ରାଧ କ୍ଷମାକର ॥
ତୁମ୍ଭର ହେବେ ପରସନ୍ନ ।
ସାକ୍ଷାତେ ଦେଲ ଦରଶନ ॥
ଆମ୍ଭେ ଯେ ନ ଜାଣୁଁ ତୁମ୍ଭଙ୍କୁ ।
ପୂଜୁଥାଉଁ ଅନ୍ୟ ଦେବଙ୍କୁ ॥
ତୁମ୍ଭର ପଦ ପ୍ରଭୁ ପାଇ ।
ଆନ ସେବିବୁଁ କାହିଁପାଇଁ ॥
ନକଲୁଁ ସୁର ରାଜାଯାଗ ।
ଏ ସେନା କରିବ ସେ ରାଗ ।
ଏଥକୁ ତୁମ୍ଭ ହେବ ସାହା ।
କସ କରିବେ ଶଚୀନାହା ॥
ପ୍ରଭୁ ବୋଲନ୍ତି ଗୋପବୃନ୍ଦେ ।
ମେଘ ଗମ୍ଭୀର ଉଚ୍ଚନାଦେ ।
ଇନ୍ଦ୍ରକୁ ଯେବେ ତୁମ୍ଭେ ଡର ।
ତେବେ ଆମ୍ଭଙ୍କୁ ତୋଳଧର ॥

ଏ ଶୀଳା ବାକ୍ୟ ପଢ଼ି ଡାକ ।
ଉର୍ଦ୍ଧ୍ୱେ ଧରନ୍ତେ ଦେବଲୋକ ॥
ମୋହର ଗର୍ଭେ ସର୍ବେ ଥିବ ।
ବରଷି ବାସବ ହାରିବ ॥
ଏମନ୍ତ ବୋଲି ଶୀଳାଖସି ।
ଦେଖି ସକଳେ ହେଲେ ତୋଷି ॥
ସେ ବାକ୍ୟ ପଢ଼ି ଗୁପତରେ ।
ପ୍ରଭୁ ଅଳସ ଏମନ୍ତରେ ॥
ପ୍ରଣାମ କରି ପୁଣ ନନ୍ଦ ।
ସଙ୍ଗତେ ଘେନି ଗୋପବୃନ୍ଦ ॥
ରନ୍ଧନ କରି ବନଭୋଗୀ ।
ଏମନ୍ତେ ସାତଦିନ ପୂଜି ॥
ତୃଣ ଚରାଇ ସୁଖେ ଗାଈ ।
ମାନସ ଗଙ୍ଗାଜଳ ଖାଇ ॥
ଭାଦ୍ରବ ପୌର୍ଣ୍ଣମୀର ଦିନ ।
ଯାଗ ସମ୍ପୂର୍ଣ୍ଣ ଗୋବର୍ଦ୍ଧନ ॥
ପୁଣ ସେ ଦେଇ ଖଣ୍ଡଖିର ।
ଗିରିଙ୍କି ପରକ୍ରମା କରି ॥
ମଙ୍ଗଳ ଉତ୍ସବ ସମ୍ଭାରେ ।
ଶୁଭେ ପ୍ରବେଶ ସର୍ବେ ପୁରେ ॥
ଏମନ୍ତେ ଯଜ୍ଞ ଭଗ୍ନ ଜାଣି ।
କୋପେଣ କ୍ରୁଦ୍ଧ ବଜ୍ରପାଣି ॥
ସମ୍ବର୍ତ୍ତ ମେଘ ଆଖଣ୍ଡଳ ।
ବେଢ଼ିଣ ଗୋକୁଳମଣ୍ଡଳ ॥
ବଜ୍ରକୁ ଧରିଣ ଝମକ ।
ଅବନୀ ଅଚଳ ଚମକ ॥
ଘୋଟି ପ୍ରଳୟ ମେଘମାଳ ।
ଢୋଳିଲ ସାତସିନ୍ଧୁ ଜଳ ॥
ଏମନ୍ତେ ଗୋପରେ ଅରିଷ୍ଟି ।
ଭସ୍ମ ରୁଧିର ଶୀଳା ବୃଷ୍ଟି ॥
ଦେଖି ଗୋକୁଳ ତ୍ରାସ ପାଇ ।
ବୋଲନ୍ତି ଏବେଳ ମଲୁଇଁ ॥
ଇନ୍ଦ୍ର ଉତ୍ସବ ଯଜ୍ଞ ଭଞ୍ଜି ।
ଅର୍ଜିଲୁ କର୍ମ ଏବେ ଭୁଞ୍ଜି ॥

ନଷ୍ଟ ଗଲାଇଁ ସର୍ବନାଶ ।
କରିବ ବରଷା ବତାସ ॥
ଅଷ୍ଟାଳ ଝାଙ୍କଇ ପବନ ।
ବଜ୍ରଲ ମାରେ ଘନଘନ ॥
କେ ବୋଲେ ଇନ୍ଦ୍ର ସେହୁ ରଜା ।
ସକଳ ତାହାର ପରଜା ॥
ପୂର୍ବେ ପର୍ବତମାନ ଉଡ଼ି ।
ପଡ଼ନ୍ତି ନଗ୍ର ପୁର ମାଡ଼ି ॥
ବାସବ କାଟି ଡେଣା ପକ୍ଷୀ ।
ଅଚଳ ନଷ୍ଟକଲେଣ ରକ୍ଷି ॥
ସେ ଗିରି ପୂଜିବ ଉତ୍ସବେ ।
କମ୍ପା ସେ କୋପ ନ କରିବେ ॥
ପଳାଇ ପଶିବା ହୋ କାହିଁ ।
ରଖନ୍ତା [illegible]ପୁରେ ନାହିଁ ॥
କେ ବୋଲେ କମ୍ପା ଭୟଙ୍କର ।
କୃଷ୍ଣ ଆମ୍ଭର ବଳିଆର ॥
ଏତେ ବିପଦୁଁ ରଖେ ଯେହୁ ।
ଏବେ ରଖିବ ପୁଣ ସେହୁ ॥
ଏମନ୍ତ କୁହାକୁହି ଲୋକେ ।
କୃଷ୍ଣ କହନ୍ତି କଉତୁକେ ॥
କେଣ୍ଟି ନ ପାଅ ତୁମ୍ଭେ ଭୟ ।
ଏଥକୁ କରିବା ଉପାୟ ॥
ଅଛନ୍ତି ମନ୍ତ୍ର ଯନ୍ତ୍ର ଶୀଳା ।
ବଡ଼ବା ବୋଲି ନନ୍ଦବଳା ॥
ପଡ଼ନ୍ତେ ଗିରି ହେବ ଟେକ ।
ଆନେ ବଡ଼ବା ଆସ ଦେଖି ॥
ଏମନ୍ତ ବୋଲି ସଭାତଳେ ।
କୃଷ୍ଣ ମିଳିଲେ ସଙ୍ଗମେଳେ ॥
ଅଛଇ ଶୀଳା ବଡ଼ ଉଚ ।
ବିସ୍ତାର ଉଚ ସଞ୍ଚ ଘଞ୍ଚ ॥
ସୁବାହୁ ବସନ୍ତ କୋକିଳ ।
ଅର୍ଜୁନ କର୍କଣୀ ଉଜ୍ଜ୍ୱଳ ॥
ସ୍ତୋକ କୃଷ୍ଣଙ୍କ ସଙ୍ଗମିଶି ।
ଏ ସାତଶୀଳା ବେଢ଼ି ବସି ॥
ଚର୍ମୀ ଅଙ୍ଗୁଳି ଲଗାଇ ।
ପଡ଼ନ୍ତି ଏକ ଆରେ ବୃନ୍ଦିଁ ॥

ଚକ୍ର ଅଢ଼ାଇ ପଦ

ଅଚଳ ରଜା, ବନ୍ଧୁ ବଳା, ମୋ ପରଘର ସାଇଁ ।
ଧରଣୀଧର ମନ୍ତ୍ରି ସାଗର ସାତଲୋକ ସୁଖଦାୟୀ ॥
ସିଦ୍ଧଙ୍କ ବଚନ ସିଦ୍ଧି । ଅଚଳ ଉଠଇ ଗିଦ ଗିଦ ॥
ଏମନ୍ତ ଉଚ୍ଚାରି କୁମାରେ ।
ଶୀଳା ଟେକିଲେ ଅଙ୍ଗୁଳିରେ ॥
ବୁଲନ୍ତି ଶୀଳା ଗୁଳି ପାଖେ ।
ଲୋକ ଆଭୁଡ଼ା ପଡ଼ି ଦେଖେ ॥
ବୋଲନ୍ତି ଭେଟିଲିତ ଏହି ।
ସିଦ୍ଧ ବଚନ ମିଥ୍ୟା ନୋହି ॥
ଇନ୍ଦ୍ରକୁ କମ୍ପା ତୁମ୍ଭେ ଡର ।
ଗିରିକ ତୋଳ ନ୍ୟସକର ॥
ପରତେ ପାଇ ସର୍ବେ ମନେ ।
ପାଷାଣ ରଖି ନିଜ ସ୍ଥାନେ ॥
ଗିରିତଳକୁ ସର୍ବେ ଚଳେ ।
ଧନ ଗୋଧନ ଘେନି ମିଳେ ॥
ଶଣରେ ବଢ଼ି ଭୁକ୍ଷ୍ୟାରେ ॥
ଶଙ୍ଖ ପାଟଏ ବଦ୍ଧତରେ ॥
ଇନ୍ଦ୍ର ଆଜ୍ଞାରେ ମେଘମାଳେ ।
ପ୍ରଳୟ ବରଷା ଗୋକୁଳେ ॥
ମୂଷଳ ପ୍ରାୟେ ଜଳଧାର ।
ହବଡ ହଶେ ନଶିପର ॥
ପବନ ଘାତେ ବୃକ୍ଷେ ଉଡ଼େ ।
ଘରଣି ଘରଦ୍ୱାର ପଡ଼ି ॥
ମହାଭୟରେ ବ୍ରଜବାସୀ ।
ପଳାଇ ତରତରେ ଆସି ॥
ବକଳେ ଏକଆରେ ରଇ ।
ପାଶେ ଡାକିଲେ ନ ଶୁଭଇ ॥
ଝିଅ ପୁଅଙ୍କୁ ଘେନି କାଖେ ।
କେ ନାରୀ ସ୍ୱାମୀ ପାଖେପାଖେ ॥
କେ ବୋଲେ ପୁଅ ଗଲା କାହିଁ ।
କେ ବୋଲେ ଝିଅମୋର ନାହିଁ ॥

କେ ବୋଲେ ମୋର ସାନଭାଇ ।
ଅଡ଼ାଇ ଆଣିଗଲା ଗାଈ ॥
ପୁରରୁ ହୋଇଲେ ବାହାର ।
ପଣନ୍ତ ଧରିଛୁ କାହାର ॥
ଧ ମଇ କେହୁ ପଡ଼ଇଟି ।
ବାଆପାଣିକ ଦେଇ ପିଠି ॥
କେ ବୋଲେ ବାସବେ ଈବାଧି ।
ଈନାଶ କାଳେ ମନ୍ଦବୁଦ୍ଧି ॥
କେ ବୋଲେ ନ କରହୋ ଚିନ୍ତା ।
ଗିରି ତୋଳିବେ ବଳବନ୍ତା ॥
ପଶିବା ଆସ ତଳ୍ପିଁ ତଳେ ।
କରିବା ଯାହା ଯେଉଁ କାଳେ ॥
ଡନ୍ତ ଗୋଧନ ହେମା ରବେ ।
ପୋଛ ବଦନ ଶୀତେ ଧାବେ ॥
ସକଳେ ଗିରିତଳେ ମିଳି ।
ହେ ଗୋବର୍ଦ୍ଧନ ରଖ ବୋଲି ॥
ଭୁଞ୍ଜ ପୂଜନେ ସୁରନୃପ ।
ଗୋପଙ୍କୁ କଲା ଏଡ଼େ କୋପ ॥
ପୂର୍ବେ ଯେ କହିଲ ସେ ଗିରି ।
ରଖ ଆମ୍ଭଙ୍କୁ ସୋଟେ ଭରି ॥
ନାମ ତୁମ୍ଭର ଗୋବର୍ଦ୍ଧନ ।
ହେବକ ଗୋଧନ ନଧନ ॥
ହେ କୃଷ୍ଣ ଆରତ ଛେଦନ ।
ବନ୍ଧନ ତୋଳ ଗୋବର୍ଦ୍ଧନ ॥
ମିଛକୁ ଟେକୁଥିଲ ଶିଳା ।
ବେଳକୁ କରୁଅଛ ହେଳା ॥
ଥରନ୍ତି ଡନ୍ତ ଶୀତବ ତେ ।
ଚଳନ୍ତି ଘୋର ବାତଘାତେ ॥
ଗିରିକ ବେଢ଼ିଣ ଗୋକୁଳେ ।
ସକଳେ ହରି ହରି ବୋଲେ ॥
କରୁଣା ସାଗର ଅଚ୍ୟୁତ ।
ଦେଖିଣ ଗୋକୁଳ ଆରତ ॥
ଅର୍ଜୁନ ବସନ୍ତ କୋକିଳ ।
ସୁବାହୁ ସୁବଳ ଉଜ୍ଜ୍ୱଳ ॥

ଆପଣେ ମିଶି ଯାତଜଣ ।
ଗିରିଙ୍କି କରି ପ୍ରଦକ୍ଷିଣ ॥
ଗତ ମନ୍ତ୍ରରେ ବାକ୍ୟ ପଢ଼ି ।
ଟେକିଲେ ଗିରିଙ୍କି ଉପାଡ଼ି ॥
କୁମାରେ ଲଠିମାନ ଧରି ।
ତୋଳିଲେ ବାମଭୁଜେ ହରି ॥
ଶୁଭିଲା ମହାଘୋର ଧ୍ୱନି ।
କାତର ହେଲେ ଇନ୍ଦ୍ର ଶୁଣି ॥
ଊର୍ଦ୍ଧ୍ୱକୁ ଗଲେ ଗିରିବଢ଼ି ।
ହାନିବାଡ଼ ଦେବ ଗଜ ପଢ଼ି ॥
ଦେଖିଣ ବାସବ ଆଶ୍ଚର୍ଯ୍ୟ ।
କୋପେ ଧମକମାରେ ବଜ୍ର ॥
ପର୍ବତେ କୃଷ୍ଣ ପାଦଚିହ୍ନ ।
ଅନେକ ବଜ୍ର ଛିନ୍ନଭିନ୍ନ ॥
ଦେଖିଣ ବଜ୍ର ଭସ୍ମ ପାଣି ।
ଇନ୍ଦ୍ର କରକୁ ନଆସଇ ॥
ବାସବ କୋପ ଗୋପପୁରେ ।
କଂସ ହରଷ ଜଗତରେ ॥
ଈଅର୍ଥେ ମୋର ଖାରେ ମଲେ ।
ଏ ଅନ ଯ୍ୟାସେ ନାଶଗଲେ ॥
ଦେଖ ଗୋକୁଳ ଉତପାତ ।
ଏମନ୍ତେ ବଢ଼ିଲା ପର୍ବତ ॥
କଂସ ନାମରେ ଚତୁ ବ ଜ ।
କଂସ ଜଗତ ତଲା ଭଜ ॥
ସେ କଂସ ଭୟେଣ ପଶୁରି ।
କହଇ ମନ୍ତ୍ରୀ ତା ବିଚାରି ॥
ସୁରରାଜାର ଯଜ୍ଞ ଭାଙ୍ଗି ।
ଗୋପାଳେ ଗୋବର୍ଦ୍ଧନ ପୂଜ ॥
ଇନ୍ଦ୍ର ଗୋକୁଳ ଭାଙ୍ଗି ଲେଡ଼ି ।
ଏ ଗିରି କୃଷ୍ଣକରେ ବେଢ଼ି ॥
ଛନ୍ଦ ଆକାରେ ଗିରି ବନ୍ଧି ।
ଗୋକୁଳେ ସୁଖେ ଥଳେ ରହି ॥
ଭୁରିତେ ଜାଣି ନୁଆଘାସ ।
ଚରି ଗୋଧନ ହେଲେ ତୋଷ ॥

ନିଶ୍ଚିନ୍ତେ ଗୋକୁଳର ଜନ ।
କଲେ ସେ ରନ୍ଧନ ଭୋଜନ ॥
କୃଷ୍ଣର କରେ ଗିରି ଦେଖି ।
ଭୟେ ଯଶୋଦା ବୁଜେ ଆଖି ॥
କୋମଳ କର ବଥାଇବ ।
କେତେବେଳେ ସେ ଧରିଥିବ ॥
ବୋଲନ୍ତି ଗୋକୁଳଙ୍କୁ କନ୍ଧ ।
କ୍ଷଣକେ ତୁମ୍ଭେ ଥାଅ ବନ୍ଧ ॥
କୃଷ୍ଣ ଭୋଜନ କରୁ କରୁ ।
ତୁମ୍ଭର ସଙ୍ଗେ ପୁଣ ଧରୁ ॥
ଏ କୃଷ୍ଣ କାଲ୍‌ଠୁଁ ଉପବାସୀ ।
ପେଟ ଯାଉଛି ହାତେ ପଶି ॥
କୁମାରେ ବୋଲନ୍ତି ଶୁଣ ମାତଃ ।
ଆମ୍ଭେ ଧରୁଛୁଁ ପରବତ ॥
ଭୋଜନ ଆଣି ଦିଅ ମୁଖେ ।
କୃଷ୍ଣ ମଣୋହି କରୁ ସୁଖେ ॥
ବାମ ହସ୍ତରେ ସିନା ଗିରି ।
ଦକ୍ଷିଣ ହସ୍ତେ ଭୁଞ୍ଜୁ ହରି ॥
ଶୁଣି ଯଶୋଦା ତୋଷମନ ।
ଥାଳୀରେ ଦେନ ମିଷ୍ଟ ଅନ୍ନ ॥
ଧରିଲେ ଗିରିବର ପାଶେ ।
ଉପରେ ଭୋଜନ କାଳବଶେ ॥
ଅଚ୍ୟୁତ ତୁମ୍ଭର କୁମର ।
ମାରିଲେ ମହାମହା ବୀର ॥
କାଳସ୍ପ ଜଳରୁ ଉଦ୍ଧାର ।
ଧରିଲେ ପର୍ବତ ଉପାଡ଼ ॥
ଏ ରୂପେ ସର୍ବ ସଖା ଭୁଞ୍ଜି ।
ନିଜ ଜନନୀ ମନ ରଞ୍ଜି ॥
ସେ ହରିଙ୍କ ନାମ ଗିରିଧର ।
ଗୋପାଳେ କରନ୍ତି ବିଚାର ॥
ବସିଣ ନନ୍ଦ ବେହରଣେ ।
ପୁଚ୍ଛନ୍ତି କୁଳ ବୃଦ୍ଧଗଣେ ॥
ଅଚ୍ୟୁତ ତୁମ୍ଭର କୁମର ।
ମାରିଲେ ମହାମହା ବୀର ॥
କାଳସ୍ପ ଜଳରୁ ଉଦ୍ଧାଡ଼ ।
ଧରିଲେ ପର୍ବତ ଉପାଡ଼ ॥
ଆମ୍ଭର କୁଳେ ଜନ୍ମହୋଇ ।
ଏତେକ ପରାକ୍ରମ ବହି ॥
ମୋହିଲେ ସକଳ ଜନଙ୍କୁ ।
ଗୋଚର ନଯାଇ ମନକୁ ॥
ନନ୍ଦ କହନ୍ତି ମୋତେ ପୂର୍ବେ ।
କହିଣ ଅଛନ୍ତି ଗାର୍ଗବେ ॥
ଏ କୃଷ୍ଣ ହେବ ବଳସାର ।
ନାଶିବ ଅବନୀର ଭାର ॥
ବିଷ୍ଣୁ ସମାନ ବଳବନ୍ତ ।
ହେବତ ହେବ ତୁମ୍ଭ ସୁତ ॥
ସେ ମୁନି ତହୁଁ ଅଛି ଶୁଣି ।
ଜନମ ହନୁ ପରମାଣି ॥
କଲ୍ୟାଣ କରିସି ଏହାକୁ ।
ହେଉ ଏ ଆମ୍ଭର ସାହାକୁ ॥
ଏମନ୍ତେ ସାତଦିନ ଯାଏ ।
ଗିରି ଧରିଲେ ଦେବରାଏ ॥
ପୃଷ୍ଠର ପ୍ରାପ୍ତ ଗୋବର୍ଦ୍ଧନ ।
ଗୋବିନ୍ଦ କରେ ଶୋଭିବନ ॥
ଜଳ ପାଷାଣ ଯେ ବରଷି ।
ମଧୁ ପରାଗ ଜାଣିଖସି ॥
ସାତ ଦିନରେ ସିନ୍ଧୁ ସାତ ।
କୋପେ ବରଷି ପ୍ରେରିହତ ॥
ଯମୁନା ସଙ୍ଗେ ମିଶି ବହି ।
ସପତ ସମୁଦ୍ର ପୂରଇ ॥
ଫୁଟି ରହିଲେ ମେଘମାଳେ ।
ସ୍ତମ୍ଭିତ ପବନ ନ ଚଳେ ॥
ବିଜୁଳି ଗଗନେ ପଶିଲା ।
ଆକାଶ ନିର୍ମଳ ଦିଶିଲା ॥
ନ ଚଳେ ଐରାବତ ନାଗ ।
ହରି ବାସବ ମନୋଭଙ୍ଗ ॥
ବିଚାରେ ମନ୍ଦ କର୍ମ କଲା ।
ଶ୍ରୀକୃଷ୍ଣେ ଅପରାଧୀ ହେଲା ॥

ମୋହର ଗର୍ବ ଗଞ୍ଜିବାରେ ।
ଗିରି ଟେକିଲେ ବାମକରେ ॥
ଆସୁଛି ଗୋବର୍ଦ୍ଧନ ବହି ।
ସ୍ୱର୍ଗରୁ ଦେବ ଏ ଘଉଡ଼ ॥
ମୁକୁଟ ଖସିଲା ମସ୍ତକୁଁ ।
ବଜ୍ରକୁ ନଇଲ ହସ୍ତକୁ ॥
ସ୍ୱର୍ଗେ ଯିବି ବା କାହାମୁଖ ।
କହନ୍ତେ ବାସବ ମନ ଦୁଃଖ ॥
ଗୋବିନ୍ଦ ଦର୍ଶନେ ଗୋ ମାତ ।
ଯାନ୍ତେ ଦେଖିଲେ ପୁରୋହିତ ॥
ଚରଣେ ପଡ଼ ଶଚୀପତି ।
ହେମାତଃ କର ମୋର ଗତି ।
ଶ୍ରୀକୃଷ୍ଣ ସ୍ଥାମୁରେ ଭେଟାଅ ।
କରୁଛି ଅପ୍ରାଧ ଛୁଟାଅ ॥
ଶୁଣି ସୁରଭି ତୋଷଚିତ୍ତେ ।
ଇନ୍ଦ୍ରଙ୍କୁ ଘେନିଣ ସଙ୍ଗତେ ॥
ଆକାଶ ମଣ୍ଡଳରୁ ଖସି ।
ମିଳିଲେ ବୃନ୍ଦାବନେ ଆସି ॥
ଏମନ୍ତେ ବରଷା ରହିଲେ ।
ଗଗନେ ତପନ ଉଇଁଲେ ॥
କୃଷ୍ଣ କହନ୍ତି ଉଚ୍ଚ ଡାକେ ।
ବାହାର ହୁଅ ସର୍ବ ଲୋକେ ॥
ବରଷା ବତାସ ରହିଲେ ।
ଯମୁନା ସଧୀରେ ବହିଲେ ॥
ରହସି ଯେ ଯାହା ସଦନ ।
ଲୋଡ଼ା ସମ୍ଭାଳ କରଧନ ॥
ଗୋପାଳେ କୃଷ୍ଣ ବୋଲ ଶୁଣି ।
ବାହାର ହେଲେ ତତକ୍ଷଣି ॥
ଅଜା ମେଷ ମହିଷ ମେଘ ଗାବ ।
ଗୋପେ ମିଳିଲେ ଘେନି ସର୍ବ ॥
ଯେ ଯାହା ମନ୍ଦିରକୁ ଆସି ।
ବସିଲେ ରହି ବ୍ରଜବାସୀ ॥
ସଖା ଚରଣ ଚାପି ଗିରି ।
ଶ୍ରୀହରି କରେ ଥିଲେ ଧରି ॥
ଖଞ୍ଜାଇ ଥୋଇ ନିଜ ସ୍ଥାନେ ।
ପର୍ବତ ରହିଲେ ସମାନେ ॥
କ୍ଷୁଧାର୍ତ୍ତ ଦେଖି ଗାବ ଯୂଥ ।
ଚଲାନ୍ତି ବନେ ଗୋପୀନାଥ ॥
ବାସବ ଦେଖିଣ ଏମନ୍ତେ ।
ନମିଲେ କୃଷ୍ଣ ପାଦଗତେ ॥
ମୁକୁଟ ଉନ୍ନ ମଣିଗଣେ ।
ପୂଜିଲେ ଶ୍ରୀକୃଷ୍ଣ ଚରଣେ ॥
ଶୋକେ ସାଗ୍ନି କେ୍ୟ ଗଦଗଦ ।
ଧରି ନଖୁଅନ୍ତେ କୃଷ୍ଣପାଦ ॥
ପ୍ରଣତ ଦେଖିଣ ବାସବ ।
କରୁଣା ସାଗର ମାଧବ ॥
ଇନ୍ଦ୍ରକୁ ଶ୍ରୀକରେ ଧରିଲେ ।
ଅଶେଷ ଦୁରିତ ହରିଲେ ॥
କର ଯୋଡ଼ିଣ ଶଚୀସାଇଁ ।
କହେ ସୁରଭି ପଛେଥାଇଁ ॥
ତୁ ଦେବ ସକଳ କାରଣ ।
ସୃଷ୍ଟି ଉତ୍ପତ୍ତି ସଂହାରଣ ॥
ତୁହି ଜୀବନ ପଞ୍ଚଭୂତ ।
ମାୟାରେ ଖେଳଉ ଜଗତ ॥
ସକଳ ପ୍ରାଣୀ ହୃଦେ ଥାଉ ।
ଯାହାକୁ ଯେଉଁ ବୁଦ୍ଧି ଦେଉ ॥
ସେ ଘେନ ଲୀଳା ଆମ୍ଭୁଆନ ।
ବହୁତ ରୂପେ ଭିନ୍ନଭିନ୍ନ ॥
ନଜାଣି ଅପ୍ରାଧ ମୁଁ କଲି ।
କ୍ଷମା କରସି ପ୍ରଭୁବୋଲି ॥
ସୁରଭି କହନ୍ତି ନେଗ ଦେବ ।
ନାଶିଲ ବାସବର ଗର୍ବ ॥
ଆପଣା ସ୍ଥାଏ ହେଲା ଗଞ୍ଜି ।
ତୁମ୍ଭରେ ଅପ୍ରାଧ ଅରଜି ॥
ଗିରିଟେକି ଗୋକୁଳ ରଖି ।
ଏଣୁ ଅଇଲି ମୁହିଁ ଦେଖି ॥
ଗୋକୁଳ ରଖିଲ ସେ ଯହୁଁ ।
ଗୋବିନ୍ଦ ନାମ ଏବେ ହେଉ ॥

ଗୋବିନ୍ଦ ଅଭିଷେକ ବଚନେ ।
ହୁଅ ବାସବ ପରସନ୍ନେ ॥
ଇନ୍ଦ୍ର ବହୁତ ସ୍ତୁତି ଭଣି ।
ଶୁଣି ପ୍ରସନ୍ନ ବେଣୁପାଣି ॥
ଘବେ ହୋଇଲେ ଅଭିଷେକ ।
ପାଦେ ଖଟିଲେ ସୁର ଲୋକ ॥
ସୁରଭି ଆପଣାର କ୍ଷୀରେ ।
ଗୋବିନ୍ଦ ଅଭିଷେକ କରେ ॥
ତୀର୍ଥ ଜଳକୁ ସ୍ୱର୍ଗୁଁ ଦ୍ୟନ୍ତି ।
ଗୋବିନ୍ଦ ମୂର୍ଦ୍ଧନ ଢାଳନ୍ତି ॥
କଳ୍ପ ପାଦପ ସିଂହାସନେ ।
ଶ୍ରୀବୃନ୍ଦାବନ ମଧ୍ୟ ସ୍ଥାନେ ॥
ତୀର୍ଥଙ୍କୁ ଘେନଣ ବରୁଣ ।
ସହସ୍ର କୁମ୍ଭକୁ ବରଣ ॥
କୁବେର ବସ୍ତ୍ର ଅଳଙ୍କାରେ ।
ଅନଳ ଦେଖି ତାଙ୍କ କରେ ॥
ଗନ୍ଧ ଚନ୍ଦନ ଘନସାର ।
ଲେପନ୍ତି ଅଶ୍ୱିନୀ କୁମାର ॥
ଅମୃତ ଧନ୍ୱନ୍ତରୀ ଖଟି ।
ମେଘେ କରନ୍ତି ପୁଷ୍ପବୃଷ୍ଟି ॥
ବୀଣାରେ ନାରଦ ତୁମ୍ବୁର ।
ସୁତ ମାଗଧ କଏବାର ॥
ସ୍ତୁତି କରନ୍ତି ସୁରମୁନି ।
ଉଠେ ମଙ୍ଗଳ ବେଦ ଧ୍ୱନି ॥
ଗାୟନ କରେ ବିଦ୍ୟାଧର ।
ଗନ୍ଧର୍ବ ଗଣେ ପଶଗୃର ॥
କର ଯୋଡ଼ଣ ଧର୍ମରାଏ ।
ଯେ ଯାହା ଗୁହାରି ଜଣାଏ ॥
ଶୁଭ ଲଗ୍ନରେ ବୃହସ୍ପତି ।
ମହେନ୍ଦ୍ର ଅନୁକୂଳ ଦ୍ୟନ୍ତି ॥
ଏମନ୍ତେ ସର୍ବ ଦେବଲୋକ ।
କଲେ ଗୋବିନ୍ଦ ଅଭିଷେକ ॥
ପାଦ ଉଦକ ଶିରେ ବୋଳି ।
ଆଜ୍ଞା ପାଇଣ ସ୍ୱର୍ଗେ ଚଳି ॥

ଏମନ୍ତେ ମିଳିଲେ ଗୋପାଳେ ।
ଗୋଧନ ଚରାଇ ସେ ସ୍ଥଳେ ॥
ଦେଖିଲେ ଅଭିଷେକ ଦ୍ରବ୍ୟ ।
ଗୋପାଳେ ଜୁରିକଲେ ସର୍ବ ॥
ଅମୃତ ଆଶନକୁ ପାଇ ।
ପାଶଜାତକ ପୁଷ୍ପ ଲଭି ॥
ବୋଲନ୍ତି ଇନ୍ଦ୍ର ଏଥେ ହାରି ।
ଶରଣ ପଶି ପୃଜଗିଶ ॥
କୃଷ୍ଣ ସଙ୍ଗରେ ମିଶ ହେଲା ।
ଗୋବିନ୍ଦ ନାମ ଦେଇଗଲା ॥
କୃଷ୍ଣ ଆମ୍ଭର ବଳସ୍ୱାର ।
କାହାକୁ ନାହିଁ ଆମ୍ଭ ଡର ॥
ଏମନ୍ତ କହି କୃଷ୍ଣସଙ୍ଗେ ।
ଦିନ ହରନ୍ତି ନାନା ରଙ୍ଗେ ॥
ଦିନ ହୋଇଲେ ଅବସାନ ।
ଗୋପେ ବାହୁଡ଼ାଇ ଗୋଧନ ॥
ଶୂଭେ ମିଳିଲେ ପୁରେ ଆସି ।
ଦେଖି ସାନନ୍ଦ ବ୍ରଜବାସୀ ॥
ସ୍ନାନ ଭୋଜନ ଗୋଦୋହନ ।
ବସିଲେ ସଭା ବେହରଣ ॥
ରଜନୀ ପ୍ରହର ସମ୍ପୂର୍ଣ୍ଣ ।
ମିଳିଲେ ଯଶୋଦା ଭୁବନ ॥
କୃଷ୍ଣ ଶୟନ ଅବକାଶ ।
ଚରଣେ ସେବା କଲେ ଦାସ ॥
କହେ ନାରଦ ତପୋବନ୍ତ ।
ଶୁଣ ହେ ଧନପତି ସୁତ ॥
ଏମନ୍ତେ ନନ୍ଦ ଏକାଦଶୀ ।
ଜାଗର ଜାଳ ଉପବାସୀ ॥
ଦ୍ୱାଦଶୀ ଦଣ୍ଡେ ଆରହନ ।
ଘସନ୍ତୁଁ ଉଠି ନନ୍ଦରାଣ ॥
ପାଳଣା ଶନ୍ତି ତତପରେ ।
ସ୍ନାନ କରନ୍ତି ଯମୁନାରେ ॥
ବରୁଣ ରାଜା ଜଳେ ଥିଲେ ।
ନନ୍ଦଙ୍କୁ ହରି ଘେନ ଗଲେ ॥

କୂଳେ ଅଛନ୍ତି ଭୃତ୍ୟବୃନ୍ଦ ।
ବୁଡ଼ ନଉଠି ଦେଖି ନନ୍ଦ ॥
ବହୁତ ଡାକ ଡାକ ପୂରି ।
ପୁରକୁ ଅଇଲେ ଲେଉଟି ॥
ଗୋପରେ କହିଲେ ବାରତ ।
ଶୁଣି ସେ ବ୍ୟାକୁଳେ ଆରତ ॥
ଉଚ୍ଚେ ରୋଦନ୍ତି ଯଶୋବନ୍ତୀ ।
ଯମୁନା କୂଳକୁ ଧାମନ୍ତି ॥
ଗୋଡ଼ାଇ ଅଛନ୍ତି ଗୋପାଳେ ।
ମିଳିଲେ ଯମୁନାର ଜଳେ ॥
ଲେଉଡ଼ଣ ନ ପାଇଲେ କାହିଁ ।
ଏମନ୍ତେ ନିଶି ଗଲପାହି ॥
ନନ୍ଦ ଗମନ ପାଦପନ୍ତ ।
ଝାର ବାଲିରେ ନିରେଖନ୍ତି ॥
ଯିବା ଚରଣ ଚିହ୍ନଅଛି ।
ଆସିବା ଚିହ୍ନ ନାହିଁ କିଛି ॥
କେ ବୋଲେ ଏଡ଼େ କର୍ମକଲେ ।
ନନ୍ଦ ରାଜନ ବୁଡ଼ିମଲେ ॥
କେ ବୋଲେ କୁମ୍ଭୀର ଗିଳିଲେ ।
କିମ୍ବା ବରୁଣ ହରିନେଲେ ॥
କେ ବୋଲେ ସ୍ରୋତେ ଗଲେ ଭାସି ।
ଦୁର୍ବଳ ବୃଦ୍ଧଦେହ ଆସି ॥
ଜଳରେ ଲେଉଡ଼ନ୍ତି ଗୋପାଳେ ।
ଜାଲ ପକାଇ ମାଳେ ମାଳେ ॥
ନ ପାଇ ରୋଦନ କରନ୍ତି ।
ଅବଶ ଲୋଟି ଯଶୋବନ୍ତୀ ॥
ହେ ନାଥ ରାମକୃଷ୍ଣ ଏଡ଼ି ।
ଜଳ ଭିତରେ ଅଛ ବୁଡ଼ି ॥
ଛେଉଣ୍ଡ ହେଲେ ମୋରପୁଏ ।
ଯାତନା ଜୀବ ମୋର ରହେ ॥
ଗୋବିନ୍ଦ ଜନନୀ ବିକଳେ ।
ପିତା ଲେଉଡନ୍ତି ପଶି ଜଳେ ॥
ଜାଣିଲେ ଯୋଗବଳେ ହରି ।
ବରୁଣ ନେଇଛନ୍ତି ଧରି ॥

ବରୁଣ ପୁରେ ହରି ବିଜେ ।
ଦେଖି ବରୁଣ ପାଦେପୂଜେ ॥
ସ୍ତୁତି କରଣ ପୁଣ ବନ୍ଦେ ।
କହେ ଆନନ୍ଦ ଗଦଗଦେ ॥
ହେ ନାଥ ଦୋଷ କ୍ଷମାକର ।
ହରି ଆଣିଲି ପିତା ତୋର ॥
ଜଳେ ପଶନ୍ତି ନିଯନ୍ତୁ ରାତେ ।
ତାଙ୍କୁ ଆଣନ୍ତି ମୋର ଭୃତ୍ୟେ ॥
ଦ୍ୱାଦଶୀ ପାରପୂଣ ଯେହୁ ।
ତାଙ୍କୁ ନ ବାନ୍ଧେ ପୁଣ ଏହୁ ॥
ପୁଣ୍ୟବନ୍ତ ଏ ନନ୍ଦରାଣ ।
ଦ୍ୱାଦଶୀ ବ୍ରତ ପରପୂଣ ॥
ଏହାଙ୍କ ଦରଶନ ଫଳେ ।
ପୂଜିବ ତୋପାଦ କମଳେ ॥
ଜଳ ଉଦ୍ଧାର ଆଖଣ୍ଡଳ ।
ବରଷି ଅଖଣ୍ଡ ମଣ୍ଡଳ ॥
ଧଉତ କର ବଜ୍ରମହୀ ।
ନଦୀ ସାଗର ପୂରିବହି ॥
ଏଣୁ ଏ ପବିତ୍ର ଜଗତ ।
ମହତ ବିବାଦ ଏମନ୍ତ ॥
ପିତା ପୁତ୍ରଙ୍କ ପାଦ ରେଣୁ ।
ପବିତ୍ର ପୁର ମୋର ଏଣୁ ॥
ଚକ୍ର ଅଙ୍କିତ ଚିହ୍ନେ ବାସି ।
ଅସୁରେ ନ ପାରିବେ ପଶି ॥
ତୁମ୍ଭର ତାତ ନିଅ ଏବେ ।
ପୂଜା ପାଇଣ ବିଜେଭବେ ॥
ଏମନ୍ତ କହି ଜଳପତି ।
ପିତାଙ୍କୁ ଆଣି ସମର୍ପନ୍ତି ॥
କୃଷ୍ଣଙ୍କୁ ତହିଁ ଦେଖି ନନ୍ଦ ।
ମନରେ ବହୁତ ଆନନ୍ଦ ॥
ଏମନ୍ତେ ନିଜ ପୁତ୍ର ଦେଖି ।
ଅଶ୍ରୁ ପୂରିତ ବେନି ଆଖି ॥
କୃଷ୍ଣଙ୍କୁ ଚୁମ୍ବି ନନ୍ଦ ବୋଲେ ।
କେଉଁଠେ ଅଇଲ ଦେବଆଳେ ॥

ଶ୍ରୀହରି ପିତା ଶତ୍ରୁହର ।
ବରୁଣ ମନ ତୋଷ କରି ॥
ଧରି ଅଛନ୍ତି ପିତାକର ।
ଜଳରୁ ହୋଇଲେ ବାହାର ॥
କୂଳରେ ହୋଇଲେ ପ୍ରବେଶ ।
ଦେଖିଣ ସକଳେ ହରଷ ॥
ବୋଇଲେ ଜଳେ ବୁଡ଼ି ଥିଲେ ।
ଗୋବିନ୍ଦ ଲେଉଡ଼ିଣ ଆଣିଲେ ॥
କେ ବୋଲେ ଦେବତା ବୁଡ଼ାଇ ।
ରଖି ଗୋ ଥିଲେ କେଉଁଠାଇଁ ॥
କୃଷ୍ଣ କୁଣ୍ଡଳ ମାଣିକରେ ।
ଅଣ୍ଡାଳ ଆଣି ଧାତିକାରେ ॥
ଏମନ୍ତେ ଲୋକେ କୁହାକୁହି ।
ସକଳ ମନ କୃଷ୍ଣ ମୋହି ॥
ବରୁଣ ପୁର ନନ୍ଦ ଦେଖି ।
ସ୍ୱପନେ ଭ୍ରାନ୍ତେକ ଉପଲକ୍ଷି ॥
ପ୍ରବେଶ ନିଜ ଭୁବନରେ ।
ଯେବଧି ନିତି ସମାସ୍ଥରେ ॥
କହନ୍ତି ନାରଦ ହରଷେ ।
ନଳ କୁବର ଶୁଣି ତୋଷେ ॥
କଂସର ଆଦେଶେ ଅରିଷ୍ଟ ।
ପ୍ରବେଶ ବନଶୈଷ ଗୋଷ୍ଠ ॥
ଗୋବିନ୍ଦ ଗୋଦୋହନ ଲୀଳା ।
ଗୋପାଳ ଗଣ ସଙ୍ଗମେଳା ॥
ବୃଷଭ ମତ୍ତ ଲକ୍ଷେ ଲକ୍ଷେ ।
ଗୋଡ଼ାନ୍ତି ରିଞ୍ଜୁ ଗାବପଛେ ॥
କାମେ ପୀଡ଼ିତ ହୋଇ କେହି ।
ସବୁଙ୍କୁ ମାରି ଘଉଡ଼ାଇ ॥
ଷଣ୍ଢ ଷଣ୍ଢରେ ଯୁଦ୍ଧ ଲାଗି ।
କେହୁ ମାରନ୍ତେ କେହୁ ଭାଗି ॥
ଏକ ଆରେକେ ପଡ଼ିମେଣ୍ଢ ।
ଯୁଝନ୍ତି ମହାବଳୀ ଷଣ୍ଢ ॥
କେହୁ ସେ ନପାରି ଭାଗଇ ।
କେହୁ ସେ ପାଲଟି ଯୁଝଇ ॥

ଗୋପାଳେ ହୋଇ କଷ୍ଟଛନ୍ତି ।
ଯୁଝନ୍ତି ଏକ ଆରେ ବାଛି ॥
ଯାହାର ଷଣ୍ଢ ରଣେ ଭଙ୍ଗ ।
ହାରି ହୁଅନ୍ତି ସେହୁ ଗଞ୍ଜି ॥
ଏ ଅପମାନେ ଛଳଧରି ।
ଏକ ଆରକେ ଯୁଦ୍ଧକରି ॥
ଗୋପ ସୁନ୍ଦରୀ ଯୂଥେ ଯୂଥେ ।
ଯତନେ ରହି ପଥ ପଥେ ॥
ଗୋବିନ୍ଦ ବାହୁ ଯୁଦ୍ଧ ରଙ୍ଗେ ।
କରନ୍ତି କୁମାରଙ୍କ ସଙ୍ଗେ ॥
ଅରିଷ୍ଟାସୁର ଦେଖି ଡ଼ରେ ।
ମାୟାରେ ଷଣ୍ଢ ରୂପଧରେ ॥
ହିଶଇ ଅତି ବଡ଼କାୟେ ।
କୈଳାସ ପର୍ବତ ପରାୟେ ॥
ତା ଚୂଡ଼ ଲାଗୁଛି ଗଗନେ ।
ହୁଙ୍କାର ନାଦ ଗରଜନେ ॥
ପାଦ ଘାତରେ କମ୍ପେ ମହୀ ।
ଶୃଙ୍ଗେ ତାଡ଼ଇ ଉଚ ମହୀ ॥
ପୁଚ୍ଛ ତୋଳିଣ ବେଗେ ଧାଏଁ ।
ମେଘେ ଉଡ଼ନ୍ତି ବାତ ଘାଏଁ ॥
ଖୁରରେ ଖୋଳୁଅଛି ମହୀ ।
ଦେବେ ପଳାନ୍ତି ଭୟପାଇ ॥
କକୁଦ ଝାଡ଼ିବାର ଘାଏ ।
ପଳାନ୍ତି ଦିଗପାଳେ ଭୟେ ॥
ଗୋଠଗୋଷ୍ଠେ ବୃଷଭେ ଯେ ଖେଦେ ।
ଭୟେ ପଳାନ୍ତି ଆରନାଦେ ॥
ତରସ୍ତେ ବଦନ ପୋତଇ ।
**ଅଳପ** ଅଳପ ମୁତଇ ॥
ଟଳଇ ଆଡ଼ପଟ ବାଟଙ୍କେ ।
ଦେଖି ଆରତ ଗୋପ ଲୋକେ ॥
ପୁଏ ପଳାଇ ପଛ ଘୁଞ୍ଚି ।
ଗୋବିନ୍ଦ ପଛେ ଯାଇ ଲୁଚି ॥
ଶ୍ରୀକୃଷ୍ଣ ଦେଖନ୍ତି ସେ ସଙ୍ଗେ ।
ଦୌଡ଼ି ପକାନ୍ତି ବାହୁରଙ୍ଗେ ॥

ପ୍ରବେଶ କରି ଗୋଦୋହନେ ।
ଷଣ୍ଢ ରଣକୁ ସାବଧାନେ ॥
ବତ୍ସକୁ ଉପହାସ ବାକ୍ୟେ ।
ଷଣ୍ଢ ପଳାଇ ଯାଅନ୍ତି କେ ॥
ଗୋକୁଳ ଶରଣ ରକ୍ଷଣେ ।
ଦେବ ଗୁହାରି ପରମାଣେ ॥
ବାମ ନୟନ ହମ୍ଭୋଷ୍ଟିରେ ।
ଦକ୍ଷିଣ ନେତ୍ର ଅରିଷ୍ଟିରେ ॥
ଗୋବିନ୍ଦ ଅଷ୍ଟ ଅବଧାନେ ।
ଅରିଷ୍ଟ ମିଳ ସାବଧାନେ ॥
ଗୋପ ସକଳ ଦେଖି ହରି ।
ବାହୁ ବସ୍ତ୍ରାରି ଆଗସରି ॥
ରେ ଷଣ୍ଢାସୁର ଆସ ବେଗେ ॥
ଯୁଦ୍ଧ କରସି ମୋର ଆଗେ ॥
ଗୋପାଳ ବାଳଙ୍କୁ ଡରଇ ।
ଗୋକୁଳ ଭୟକୁ କରଇ ॥
ରଣ ମରଣ ପୁରେ ଉଚ୍ଛୁ ।
ମାୟା ବୃଷଭ ରୂପଧରୁ ॥
ଗୋଷ୍ଠ ମୂଖରେ କଲେ ଯୁଦ୍ଧ ।
ଗୋରୁ ବ୍ରାହ୍ମଣ ହେବେ ବଧ ॥
ହୋଇଛୁ ସଙ୍ଗ ବନ୍ଧୁଏକା ।
ଆଜ ଦେଖିଯା ବଚ୍ଛା ବକା ॥
ଶୁଣିଣ ଷଣ୍ଢାସୁର କୋପେ ।
ଶିଙ୍ଗ ମାଇଲା ଯାଇ ଆପେ ॥
ଧରିଲେ ହରି ଶିଙ୍ଗ କରେ ।
ଅସୁର ଚଳଣ ନ ପାରେ ॥
ପଛକୁ ହେନ ଗଲେ ଠେଲି ।
ଅଠର ଭଡ଼ା ଯାଏ ପେଲି ॥
ସେ ଷଣ୍ଢାସୁର ମହାବଳୀ ।
ପୁଣ ଆସିଲା ସେହୁ ପେଲି ॥
ବିଲୋମ ପ୍ରତିଲୋମ ରଣ ।
ଶୂନ୍ୟେ ଦେଖନ୍ତି ଦେବଗଣ ॥
ଷଣ୍ଢା କରଇ ଘୋର ରଡ଼ି ।
ଗିରି ପାଷାଣ ପଡ଼େ ଝଡ଼ି ॥
ପୁଚ୍ଛ ବୁଲାଇ ଅନ୍ତରୀକ୍ଷେ ।
ମେଘ କମ୍ପାଇ ଶ୍ରମଝାଳେ ॥
ମେଦନୀ ହେଉଛି କର୍ଦ୍ଦମ ।
ଧୂଳିରେ ଅଦୃଶ୍ୟ ଗଗନ ॥
ଦେବେ ଡାକନ୍ତି ଶୂନ୍ୟେ ଥାଇ ।
ମାର ଅସୁର ଦୋଷ ନାହିଁ ॥
ଶୁଣି ସେ ସୁରଗଣ ବାଣୀ ।
ଅସୁର ବଳ ପରମାଣି ॥
ଘଞ୍ଜା ଘଞ୍ଜରେ ଷଣ୍ଢାପୁଚ୍ଛି ।
ନିଃପ୍ରାଣହୋଇ ବଳଛୁଟି ॥
ବରଷା ଧାର ପ୍ରାୟହୋଇ ।
ଷଣ୍ଢା ଦେହରୁ ଝାଳବହି ॥
ରୁଧିର ଶିଙ୍ଗମୂଳୁଁ ଖସି ।
ମହୀରେ ବହୁଅଛି ମିସି ॥
ଧରି ଅଛନ୍ତି ମହାବଳୀ ।
ଷଣ୍ଢ ନ ପାରେ ଶିର ଟେକି ॥
ଛାଡ଼ିଲା ମଳମୂତ୍ର ବେଗି ।
ଦେଖିଣ ହରି ଦେଲେ ଫିଙ୍ଗି ॥
ପଡ଼ିଲା ଶଏଭଡ଼ା ଅନ୍ତେ ।
ଉଠିଣ ଧାଇଁଲା ତ୍ୱରିତେ ॥
ମାରନ୍ତେ ଶିଙ୍ଗ କୃଷ୍ଣଅଙ୍ଗେ ।
ହରି ଧାଇଁଲେ ପୁଣ ବେଗେ ॥
ଛଟକେ ଭୂମିତଳେ ପଡ଼ି ।
ଆଣ୍ଠୁ ଭରେଣ ବସି ମାଡ଼ି ॥
ଆର୍ଦ୍ର ବସନ ପ୍ରାୟେ କରି ।
ଶିର ମୋଡ଼ିଲେ ଶିଙ୍ଗ ଧରି ॥
ସେହି ଶିଙ୍ଗ ତା ଦେହେ ପଶି ।
ଅରିଷ୍ଟାସୁର ପ୍ରାଣେ ନାଶି ॥
ଗୋବିନ୍ଦ ଦେହରେ ପଶିଲା ।
ଅବନୀ ମଙ୍ଗଳ ହୋଇଲା ॥
ଧରଣୀ ପଡ଼ି ମୃତପିଣ୍ଡ ।
ଜାଣି ଶରଦ ମେଘଖଣ୍ଡ ॥
ଜଗତ ଅରିଷ୍ଟ ନାଶିଲେ ।
ଦେବେ କୁସୁମ ବରଷିଲେ ॥

ବିପିନେ ବସିଲେ ପରମଳ ।
ପବନ ସୁଗନ୍ଧ ଶୀତଳ ॥
ଗୋବିନ୍ଦ ପରାକ୍ରମ ଦେଖି ।
ଗୋପୀ ଗୋପାଳେ ହୋଇ ସୁଖୀ ॥
ଗୋଧନ ମେଳ ସମ୍ଭାଳିଲେ ।
ଦୁଧ ଖେଳାଇ ପୁରେ ମିଳେ ॥
ସ୍ନାନ ଭୋଜନ ନାନାମତେ ।
ସଭିଙ୍କୁ ଭଜେ ପୂର୍ବରୀତେ ॥
କହନ୍ତି ଏକଙ୍କୁ ଆରକେ ।
ଗୋବିନ୍ଦ ଆଜ କଉତୁକେ ॥
ଗୋଷ୍ଠେ ମାଇଲେ ଧେନୁାସୁର ।
ଜଗତେ ସେହୁ ବଳୀୟାର ॥
ଶୁଣି ସାନନ୍ଦ ଗୋପବୃନ୍ଦ ।
ନନ୍ଦ ଯେ ଉପ ବସୁନନ୍ଦ ॥
ଏମନ୍ତେ ସର୍ବ ମଙ୍ଗଳଲେ ।
ଷ୍ଟେ-ସୁଖ୍ୟା ସଦନେ ମିଳଲେ ॥
ରାମ ଗୋବିନ୍ଦ ନନ୍ଦ ଘେନ ।
ପୁରେ ପ୍ରବେଶ ହେଲେ ପୁଣି ॥
ନିଦ୍ରାରେ ଘୂର୍ମିତ ନୟନ ।
ହଂସୁଲ ତୁଳରେ ଶୟନ ॥
ଦାସ ଚରଣ ସେବ କରେ ।
ନିଶି ପାହିଲା ଏ ଅନ୍ତରେ ॥
ଶଯ୍ୟା ତେଜିଣ ରାମହରି ।
ଗାବ ଦୋହନେ ବିଜେକରି ॥
ପୁରେ ମିଳଲେ ଗାବ ଘେନି ।
ସ୍ନାନ ଭୋଜନ ସାରିବେନି ॥
ଗାବ ଚଳାଇ ବନେ ଚଳେ ।
ମିଳଲେ ଗୋବର୍ଦ୍ଧନ ତଳେ ॥
ନାନା ବିନୋଦେ ଖେଳରଙ୍ଗ ।
ରାଜା ପରଜା ଖେଳସଙ୍ଗ ॥
ରାମ ହୋଇଲେ ତହିଁ ରାଜା ।
ସକଳେ ହୋଇଲେ ପରଜା ॥
ଥୋକାଏ ଅଜ ମେଷ ଗାଣ୍ଡ ।
ଚୋର ହୋଇଣ କେ ଚୋରାଇ ॥

କୃଷ୍ଣ ହୋଇଲେ ଦଣ୍ଡ ଆସି ।
ଜଗି ବୁଲନ୍ତି ଅହର୍ନିଶି ॥
ମାୟାରେ ବ୍ୟୋମାସୁର ଆସି ।
ଗୋପାଳ ମେଳେ ଖେଳେ ପଶି ॥
ସବୁଙ୍କୁ ନେଇ ଚୋରାଇ ।
ପର୍ବତ କନ୍ଦରେ ପୂରାଇ ॥
ଦୁଆରେ ଦେଇଣ ପଥର ।
ପୁଣି ମିଳଇ ଆରବେଳ ॥
ଏମନ୍ତେ ସବୁ ନେଲା ହରି ।
ରହିଲେ ଶେଷ ଦୁଇସ୍ତର ॥
ଗୁହାରି କରନ୍ତି ଗ୍ରାମୁରେ ।
ପଶୁ ଚୋରାଇ ନେଲେ ଚୋରେ ॥
ତୁମ୍ଭର ପର ରାଜାଥାଇ ।
ଚୋର ପ୍ରବଳ ଛନ୍ତି ହୋଇ ॥
ପରଜା କରନ୍ତେ ଗୁହାରି ।
ଆଜ୍ଞା ଦିଅନ୍ତି ଦଣ୍ଡଧାରୀ ॥
ଦୁସାଧୁ ଆଣି ଦେବ ଲୋଡ଼ି ।
ଚୋରଙ୍କୁ ଉଚିତରେ ଦଣ୍ଡି ॥
ଯେ ସାହା ପୁରେ ତୁମ୍ଭେଥିବ ।
ଦୋସାଧୁ ଲୋଡ଼ି ଆଣି ଦେବ ॥
ଏମନ୍ତ ରାଜା ଆଜ୍ଞା ଶୁଣି ।
ଯେ ସାହାମତେ ରହେ ପୁଣି ॥
ନଳ କୁବେର ଏହାଶୁଣି ।
ପୁଚ୍ଛନ୍ତି ନାରଦଙ୍କୁ ପୁଣି ॥
କୃଷ୍ଣ ନଥିଲେ କଂସ ତହିଁ ।
ମାୟା ଅସୁର ନେଲା ବହି ॥
ନାରଦ କହେ ତୋଷ ଚିତ୍ତେ ।
ଶୁଣ ହେ ଧନପତି ସୁତେ ॥
ଗୁଚିବାର ଯେ ସେହିଦିନ ।
ରାଧିକା ଭଜେ ଗୋବର୍ଦ୍ଧନ ॥
ରାମ ସଙ୍ଗତେ କୃଷ୍ଣବନେ ।
ଜାଣି ହରସ ବାଳୀମନେ ॥
ପ୍ରମାଦ ହୋଇଲାତ ଆଜ ।
ସଙ୍ଗତେ ଅଛନ୍ତି ଅଗ୍ରଜ ॥

ଗୋପାଳ ଗୋରୁ ଗୋବର୍ଦ୍ଧନ ।
କେମନ୍ତେ ହୋଇବ ମିଳନ ॥
ଶ୍ରୀମତୀ ମନ ପରମାଣି ।
ବିଶାଖା କହନ୍ତି ବଖାଣି ।
କୃଷ୍ଣ ଉପାୟ ବୁଦ୍ଧି ମତେ ।
ଆମ୍ଭଙ୍କୁ ମିଳିବ ଏକାନ୍ତେ ॥
ଏମନ୍ତେ ବିଚାରନ୍ତେ ବାଳୀ ।
ଖେଳ ଭିଆଉ କୃଷ୍ଣ ମିଳି ।
ରାଧିକା ଭାବେ ହୋଇ ଭୋଳା ।
ଗୋବର୍ଦ୍ଧନରେ କରେ ଲୀଳା ॥
ଦମ୍ପତି ପ୍ରୀତି ଅନ୍ତରସେ ।
ଏମନ୍ତେ ଦିନ ହୁଏ ଶେଷେ ॥
ରାଧିକା ନିଜପୁରେ ମିଳେ ।
କୃଷ୍ଣ ଆସନ୍ତେ ଖେଳ ସ୍ଥଳେ ॥
ବାଳକ ବନ୍ଦୀ ଗିରି କୋଟେ ।
ଆରତେ ମନର ସଙ୍କଟେ ॥
ଅଚଳ ପଥର ଦୁଆରେ ।
ପଡ଼ିଣ ଘୋର ଅନ୍ଧକାରେ ॥
କହନ୍ତି ଏକ ଆରକଷ୍ଟରେ ।
ମାୟା ଅସୁର ଏଥି ଛଳେ ॥
ଛଳି ଗୋବିନ୍ଦ କଟୁଆଳ ।
ହରି ଆଣିଲା ସର୍ବବାଳ ॥
କୃଷ୍ଣ ନ ଥିବେ ଏହା ଜାଣି ।
ବନେ ଲୋଡ଼ୁଣ ଥିବେ ପୁଣି ॥
ଏହା ସେ କେମନ୍ତେ ଜାଣିବେ ।
ଆମ୍ଭଙ୍କୁ ଉଦ୍ଧରି ଧରିବେ ॥
ଏମନ୍ତେ ବୋଲି କୁହାକୁହି ।
କୃଷ୍ଣ ଶୁଣିଲେ ଯାନ୍ତେ ଚହିଁ ॥
ସ୍ଥିରେ ଶୁଣନ୍ତେ କର୍ଣ୍ଣଡେରି ।
ସର୍ବ ବାଳକ ଭୁଣ୍ଡବାରି ॥
କୃଷ୍ଣ ମିଳିଲେ କୋଟଦ୍ୱାର ।
ଦେଖିଣ ଧାଇଁଲା ଅସୁର ॥
ନିଜ ରୂପକୁ ବେଗେ ଧରି ।
ଗର୍ଜଇ ଘୋର ନାଦକରି ॥

କୃଷ୍ଣଙ୍କୁ ପ୍ରହାରଇ ମୁଥ ।
ଅଙ୍ଗ ଢ଼ାଳିଲେ ଗୋପୀନାଥ ॥
କେଶ ଧରିଲେ ଧାଡକାରେ ।
ଦ୍ୱାର ପାଷାଣ ଆଡ଼କରେ ॥
ଦ୍ୱାର ଫିଟନ୍ତେ ଗୋପସୁତେ ।
ବାହାର ହୋଇଲେ ତୁରିତେ ॥
ଅସୁର କେଶ କୃଷ୍ଣ କରେ ।
ଦେଖିଣ ସାନନ୍ଦ କୁମରେ ॥
ରାମ ସ୍ୱାମୁକୁ ହେନ ଚଳି ।
ସର୍ବ ବାଳକ ସଙ୍ଗେ ମିଳି ॥
ଜଣାନ୍ତି ରାଜାଙ୍କ ସ୍ୱାମୁର ।
ଭୋଁଦେବ ଏହୁ ପଶୁ ଚୋର ॥
ଗିରି କୋଟରେ ଥିଲା ଭରି ।
ଲୋଡ଼ି ଆଣିଲ ଚୋରଧରି ॥
ବଡ଼ ମାୟାବୀ ଦେବ ଏହୁ ।
କଦଣ୍ଡ ଦେବ ଆଜ୍ଞା ହେଉ ॥
ଦେଖି ବୋଲନ୍ତି ରାମ କୋପି ।
ପଶୁ ଚୋର ଏ ମହାପାପୀ ॥
ପଶୁର ପ୍ରାୟେ ମୁଣ୍ଡ ମୋଡ଼ ।
ଦେଖ ଅସୁର ମାୟା ବଡ଼ ॥
ବଳଦେବଙ୍କ ଆଜ୍ଞାପାଇ ।
କେଶ ଝିଙ୍କିଣ ହେନ ଯାଇ ॥
ଅସୁର ପିଣ୍ଡୁ ପ୍ରାଣ ଛାଡ଼ ।
ପଶୁର ପ୍ରାୟେ ମୁଣ୍ଡ ମୋଡ଼ ॥
ପଡ଼ିଲା ବନଗିରି ମାଡ଼ ।
ଗୋପାଳେ ଲଗୁଡ଼ ପହୁଡ଼ ॥
ଶିଖାଇ ଆମ୍ଭଙ୍କୁ ସେ ନେଲୁ ।
ଗିରି କୋଟରେ ପୂରାଇଲୁ ॥
ବିଶ୍ୱାସ ଘାତକରେ ତୁହି ।
କେମନ୍ତେ ସମ୍ଭବଟି ମହୀ ॥
ପଥର ପକାନ୍ତି ଚାମୁଣ୍ଡେ ।
ଲଉଡ଼ ଢ଼ିହ ମାରି ତୁଣ୍ଡେ ॥
ଆଖିରେ ଗେଞ୍ଜନ୍ତି କେ ବାଡ଼ି ।
ଗୋପାଳେ ଆନନ୍ଦେ ବିହରି ॥

ଏମନ୍ତ ରାମକୃଷ୍ଣ ମେଳେ ।
ଗୋଧନ ବାହୁଡ଼ାଇ ଚଳେ ॥
ବଜାଇ ପଚର କାହାଳ ।
ଉତ୍ସବେ ଗୋମ୍ପ ପୁଏ ମିଲି ॥
ପ୍ରବେଶ ଯେ ଯାହା ସଦନେ ।
ସ୍ନାନ ଭୋଜନ ଯେ ଗହଣେ ॥
ସଭାରେ ବସିଣ କୁମାରେ ।
କହନ୍ତି ହରଷ ଅନ୍ତରେ ॥
ଆମ୍ଭଙ୍କୁ ବ୍ୟୋମାସୁର ହରି ।
ଗିରି କୋଟରେ ଥିଲା ଭରି ॥
ଦ୍ୱାରେ ପାଷାଣ ଥିଲା ଦେଇ ।
ଯୋଗେ ମିଳିଲେ କୃଷ୍ଣଚନ୍ଦ୍ରହିଁ ॥
ବାହାର କଲେ ଦ୍ୱାର ଫେଡ଼ି ।
ଅସୁର ଶିର ଧରମୋଡ଼ି ॥
ଏତେ ଜୀବନ କୃଷ୍ଣ ରଖି ।
ଗୋପୀ ଗୋପାଳ ଶୁଣି ସୁଖୀ ॥
ବୋଲନ୍ତି ଭଲ ଭାଗ୍ୟବନ୍ତ ।
ଆମ୍ଭର କୁଳରେ ଉଦିତ ॥
ମରଣୁ ରଖେ ବେଳେ ବେଳେ ।
ଜୀବନ ଦାତା ଏ ଗୋକୁଳେ ॥
କୃଷ୍ଣ ପୀରତିଂ ଅନୁରାଗେ ।
ଭାବନା କରୁଥାନ୍ତି ନିତ୍ୟେ ॥
ଦାସବତ୍ସଳ ସଖାଭାବେ ।
ବହୁ ମଧୁର ରସେ ସେବେ ॥
ଏମନ୍ତେ ସ୍ନେହକୁ ବଢ଼ାଇ ।
କହନ୍ତି ଗୋବିନ୍ଦ ବଡ଼ାଇ ॥
ମୁରୁଛି ନ ପାରନ୍ତି କ୍ଷଣେ ।
ନିମିଷ କୋଟି ଯୁଗମଣେ ॥
ଏ ବ୍ରଜବିହାର ଚରିତ ।
ନବମ ବୋଲ ସମାପତ ॥
କୋମଳ ବଚନ ପଦରେ ।
ସହସ୍ର ଦଳ ଆସ୍ୱାଦରେ ॥
ମତ୍ତ ମଧୁପ ମକରନ୍ଦ ।
ପିବ ସୁଜନେ ପଦ ପଦ ॥
କାଶ୍ୟପ ଗୋତ୍ରେ ହୋଇ ଜାତ ।
ସିଠି କରଣ କୂଳେ ଖ୍ୟାତ ॥
କହଇ ଦୀନ ଦାଶରଥି ।
ଶ୍ରୀକୃଷ୍ଣ ପାଦ ଶିରେ ଲଥି ॥
ଅଜ୍ଞା ମାଗିଣ ବସାଇଲ ।
ଗୁପତ ରସ ଭସାଇଲ ॥
ରସିକ ଲୋକେ ଶ୍ରୁତିପଥେ ।
ପ୍ରେମ ଅମୃତ ପିଅ ନିତ୍ୟେ ॥
ବାରୁଣୀ ମହା ମହା ଯୋଗେ ।
ସ୍ନାନ ଫଳ ବା କେତେ ଅଙ୍ଗେ ॥
ସେ ଫଳ କେତେ ଜନ୍ମପାଇ ।
ନିର୍ମଳେ ଯେହୁ ଶୁଣି ଗାଇ ॥
ଭଣିଲା ଦାଶରଥି ଦାଶ ।
ସୁଜନେ ନ ଘେନିବା ଦୋଷ ॥

ଶ୍ରୀ ରାଧାକାନ୍ତ ଶରଣ ।
ନବମବୋଲ ସମାପ୍ତ ॥

——*——

## ଦଶମବୋଲ

ରସସାଗର ବୋଲ ବାଣୀରେ ଗାଇବ

ନମୋମା ଅବନୀ ଜଗଜ୍ଜନନୀ ।
ଗୋକୁଳ ମଣ୍ଡଳ କମଳାନନ୍ଦୀ ॥
ଶ୍ରୀକୁଣ୍ଡ ଶ୍ୟାମକୁଣ୍ଡ ନେତ୍ର ବେନୀ ।
ପକ୍ଷ୍ମପାତ ଅଳ ଅଞ୍ଜନ ଯେନି ॥
ଗୋବର୍ଦ୍ଧନ ପର୍ବ ନାସିକା ଶୋଭା ।
ମୋତିଫଳ ସୂଚି ସମୀରେ ଶୋଭା ॥
ପାତାଳ ଗଙ୍ଗା ମାନସୀ ତଡ଼ାଗ ।
ହଂସ ଅବତଂସ ଶ୍ରବଣ ଯୁଗ ॥
ଗଣ୍ଡସ୍ଥଳେ ଚଟଚାଟଙ୍କ ଖେଳ ।
କାଳନ୍ଦୀ ତରଙ୍ଗ ଅଳକାବଳୀ ॥
ସୂକ୍ଷ୍ମହାସ ରଙ୍ଗଭୂମି ଅଧରେ ।
କୁନ୍ଦରଦନ କଳକଣ୍ଠ ସ୍ୱର ॥
ବୃନ୍ଦାବନେ ନବ ତାମ୍ବୂଳ ଲତା ।
ଧରଣୀ ତରୁଣୀ ସୁରୁ ଭ୍ରୂଲତା ॥
ପୁଳନ ରାସସ୍ଥଳୀ ବକ୍ଷସ୍ଥଳ ।
କୁସୁମ ଚନ୍ଦନ ଗୋପିକା କୁଳ ॥
କୃଷ୍ଣ ମୃଗମଦ ବିନ୍ଦୁ ମଧ୍ୟରେ ।
ରାସରଙ୍ଗ ମହୀ ମୁଖପଦ୍ମରେ ॥
ସେ ରାସେଶ୍ୱରୀ ଚରଣେ ଶରଣ ।
କରଇ ରାସଲୀଳା ସୁମରଣ ॥
ଶ୍ରୀ ବ୍ରଜବିହାର ଦଶମବୋଲି ।
ଏଗାରକ୍ଷରେ ଛନ୍ଦ ରସକେଳି ॥
ଯୋଗମାୟା ଉପାସନେ ରଜନୀ ।
ରାଧା ମାଧବ ଯୋଜଣ ସଜନୀ ॥
ଶ୍ରୀ ବୃନ୍ଦାବନ ଯମୁନା କୂଳରେ ।
ରାମ ଉତ୍ସବ ଚନ୍ଦ୍ର ଉଜାଗରେ ॥
ଶରଦ ସମ୍ପୂର୍ଣ୍ଣ ବିହାର ରଙ୍ଗେ ।
ସକଳେ ଏକମେଳ କୃଷ୍ଣସଙ୍ଗେ ॥
ବିଚ୍ଛେଦ ଲବଧ ବିବିଧ ରସେ ।
ଛଳିବା ଛଳିବା ପୀରତି ରସେ ॥
ରାଧା ଚନ୍ଦ୍ରାବଳୀ ଆଦି ସୁନ୍ଦରୀ ।
କୃଷ୍ଣ ଯେନି ରାସରସେ ବିହରି ॥
ଏକ ଆରକେ ବିରୋଧ ତେଜିଲେ ।
ଏକପ୍ରାଣ ପ୍ରାୟ କୃଷ୍ଣ ଭଜିଲେ ॥
ରାଧାଙ୍କୁ ଘେନି ଶ୍ରୀକୃଷ୍ଣ ଅନ୍ତର ।
ଏକାନ୍ତେ ବିହରି ବନ ଭିତର ॥
କନ୍ଧେ ବନ୍ଧି ହରି ପକାଇ ରାଧା ।
ବିଚ୍ଛେଦ ଶୋକ ଶୁଣିବାକୁ ଶ୍ରଦ୍ଧା ॥
ବନେ ବୁଲି ବାଳୀ ଶ୍ରୀମତୀ ଭେଟି ।
ଗୁଣ ବାଦ୍ଧନ ପୁଲକେ ଲେଉଟି ॥
ବିଳାପ ଶୁଣି ଗୋବିନ୍ଦ ପ୍ରସନ୍ନ ।
ଦେଲେ ମଦନ ମୋହନ ଦର୍ଶନ ॥
ମାନ ତେଜି ଗୋପୀ ଭାବେ ଭସାଇ ।
ସମାସ୍ୟା ଛଳେ ହରିଙ୍କି ରସାଇ ॥
ପ୍ରୀତି ଉକତି କହି ଯେ ଯାହାର ।
ଯମୁନାରେ କଲେ ଜଳବିହାର ॥
ସହସ୍ର ଦଳ କମଳ କେଶରେ ।
ରାଧା ମାଧବ ଯୁଗଳ ରସରେ ॥
ବୀଜବନ୍ତ ସୂତ୍ର ଶ୍ରୀଭାଗବତ ।
ପ୍ରେମ ଅଙ୍କୁର ବିସ୍ତାର ଜଗତ ॥
ଭାବ ହେତୁ ଗର୍ଭ ଅର୍ଥ ବିଶ୍ରାମ ।
ବିବରଣ ଟୀକାଭାବ ଅଗମ୍ୟ ॥
ସଫଳ କରି ଶରଦ ନିଶିକି ।
ପୁଣ ହରି ବିନାଶିଲେ କେଶିକି ॥
ଏଠାରୁ ବ୍ରଜବିହାର ବଢ଼ିଲେ ।
ଅନ୍ତ ନ ପାଇଲ ଯେତେ ଲୋଡ଼ିଲେ ॥
ଶ୍ରୀଗୁରୁଦେବ ବୈଷ୍ଣବ ଗୋସାଇଁ ।
କରୁଣାରେ ଏଥି ରସ ବସାଇ ॥
ସୁଜନେ ହରଷ ହୋଇ ଶୁଣିବା ।
ବ୍ରଜ ଉପାସନା ଭାବ ଜାଣିବା ॥
ନଳ କୂବେର ନାରଦ ପାଦରେ ।
ପ୍ରଣାମି କହନ୍ତି ଗଦଗଦରେ ॥
ଯେମନ୍ତ ଅପୂର୍ବ ରସ ଶୁଣିବା ।
ସ୍ୱର୍ଗ ସୁଖାଦି କଞ୍ଚିତ ମଣିବା ॥

ଇନ୍ଦ୍ର ହାରିଣ ଶରଣ ପଶିଲେ ।
ଲୀଳାରେ ଅରିଷ୍ଟ ବ୍ୟୋମ ନାଶିଲେ ॥
ଏଥି ଉତ୍ତାରୁ କହ ସେ ଚରିତ ।
ବୃନ୍ଦାଅ ଗୋବିନ୍ଦ ଲୀଳା ସରିତ ॥
ଗୋପକନ୍ୟାଙ୍କ ହେରିଇ ବସନ ।
କନ୍ୟାଙ୍କୁ କମ୍ୟା ନକଲେ ରମଣ ॥
ତପବଳେ ହରି ମନ ମନ୍ତିଲେ ।
ରାଧା ଆରାଧନା କରି ନ ଥିଲେ ॥
ଏତେଘେନ ଶରଦରାସେ ସଙ୍କେତ ।
କେମନ୍ତେ ସେପୁଣ ହେଲେ ଏକତ୍ର ॥
ସେ ରାସେ କିଶୋରୀ କଲେ କରୁଣା ।
ହରି ରମଣ କଲେକ ପୂରୁଣା ॥
ରାଧା ଚନ୍ଦ୍ରାବଳୀ ଯେ ଯୂଥେଶ୍ୱରୀ ॥
ହରିଘେନି ଏକେ ଏତେକ ବିହରି ॥
ନ ଜାଣେ ମିଳନ କେହ୍ନ କାହାର ।
ସକଳେ ମିଳି କଲେକ ବିହାର ॥
ଶ୍ର ଭିକ୍ଷାନ୍ତ ନୃହେ ଶୁଣିଲେ ଯେତେ ।
ପୌର୍ଣ୍ଣମାସୀ ଲୀଳା କହିବା କେତେ ॥
ନାରଦ ଶୁଣି ଭାବେ ଗଦଗଦ ।
କହିବା ଶ୍ରୀକୃଷ୍ଣ ରାସ ବିନୋଦ ॥
ପୁଚ୍ଛିଲ ଶ୍ରୀମତୀ ରାସ ବିଧାନ ।
ରାସ ବିନୋଦ ସର୍ବ ସମାଧାନ ॥
ଯେଉଁ ଲୀଳା ବ୍ରହ୍ମାଦରେ ବନ୍ଦନ ।
ଶୁଣସି ରାଜାଧିରାଜ ନନ୍ଦନ ॥
ଏମନ୍ତେ ବରଷା ଋତୁ ଅନ୍ତରେ ।
ଶରଦ ପ୍ରବେଶ ସର୍ବ ସ୍ୱଚ୍ଛରେ ॥
କ୍ଷୀଣ ଘନ ଶ୍ୱେତବର୍ଣ୍ଣ ନଭନେ ।
ଚପଳା ଲେଉଟିଲେ ରସ ବହିନେ ॥
ବୃଦ୍ଧ ନର୍ତ୍ତନ କ୍ଷୀଣକାନ୍ତ ଦେଖି ।
ଯେହ୍ନେ ଚଞ୍ଚଳା ଯୁବତୀ ଉପେକ୍ଷି ॥
ଶଶୀ ତପନ କିରଣ ପ୍ରକାଶେ ।
ନିର୍ମଳ ଜଳ କମଳ ବିକଶେ ॥
କଞ୍ଜ ନିକର ବାନ୍ଧବ ଦର୍ଶନେ ।
କୁଜନ ବିଚ୍ଛେଦ ଲେଉଟି ପ୍ରସନ୍ନେ ॥

ପାଇଣ ଆହ୍ଲାଦ ସନମାନ ।
ଅଳି ଦ୍ୱିଜରେ ମକରନ୍ଦ ଦାନ ॥
କୁସୁମକୁଳ ପ୍ରଫୁଲ୍ଲ ପ୍ରମୋଦେ ।
ସୁଗନ୍ଧ ମନ୍ଦ ମରୁତ ଆନନ୍ଦେ ॥
ଅତି ପରିମଳ ଶୋଭା ଗଗନ ।
ମାନ ଅନ୍ତେ ଯେହ୍ନେ ପ୍ରିୟା ଆନନ ॥
ମତ୍ତ ମାତଙ୍ଗ ପ୍ରାୟ ବନ ଶୋହେ ।
ତରୁ ଲତାରୁ ମଧୁ ଧାର ବହେ ॥
ଅତି ଉଜ୍ଜ୍ୱଳରେ ବିରାଜେ ବଧୂ ।
ଉଛୁଳେ ମଦନ ମଦିର ସିନ୍ଧୁ ॥
ପ୍ରମତ୍ତ ଜଗତ ଦମ୍ପତି ଯୋଗ ।
ଶରଦଋତୁ କନ୍ୟାଭୁଲେ ଭୋଗ ॥
ଅହର୍ନିଶି ସମତୁଲ ହୋଇଲେ ।
ପିକ ମଉନେ ଗହନେ ରହିଲେ ॥
କୃଷ୍ଣ ପକ୍ଷରେ ନିଶି ଅଭିସାର ।
ପରିଧାନ ତାରାବଳୀ ଅମ୍ବର ॥
ପୂରୁ ତାଙ୍କ ମଙ୍ଗଳ ତିଳକେ ।
କୃତ୍ତିକା ପୁଞ୍ଜ ବସଣି ଝଲକେ ॥
ଅଗସ୍ତି ପୃଷ୍ଠାନ୍ଧରେ ଶୋଭାବନ ।
ସାତ୍ତ୍ୱିକ ବିକାରେ ସେ କମ୍ପମାନ ॥
ପ୍ରକାଶ ହୋଇନ୍ତେ କୃଷ୍ଣଚନ୍ଦ୍ର ଛବି ।
ଫିଟି ଖସିଣ ତାରାବଳୀ ନୀବି ॥
ବିଧୁ ଲଭିଲା ସନ୍ନିବଢ଼େ ପିଶି ।
ଅଧର ପାନରୁ ତୁଷାର ଖସି ॥
ବିନ୍ଦୁ ବିନ୍ଦୁ ତରୁ ତୃଣ ବହିଲେ ।
ପୁଷ୍ପବନ୍ତୀ ଫଳମୁଖ ହୋଇଲେ ॥
ତିଳଫୁଲରେ ହେମ ବିନ୍ଦୁ ଗଲେ ।
ଅବନୀ ନାସେ କ ମୁକୁତା ଲୁଟଲେ ॥
କେଶରେ ତାଙ୍କ କାମ ସୁପାତି ।
ଲୁଚା ସୂତା ମାଳ ମୋତି ସୀମନ୍ତି ॥
ନାନା ଆଭରଣେ ଧରଣୀ ଦିସେ ।
ପାଚିଲେ ଧାନ ବର୍ଣ୍ଣ ବର୍ଣ୍ଣ ଦିଶେ ॥
କୂଳ ଲଙ୍ଘିବା ଛାଡ଼ିଲେ ସରିତ ।
ନିର୍ମଳେ ସାଗରେ ସଙ୍ଗେ ମିଳିତ ॥

କୁସଙ୍ଗ ତେଜିଣ କୁଳଅବଳା ।
ପତିସେବା କରି ଯେହ୍ନେ ନିର୍ମଳା ।
ପୁତ୍ର ଲଭିଣ ଯେହ୍ନେ ପୁତ୍ରବନ୍ତୀ ।
ଫଳଭରେ ଶୋଭା ତେସନ କ୍ଷିତି ।।
ଶୁଖିଲେ ଗିରି ଝର ଦିନେଦିନେ ।
ଶିରପୋଖରି ସ୍ତନକ୍ଷୀର ଯେହ୍ନେ ।।
ପଙ୍କ ଶୁଖି ମହୀ ରେଣୁ ଭୂଷଣ ।
ବିରହୀ ତନୁ ଚନ୍ଦନେ ଯେସନ ।।
କୃଷିକାରୀ କୃଷି ଗୃହ ଆଗତେ ।
ନବାନ୍ନ ଭୋଗ ହୋଇଲେ ଜଗତେ ।।
ନବନୀଳ ଇନ୍ଦୀବର ପ୍ରଫୁଲ୍ଲେ ।
ମଧୁପ ମଧୁପାନ ମତ୍ତ ହେଲେ ।।
ଇନ୍ଦୀବର ନେତ୍ରୀ ଗୋପକୁମାରୀ ।
କୃଷ୍ଣ ମଧୁପ ମଧୁପାନ କରି ।।
ଜଳ ତପରେ ବସନ ହରାଇ ।
ହରି ଆରାଧି ପ୍ରସନ୍ନ କରାଇ ।।
ଶରଦ ଋତୁ ସଙ୍କେତ ପ୍ରବେଶେ ।
ସକଳେ ଉତ୍ସାହ ଧାମ ଅବଶେ ।।
କୃଷ୍ଣଙ୍କୁ ଅନୁସରି ଜଗିବାଟ ।
ବିଘ୍ନ ବହୁତ ଯୋଗେ ହେଲେ ଭେଟ ।।
କହି ନପାରି ଲୌକିକ ବଚୁରେ ।
ଶରଦ ଶରଦ ଉଚେ ଉଚାରେ ।।
ହେ ସଖି ପ୍ରବେଶ ନବଶରଦ ।
ବରଷା ନକଲେ ଶ୍ୟାମ ନୀରଦ ।।
ଚାତକୀ ଦିନ ବଞ୍ଚିବ କେମନ୍ତେ ।
ତୃଷା ଶାନ୍ତ ନ ହୋଇଲେ ଏମନ୍ତେ ।।
ଏ ବଦ ଶୁଣି ଗୋପକନ୍ୟା ବାଣ ।
ସଙ୍କେତ କଲେ ଉତ୍କଣ୍ଠା ଜାଣି ।।
ମୁରଲୀ ମଧୁର ନାଦେ ବଜାଇ ।
ପୌର୍ଣ୍ଣମ ସୀ ପୌର୍ଣ୍ଣମାସୀ ଭଣାଇ ।।
ଅବଧି ଦିନକୁଂ ଜାଣି ଚତୁରୀ ।
ସଜ୍ଜ ବେଶ ବାସ ରସ କୁତୁରୀ ।।
ଫଳ ତଣ୍ଡୁଳ ଦେଇ ବିଦୁଜନେ ।
ପୁଛନ୍ତି ପୌର୍ଣ୍ଣମାସୀ କେଉଁଦିନେ ।।

ଅବଧି ଦିନକୁ କହନ୍ତି ଜାଣି ।
ଦିନକୁ ଦିନ କୋଟି ଯୁଗମଣି ।।
ପ୍ରଭାତୁଁ ଉଠି କାନ୍ଦନ୍ତି ଗାରକାଟି ।
ପୁଣି ଗଣେ ଭ୍ରମ ହୋଇ ବିମ୍ବୋଷ୍ଠୀ ।।
ପୂର୍ଣ୍ଣମୀ ଦିନ ହୋଇଲେ ପ୍ରବେଶ ।
ଉଦ ଉଦବେଗ ଦେଖେ ସୁବେଶ ।।
ଛନ ଛନ ମନ ଚିତ୍ତଚଞ୍ଚଳ ।
ପିଟଇ ଜୀବ ଲୋଟଇ ଅଞ୍ଚଳ ।।
ଗୁରୁ ଗଉରବ ଅଣି ଆଦରେ ।
ଶ୍ରବଣ ଡେରି ମୁରଲୀ ନାଦରେ ।।
ମନୋରଥ ମନମଥ ରସରେ ।
ନିମିଷ ଯୁଗ ବିଯୋଗ ବଶରେ ।।
ଗୋବିନ୍ଦ ଗୁଣ ଗୁଣନ୍ତି ସଙ୍ଗରେ ।
ସାତ୍ତ୍ୱିକ୍ୟ ବାଧାକ ଲଜ୍ଜା ସଙ୍ଗରେ ।।
ହୃଦୟ ମନ୍ଥିଣ ଯେଣୁ ମଦନ ।
କୁଙ୍କୁମ ଚନ୍ଦନ ସ୍ୱେଦେ କର୍ଦ୍ଦନ ।।
ଦମ ଦମ ହିଆ ଉର ଉଲ୍ଲସେ ।
ହାଇ ଘନ ଘନ ବହ ଅଳସେ ।।
ଶୁଣୁ ଶୁଣୁ ଭାଷା ମନେ ନ ରହି ।
କଥା କହନ୍ତେ ଭୁଣ୍ଡି ପାଡ଼ିବାହି ।।
କୃଷ୍ଣ ଅନୁରାଗେ ନବକିଶୋରୀ ।
ପୀରତି ବଶେ କୀରତି ବିଶୋରି ।।
ନବ ଅଙ୍ଗସଙ୍ଗେ ଉତ୍ସାହ ଅତି ।।
ବେଳୁଁ ବେଳ ହୁଏ ପ୍ରବଳ ମତି ।।
ଗଗନେ ରବି ଗୃହିଁ ବୋଲେ ଚଳ ।
ହେଦେବ ଆଜ କମ୍ପାଇ ନିଶ୍ଚଳ ।।
କୁମୁଦିନୀ ଗଣେ ହେବା ପ୍ରସନ୍ନ ।
ଚାପ ଯାଉ ବଧୂ ପାଉଁ ଦର୍ଶନ ।।
ଏମନ୍ତେ ହୋଇଲେ ଦିବସ ଶେଷ ।
ରବି ଅସ୍ତାଚଳେ ସନ୍ଧ୍ୟା ପ୍ରବେଶ ।।
ଅରୁଣରଙ୍ଗ ଅନୁରାଗ ଜାଣି ।
ଦେଖନ୍ତେ ଧାରି ଅନଙ୍ଗ ବାରୁଣୀ ।।
ଦିନମଣି ଯହୁଁ ବାରୁଣୀ ଭଜ ।
ଶୋଣିତବର୍ଣ୍ଣ ନିଜତେଜ ତେଜ ।।

ଚଞ୍ଚଳ ବର୍ତ୍ତୁଳ ସୁରଙ୍ଗ ନେତ୍ର ।
ବାରୁଣୀ ତରୁଣୀ ସିନ୍ଦୂର ଛତ୍ର ॥
ଅନଙ୍ଗ ରଞ୍ଜନ ବିଜେ ଜାଣିବ ।
ବଜାଇ ଆରମ୍ଭ ଥାଳ ଖେଳିବ ॥
ଏମନ୍ତେ ଗୋବିନ୍ଦ ଗାବଚରାଇ ।
ବୃନ୍ଦାବନରେ ସୁମେଳ କରାଇ ॥
ରାଧାସଙ୍ଗେ ଭେଟ କୁଣ୍ଡ କଳରେ ।
ବିହାର କଳ୍ପପାଦପ ମୂଳରେ ॥
ସଙ୍ଗେ ଘେନି ସର୍ବ ସଖୀ ପଙ୍କତି ।
ଉଦାରଭାବମୟୀ ପତି ଉକଣ୍ଠି ॥
କୁତୂହଳେ କୃଷ୍ଣମନକୁ ଜିଣି ।
ଜଣାନ୍ତି ଦେବୀ ସ୍ଥାନ ପରମାଣି ॥
ନାଗରବର ରସିକଶେଖର ।
ଭାବୁଛନ୍ତି ଗୋପ କନ୍ୟା ନିକର ॥
ତାହାଙ୍କୁ ଆଣି ସୁଦୟା କରିବା ।
ଦାରୁଣ ମଦନ ତାପ ହରିବା ॥
ଗୋକୁଳେ ଯେତେ ଏକୁଳଯୁବତୀ ।
ତୁମ୍ଭଙ୍କୁ ସକଳେ ବଳାଇ ମତି ॥
ଜାଣି ଏ ତୁମ୍ଭର ମୋର ପିରତି ।
ଲଗାଇ ଦିଅନ୍ତି ଅପକୀରତି ॥
ତାହାଙ୍କୁ ଦେଖିବା ତୁମ୍ଭ ସଙ୍ଗରେ ।
ବିରୋଧି ନଥିବ କେଳି ରଙ୍ଗରେ ॥
ପ୍ରିୟ ରମଣୀର ପ୍ରସନ୍ନ ବାଣୀ ।
ତନୁରେ ଚନ୍ଦନ ଲେପିଲେ ଜାଣି ॥
କହନ୍ତି ହରାସେ ପୁରୁଷୋତ୍ତମ ।
ଯେତୁମ୍ଭ ହିତ ସେ ଆମ୍ଭ ଉତ୍ତମ ॥
ଆଜ ସମ୍ପୂର୍ଣ୍ଣ ଚନ୍ଦ୍ରମା ଉଜ୍ଜ୍ୱଳ ।
ଯମୁନା ପୁଳିନ ନବ ମଞ୍ଜୁଳ ॥
ଅତି ପରିମଳ ଶେଷ ରଜନୀ ।
ବିକେକର ସଙ୍ଗେ ଘେନି ସଜନୀ ॥
ପୂର୍ଣ୍ଣ ରାସ ରସ ଲୀଳା ବିସ୍ତାର ।
ଏକାମେଳ ସର୍ବ ଲଳନା ବିଧୁର ॥
ଏମନ୍ତେ ବିଚାର କରି ଏକାନ୍ତେ ।
ସେ ଯାହାମାନେ ବାହୁଡ଼ି ବନାନ୍ତେ ॥

ଗୋପେ ପ୍ରବେଶ ଗୋଧନ ଅଡ଼ାଇ ।
ଦେଖନ୍ତି ଯୁବତୀ ସଙ୍ଗେ ଗୋଡ଼ାଇ ॥
ଗୋଧୂଳି ସମୟ ହେଉଛି ଏମନ୍ତେ ।
ସଙ୍କେତ ଇଙ୍ଗିତ ନୟନ ଅନ୍ତେ ॥
ପ୍ରେମ ରଜ୍ଜୁରେ ମନକୁ ବନ୍ଧାଇ ।
ଗୋପ ଯୁବତୀ ଆରମ୍ଭ ବନ୍ଧାଇ ।
କୁଚ କୁମ୍ଭମାନ କୁମ୍ଭ ସ୍ଥାପିଲେ ।
ସୁପକ୍ଷାବଳୀ ଚନ୍ଦନ ଲେପିଲେ ॥
ରୋମାବଳୀ ଶାଳୀ ସ୍ଥଳରେ ସ୍ଥିତି ।
ମୃଗବେ ଦଶନ ମାଳ ଆହୁତି ॥
ଅବଲମ୍ବନେ ନାସା ସିନ୍ଧୁ ଫଳ ।
ହୁଳହୁଳି ଦେଇ କଲେ ମଙ୍ଗଳ ॥
ଆଲତି ଥାଳ ବଦନ ମଣ୍ଡଳ ।
ହାସ କୁସୁମ ଦଶନ ମଣ୍ଡଳ ॥
ନୟନ ଅଞ୍ଜନ ସୁରେଖ ଦୁବ ।
ମକର ବଦର ପଦ୍ମ ସ୍ୱଭାବ ॥
ବର୍ତ୍ତିରେ ଖେଳନ୍ତି ରତ୍ନ ଛାଟକେ ।
ଆଳତି ଜଳନ୍ତେ ଜ୍ୟୋତି ଝଟକେ ॥
କର୍ଣ୍ଣ ଶଙ୍ଖରେ ସପ୍ତସ୍ୱରବାଜେ ।
ଗାଇଲେ ଗଉରୀ ଗଉରୀ ରାଗେ ॥

ଗୋଧୂଳି ସମୟକୁ ଗୀତ
(ରାଗ ଗଉରୀ)

ଧେନୁ ଚଳାଇ ଆଏତ ବ୍ରଜମେ ହରି
ଗୋକୁଳ ବାଳକ ସଙ୍ଗେ ଲଇ
ନାଚତ ନଟବର ରସେ ତନୁ ଢଳ ଢଳ
ଗୋଧୂଳି ଧୂସର ଅଙ୍ଗଭଇଁ । ଘୋଷା ।
ଦେଖ ଦେଖ ଶ୍ୟାମ ନାଗର ଓଇ ।
ଲାବଣ୍ୟ ମାଳମନ ତ୍ରାନ ଗୋଇ ॥
କଟି ପୀତ ପୀତବସନ ବନମାଳ ଭୂଷଣ
ଅଭିନବ ମନୋଭବ ରୂପ ଲସାଇ ।
ଭ୍ରୂଲତା କୋଦଣ୍ଡ ମାନ କଟାକ୍ଷ ବିଶିଖ
ବାନ ମର ମର ଖେଳ ଜାନରଖେ କୋଇ ॥
ତନୁ ତ୍ରିଭଙ୍ଗିମା ବିମ୍ବାଧର ରଙ୍ଗିମା
ହାସତ ଭାଷତ ହାଇ ହାଇ ।

ଗାଉଛ ଗଉଡ଼ି ବାଉଛ ମୁରଲି ସାଜଇ
ରସ ବଚନ ମାଇ ମାଇ ।

ଯଥା ରାଗେ

କୃଷ୍ଣ ଗଉଡ଼ି ବେଦ୍ୱରେ ଗାଇଲେ ।
ବେଣୁ ନାଦରେ ସଙ୍କେତ ପାଇଲେ ॥
ବ୍ରହ୍ମ ଆନନ୍ଦକୁ ଇତର ମଣେ ।
ଉପଗୃରକୁ ସଞ୍ଚ ଜଣେ ଜଣେ ॥
କୃଷ୍ଣ ଦର୍ଶନକୁ ଚପଳ ଥିଲେ ।
ପୂର୍ବେ କୃଷ୍ଣଚନ୍ଦ୍ର ଉଦୟ ହେଲେ ॥
ଅରୁଣ ଅମ୍ବର ଚନ୍ଦ୍ରାତପକୁ ।
ଦୁହିଁ ଖଞ୍ଜେ କୃଷ୍ଣ ବଜେ ଗୋପକୁ ॥
ବନବାହୁଡ଼ା ସମୟେ ଶୋଭିତ ।
ଗୋପକୁମାରେ ଦେଖି ପୁଷ୍ପବନ୍ତ ॥
ପୁଷ୍ପବନ୍ତରେ ମହାପୁଷ୍ପବନ୍ତ ।
ମହୀ ଗଗନ ରତନ ପୂରିତ ॥
ପୂର୍ବେ ହୀର ପଶ୍ଚିମରେ ମାଣିକ୍ୟ ।
ମଧ୍ୟେ କୃଷ୍ଣ ନୀଳମଣି ନାୟକ ॥
ନେବଶ ଦେଖନ୍ତି ଯୁବତୀ ରତନ ।
ନିଶ୍ଚଳ ପୁଲକ କର ପତନ ॥
କୁଙ୍କୁମ ବିମ୍ବ ପ୍ରତିବିମ୍ବ ଦିଶେ ।
ଦିଗବଧୂ ପୂର୍ବେ ମଙ୍ଗଳ କଳସେ ॥
ହରି ହରି ନିଶି ତେଣୁ ଦରିଦ୍ର ।
କୃଷ୍ଣଚନ୍ଦ୍ର ତନୁ ତେଣୁ ହରିଦ୍ର ॥
ରାସେଶ୍ୱରୀ ଦେଖି ପୂଜ ସମ୍ଭବେ ।
ପ୍ରସନ୍ନରେ ବର ଦର୍ଶନ ଦେବେ ॥
ଏମନ୍ତେ କୃଷ୍ଣ ଧୀରେ ଧୀରେ ଚଳେ ।
ଗାବସମ୍ଭାଳି ନିଜ ପୁରେ ମିଳେ ॥
ଅନ୍ନ ନିଉଛୁଇ ମାତା ପାଳିତ ।
ସ୍ନାନ ସୁବେଶ ଭୋଜନେ ମିଳିତ ॥
ନରୁଚଇ ଅନ୍ନ ପୂରେଇ ପେଟ ।
ସଙ୍କେତ ରାସବିଳାସେ ଉଚାଟ ॥
ମାଏହୋ ରାଣ ପକାଇ ଖୁଆଇ ।
ଛଟେକେ ବଟୁ ପରକୁ ଡ଼ିଆଇ ॥

ଆଚମନ ସାରି ତାମ୍ବୁଲ ଭୁଞ୍ଜି ।
ଭୁଜ ବିଜେ ଅପସର ଆଉଜି ॥
ପ୍ରଦୋଷ ପ୍ରବେଶ ତାରା ଆକାଶେ ।
ପ୍ରାଚୀ କୋଳେ ପୂର୍ଣ୍ଣଚନ୍ଦ୍ର ପ୍ରକାଶେ ॥
ସନ୍ଧ୍ୟା ବାଳୀକ ଦେଇ ମିଷ ଗଲେ ।
ରଙ୍ଗେ ପ୍ରିୟା ଯେନ ଶୃଙ୍ଗାରକଲେ ॥
ରମଣୀ କୁଚ କୁଙ୍କୁମେ ଚର୍ଚ୍ଚନ୍ତ ।
ମୃଗମଦ ପତ୍ରାବଳୀ ଲାଞ୍ଛନ ॥
ଲଜ୍ଜାରେ ଅଙ୍ଗ କୁଙ୍କୁମ ଛଡ଼ାଇ ।
ରଜନୀ ପ୍ରିୟାରେ କର ବଢ଼ାଇ ॥
ଅଙ୍ଗେ ଲଗାଇ ଗାଢ଼େ ଆଲିଙ୍ଗନ ।
ନିଶିଠି ମିଶି ନୁହଇ ଲାଞ୍ଛନ ॥
ତାରକା ନିକର ବେଢ଼ିଣ ପାଶେ ।
ତନୁରେ ତନୁରେ କୃତ୍ତିକା ମିଶେ ॥
ଆଜି ଶୋଭାରସ ନ ଦିଶେ ଦୁଯା ॥
ଘୁମୁ ମଣାଇ ଗୋହ୍ୱଣୀ ପରଜା ॥
ଭୁବନେ ରହି ନିଦ୍ରାରେ ଲଳନା ।
କର ଭଙ୍ଗାଇଣ ମନ ମଳନା ।
କୁମୁଦ ପ୍ରମୋଦ ଆହ୍ଲାଦରେ ।
ଚକୋର ଚକ୍ଷୁ ନିଶ୍ଚଳ ଆଦରେ ॥
ହରଷ ତରୁ ତୃଣ ଲତା କୁଞ୍ଜ ।
ସୁଗନ୍ଧେ ବିକଶେ ବିବିଧ ଫୁଲ ॥
ମିଷ ସାହା ଯେନ କୁସୁମ ଧନୁ ।
ଉଜ୍ଜ୍ୱଳ ରସରେ ରସାଇ ତନୁ ॥
ସମୁଦ୍ର ଉଛୁଳ ନଦୀ ଉଜାଣି ।
କାନ୍ତ ନିଜସ୍ଥାନେ ଆସି ସୁଜାଣି ॥
ଅବନୀ ଛିରୋଧି ବିହ୍ୱଳ କସେ ।
ତମାଳ ଗହଳ ଉଜ୍ଜ୍ୱଳ ଦିଶେ ॥
ବେଳୁଁ ବେଳୁଁ ଚନ୍ଦ୍ର ଯେତେ ଆସଇ ।
ବିଯୋଗୀ ଧଇର୍ଯ୍ୟ ତେତେ ତୁଟଇ ॥
ଚନ୍ଦ୍ର ଉଦୟେ ସକଳ ସାନନ୍ଦ ।
ଅଭିସାରିକା ପଦ୍ମିନୀ ବିରୋଧ ॥
ଏମନ୍ତେ ରଜନୀ ଉଦୟ ଗୃହିଁ ।
ରସିକ ନାଗର ଚଞ୍ଚଳ ବହ୍ନି ॥

ଘନ ଘନ ହୋଇ ଅଙ୍ଗ ଅଳସ ।
ଛନ ଛନ ମନ କେଳ ଲାଳସ ॥
ନରୁଚେ ନୃତ୍ୟ ଗୀତ ବ୍ରତବାଣୀ ।
ସୁବଳ ମଧୁମଙ୍ଗଳ ତା'ଜାଣି ॥
ବୋଲନ୍ତି ଚନ୍ଦ୍ର ସଙ୍ଗେ ବିଷଜନ୍ମ ।
ଗରଳେ କଳେବରେ ନୀଳବର୍ଣ୍ଣ ॥
ଦେଖନ୍ତେ ବିଷ ଶରୀରେ ଘୋଟଇ ।
ଅଙ୍ଗନା ଝାଙ୍ଗଳ କରେ ତୁଟଇ ॥
ନାହିଁନାଶି ଆମହରି ବାଉଁଆ ।
ଏଥକୁ ଜାତ ପଦ୍ମିନୀ ଲୋଉଆ ॥
ଶ୍ୟାମ ତନୁକୁ ବିଶେଷେ ଘାରଇ ।
ମରମ ପାଇଣ ମାର ମାରଇ ॥
ହେ କୃଷ୍ଣ ନ ଗଲଆକୁ ଅଣାଅ ।
ଚନ୍ଦ୍ର ଗରଳ ଅଙ୍ଗରୁ ଛଡ଼ାଅ ॥
ନୋହିଲେ ଆମ୍ଭେମାନେ ଲେଉଡ଼ଯାଉଁ ।
ଲେଉଡ଼ବୁଁ ନଗ୍ର ପାଇଁବା ନପାଉଁ ॥
ଶୁଣି ହରିହସି ବଟୁର କରେ ।
ମନକୁ ଜାଣି କରତାଳ ମାରେ ॥
ଗୁଣିଆ ଆଣ ମେଲାଣି ହୋଇଲେ ।
ବଟୁ ସୁବଳ କେବଳ ରହିଲେ ॥
ତାହାଙ୍କୁ ଯେନ ସକଳ ବିସ୍ତର ।
ସଂଶୟ ହୃଦୟେ ବ୍ୟଥା ପସ୍ତର ॥
ଶୟନେ ଛଳେ କଥା ସିଦ୍ଧକରି ।
ସେ ବେନି ହୋଇ ରହିଲେ ପାହାରି ॥
ଛଦ୍ମେ ପଲଙ୍କ ପରେ ପହୁଡ଼ି ।
ବିଷେ ପାଇଣ କପାଟ ପାଡ଼ି ।
ନିଯୋଜନା କରି ଯଶୋଦା ଆଈ ।
ପୁରି କଳରବ ଭୁନ କରାଇ ॥
ପୌର୍ଣ୍ଣମାସୀ ପୂର୍ଣ୍ଣରାସ ସଂଯୋଗେ ।
ଠାବେ ଠାବେ ଆଜ୍ଞାଦେଇ ନିଯୋଗେ ॥
ଭୁବନ ଭୁବନ ମନ ସାଜଲେ ।
ମନୋହର ପରିମଳେ ରଞ୍ଜିଲେ ॥
କାଳନ୍ଦୀ ନଦୀ ଆଦି ତୀର୍ଥଯେତେ ।
ଯେ ଯାହାମତେ ରଚୁ ଶୁଚିମନ୍ତେ ॥

ନନ୍ଦନ ବଦନ କୁମୁଦ ହାସ ।
ନୀଳ ଇନ୍ଦୀବର ନେତ୍ର ସଦୃଶ ॥
କୋକନଦରେ ଅଧର ରଙ୍ଗିମା ।
ମୃଣାଳ ଭୁଜ ତରଳ ଭଙ୍ଗିମା ॥
ଭ୍ରମର ଭ୍ରୂଲତା ପ୍ରାୟ ଦଶନ୍ତି ।
ହଂସାବଳୀ ଧୀରେ ଧୀରେ ଗମନ୍ତି ॥
ଫଳଚଢ଼ି ପାଟ୍ଟି ଧଡ଼କ ଶୋଭି ।
ପରିହରଣେ ସର୍ବମନ ମୋହି ॥
ପଞ୍ଚ କୁଚ ଚକ୍ରବାକ ସମ୍ମତ ॥
ଶୀତଳ ସୁଗନ୍ଧ ନିର୍ମଳ କାନ୍ତି ॥
ସହସ୍ର ନାମ ଦ୍ୱିଜ ମଞ୍ଜୁସ୍ୱରେ ।
କୃଷ୍ଣ ଆଗମ କୁଳ ଅନୁସରେ ॥
ବୃନ୍ଦାବନ ସଙ୍ଗେ ବନଗାମିନୀ ।
ବନ ପରିମଳ କରେ ଯାମିନୀ ॥
ବସନ୍ତ ବାତ ବହି ଖରକାଇ ।
ମକରନ୍ଦ ଗନ୍ଧ ରାଗ ପକାଇ ॥
ବିଷମ ମାର୍ଗ ଭୁଲାଇ ପରାଗେ ।
ଫୁଲ ପାଖୁଡ଼ି ସିଞ୍ଚି ଚଉହାଗେ ॥
ତରୁ ତରୁରେ ଲତା ଛନ୍ଦାଛନ୍ଦି ।
ମାଧବୀ ମାଳତୀ ତୋରଣୀ ବାନ୍ଧି ॥
କୁସୁମ ବିକଶିତ ମାଳ ମାଳ ।
ରମ୍ଭା ତରୁ ପୟଃପେଟି ଶ୍ରୀଫଳ ॥
କ୍ରୀଡ଼ନ୍ତି ପକ୍ଷୀ ବୀଣାସ୍ୱର ଜାଣି ।
ଚନ୍ଦ୍ର ଯାମିନୀ ହେବା ପରମାଣି ॥
ମଲ୍ଲିକଳପରେ ଅଳି ଝଙ୍କାରେ ।
ସମର୍ପି ଜାଣିକି ଶଙ୍ଖ ଫୁଙ୍କାରେ ॥
ଦେଖ ଶୋଭା ନୀରବର ବଢ଼ାଇ ।
ବନ ଶାମଳ ପତାକା ଉଡ଼ାଇ ॥
ସେବକ ମାଳୀ ଥାଣୁକୁ ବେଢ଼ିଲେ ।
ବକ ହୁଳ ଫୁଲକୁଳେ ମଣ୍ଡିଲେ ॥
କୁଞ୍ଜ କୁଟିମା ତରୁଲତା ମୂଳ ।
ମନୋହର ରମ୍ୟ ଯମୁନା କୂଳ ॥
ଗୋଭ ଗୋଭ ଶୋଭ କେତକୀ ଧଣ୍ଡା ।
ଧାଡ଼ି ଧାଡ଼ି ରମ୍ଭା ଲମ୍ବାଇ ପେଣ୍ଡା ॥

ବିକଶିତ ଅତି ସେବତୀ ଥୋପା ।
ଚନ୍ଦ୍ର ପଦ୍ମ ଚମ୍ପା ବିକଚ ଝୁମ୍ପା ॥
ରେଖ ରେଖରେ ରଖି କରବୀର ।
ଲଗ ଲଗରେ ଲଗିନାଗେଶ୍ୱର ॥
କୁସୁମ କନକ ଦଣ୍ଡ ବିସ୍ତାର ।
ଛତ୍ରଚାଳ ବିରଚି ଅନୁସର ॥
ପଲଙ୍କ ଦୋଳ ଆସ୍ଥାନ ମଣ୍ଡିଲେ ।
ଜାଇ ପାଖୁଡ଼ା ପାଏଡ଼ା ପାଡ଼ିଲେ ॥
ଏମନ୍ତେ ଦେବଋଷି ମିଶି ସ୍ୱର୍ଗେ ।
ଆକାଶ ମଣ୍ଡନ କରଣ ବେଗେ ॥
ଚନ୍ଦ୍ରକାଜାଲ ପଟଳ ବେଢ଼ାଇ ।
ତାରକୁଳ ଷୋଳଫୁଲ ମଣ୍ଡାଇ ॥
କ୍ଷୀନ ଘନସେ ଭ୍ରମର ଚପଳ ।
ଧୀର ଅନଳେ ଉଡ଼େ ମାଳ ମାଳ ॥
ପୂର୍ବ ଉତ୍ତରେ ଚଉତ ଗୁନ୍ଧୁଆ ।
ମଘବାନ ଶିରେ ବାନ୍ଧ ସିନ୍ଧୁଆ ॥
ଅଗସ୍ତି ପୁଷ୍ପାଦିରେ ଥୋପା ଥୋପା ।
ପୁର ମଙ୍ଗଳ ହେମରତ୍ନ ଝୁମ୍ପା ॥
ମଣ୍ଡଳ ମଣ୍ଡନରେ ଅନୁରୂପ ।
ମଧ୍ୟରେ ଚନ୍ଦ୍ର ସ୍ୱରୁଚନ୍ଦ୍ରାତପ ॥
ଧ୍ରୁବ ମଣ୍ଡଳ ନିଶ୍ଚଳ ସ୍ତମ୍ଭାଇ ।
ଶିଶୁମାର ମନକର ଲମ୍ବାଇ ॥
ନିକୋଣ ଅଷ୍ଟକୋଣ ଷଟ୍କୋଣ ।
ଯୋଡ଼ ଯୋଡ଼ ଧାଡ଼ ଧାଡ଼ ବିକୋଣ ॥
କୁମୁଦ ଥୋପ ପ୍ରାପ୍ତ ଶୁକଶୋଭା ।
ବିକଚ ପଦ୍ମ ପତ୍ର ପତ୍ର ଶୋଭା ॥
ସିନ୍ଧୁ ଉଚ୍ଛୁଳ କୁଞ୍ଚିତ ରଙ୍ଗିଣୀ ।
ଏମନ୍ତେ ଶରଦ ନିଶିମଣ୍ଡନ ॥
ପ୍ରଦୋଷ ଶେଷ ବୃନ୍ଦା ଉପଦେଶ ।
ଶୟନ ତେଜ ଭଜେ ପୀତବାସ ॥
ଗତଭୀତ ଚନ୍ଦ୍ର ଗୋକୁଳ ଜନେ ।
କାହ୍ନୁ ବିନୁ କେହି ନଯାନ୍ତି ବନେ ॥
ଏ ହେନ କାନନ ନିର୍ଜ୍ଜନ ପଥ ।
ଭ୍ରମନ୍ତି ହରି ସଙ୍ଗେ ମନମଥ ॥

ପ୍ରବେଶ ହେଲେ ବୃନ୍ଦାବନ ମଧ୍ୟେ ।
ପକ୍ଷୀ କୋଳାହଳ ମହା ଆନନ୍ଦେ ॥
ଦେଖିଲେ ମାଧବ କାନନ ଶୋଭା ।
ଉଜ୍ଜ୍ୱଳ ରଜନୀ ମଦନ ଲୋଭା ॥
ନବୀନ ଚନ୍ଦ୍ରଲତା କୁସୁମିତ ।
ଫଳଭରେ କୃଷ୍ଣପାଦେ ଲମ୍ବିତ ॥
ଦର୍ଶନ ଲଭି ଦ୍ରବଣ ବହିଲେ ।
ମଧୁ ଧାରରେ ଚରଣ ଧୋଇଲେ ॥
ମଳୟ ଚନ୍ଦନ ଗନ୍ଧ ସେବଇ ।
ଧୀମନ୍ତେ ପୁଷ୍ପ ବରଷି ଭାବଇ ॥
ନବ ପଲ୍ଲବ ଆଳଟ ପକାଇ ।
ପ୍ରବାଳ ଲତା ଛତ୍ରକୁ ଟେକାଇ ॥
ନବ ବକୁଳ ଭ୍ରମର ପକାଇ ।
ପବନେ ଗମନ ମାର୍ଗ ଭୁଲାଇ ॥
ଭୃଙ୍ଗରନ୍ଧ୍ରେ ପଶି ସୁସ୍ୱର ଧ୍ୱନି ।
ସାତ ମୂର୍ତ୍ତିରେ ବାତ ସେବା ଘେନି ॥
ଚନ୍ଦ୍ର କିରଣ ଚନ୍ଦ୍ରଦୀପ ଧରେ ।
ଦିନ ତାପହରେ ଆହ୍ଲାଦରେ ॥
କୁସୁମ କୁଳ ପ୍ରଫୁଲ୍ଲ କରଇ ।
ବୃନ୍ଦାବନରେ ଅମୃତ ପୂରଇ ॥
ଗୃହ ବାସରେ ପଗୃହ ସେବାସେବେ ।
ଏ ଅନୁ ରୂପେ କାମ ଆନନ୍ଦେ ଦେବେ ॥
ପ୍ରଫୁଲ୍ଲ କୁସୁମେ ଭୃଙ୍ଗ ପ୍ରମତ୍ତ ।
ଯୁବତୀ ପ୍ରେମେ ନାୟକ ଯେମନ୍ତ ॥
କୂଜିତ ଧ୍ୱନି ପକ୍ଷୀଙ୍କ ସଞ୍ଚାର ।
ରତିକାମ କି ଗୁପତ ବିହାର ॥
ଯମୁନା ଜଳ ତରଙ୍ଗେ ଝଲକେ ।
କୃଷ୍ଣଙ୍କୁ ଠାରେକ ନେଇ ପଲକେ ॥
ପରିମଳ ପୂର କର୍ପୂର ରେଣୁ ।
କିଜାଣି ପଦ୍ମିନୀ ତରୁଣ ତନୁ ॥
ସ୍ନେହଭରେ କୃଷ୍ଣ ଧଇଲେ ଧୂଳି ।
ବିଭୁରେ ଆନ ହେବ ରସକେଳି ॥
ଘନ ଘନ ମାତ୍ରେ ଲହରୀ କୂଳେ ।
କୃଷ୍ଣ ଛାଡ଼ିବେ ଛାଡ଼ିବେ କି ବୋଲେ ॥

ଅଙ୍ଗ ସୁଗନ୍ଧରେ ଅଳି ମଣ୍ଡଳୀ ।
ଫୁଲବନକୁ ସେ ନିତ୍ୟ ଆଗୋଳି ॥
ଷଡ଼ଋତୁ ଫୁଲକୁଳ ବିକାଶ ।
ଚନ୍ଦ୍ରକୁ ଦେଖି କି କରନ୍ତି ହାସ ॥
କଦମ୍ବେ ମୟୂର ଦାଡ଼ିମ୍ବେ ଶୁକ ।
ଦାକ୍ଷେ ସାରିକା ରସାଳେ ପିକ ॥
କପୋତ ଲତା କୁମ୍ଭାଟୁଆ ପୁଞ୍ଜେ ।
ବିବିଧ ପକ୍ଷୀ ସୁସ୍ୱରେଣ କୂଜେ ॥
ଭୂମିରେ ତାମ୍ରଚୂଡ଼ ପ୍ରିୟା ସଙ୍ଗେ ।
ଚେଣ୍ଢୁଆ ଡାକୁଆ ଡାକେ ସରାଗେ ॥
ଉଚ୍ଚେ ଉଡ଼ଣ ବୋଲଇ କେକେହୋ ।
କେକୀ ବୋଲେ ବୃନ୍ଦାବନ ଲୋକ ହୋ ॥
ରସିକ ବର ଦେଖେ ସର୍ବ ଶୋଭା ।
ତ୍ରିଭଙ୍ଗି ଛନ୍ଦେ ନୀପମୂଳେ ଉଭା ॥
ରୂପେ ଉପମା କୋଟିକାମ ଜିଣି ।
ପଶ୍ଚିମ ମୁଖେ ଡାକେ ବେଣୁପାଣି ॥
ଅଧରାମୃତେ ପୂରିତ ମୁରଲୀ ।
କୋମଳାଙ୍ଗୁଳି ରନ୍ଧ୍ରେ ରନ୍ଧ୍ରେ ଚଳି ॥
ପଞ୍ଚସ୍ୱରେ କଳରବେ ବାଇଲେ ।
ମୋହନ କାମବୀଜକୁ ଗାଇଲେ ॥
ଶୁଣନ୍ତେ ସର୍ବେ ଉଚ୍ଚାଟେ ଧାଇଁଲେ ।
ଚଉପାଶେଣ ବେଢ଼ିଣ ରହିଲେ ॥
ସ୍ଥକିତ ଜଳ କମ୍ପିତ ଅଚଳ ।
ଖଗ ମୃଗ କର୍ଣ୍ଣନେତ୍ର ନିଶ୍ଚଳ ॥
ବିରୋଧ ଚେତନ ସର୍ବେ ଅଇଲେ ।
ଚଉପାଶେଣ ବେଢ଼ିଣ ରହିଲେ ॥
ଖେଚରକୁଳ ନଚଳି ସ୍ଥକିତ ।
ଅମର ଗାଆଣି ଶୁଣି ଚକିତ ॥
ଅଳି ଧାଆନ୍ତି କମଳ ବିକଶି ।
ମଧୁ ବରଷି ଉଚ୍ଛୁଳେ ସରସୀ ॥
ତପନ ତନୟା ଲଂଘି କୂଳକୁ ।
ବନ୍ଦୁଛନ୍ତି କୃଷ୍ଣ ପାଦ ମୂଳକୁ ॥
ତରୁ ଲତା ପ୍ରେମଭରେ ହସିଲେ ।
ମଧୁର ଉଦ୍ଗାର ମହୀ ଲମ୍ବିଲେ ॥

ଗୋପଭୁବନେ ମାନିତ ଯେତେକ ।
ମୁରଲୀ ନଶୁଣେ ତାଙ୍କୁ ମାଟକ ॥
ରମଣୀଗଣ ମରମରେ ଶୁଭେ ।
ଯେ ଯେଉଁ ରୂପେ ସେହିରୂପେ ଭାବେ ॥
କୁମାରୀ ନିକର ଡାକେ ସରସେ ।
ଶରଦରେ ନୀର ସୁଧା ବରଷେ ॥
ଲୀଳା ବସ୍ତ୍ରାଗଣ ନବ ଯୁବତୀ ।
ବନେ ଆସିକରେ ତୃଷା ଶାନ୍ତିକ ॥
ସଙ୍କେତ ଜାଣିଥିଲେ କନ୍ୟାଗଣ ।
ଏକାବେଳେ ଶୁଣି ଧାଇଁଲେ ପୁଣ ॥
ଗୃହ ଜାରନ୍ତି କରେ କୂଳବଧୂ ।
କୃଷ୍ଣ ରସେ ରସି ବୁଡ଼ାଇ ମତି ॥
ଏକ ଧ୍ୱନି ବହୁରୂପେ ଶୁଭିଲେ ।
ଚେତନ ଅମୂଲ୍ୟ ନିଧି ଲଭିଲେ ॥
କାମନା ବାଳୀ କରୁଥିଲେ ଯାହା ।
ପରତେ ପାଇଣ ଚେତିଲେ ତାହା ॥
ଶୁଣି ସତ୍ତ୍ୱରେ କୀରନ୍ତି ତେଜିଲେ ।
ମୁରଲୀ ଧ୍ୱନିରେ ମନ ମଜ୍ଜିଲେ ॥
କେଉଁ ରମା କୃଷ୍ଣ ମହିମା କହି ।
ମଧରେ ଗାବ ବଚ୍ଛା ଛାଡ଼ି ଦୁହିଁ ॥
ଦୋହନ ଧ୍ୱନି ଗୀତବାଣୀ ଗୁଣେ ।
ଗୋବନ୍ଦ ସୁଖ ଲୀଳା ପରିମାଣେ ॥
ମୁରଲୀ ଶୁଣି ଦୋହଣି ଖସିଲା ।
ସାତ୍ତ୍ୱିକ୍ୟ ବାଧା ବିବେକ ନାଶିଲା ॥
ଦୋହନ ରସରେ ମନ ବିଳସେ ।
ଭ୍ରମେ ଦୋହନ ନ ହେଉ କଳସେ ॥
କୁମ୍ଭ ପୂରି କବା ଉଚ୍ଛୁଳି ବହେ ।
ହିମାଦ୍ରି ଭେଦ ସୁର ନଦୀ କଏ ॥
ଶମ୍ଭୁ ଶିରନିକରେ ଗୋଦୋହନ ।
ଫଳ ଲଭ ବନେ ଆମ ବହନ ॥
ସଙ୍କେତ ଶୁଣି ଧାମଇଁ ଏମନ୍ତେ ।
ମେ ମନ ହରି ଜାଣିଲେ କେମନ୍ତେ ॥
କେଉଁ ସ୍ୱବକ୍ଷ ଦୁଧ ଆବର୍ତ୍ତନେ ।
ଭାବେ ମନ ନଟବର ନର୍ତ୍ତନେ ॥

ଉମଳେଣ ଉଚ୍ଛୁଳେ ବଡ଼ା ସୁଚିର
ଜାଳ କମରେ ହଣଇ ରୁଚିର ॥
ଦେଖି ହସ ହସେ ବୋଲଇ ସଖୀ ।
କାମାନଳେ ଦୁଧ ମୁହଁକୁ ଟେକ ॥
ଉଙ୍କା କରଣେ ଆପୃତ ନକର ।
ଉଚ୍ଛୁଳ ପଡ଼ ହେବ ନାରଖାର ॥
ଶ୍ୟାମ ଶୀତଳ ପାଣିକ ମିଶାଅ ।
ଅନଳ ଲିଭଇ ଦୁଧ ବସାଅ ॥
ହସ୍ତ ର ଆଉ କେତେହେଁ କରିବ ।
ଆଉଟି ଆଉଟି ହୋଇ ମରିବ ॥
ହେ ସଖୀ କହିଲ କଣ୍ଠା ଯେ କଲେ ।
ଲୋକେ ନନ୍ଦାବ ଦୁଗ୍ଧ ପାଣି ଦେଲେ ॥
ଶ୍ୟାମ ଶୀତଳ ପାଣି ଆମ୍ଭ କାହିଁ ।
ଯମୁନା ଗଲେ ସଖୀ ସିନା ପାଇ ॥
ବେଣୁ ଡାକେ ଦୁହେଁ ଆସ ଯମୁନା ।
ଶୁଣି ଧାଇଁଲେ ସେ ବେଳ ଅଙ୍ଗନା ॥
କେଉଁ ଗୋପୀ ଦୁଗ୍ଧ ଦଅଇ ମନ୍ଥ ।
କୃଷ୍ଣଙ୍କୁ ଦେବଇଁ ବସାଇ ଦନ୍ଥ ॥
ବେଣୁ ଡାକଇ ଦନ୍ଥ ନୋହୁ ଦନ୍ଥ ।
ଶୁଣି ଗଲ୍ଲ ବାଳୀ ହରଷ ହୋଇ ॥
କେଉଁ ଯୁବତୀ ଯଯାବ ବସାଇ ।
ଯବ ଗହମ ଦୁଧରେ ମିଶାଇ ॥
ଝଣ୍ଡି ମରିଚ ପାନେ ନକ ନକ ।
କାମ ଅନଳେ ଜ୍ୱର ଦକ ଦକ ॥
ହରି ବେଗ ଦୁହେଁ ହେବ କେମନ୍ତେ ।
ବଚୁରନ୍ତେ ବେଣୁ ଡାକେ ଏମନ୍ତେ ॥
ଯଯାବ ଥାଉ ସେ ନିଜାମ୍ଭ ଆଣ ।
ଶୁଣି ସନ୍ତରେ ସେ ଅଇଲେ ପୁଣ ॥
ଯାନୁରେ ଶିଶୁ ଶୁଆଇ ଯୁବତୀ ।
ଦୁଧ ପିଆଁଇଣ ଗୀତ ଗାବନ୍ତି ॥
ପତନା ଶପୁ ବପୁ ଚୋର ହେଉ ।
ଦୁଧରେ ଦୃଷ୍ଟି ପଡ଼ଅଛୁ ଯାଉ ॥
ବେଣୁ ଡାକଇ ଦୁଧେ ଆମ୍ଭ ଦୃଷ୍ଟି ।
ବାଳକ ପକାଇ ଧାଏଁ ବିମ୍ବୋଷ୍ଠୀ ॥

ମନ୍ଦିରେ ବସି ବାସ ଥୋଇ ବାଳୀ ।
କୃଷ୍ଣ ଅଙ୍ଗଭୋଗ କୁଙ୍କୁମ ବୋଳ ॥
ଭୃଙ୍ଗ ଉରଜ ନନ୍ଦମ୍ଭ ଆଉଁସେ ।
ବେଣୁ ଡାକେ ଆମ୍ଭ ପାଣି ଲାଳସେ ॥
ଶସ୍ତ କରିବା ବନେ ଧେନୁ ଆସ ।
ଧାମଇ ବପସ୍ୱତେ ପିନ୍ଧ ବାସ ॥
କେଉଁ ନାୟିକା ପତ୍ରାବଳୀ କୁଚେ ।
ଲେଖଇ ଯେତେ କୃଷ୍ଣ ମନ ରୁଚେ ॥
ସଖୀ ଭାଷେ ଭାବ କରି ତାହାକୁ ।
କେତେ ଶତ୍ରକର କେତେବେଳକୁ ॥
ଦେଖିଲେ ହରି ଧରି ବିଦାରିବ ।
ବିଶେଷେ ଅଧରୁ ମଧୁ ହରିବ ॥
ମୁରଲୀ ବୋଲେ କୃତ କୁମ୍ଭ ମେରୁ ।
ଗୋମନ୍ତ ସଙ୍ଗେ ତୋଳିବା କେ ଗରୁ ॥
ଆସ ଆସ ଡାକେ ସ୍ୱନେ ସୁନ୍ଦରୀ ।
ବନେ ଚଳଇ ସଖୀ କର ଧରି ॥
କେ ନାରୀ ଅଞ୍ଜନ ଏକଲୋଚନେ ।
ଧେନୁ ଶୁଣି ବେଣୁ କୃଷ୍ଣ ବଚନେ ॥
ଇଚ୍ଛାରେ ନେତ୍ରଶରେ ଅଙ୍ଗ ଦହୁ ।
ମଦନ ବାଣ ପୁଣ କେତେ ସହୁ ॥
ବନ୍ଦ ଗନ୍ଧ ମଦ ହାସ ମିଶାଇ ।
ଏବେ ଅଞ୍ଜନ ବକ୍ଷରେ ବଖାଇ ॥
ଏତିକ ହେଉ ଆସ ସଖୀ ବନ ।
ଶୁଣି ବିସୋରି ଗଲା ସେ ନୟନ ॥
କେଉଁ ସୁନ୍ଦରୀ ଗନ୍ଧବାସ ଇଚ୍ଛି ।
କୃଷ୍ଣମନ ରୁଚି ପିନ୍ଧଇ ବାଛି ॥
ବେଣୁଡାକେ ଆସ ରସମେଳକୁ ।
ବସନ ଯତନ କେତେବେଳକୁ ॥
ଶୁଣି ସେ ସଭରେ ଗମେ ବିମ୍ବୋଷ୍ଠୀ ।
ଖୋସନ୍ତେ ମାଳ ପୁଣ ପୁଣ ଫିଟି ॥
ବେଣୁ ଧ୍ୱନି ଶୁଣି ହୋଇଲେ ବଶ ।
ତରତରେ କେହୁ ହୁଅନ୍ତି ବେଶ ॥
ଭ୍ରମେ କଜ୍ଜ୍ୱଳ କେ ଦେନନ୍ତି ଭାଲେ ।
ଅଞ୍ଜନ ବୋଲି ଗନ୍ଧ ଦେନେ ଡୋଳେ ॥

ଅଳତା ବୋଲ କେ ନ ଘେନ ସିନ୍ଦୂର ।
କରେ ଲଇଛି କେ ପାଦ ନୂପୁର ॥
କଟି କଙ୍କିଣୀ କେ ବାନ୍ଧଇ ଗଳେ ।
ମାଥେ ଖଞ୍ଜି ଅଛି ପଦକ ମାଳେ ॥
ଚରଣରେ କେହୁ କବରୀ ଖୋସି ।
ଧାମନ୍ତେ କୁସୁମ ପଡ଼ଇ ଖସି ॥
କାଳିନ୍ଦୀ ନଦୀର ହଂସ କି ଉଡ଼ ।
ହେମ ତନୁପାଦ ପଙ୍କଜେ ପଡ଼ ॥
କେ ଗୋପୀ ମାନସେ କୃଷ୍ଣ ଭୁଞ୍ଜାଇ ।
ଅବଶେଷ ପାଇ ମନ ମଜାଇ ॥
ବେଣୁ ବୋଲେ ଆଣ ମୁଖ ବାସକୁ ।
ବେଗେ ବାଳୀ ଘେନ ଧାମେ ପାଶକୁ ॥
ସ୍ୱାମୀ ଶୟନେ କେ ବସି ଭାବଇ ।
ମନେ ମନେ କୃଷ୍ଣ ପାଦ ସେବଇ ॥
ବେଣୁ ରବେ କରେ କର ମର୍ଦ୍ଦନ ।
ଶୁଣି ଧାମେ ବାଳୀ ଝାଳେ କର୍ଦ୍ଦନ ॥
କେ ନାଶ ସକଳ ଶଙ୍କା ବନାଣି ।
ଉଜ୍ଜ୍ୱଳ ରଜନୀ ଦେଖି ମନାସି ॥
କୃଷ୍ଣଙ୍କୁ ଦେଖିଲେ ଧାଇଁ ଧଇବ ।
ଏ ଚନ୍ଦ୍ରନିଶି ସଫଳ କରିବ ॥
ବେଣୁ ବୋଲେ ଧାଇଁ ଧରସି ବନେ ।
ଶୁଣି ଧାମେ ବାଳୀ ହରଷ ମନେ ॥
କେହୁ ସୁବେଶ ପଲଙ୍କେ ଶୟନେ ।
ଏକାନ୍ତେ ନିଦ୍ରା ନ ଆସେ ନୟନେ ॥
ଶ୍ରବଣ ପାଣ୍ଡିକ୍ୟ ଗତ ସୁରତ ।
ଗଲା ବାଳୀ ପୁଣି କୃଷ୍ଣ ପିରତ ॥
ବାମ ଲୋଚନା ମନକୁ ହରିଲେ ।
ଏମନ୍ତେ ସର୍ବେ ସତ୍ୱରେ ଚଳିଲେ ॥
କେହ୍ନ କାହାର ଯିବାର ନ ଜାଣି ।
ମୋତେ ଗଇଲେ ଏକା ପରମାଣି ॥
ବଡ଼ି ନଦୀ ଜାଣି ହେଲେ ବାହାର ।
ମେଳ ହୋଇଚଳେ ଯେହୁ ଯାହାର ॥
ମୁରଲୀ ଧ୍ୱନି ନେଉଛି କଡ଼ାଇ ।
କାମ-ଗୋପାଳ କ ଗାବ ଅଡ଼ାଇ ॥

ନର୍ତ୍ତେସ୍ପୁ ଗମନ୍ତି ଗହଳ ପଥ ।
ଆରୋହି ମନୋରଥ ମନମଥ ॥
ଏକକୁ ଆରକେ ବନ ଧାମନ୍ତି ।
ତୃଣ କଣ୍ଟକ ହରଷେ ଗମନ୍ତି ॥
ଆଗେ ମୁଁ କୃଷ୍ଣ କରିବି ଦର୍ଶନ ।
ହାସ ଲୋଚନେ ହୋଇବେ ପ୍ରସନ୍ନ ॥
ଉତ୍ସୁକେ ଏକ ଆରକେ ଲୁଚଇ ।
ମନ୍ଥର ଗତିରେ ପାଦ ବଞ୍ଚଇ ॥
ଚଳି ନ ପାରଣ ନିତମ୍ବବତୀ ।
ଆଭରଣ ଗରୁ ହୋଇଲା ଚିନ୍ତି
ଫକାଇ ଅଙ୍ଗୁ ଫେଡ଼ି ଏକ ଏକ ।
ଛାଡ଼ି ଚୂଡ଼ାହାର ପଦ ପଦକ ॥
ତଥାପି ବେଗରେ ନ ପାରେ ଚଳି ।
ସ୍ତନ ନିତମ୍ବ ଗରୁମାନେ ଭରି ॥
ବିଳମ୍ବ ମୋତେ କରାଇବନ୍ତି ପଥେ ।
ଆଶା ବଳାଇବ ନାଗର ହାତେ ॥
ଝୁଣ୍ଟି ପଡ଼ି ଉଠି ଫେରନ୍ତି ଧାଉଁ ।
କଣ୍ଟକ ଲାଗି ଶର ଶର ଯାଉ ॥
ତନୁକ୍ଷତ ଅଣକତ ନମଣି ।
ବଳିତ ମତ୍ତ ଲଳିତ ରମଣୀ ॥
ଅଙ୍ଗୁ ଅଳଙ୍କାର ପଡ଼ନ୍ତେ ଗଳି ।
ବିଳମ୍ବ ମଣି ସେ ନ ଘେନ ତୋଳି ॥
ଧାଇଁବା ଧାପେ ଧୂଳି ସର ସର ।
କେଶ ବସନ ଝାଳେ ଜରଜର ॥
ଗମନ୍ତେ ସ୍ୱମରେ ନବ କିଶୋରୀ ।
ଶୁଭେ ନ ଅ ମୋତେ ବନ ଈଶ୍ୱରୀ ॥
କୁଳବତୀ ବ୍ରତ ତେଜି ଅଇଲେ ।
ରମଣୀ ହୋଇ କେହ୍ନ ନ ରହିଲେ ॥
ହରି ଭାବେ ଦେହ ବୁଦ୍ଧି ବିଶୋରି ।
ବଳେ ଗଲେ ଉଠିପଡ଼ି ହୋସରି ॥
କ୍ଷୀଣଅଙ୍ଗୀ ଯାଇ ନ ପାରି ଭାବ ।
ପୁରେ ଗୋବିନ୍ଦ ଅଙ୍ଗସଙ୍ଗ ଲଭି ॥
ସେ ଆଗେ ନ ପାଉ ଏ ଆଗେ ପାଇ ।
ଏକାନ୍ତେ ସୁଖେ ହେନ ବିଳସଇ ॥

ଗୋପାଳେ ନିଶ୍ଚିନ୍ତେ ବସି ଆସୁଛେ ।
ଯୋଗମାୟା ମୋହ ମୁରଲୀ ଗୀତେ ॥
ଏମନ୍ତେ ବନେ ଗମନ୍ତେ ଯୁବତୀ ।
ହରିରୂପ ଶୋଭା ଦେଖି ଭାବନ୍ତି ॥
ଦିଶନ୍ତି ସେହୁ ଯେତେଣେ ବୃନ୍ଦେ ଝୀରୁ ।
ଶ୍ୟାମଳ ମଞ୍ଜୁଳ ତମାଳ ତରୁ ॥
ପକ୍ଷୀ କୋଳାହଳ ମୁରଲୀ ନାଦ ।
ମଳୟ ସମୀର ଅଙ୍ଗ ସୁଗନ୍ଧ ॥
ଶ୍ରବଣ ଅବତଂସ କର୍ଣ୍ଣିକାର ।
ପରାଗ ପୀତବସନ ଆକାର ॥
ଚଞ୍ଚଳ ନେତ୍ରକ ଖଞ୍ଜନ ପକ୍ଷୀ ।
କେକୀଟେକ ପୁଚ୍ଛ ଚୂଳକ ଅଛି ॥
ମଲ୍ଲି କଢ଼ି ନାସା ଗଜମୋତିକ ।
ଜବାପୁଷ୍ପ ବିମ୍ବାଧର ଜ୍ୟୋତିକ ॥
କୁନ୍ଦକଢ଼ି ଦନ୍ତ ପ୍ରକାଶେ ହାସ ।
ଅଶୋକକଳି ଅଙ୍ଗୁଳି ସଦୃଶ ॥
ଅଗସ୍ତି ଶାର୍ଦ୍ଦୂଳ ନଖ ପଦକ ।
କଳ ମୋତିମାଳ ହାର ଅନେକ ॥
ନକ୍ଷତ୍ର ଜାତି କୁସୁମ ଆଭା ।
ନବଦଳ କି କରତଳ ଶୋଭା ॥
ଫୁଲ ପଲ୍ଲବ ଜାଣି ବନମାଳ ।
କିଙ୍କିଣି ଧ୍ୱନିକି ମଧୁପକୁଳ ॥
ତରୁ ଛନ୍ଦାଛନ୍ଦ ତ୍ରିଭଙ୍ଗି ଠାଣି ।
ଚନ୍ଦ୍ରିକା ଚନ୍ଦ୍ର ଚନ୍ଦନ କି ଜାଣି ।
କୃଷ୍ଣ ରୂପରେ ଦେଖନ୍ତି ବନକୁ ।
ପୁଷ୍ପ ହାସ କରେ ବଢ ମନକୁ ॥
ପୁଣି କେତେଦୂରେ ଦେଖି ଯମୁନା ।
ଶ୍ରୀକୃଷ୍ଣ ରୂପ କରନ୍ତି ଭାବନ ॥
ଶ୍ୟାମଳ ନିର୍ମଳ ଶ୍ରୀତନୁ ଆଭା ।
ତରଙ୍ଗ ଗତି ନୃତ୍ୟ ରଙ୍ଗଶୋଭା ॥
କମଳ ମୀନ କଳହଂସ ମତ୍ତ ।
ପରାଗ ନିକର ଅମ୍ବର ଭ୍ରାନ୍ତ ॥
ପକ୍ଷୀ କଳିତ କି କିଙ୍କିଣି ଧ୍ୱନି ।
କୁସୁମମାଳା ଭୂଷଣ କି ଜାଣି ॥

ଚନ୍ଦ୍ରତାରା ବିମ୍ବାଧର ପଦକ ।
ନେତ୍ର ମୀନରେ କି ଝଲଝଲକ ॥
ମୁଖ ପଦ୍ମନେତ୍ର ନୀଳେନ୍ଦୀବର ।
କୁମୁଦହାସ କୋକନଦାଧର ॥
ମୃଣାଳ ଭୁଜ ସୁବାସେ ଜଡ଼ିତ ।
ଏରୂପେ କୃଷ୍ଣ ଲାବଣ୍ୟ ମଣ୍ଡିତ ॥
ନିର୍ମଳ ଗଗନେ ବିଧୁ ନିରୋପି ।
କୃଷ୍ଣ କପାଳେ କି ଚନ୍ଦନ ଟୋପି ॥
ତାରାବଳୀ କି ଏ ମୁକୁତା ହାର ।
ଆଲିଙ୍ଗନରେ ଆହ୍ଲାଦ କର ॥
ରଜନୀ ସଜନୀ ଧେନ ବାହାର ।
ଦେଖିଣ ମନେ ଗରବ କାହାର ॥
ଯେଣିକି ଚାହିଁଲେ ପଡ଼େ ଚମକ ।
କୃଷ୍ଣପ୍ରାୟ ମଣି ଉର ଦମକ ॥
ଏମନ୍ତେ ଗୋପୀ ଗୋବିନ୍ଦ ସମୀପେ ।
ନୀଳମଣି ତନୁ କାନ୍ତି ନିରୋପେ ॥
କିରଣେ ଶ୍ୟାମଳ ମଞ୍ଜୁଳ ଖଚିତ ।
ଯେସନ ପ୍ରକାଶେ ରତନ ଜ୍ୟୋତି ॥
ତରୁ ଲତାକୁ ନିରେଖି ନିରେଖି ।
ନୀପମୂଳେ କୃଷ୍ଣ ମୂରତି ଦେଖି ॥
ଶରଦ ଚନ୍ଦ୍ରକ ମୁଖମଣ୍ଡଳ ।
ବେଢ଼ିଣ ନୀଳ ଅଳକା କୁନ୍ତଳ ॥
ମଦନ-ବ୍ୟାଧ ଟାଣି ଜାଲ ଛନ୍ଦ ।
ଲାବଣ୍ୟ ତଣ୍ଡରେ କୁଣ୍ଡଳ ଫାନ୍ଦ ॥
ଅଧର ବିମ୍ବ ଆହାର ଆଶାରେ ।
ନେତ୍ର ଖଞ୍ଜନ ବନ୍ଧ ସେ ପାଶରେ ॥
ଲଲାଟ ପାଟିରେ ଗୋରୁ ଚନ୍ଦନ ।
ଏ ପୂର୍ଣ୍ଣଚନ୍ଦ୍ର କରୁଛି ବନ୍ଦନ ॥
ସୁହାର୍ଦ୍ଦ ନାସେ ଗଜମୋତି ଲୁଳିଲ ।
ରୋହିଣୀ ଉଦେ କି ଚନ୍ଦ୍ରମା କୋଳେ ॥
ମଧୁର ମୁରଲୀ ଅଧର ସଙ୍ଗ ।
ଶବଦେ କୁଳବଧୂ ବ୍ରତଭଙ୍ଗ ॥
ଶିଖେ ଝଲମଲ ଶିଖୀ ଚନ୍ଦ୍ରିକା ।
ଆଗଭର ବାଙ୍କଚୂଳ ବିଶାଖା ॥

ବିବିଧ ସୁବାସ କୁସୁମ ଗନ୍ଧ ।
କନକ କଣ୍ଟକୀ ମୁକୁଟ ଶୋଭା ॥
କମ୍ବୁକଣ୍ଠ ହେମ ହାର ମେଦୁର ।
ବିବିଧ ପଦକ ରତ୍ନ ବେଢ଼ର ॥
ବାହୁରେ ବାହୁଟି କରେ କଙ୍କଣ ।
ଅଙ୍ଗୁଷ୍ଠିରେ ରତ୍ନ ମୁଦ୍ରିକାଗଣ ॥
ହୃଦେ ବିକଶେ କଉସ୍ତୁଭ ମଣି ।
ନିର୍ମଳ ଆକାଶେ ଶୀତାଂଶୁ ଜାଣି ॥
କଟିରେ ପୀତ ବସନ ରସନା ।
ସୁସ୍ୱରେ ଧ୍ୱନି ବଜୁଳି ରୋଚନା ॥
ଆଜାନୁ ଲମ୍ବେ ବୈଜୟନ୍ତୀ ମାଳ ।
ରୁଣିତ ନୂପୁର ପାଦ ଯୁଗଳ ॥
ତ୍ରିଭଙ୍ଗି ଠାଣି ପଶ୍ଚିମ ବଦନ ।
ରୂପ ନିନ୍ଦୁଅଛି କୋଟି ମଦନ ॥
ମହୀମଣ୍ଡଳ କସ୍ତୁରୀ ତିଳକ ।
ଦେଖି ଗୋପୀଙ୍କ ନପଡ଼େ ପଲକ ॥
ଶୋଭା ଲୁଣ୍ଠିବାକୁ ନେତ୍ର ନଅଣ୍ଟେ ।
ନାସା ପୂରି ଗନ୍ଧ ଅଙ୍ଗ ଚହଟେ ॥
ଏମନ୍ତେ ଅପୂର୍ବ ରୂପ ନିରେପି ।
ପଟୁଆର ହୋଇ ରହିଲେ ଗୋପୀ ॥
ଦମଦମ ଉରି ଖର ନିଃଶ୍ୱାସେ ।
ସେବ ରହି ପ୍ରାଣନାଥ ବିଶ୍ୱାସେ ॥
ଚିତ୍ର ପ୍ରତିମା ପ୍ରାୟ ହୋଇ ବାଳୀ ।
ସ୍ତମ୍ଭୀଭୂତେ ନେତ୍ର ଗାତ୍ର ନଚଳି ॥
ଚନ୍ଦ୍ରମାବଦନୀ ଚନ୍ଦ୍ରବଦନେ ।
ଅବଲୋକନେ ମନ୍ଥନ କର୍ଦ୍ଦନେ ॥
କୃଷ୍ଣଙ୍କୁ ସର୍ବେ ସମ୍ମୁଖେ ଦେଖନ୍ତି ।
ନେତ୍ର ନିମିଳି ହୃଦରେ ରଖନ୍ତି ॥
ଦେଖନ୍ତି ନାଗର କାମିନୀବୃନ୍ଦ ।
ମୁରଲୀ ରଖି କହେ ମନ୍ଦ ମନ୍ଦ ॥
ହେ ନାରୀଗଣେ ଅଇଲ କାହିଁକି ।
ନିଶି ଘୋର ବନେ ଭୟ ନାହିଁକି ॥
ଗୋକୁଳ ସକଳ ମଙ୍ଗଳ କହ ।
ତୁମ୍ଭଙ୍କୁ ଦେଖି ମୋ ଆକୁଳ ଦେହ ॥
ଗୋପେ କି କାହାର ଭୟ ପାଇଲ ।
ଏଡ଼େ ଦୁର୍ଗମ କେମନ୍ତେ ଅଇଲ ॥
ନବୀନ ପଲ୍ଲବ ତୃଣ ଆହାର ।
ପାଇଣ ଗାବ ନୋହିଲେ ବାହାର ॥
ଗୋପାଳମାନେ ଗଲେ ମୋତେ ଛାଡ଼ି ।
ଏକା ହୋଇଣ ମୁଁ ବନରେ ଲେଉଡ଼ି ॥
ବଂଶୀରେ ନାମ ଧରିଣ ଡାକଇ ।
ଯାହାର ଯେମନ୍ତ ଗତି ଭାବଇ ॥
ଏଡ଼େ ଦୁଃଖ ମୋର ତୁମ୍ଭର ପାଇଁ ।
ଏଥକୁ କୃପା ଗୋ ଅଇଲ ଧାଇଁ ॥
ଦେଖ ସମ୍ପୂର୍ଣ୍ଣ ଏ ଚନ୍ଦ୍ରମଣ୍ଡଳ ।
ଯମୁନା କୂଳ ବନ ପରିମଳ ॥
ବିକଶିତ ଜାତି ଜୂତି ମଲ୍ଲିକା ।
ମଧୁ ଚୁମ୍ବି ମତ୍ତ ଅଳି ମାଳିକା ॥
ଶୀତଳ ସଲିଳ ଅନିଳ ବହି ।
ଲାଗି ଦୁଃଖଭାଗୀ ହୋଇବେ ଦେହି ॥
ଧରିଛି ରଜନୀ ଘୋର ରୂପକୁ ।
ବଢ଼ାଉଅଛି ଅତନୁ ତାପକୁ ॥
ବନଜୀବମାନଙ୍କରେ ସେବିତ ।
ଭୟ ନକର କେବଣ ନିମିତ୍ତ ॥
ଏକା ହୋଇଥିଲି ବନ ଭିତରେ ।
ଅଇଲ ଯେବେ ମୋହର ହିତରେ ॥
ପ୍ରେତ ଭୂତ ଖିଟ ଖଣ୍ଡି ଆମ୍ଭର ।
ପୁରେ ଚଳ ନିନ୍ଦା ନୁହେ ତୁମ୍ଭର ॥
ଶ୍ୱଶୁରଜନ ଲୋଡ଼ି ପୁରେ ନଦେଖି ।
ବିରୁଦ୍ଧଭାବେ ହୋଇଥିବେ ଦୁଃଖୀ ॥
କୁଳସିଦ୍ଧିର ଏ ଧାର୍ମିକ ପଣ ।
ତୁମ୍ଭଙ୍କୁ ସମ ନାହିଁ ତ୍ରିଭୁବନ ॥
ପତିପାଦ ସେବା ଯୁବତୀ ଧର୍ମ ।
ଅନ୍ୟ ପୁରୁଷ ରମଣେ ଅଧର୍ମ ॥
ରୋଗୀ ଦରିଦ୍ର ଅସୁନ୍ଦର ହେଲେ ।
ପତିକି ବିଷ୍ଣୁ ପ୍ରାୟ ସେବେ ଭଲେ ॥
ମୋତେ ଏବେ ଶୁଭେ ଦେଖିଲ ବନେ ।
ବାହୁଡ଼ି ଚଳସି ନିଜ ସଦନେ ॥

ପଦ୍ମ ଚରଣେ ସେବା କର ଯାଇଁ ।
ଭେଦ ଅଛେତ ମୋ ଜାଣିବେ ନାହିଁ ॥
ବାଛୁରି ଛନ୍ଦ ଫିଟିଗଲେ ପିଇ ।
ବାଳକ କାନ୍ଦଣ ଶୋଇଲେ ଭୂଇଁ ॥
ଦୁଧ ଘଣ୍ଟ ଥୋଇ ଜଳ ଚଲରେ ।
ଜାଳ ପ୍ରଖରେ ଝାସଇ ଅଗ୍ନିରେ ।
ପାକ କର ଯା ସେ ଅନ ସ୍ତମ୍ଭେ ।
ସବ ନୟନେ ନିଦ୍ରା ଅବଲମ୍ବେ ॥
ଶୟନରେ ଗୁରୁଜନ ଅଛେତ ।
ତାହାଙ୍କୁ ଯାଇ କହଅ ସଚେତ ॥
ମଧୁର ମାରନ୍ତି ଅଛଳ ତେଜ ।
ମୋର ନଈନା ଶାଶୁ ନଣନ୍ଦ ତେଜି ॥
ବେଗେ ଯାଅ ଯୁବେ ନଜାଣୁ କେହି ।
ତୁମ୍ଭ ପାଛ ପଛ ଯାଉଛି ମୁହିଁ ॥
ଆଜ ନେଜମନେ ଆଇଲ କାନନ ।
ଛନ୍ଦ କରନ୍ତେଣ ମଳିନ ଆନନ ॥
ଏମନ୍ତେ ନାଗର ଉତ୍ତର ଶୁଣି ।
ବଜ୍ର ପଡ଼ିଲା ଯାସୁ ବାଳୀ ମଣି ॥
ସବୁରି ହୃଦୟ ଶୁଣିଣ ପୋଡ଼େ ।
ବଦନ ମଳିନ ବଚନ ଜାଡ଼େ ॥
ନୃସିଂହ ନୃସିଂହ ଶ୍ରବଣ ବୁଜି ।
ଦେଖୁ ଦେଖୁଣ ସବ ଶୋଭା ହଜି ॥
ଅଙ୍ଗୁ ଗଳି ଅଳଙ୍କାର ଝଡ଼ିଲେ ।
ଲତା ଯେସନେ କାନନ ପୋଡ଼ିଲେ ॥
ମାନସ ଅଧର ବିରସ ମୁଖ ।
ଲମ୍ବ ଲକ୍ଷ ସ୍ୱର ଶର ବିଶିଖ ॥
କଜ୍ଜ୍ୱଳ ଜଳ ଲୋଚନରୁ ଖସି ।
ଶୋକଭରେ କୁଚ ଅଞ୍ଚଳ ଘସି ॥
ଶମ୍ବୁକ ବେଶ ଭୂଷଣ ହୋଇଲେ ।
ମଦନ ଅନଳ ଦଗ୍ଧ ରହିଲେ ॥
ଚତୁର୍ଭୁଜ ବୃତୁଜ ଗତି ଗୁଡ଼ିଲେ ।
ଖେଦ ଉଦଧି ମଧ୍ୟରେ ବୁଡ଼ିଲେ ॥
ରମ୍ଭାତରୁ ପ୍ରାୟେ କମ୍ପେ ସୁକେଶୀ ।
ଚରଣ ଅଗ୍ର ଅବନୀରେ ଘଷି ॥

ଲୋତ ଜଳଭରେଣ ନୁଆଇଁ ମଥା ।
ଗଦଗଦ ହୋଇ ନଆସେ କଥା ॥
ଭୂମିକି ଗୃହ୍ନି ଲୋଟନ୍ତି ଚରଣେ ।
ଫାନ୍ଦିଯା ପଶିବୁଁ ତୁମ୍ଭ ଶରଣେ ॥
ଦେଖନ୍ତି ହରି ଯୁବତୀ ମଳିନ ।
ଗଜ ଦଳସେ ଯେସନେ ନଳିନ ॥
ହେମବରଣୀ ମନ କଷିଭୁଲ ।
ହୃଦୟୁ ଫେଡ଼ି ନକହନ୍ତି ବାଳୀ ॥
ଚତୁଷ୍ଟ ଚିତ୍ତକୁ ଜାଣିବା ପାଇଁ ।
କହୁ ନକହୁ ହରି ତୁନ ହୋଇ ॥
ଏମନ୍ତ ଦେଖି ସେହୁ ବନଦେବୀ ।
ଗୋବିନ୍ଦ ଗୋପୀ ଗୁଣଗଣ ଭାବି ॥
ଗୁପତ ପ୍ରେମ ଭଣ୍ଡାର ଫେଡ଼ାଇ ।
କଥା ପକାଇ ଶୁକକୁ ପଢ଼ାଇ ॥
ପଢ଼ ପଢ଼ ଶୁକ ସରସ ବାଣୀ ।
କାମିନୀ ବୃନ୍ଦ ଖେଦ ପଶମାଣି ॥
ଶୁକ ଭାଷଇ ହେ ଶ୍ୟାମ ନାଗର ।
ରସିକ ବର ଲାବଣ୍ୟ ସାଗର ॥
ମକର କୁଣ୍ଡଳ ଗଣ୍ଡରେ ଖେଳେ ।
ମୀନ ନୟନ ନାସେ ମୋତି ତୋଳେ ॥
ତ୍ରିଭଙ୍ଗି ଲୀଳା ତରଙ୍ଗ ଲହରୀ ।
ବେଣୁ ଧ୍ୱନି ଘୋଷ ଜଗତ ପୂରି ॥
କମ୍ବୁ କଣ୍ଠେ ଶୋଭା ବିବିଧ ହାର ।
ରତ୍ନ ଭୂଷଣେ ଜାଣି ରତ୍ନାକର ॥
କଳ୍ପତରୁ ପରେ ଏଣିକି ପୁଚ୍ଛ ।
ବଚନ ବଡ଼ବାନଳ ପ୍ରତ୍ୟକ୍ଷ ॥
ଗମ୍ଭୀର ହୃଦୟୁଂ ଅମୃତ ଧାମ ।
ସ୍ନାନ ଦର୍ଶନ ମାତ୍ରେ ପୂର୍ଣ୍ଣକାମ ॥
ରୂପେ ରୂପେ କରୁଣା ସମୁଦ୍ର ।
ତଟବାସୀ ଗୋପୀ କାମେ ଦରିଦ୍ର ॥
ଶରଦ ପୂର୍ଣ୍ଣିମୀ ସ୍ନାନ ଫଳକୁ ।
ସଂକଳ୍ପ କରି ତେଜିଲେ କୂଳକୁ ॥
ବଡ଼ବାନଳ ଲହରୀ ଶବଦେ ।
ଭୟେ ଭରସି ନପଶି ସୁବଧେ ॥

ସାଗର ଶୋଷଣ ପାଷାଣ ପାଇଲେ ।
କୁଚଶିଳାତଳେ ଉଦୟ ଭଲେ ॥
ଉଚିତବାକ୍ୟ ଉଚ୍ଚାରି ମନ୍ତ୍ରିଲେ ।
ପ୍ରସନ୍ନ ହେଲେ ଏଦୁଃଖ ତେଜିଲେ ॥
ଏତେ କହି ଶୁକ ହୋଇଲେ ତୁନ ।
ବୃନ୍ଦା ଇଙ୍ଗିତରେ ସାରିକା ଭଣି ॥
ରସିକବରହେ ଲାବଣ୍ୟ ସିନ୍ଧୁ ।
ଗୋପ ନାରୀକୁଳ ଜୀବନବନ୍ଧୁ ॥
ପ୍ରେମ ଲହରୀ ପ୍ରବଳେ ମାରୁଛି ।
କୁଚମନ୍ଦରକୁ ଦେଖି ଡରୁଛି ॥
ରତିପତି ଅଗସ୍ତି ଚରଣ ଶୁଖି ।
ଅନ୍ତରେ ପ୍ରୀତି ଅଛିଲେ ଦେଖି ॥
ମୁକୁତାହାର କରଏ ସୁରନଦୀ ।
ବହିଲେ କୁଚ ହିମାଦ୍ରିକି ଭେଦି ॥
ଦେଖି ଏ ପ୍ରଭୁ କୃଷ୍ଣ ବେଣୀ ବନ୍ଧ ।
ଧର୍ଷ୍ଟ କରିବେ ଦେଇ ନିଜ ଦେହ ॥
ରସରେ ରସି ମନ୍ତ୍ରିଣ ମିଶିବେ ।
କୁଳ ତେଜିଲେ ଲେଉଟି ନଯିବେ ॥
ଶାରି ଶୁକ ବାଣୀ ରୂପକ ଶୁଣି ।
ଶ୍ରଦ୍ଧାରେ ହରି ରୂପବୋଲି ଭଣି ॥
ଶାରି ଶୁକ ପ୍ରୀତି ଯୁବତୀ ବୃନ୍ଦ ।
ଓଷ୍ଠ କମ୍ପାଇ କଣ୍ଠ ଗଦ ଗଦ ॥
ମୁନିବେଶ ରାଜକନ୍ୟା ଆଦରେ ।
ନିତ୍ୟ ସିଦ୍ଧା ଗୋପୀ ଅନୁବାଦରେ ॥
ଦେଶ ବିଦେଶ ଉତ୍ତମ ଯୁବତୀ ।
ଅମ୍ବିକା ବନେ ଯେମା ହିତମତି ॥
ବହୁଦିନୁ ଥିଲେ ଆଶା ବଢ଼ାଇ ।
ବେଣୁନାଦକୁ ଅଇଲେ ଗୋଡ଼ାଇ ॥
ରହିଅଛନ୍ତି ବନଭୂମି ମାଡ଼ି ।
ସହସ୍ରେ ପୁରକରି ହରିବେଢ଼ି ॥
ପ୍ରଗଲଭା ନାୟିକା ରାଜକୁମାରୀ ।
କହନ୍ତି ଧଇର୍ଯ୍ୟ ଧରି ନପାରି ॥
ହେନାଥ ପାଷାଣ କଠିନ ତନୁ ।
ଜାଣିଛୁଁ ପୂତନା ମାରିଲ ହନୁଁ ॥

କେତେ ଅବସ୍ଥା ସେ ଆମ୍ଭରି ପାଇଁ ।
ବାଟ ଜଗି ଜଗି ଭେଟ ନପାଇ ॥
ନିମିଷ ମାତ୍ର ନରହ ସଦନରେ ।
ଦୃଷ୍ଟି ପୁରି ମଣ୍ଡି ପାଦ ପଦ୍ମରେ ॥
ଏବେ ବନେ ଆସି ଆମ୍ଭଙ୍କୁ ଭେଟି ।
ବୁଲଇ ବଜାଲେ ସୁବର୍ଣ୍ଣ ଭେଣ୍ଡି ॥
ଗୋକୁଳେ ନବ ରସିକ ନାଗର ।
ଉଛଳ ଦେଖି ଯୁବତୀ ସାଗର ॥
ଏଥିରେ ତୁମ୍ଭ ଶରଧା ଯାହାକୁ ।
ଆମ୍ଭେ ଯାଉଁ ପାଶେ ରଖ ତାହାକୁ ॥
ଯାହାକୁ କହିବା ତୁମ୍ଭ କି ଦୋଷ ।
ଏ ବଂଶୀ ଗୋଟି କଲା ସର୍ବନାଶ ॥
ନିରେଗ ପର୍ବସୁ ଏହାରି ଗତି ।
ଅମୃତ ପିଇ ଢପକରେ ବାନ୍ତି ॥
ଅଧରୁ ଅମୃତ ଏକା ଭୁଞ୍ଜଇ ।
ଆମ୍ଭଙ୍କୁ ବାଧା ହୋଇଣ ଗଞ୍ଜଇ ॥
ଏହି ଅବଗୁଣ ଦେଖି ତାହାର ।
ମଳୟ ବନରୁ କଲା ବାହାର ॥
ଭ୍ରମର ହୋଇଛି ଏଡ଼େ ବଢ଼ାଇ ।
ନାରୀ ନାବକୁ କୂଳରୁ ଛଡ଼ାଇ ॥
ଦଶନ ଚିପି ବୋଲନ୍ତି ଜାଣିମା ।
ହସ୍ତେ ପଡ଼ିଲେ ଦେଖିବା ଗାରିମା ॥
ରାଜକୁଳକନ୍ୟା ବଚନ ଶୁଣି ।
ରସେ ଢଳଢଳ ରସିକମଣି ॥
ଦେବକୁମାରୀ ରୂପ ବୃହ୍ନିଁ ମୋହି ।
ଅନୁରାଗେତ ବାହୁନି କହି ॥
ମୁଖଦର୍ପଣେକି ମକର ବାଡ଼ି ।
କୁଟିଳ କୁନ୍ତଳ ଅଳକା ବେଢ଼ି ॥
କପାଟ ପ୍ରାୟ ହୃଦୟ ଯହାର ।
ଆଜାନୁ ବାହୁ ଏଭୁଜ ବିସ୍ତାର ॥
କମଳେ କମଳୀୟ ପାଦପଦ୍ମ ।
କମଳା ଦେଖି କରିଛନ୍ତି ସଦ୍ମ ॥
ଆମ୍ଭ ତହିଁକି ସେ କେତେ ମାତର ।
ରତି ପାର୍ବତୀ ହୋଇବେ କାତର ॥

ବ୍ରତଫଳ ଯେବେ ପ୍ରସନ୍ନ ହେଲେ ।
ଦେବତା ପୂଜାରେ କରୁଣା କଲେ ॥
କର୍ଣ୍ଣଭେଦ ଶୁଣ ଯାହା ମଣାଇ ।
ମନକୁ ଭେଦ ବନକୁ ଅଣାଇ ॥
ଏବେ ପୁଣ କହ ବଂଶୁର ବାଣୀ ॥
ଶ୍ରୀନାଥ ହୃଦୟ ନୋହିଲା ଜାଣି ।
କହିଲ କଷି ବନ ଘଉମଲ ।
ମଦନ ଦହନ ବଉଷ୍ଠା ସଲ ॥
ତୁମ୍ଭର ଅଣ ଅବଧାନ ଯେବେ ।
ଆମ୍ଭଙ୍କୁ ତେବେ ସୁଖ କମ୍ପା ଦେବେ ॥
ଦେବ କନ୍ୟା ବାଣୀ ଶୁଣି ପୁଲକ ।
ସର୍ବ ଧର୍ମ ତେଜ ଶରଣ ଏକ ॥
କହିଲ ପତି ସେବାରେ ତୁମ୍ଭର ।
ସେହି ବଚନ ପ୍ରମାଣ ଆମ୍ଭର ॥
ତୁମ୍ଭେ ସେ ଗୋକୁଳ ଈଶ୍ୱର ପତି ।
ତୁମ୍ଭ ସେବାକଲେ ସକଳ ପ୍ରୀତି ॥
ଯେସନେ ତରୁମୂଳେ ଜଳ ଦେଲେ ।
ଶାଖା ପଲ୍ଲବତ ହୁଅନ୍ତି ଭଲେ ॥
ବହୁତ ବପଦୁଁ ଗୋକୁଳ ରଖି ।
ଦୁଃଖ ବନାଶି କରଅଛ ସୁଖୀ ॥
ତୁମ୍ଭେ କରଛ ସର୍ବଙ୍କୁ ନର୍ଭୟ ।
ଆଉକ ବନ ଦୁଷ୍ଟଙ୍କାରେ ଭୟ ॥
ଏକା ମାତ୍ରଅଛି ଅନଙ୍ଗ ବାଧା ।
ଏହାର ଭୟ ନପାରୁଛୁଁ ଛେଦ ॥
ମନରେ ରହି ମରମେ ଭେଦଇ ।
ତୁମ୍ଭଙ୍କୁ ଦେଖି ଅଧିକେ ବାଧଇ ॥
ଆମ୍ଭଙ୍କୁ ତୁମ୍ଭ ଦାସୀକର ରଖ ।
ହର ଅନଙ୍ଗ ଭୟ ଚିହ୍ନ ଦେଖ ॥
ଆମ୍ଭେତ ବରଅଛୁଁ ପତିକରି ।
ଆସିଲୁଁ ବେଣୁସ୍ୱନ ଅନୁସରି ॥
ମୁନକୁମାରୀନଙ୍କର ବଚନେ ।
କମ୍ପମାନ ଗୃହ୍ନି ପ୍ରେମ ଲୋଚନେ ॥
ଶୋକରେ ଭାଷନ୍ତି ଗୋପଯୁବତୀ ।
ଶ୍ରୀନାଥ ସ୍ନେହକଲ ଆମ୍ଭମତି ॥

ହୃଦରେ ଧରି ରଖିଛୁଁ ତୁମ୍ଭଙ୍କ ।
ଭୁଲାଇ ପଳାଇ ଯିବ କାହିଁକ ॥
କଷି ବନେପଶି ନଅ ଉଡ଼ାଇ ।
କାମ କୂପରେ ଦେଉଛ ପକାଇ ॥
ଏମନ୍ତ ହେଲେକ ଗୃହକୁ ଆମ୍ଭେ ।
ବାହୁଡ଼ାଇ ଦେଇ ନପାର ତୁମ୍ଭେ ॥
ଗୃହ ମାରନ୍ତି ବଡ଼ପ୍ରୀତିରେ ମନ୍ତି ।
ମନାସି ଭାବେ ଅହର୍ନିଶି ଭଜ ॥
ଏଠାରୁ ଯେବେ ସେ ଯିବୁଁ ବାହୁଡ଼ ।
ମନ ସୁନେ ରଖି ଅଧିକେ ଭିଡ଼ ॥
ଏ ସୁଖ ଆମ୍ଭର କେଣେ ଯିବକ ।
ସ୍ନେହ ରତି ପ୍ରୀତି କେଉଁଣେ ଥିବକ ॥
ହୃଦୟେ ରଖି ଶ୍ରବଣେ ଶୁଣାଇ ।
ଏକାନ୍ତ କରି ବନକୁ ଅଣାଇ ॥
ରୂପ ଦେଖାଇ ମଧୁର ଚଖାଇ ।
ମେଲଣି ଦଅ କାମକୁ ବଢ଼ାଇ ॥
ନାମଧରି ବେଣୁବାଇ ଗାଉଛ ।
ଅଇଲକୁ ସେ ଫଳାଇ ହେଉଛ ॥
ଏଥକୁ ତୁମ୍ଭର ମୁରଲୀ ସାକ୍ଷୀ ।
ନବାସେ ନମିଷେ ନଦେଲ ରଖି ॥
ଏବେ ବୋଲ ଗୁରୁଜନେ ଗଞ୍ଜିବେ ।
ବିଳମ୍ବ ହେଲେ କୁଳରୁ ତେଜିବେ ॥
ତଖି ଆସିନାହୁଁ ସେତୁ ଲାଜକୁ ।
କଷି ବନେକ ଅଇଲୁଁ ଆଜକୁ ॥
ବ୍ରଜ ଯୁବତୀ ଉଚିତ ଯୁକତି ।
ରସେ ହରିଶୁଣି ପ୍ରେମ ଭକତି ॥
ଅମ୍ବିକା ବନେ ମୋହିତ ଯେ ନାରୀ ।
ଅନୁସରି ଥିଲେ ଯେତେ ସୁନ୍ଦରୀ ॥
କାମ କୁଣ୍ଡରେ ତୁଣ୍ଡି ଜାଡ଼ ବାହି ।
କହନ୍ତେ ହରି ଶୁଣି ସୁଖପାଇ ॥
ଶ୍ରୀନାଥ ବନ୍ଧୁକାନ୍ତୁଁ ଅନୁସରି ।
ଅତନୁ ପ୍ରେତ ତନୁ ଅଛି ଧରି ॥
କୁଳ ଶୀଳ ତେଜି ହେଲୁଁ ବାଉଳ ।
ଏଥକୁ ତୁମ୍ଭେ ସେ ମହାବାଉଳ ॥

ଯେ ବନେ ଥାଇଣ ଯେ ଗୋପନାରୀ ।
ତହିଁ ଅଛନ୍ତି ଅନ୍ୟଦେବ ପୂରି ।
ସ୍ତୁତି କରନ୍ତେ ଅନ୍ତ ଗୋପନାରୀ ।
ଛାଡ଼ି ରହିଲେ ମନେ ଆନଧରି ॥
ଦାଶରଥି ଥିଲ ତାଙ୍କ ସଙ୍ଗରେ ।
ଆଜ୍ଞାସି କହିଣ ଗୋପ କନ୍ୟାରେ ॥
ତୁମ୍ଭେ ବନ୍ଦିଲ ବୃନ୍ଦ ଗୋପନାରୀ ।
ଯାଇ ଭେଟିବ କୃଷ୍ଣ ଅନୁସରି ॥
ଶ୍ରୀ ବ୍ରଜେଶ୍ୱରି ଦୟାକର ମୋରେ ।
ତୁମ୍ଭ ଚରଣତଳେ ରଖ ବାରେ ॥
ହେ ବ୍ରଜେଶ୍ୱରି ବୃନ୍ଦାବନେ ରାଜା ।
ତୁମ୍ଭ ଚରଣ ତଳେ କଲ ପୂଜା ॥
କରୁଣା ରକ୍ଷଣି ହେ ମହାଦେବୀ ।
ତୁମ୍ଭ ଚରଣେ କଙ୍କର ମୁଁ ସେବି ॥
ତୁମ୍ଭ ଦୟ ରୁ ଜନ୍ମି ଭକ୍ତଭାବ ।
ତୁମ୍ଭ ଚରଣେ କରି ବ୍ରଜଭାବ ॥
ତୁମ୍ଭ ଦୟାରୁ ହେବ କୃତାର୍ଥ ଯେ ।
ତୁମ୍ଭେ ସର୍ବ ଦୋଷ କ୍ଷମା କରସେ ॥
ତୁମ୍ଭ ଭୃତ୍ୟଙ୍କୁ ଉଦ୍ଧରି ରଖ ଯେ ।
ଦୟାକରି କହ ସର୍ବ ତେଜ ଯେ ॥
କରୂପରେ ଗୋପୀ ବନରେ ରହି ।
କୃଷ୍ଣ ଅଙ୍ଗ ସଙ୍ଗ ପାଇବା ପାଇଁ ॥
ଯେ ଯେଉଁ ରୂପେ ରହିଲେ ବଣିରେ ।
ଆଶା ବଢ଼ାଇ ପ୍ରେମ ଲାଳସରେ ॥
ବଣି ହୋଇଥିଲ ଯେ ଚନ୍ଦ୍ରପଦ୍ମ ।
ତାଙ୍କୁ କରୂପେ ଗ୍ରଢ଼ି ନନ୍ଦବସ୍ତ୍ର ॥
ସେ ସ୍ତୁତି କରୁଥିଲେ କରୂପରେ ।
ତୁମ୍ଭେ ପ୍ରସନ୍ନ ହୋଇ କହ ବାରେ ॥
ତୁମ୍ଭ କୃପାରେ ମୁଁ ସମ୍ମୁଖ ମଛି ।
ତୁମ୍ଭେ ଦୟା କରହେ ମହାସଖି ॥
ଶୁଣହେ ଧନପତିର ନନ୍ଦନ ।
ବଣି ତହିଁରେ ଗୋପ କନ୍ୟାଗଣ ॥
ବୃନ୍ଦାବନେ ଖୋଜନ୍ତି ଗୋପନାରୀ ।
ତାଙ୍କୁ ଖୋଜଣ ବୋଲନ୍ତି ଚତୁରୀ ॥
ତୁମ୍ଭେ ବାରେ କରିବ ଯେବେ ଦୟା ।
ଏବେ ଛାଡ଼ କରୁଛ ବଡ଼ ମାୟା ॥
ଏତେ ହସ୍ତ ରଚଣ କର ନାହିଁ ।
ତୁମ୍ଭ ବିନୁ ନଜାଣୁଁ ଅନ୍ୟକେହି ॥
ତୁମ୍ଭେ ଯେମନ୍ତେ ରଖ ଆତ୍ମପ୍ରାଣ ।
କହୁଁ ନକହୁଁ ତୁମ୍ଭ ବଂଶୀସ୍ୱନ ॥
ଆମ୍ଭେ ଜମୁନାଜଳେ ସ୍ନାନକଲୁଁ ।
ତୁମ୍ଭେ କଦମ୍ବେ ଉଠିଛ ଚିହ୍ନିଲୁଁ ॥
ସେବା କାରଣ ଅଛୁଁ ବ୍ରଜବାସୀ ।
ଦାସୀ ହୋଇଗଣି ଏ ଭୟନାଶି ॥
ବୋଲି ଯେ ପୁରକୁ ଯାଅ ବାହୁଡ଼ି ।
ଶୁଣି ସେ ପ୍ରେମ କୁନ୍ତକୁ ପହୁଡ଼ି ॥
ଅନେକ ଦୂରୁ ନଦୀ ବହିଆସି ।
କୂଳଟେକ ସିନ୍ଧୁ ସଙ୍ଗରେ ମିଶି ॥
ରସେ ରସ ନଜଦେହ ହଜାଇ ।
ଗୋଷ୍ଠ ସୁମରି ବାହୁଡ଼ି ନଯାଇ ॥
ଆବିଲ ଜଳ ଅଙ୍ଗସଙ୍ଗେ ରସି ।
ତୀର୍ଥରାଜ ଆଉ ଯାଅ ବୋଲେକି ॥
ତ୍ରିବେଣି ସୁବେଣୀ ଘଟନ ଜାଣି ।
ଏକ ଏକରେ ପ୍ରେମ ପରିମାଣି ॥
ବହୁବିଧି ପ୍ରଭୁ ଭକତ ଯେତେ ।
କହିଲେ ଚତୁରୀ କହିବା କେତେ ॥
ଯୂଥେ ଯୂଥେ ହରି ସ୍ୱଭାବ ଜାଣି ।
ଏକ ଏକରେ ପ୍ରେମ ପରିମାଣି ॥
ଇକ୍ଷୁକୁ ପେଡ଼ିଲେ ରସ ସରସେ ।
ନିପୁର ପାକରେ ସ୍ୱାଦୁ ବିଶେଷେ ॥
ହେମ ଦାହା ବେଳୁଁ ବେଳୁଁ ଉଜ୍ଜ୍ୱଳ ।
ହେମ ବରଣୀ ସେ ଭାବେ ନିର୍ମଳ ॥
ଯୁବତୀ ଶରୀ ଦୃଢ଼ବ୍ରତ ଜାଣି ।
ଆସ ବୋଲି କୃଷ୍ଣ ଡୋଳଲେ ପାଣି ॥
ଏହି ସମୟେ ରାଧା ଚନ୍ଦ୍ରାବଳୀ ।
ନିଜ ସଙ୍ଗୀଗଣ ଘେନି ମିଳି ॥
ଦେଖିଲେ ବେଢ଼ି ଗରିଷ୍ଠ ଯୁବତୀ ।
ବିନତି କରି ମାଗନ୍ତି ସୁରତି ॥

ଜାଣି ମଣ୍ଡଳ ଛାଡ଼ି ଅପସର ।
ଚଉଦିଗେ ପୁଣ ବେଢ଼ି ଅନୁସର ॥
ବେନି ନାୟିକା ଭିତରେ ପଶିଲେ ।
ନୟନେ ନୟନେ ମିଶି ହସିଲେ ॥
ରସିକସିନ୍ଧୁ ମୁଖବିଧୁଦେଖି ।
ପ୍ରେମ ସାଗରେ କି ଭୃଜଙ୍କୁ ଟେକି ॥
ମକରଧ୍ୱଜ ଲହରି ଉଚ୍ଛୁଳ ।
ଉଛର କଅ ଆପ ସଖୀ ବୋଲ ॥
ଏମନ୍ତ ଦେଖି ସେ ଦୁଇ ନାୟିକା ।
ରହିଲେ ଯାଇ କୃଷ୍ଣ ବେନି ପଖା ॥
ଦକ୍ଷିଣେ ଚନ୍ଦ୍ରାବଳୀ ରାଧା ବାମେ ।
କନକପ୍ରଭା କି ନୀଳପ୍ରତିମେ ॥
ଭୁଜ ଯୁଗଳ ଦେଇ ବେନି କନ୍ଧେ ।
ମଧୁପ ଖେଳେ କି କମଳ ମଧ୍ୟେ ॥
ରାହୁ ଯେହ୍ନେ ରବି ଶଶୀ ସଙ୍ଗମେ ।
ସର୍ବେ ହରଷେ ସ୍ନାନଦାନ ଧର୍ମେ ॥
ତହୁଁ ଶତଗୁଣେ ବାମା ସକଳେ ।
ସ୍ନାନକଲେ ଯୋଗେ ଯୁଗଳେ ଜଳେ ॥
କୃଷ୍ଣ ଦ୍ୱିଜରାଜ କରେ ଦାନକୁ ।
ଦେଲେ କୁଚ ହେମକୁମ୍ଭମାନଙ୍କୁ ॥
ପୂର୍ଣ୍ଣକରି ରତି ପ୍ରେମ ଧନକୁ ।
ଦକ୍ଷିଣାକରିବେ ତନୁ ମନକୁ ॥
ମୂଳ ଜଳେ ଯେହ୍ନେ ଲତା ସରସେ ।
ତେସନେ ସମୁଖୀ ସଖୀ ପରଶେ ॥
ସହସ୍ରେ ପୂର କରି ବେଢ଼ି ବାଳୀ ।
ମଙ୍ଗଳ କଲେ ଦେଇ ହୁଳହୁଳି ॥
ଯେ ଯାହା ସେବା କରିଣ ଯାଚିଲେ ।
ହରସେ ତେଜ ହରଷ ଲଭିଲେ ॥
ହୃଦାପିତେ ହରି ବଚନ ଗାଡ଼ି ।
ଜାଣିଲି ତୁମ୍ଭ ମନକୁ ସୁକେଶୀ ॥
ହନକୁ ହନ ହୋଇ ଅନୁରାଗୀ ।
କୁଳ ଶୀଳ ଲାଜ ତେଜ ମୋଲାଗି ॥
ଗୁରୁ ଗଉରବ ମାନ ନମାନ ।
ନିଶି ଗହନେ ଅଇଲ ଧାମିନ ॥
ମନ ଧନଦେଇ କିଣ ଆମ୍ଭକୁ ।
କି ଉପକାର କରିବୁଁ ତୁମ୍ଭକୁ ॥
ଏହୁ ଦେହକୁ ଅରଜିଲ ଭାବେ ।
ବାହାର ଯେନେ ଏ ରାସ ଉତ୍ସବେ ॥
କୃଷ୍ଣ ସରସ ବଚନେ ଦ୍ରବାଇ ।
ଗୋପୀ କଳାପ ଚାପକୁ ଲଗାଇ ॥
ତଳି ପତି ଗଳି ମାତି ଲାଳସେ ।
କୁଚ କଳସ ଦେଖାଇ ଅଳସେ ॥
ଦ୍ରୁମଦ୍ୱିଜେ ରହିଁ କେବଣ ବାଳୀ ।
ନିତମ୍ବ ଆଉଁସି ବସନ ଗୁଳ ॥
ଭ୍ରୁଙ୍ଗ ଭୟେ କି ଚମକ ପଡ଼ଇ ।
ଉର ବସନ ମିଛେହେଁ ଝାଡ଼ଇ ॥
କେଉଁ ସୁକେଶୀ କେଶପାଶ ଖୋଲେ ।
କଠିନ କୁଚ ଦେଖାଇବା ଆଶେ ॥
କେ ନାରୀ ପଛୁ ଆଗକୁ ଆସଇ ।
କୃଷ୍ଣ ଚାହିଁବା ନିମନ୍ତେ କାସଇ ॥
କେଉଁ ଗୋପୀ ବେଢ଼ାବୁଲି ଆସଇ ।
ସନ୍ଧି ପାଇଣ ଭିତରେ ପଶଇ ॥
କେ ତହିଁ ଫାଟକି ମାରେ ହାଙ୍କେ ।
କେ ବୋଲେ ସଜନୀ ଯିବା ନାହିଁକି ॥
ସଖୀ ଅଙ୍ଗୁଳି କେ ଧରି ଫୁଟାଇ ।
କେ ବଦନେ ରହି କପୋଳ କଣ୍ଡାଇ ॥
ମଦନ ମଦେ କା ଘୂର୍ଣ୍ଣିତ ଆଖି ।
ନିଦ୍ରା ବାହାନେ କୋଳକରି ସଖୀ ॥
ଏ କୁଞ୍ଜ କୁଟୀର ଅତି ସୁନ୍ଦର ।
ଗୋବର୍ଦ୍ଧନର ପରି କେଳି ମନ୍ଦିର ॥
କ୍ଷଣକେ ମାହି ଶୋଇବ ଏଠାଇ ।
ଗଲାବେଳେ ସଖୀ ଦେବୁ ଉଠାଇ ॥
କେ ନାରୀ ଲାଜ ଲାଜ କୃଷ୍ଣ ପାଶେ ।
କେଳି କୃଷ୍ଣସଙ୍ଗ ଗାଇ ଦିବସେ ॥
କେ ନାରୀ କଥା ହୁଏ କୃଷ୍ଣ ସଙ୍ଗେ ।
ମନ ନୟନ ଦେଇ କୃଷ୍ଣଅଙ୍ଗେ ॥
ନଗୃହେଁ ଗୃହେଁ ଗୃହିଁଲେ ନଗୃହେଁ ।
ଧଇର୍ଯ୍ୟ ଧରି ପ୍ରବଳ ଉତ୍ସାହେ ॥

କେଉଁ ବିମ୍ବୋଷ୍ଠୀ କୃଷ୍ଣ ଦୃଷ୍ଟି ମାର୍ଗେ ।
ବକ୍ଷେ ଉହ୍ଲକର ଚବୁକ ଭାଗେ ॥
କେଉଁ ଯୁବତୀ ରହି କୃଷ୍ଣପାଶେ ।
ବାସ ଆଚ୍ଛାଦି ମନ୍ଦମନ୍ଦ ହସେ ॥
ଗତକାଳ ଜଗି ମାଗନ୍ତି ରତି ।
ଆଜ ଦେଖିଏ ଯୁବତୀ ମହତୀ ॥
କେ ନାଗ୍ରୀ କୃଷ୍ଣ କେଳିକର ଲୋଡ଼େ ।
ଘନ ଘନ ଅଙ୍ଗେ ମଦନ ପଣ୍ଡେ ॥
ଚନ୍ଦ୍ରମୁଖୀ କୃଷ୍ଣଚନ୍ଦ୍ର ସମ୍ମୁଖେ ।
ଚକୋର ନୟନ ନିଶ୍ଚଳେ ରଖେ ॥
ଚନ୍ଦ୍ର ଚନ୍ଦ୍ରିକା ମୁଖଚନ୍ଦ୍ର ସୀମା ।
ଉଜ୍ଜ୍ୱଳେ ବିରାଜେ କିବା ଉପମା ॥
ଚନ୍ଦ୍ର ଦେଖି ଚନ୍ଦ୍ର-କାନ୍ତ ଦ୍ରବେକ ।
ସ୍ୱେଦବିନ୍ଦୁ ମୁଖେ ସୁଧା ସ୍ରବେକ ॥
ସବଙ୍କର ହିଶ ଏକ ସମାନ ।
ନୟନ ନୟନରେ ସନମାନ ॥
ଏକ ଆରକେ ବଗୃରେ ବିମ୍ବୋଷ୍ଠୀ ।
ମୋଠାରେ ହିଶ ଦେଇଛନ୍ତି ଦୃଷ୍ଟି ॥
ମିଳନ ଏକାନ୍ତେ ହେବ କେମନ୍ତେ ।
ସବୁରି ଚିତ୍ତ ବଗୃର ଏମନ୍ତେ ॥
କୃଷ୍ଣଙ୍କୁ ବରଣ କରିବା ଆଶେ ।
ଫୁଲ ତୋଳି ବାଳୀ ବନରେ ପଶେ ॥
ସାତ ପାଞ୍ଚ ହୋଇ ଲତା ନୁଆଇଁ ।
ତୋଳନ୍ତି ଫୁଲ ଯେ ଗୁଣ ଶୁଣାଇ ॥
ଚିହ୍ନାଇ କଦମ୍ବ ଫୁଲ ନାମ କେ ।
ଛଳ ଶ୍ଳେଷରେ ଯୁଗଳ ଯମକେ ॥
ଏମେ ଯାତି ଯୂଥି କୁଳ ଲଙ୍ଘାଇ ।
ବନ୍ଧୁଲି ଅଧରେ ଅଙ୍ଗ ଲଗାଇ ॥
ସୁଗନ୍ଧେ ଗୋବିନ୍ଦ ମୋଦ ଏହାରେ ।
କରଜ ଶୋଭି ଉରଜ ବିହାରେ ॥
ତୋଳ ସଜନୀ ମଲ୍ଲି ମଲ ମଲ୍ଲ ।
ଏହା ସୁବାସେ ତୋଷ ବନମାଳୀ ॥
ଦେଖନ୍ତ ଆଜ ନଆଳ ଶୋଭକୁ ।
ଗନ୍ଧ ସୁନ୍ଦର ଗୋବିନ୍ଦ ଶୋଭକୁ ॥
ତୋଳ ସଖୀ ମୁରୁ ଶରକୁ ସେବ ।
ତୋଳ ମୁଁ କୁନ୍ଦ ମୁକୁନ୍ଦରେ ଦେବ ॥
ଦେଖି ଏକୁମୁଦକୁ ମୁଦ ହେବ ।
ତୋଳ ତୋଳ ଗୁନ୍ଥି ଗୋବିନ୍ଦେ ଦେବ ॥
ମଦନ ବଶ ମାଳତି ମାଳତୀ ।
ବସେ ବିହରି ବରିବା ଶ୍ରୀପତି ॥
ତୋଳ ସେବତି ସେବତୀ ଗଛରେ ।
ବର ସଫଳ ସମ୍ପୂର୍ଣ୍ଣ ବହନରେ ॥
ତୋଳ ମାଧବୀ ମାଧବ ମୋହିବ ।
ଅଳକା ପାଟିକ ଭଲି ଶୋହିବ ॥
ଚମ୍ପାଚମ୍ପା ଗନ୍ଧୁଁ ମନୋରଥକୁ ।
ତୋଳଦେବ ନବ ମନମଥକୁ ॥
କାନ୍ତି ସମକ କେତକୀକେତକୀ ।
ତୋଳସଖୀ ହିଶ ସୁଖ ଏଥିକି ॥
ତୋଳ ଏ କରୁଣୀ କରୁଣା ହିଶ ।
ବରିବା ଗଳେ ଏହୁ ମାଳଭରି ॥
ଅନଙ୍ଗ ନାଗେଶ୍ୱର ନାଗେଶ୍ୱର ।
ତୋଳସଖୀ ହିଶ ମେଖଳା ହାର ॥
କାମ କି ଆଖି ତଗଟେ ତଗଟେ ।
ଚାଉଳହିଶ ଚିନ୍ତ ତୋଳ ନିକଟେ ॥
ଏହୁ ତଗର ତଗର କାମର ।
ତୋଳ ଗୁନ୍ଥମାଳ ବେଢ଼ା ଶ୍ୟାମର ॥
ମଦନ ଛୁରିଅନା-ଛୁରିଅନା
ଖାରବେଶ କୃଷ୍ଣ ବାନ୍ଧିବେ ବାନା ॥
ହେ ସଖୀ ମନ୍ଦାର ମନ୍ଦାର ଘେନି ।
ଗୋବିନ୍ଦ ଅଧର ଛବିକି ବହି ॥
ଦେଖିବ କୁଳ ବକୁଳ ଫୁଲରେ ।
କାମଦେବ କୃଷ୍ଣ ଅନୁକୂଳରେ ॥
ଅତନୁ କୁରୁଣ୍ଟକ କୁରୁଣ୍ଟକ ।
ଶେଣିତ କୁଳଶୀଳ ବିଦାରକ ॥
ତୋଳ ସଖୀ ମାଳ କୃଷ୍ଣଙ୍କୁ ଶୋଭା ।
ନବଘନ ଯେହ୍ନେ ତଡ଼ିତ ପ୍ରଭା ॥
ତୋଳ କୁଟଜ କୁଟ ସର୍ବକାମ ।
କୃଷ୍ଣ ବନମାଳା ଶୋଭା ଉପନ ॥

ଅନଙ୍ଗ ପୁଁ ନାଗ ପୁନ୍ନାଗ କଡ଼ି ।
ମୋତି କୁଣ୍ଡଳ କୃଷ୍ଣ ଗଣ୍ଡମଣ୍ଡି ॥
ବୋଲ ଅଶୋକ ଅଶୋକ କରଇ ।
କୃଷ୍ଣ ଅଙ୍କ ଲ ଆକାର ଧରଇ ॥
ମଦନ ମରୁଆ ମରୁଆ ବୋଲ ॥
ଗୁନ୍ଥି ବା କୃଷ୍ଣ ବୈଜୟନ୍ତୀ ମାଳ ॥
ରାଧାର ନାମ ଗୁଣସୂତେ ଧରି ।
ସୃଷ୍ଟି ସୂତ୍ର ବୈଜୟନ୍ତୀ ଉପରି ॥
ଆବର ବନମାଳେ ବଇଜନ୍ତି ।
ଅନ୍ୟେ ହେ ବଶ ପୁଷ୍ପମାଳେ ଗୁନ୍ଥି ॥
ବୋଲସି ଦୟଣା ଦୟଣା ଡ଼ାଳ ।
ସୁବାସେ ସଦା ବଶ ବନମାଳୀ ॥
ବୋଲ ତୁଳସି ତୁଳସୀ କେଶରୀ ।
ସଦାପ୍ରୀତି ହରି ଶରୀରେ ଧରି ॥
ଏମନ୍ତେ ଯୁବତୀ କୁସୁମ ବୋଲ ।
ବିବିଧ ବନ୍ଧରେ ଗୁନ୍ଥିଲେ ମାଳ ॥
ହୁଳହୁଳୀ ଦେଇ ମଙ୍ଗଳ ଗାଇ ।
ବରବରି ହରି ଗଳେ ଲମ୍ବାଇ ॥
ଧୀରେ ସମୀର ମ୍ଲିତ ଗନ୍ଧ ଘେନି ।
ଦ୍ୱିଜକୁଳ ପଢ଼ େମଙ୍ଗଳ ଧ୍ୱନି ॥
ଯମୁନା କୂଳ ପରିମଳ ଶୋଭା ।
ଗୋପକନ୍ୟା କୃଷ୍ଣ ଗନ୍ଧର୍ବ ବିଭା ॥
ଯେ ଯାହାମନରେ ଇଚ୍ଛା ବରବରି ।
କୁସୁମ ଗୁଣ୍ଡି ଧରି ମନ୍ଦମରି ॥
ରାଧା ଚନ୍ଦ୍ରାବଳୀ ଯେତେ ସୁନ୍ଦରୀ ।
ମାଳ ଦେଇ ରାସ ଉତ୍ସବେ ବରି ॥
ଏମନ୍ତେ ବରିଲେ ସକଳ ନାରୀ ।
ଏକ ଏକରେ କୃଷ୍ଣ ପୁଣ ବରି ॥
କୁସୁମ ମଣ୍ଡିତ ସକଳ ଅଙ୍ଗେ ।
ଅନୁସରଣ ପୁଲ ଧନୁସଙ୍ଗେ ॥
ଗୋପୀ ଗୋବିନ୍ଦ ବରଣ ବଢ଼ିଲେ ।
ଆନନ୍ଦ ସୁଖ ସମୁଦ୍ରେ ବୁଡ଼ିଲେ ॥
ଉଚିତ ଦାନ ଲଜ୍ଜା ଧନ ଦେଲେ ।
ନିର୍ମଳ ଦ୍ୱିଜ ରାଜକରେ ଦେଲେ ॥

ଗୋବିନ୍ଦ ସଙ୍ଗରେ କଲେ ବିହାର ।
କାମନା ମନେ ଯେମନ୍ତ ଯାହାର ॥
ଭୁଜବଲ୍ଲ ଦେଇ ରାଧା କନ୍ଧରେ ।
ରାଧାକର କୃଷ୍ଣ କରରେ ଲୁଚେ ॥
ସେକର ହାଦେ ବୈଜୟନ୍ତୀ ମାଳ ।
ସୃଷ୍ଟି ଧାରତି ଏହୁ କରତଳ ॥
କୃଷ୍ଣ ଭୁଜବର ରାଧା କନ୍ଧରେ ।
ବନେ ଭ୍ରମେ ହରି ମନ୍ଦ ମନ୍ଦରେ ॥
କିଛୁ କିଛୁ ଦୂରେ ହୋଇଣ ଉଭା ।
ଦେଖନ୍ତି ବନ ପରିମଳ ଶୋଭା ॥
କୁସୁମ କୁଳ ପ୍ରଫୁଲ୍ଲରେ ଅଳି ।
ମଧୁପାନ ମତ୍ତେ କରନ୍ତି କେଳି ॥
ମକରନ୍ଦ କୁସୁମେ ଭୂଷିତ ଅଙ୍ଗେ ।
ଗୋବିନ୍ଦ ଯେସନେ ଗୋପୀ ଅଙ୍ଗସଙ୍ଗେ ॥
ଶେ ଭନ୍ତ ବନ ବିବିଧ କୁସୁମେ ।
ମାଳ ଧବଳ ବିବିଧ ସୁଧମେ ॥
ନବ ପ୍ରବାଳ ପଲ୍ଲବେ ଶୋଭନ ।
କାମ ରାଜାର ବିଚିତ୍ର ଭୁବନ ॥
ମଳୟ ମରୁତ ମନ୍ଦ ପୂରିତ ।
ଭାଷନ୍ତି ପକ୍ଷୀ ମଧୁର ଚରିତ ॥
ଗୋବିନ୍ଦ ସ୍ଥଳ ନିର୍ମଳ କାନନ ।
ବିସ୍ତାର ବିରୋଳ ଭୂମି ସମାନ ॥
ଚନ୍ଦ୍ର କିରଣେ ଉଜ୍ଜ୍ୱଳ ମଞ୍ଜୁଳ ।
ଯମୁନା ଜଳ ବାଳ ଝଲଝଲ ॥
ଷଡ଼ଋତୁ ଘେନି ମଦନ ରାସ୍ୟ ।
ତହିଁ ରହି ସର୍ବଲୋକ ଅଜସ୍ର ॥
ଖଗ ମୃଗ ଦ୍ରୁମ ମୂର୍ତ୍ତିମନ୍ତରେ ।
ଗୋବିନ୍ଦ ସେବା କରନ୍ତି ନିତ୍ୟରେ ॥
ସେବନ ବର୍ଣ୍ଣିବେ ସଖ କାହାର ।
ରାଧା କୃଷ୍ଣ ଯହିଁ ରାସ ବିହାର ॥
ରମଣୀଗଣ ଘେନି ସେହି ବନେ ।
ରାସ ଉତ୍ସବ ଆରମ୍ଭ ବିଧାନେ ॥
ଲାବଣ୍ୟ କୋଟି ମଦନ-ମୋହନ ।
ତାରାମଧ୍ୟେ ଯେହ୍ନେ ଚନ୍ଦ୍ର ଶୋଭନ ॥

ତେସନ ହରି ଯୁବତୀ ମଧ୍ୟରେ ।
ହାସ ମନ୍ଦ ମନ୍ଦ ବିମ୍ବାଧରରେ ॥
ବିବିଧ ରସେ ପ୍ରିୟାଙ୍କୁ ରସାଇ ।
ମଣ୍ଡଳୀ କରି ବେଢ଼ିଣ ବସାଇ ॥
ବାଇଲେ ତାଳ ମାଦଳ ସଙ୍ଗରେ ।
ଗାଇଲେ ଗୀତ କେଦାର ରାଗରେ ॥

—୫✱୫—

ଗୀତ—କେଦାର ।

ନବ ନବ ବୃନ୍ଦାବନ ଯମୁନା ପୁଲିନ,
ଘନ ଶରଦ ସମ୍ପୂର୍ଣ୍ଣ ଚନ୍ଦ୍ର ରାତିରେ ।
ଉଜ୍ଜ୍ୱଳ ଯୁଗଳ ରାଜ, ରସବତୀ ରସେ ସାଜ,
ହେମ ମାଳେ ନୀଳମଣି ଭ୍ରାନ୍ତିରେ ।
ଆଏ ଆଏ ।
ଗନ୍ଧଶୀତ ମନ୍ଦବାତ ପଞ୍ଚବାଣ ଆତଯାତ ।
ଫୁଲ କୂଳରମେ ଅଲମାନ୍ତରେ ।
ଅଭିନବ କାମଦେବ ।
ପ୍ରିୟବତୀ ରତିସେବା ବିରକେ ଗଉର ଶ୍ୟାମକାନ୍ତିରେ ॥
ଆଏ ଆଏ ।
କେବଣ ଯୁବତୀ ବଜାଇ ବୀଣା ।
ରମ୍ଭା ଅମୃତର ବାଜନ୍ତ ଗୁଣା ॥
କେହୁ ସାରଙ୍ଗ କେ ସରୁ ମୃଦେଲା ।
ତାଳ ଅନୁଗତେ ବାଇଲେ ବାଲା ॥
ଗୋବିନ୍ଦ ସ୍ୱରେ ମିଳି ଉଚେ ଗାଇ ।
ଶୁଣି ଖଗମୃଗ ଅଇଲେ ଧାଇଁ ॥
ଚମକ ଚେତ ଚକତେ ସ୍ଥକିତ ।
ବଇରି ତେଜିଣ କଣ୍ଟୁଳ ଚିତ୍ତ ॥
ଦ୍ରବିଣ ସ୍ରବ ବହିଲେ ଅଚଳେ ।
ଉଜାଣି ସ୍ତମ୍ଭି ଯମୁନା ନଚଳେ ॥
ଅତି ସରସେ ତରୁତୃଣ ଲତା ।
ଫଳ କୁସୁମେ ମହୀ ପ୍ରଣମିତା ॥
ପବନ ଯେନ ପଯୁରେ ସେବନ୍ତି ।
ଗୋବିନ୍ଦ ଗୋପୀ ଗୀତରେ ରବନ୍ତି ॥
ନବ ରସବତୀ ରସିକ ସଙ୍ଗେ ।
ଏକ ଏକରେ ଚିତ୍ର ନୃତ୍ୟରଙ୍ଗେ ॥
ସାହିତ୍ୟ ସଙ୍ଗୀତ ରସେ କୁଶଳା ।
ମାଧବ ମନ ମୋହିଲେ ଅବଳା ॥
ଗୋପୀ ମଣ୍ଡଳୀରେ ଗୋବିନ୍ଦ ନାଚେ ।
ତାନମାନେ ଗୋପୀ ଗାବନ୍ତି ଗୀତେ ॥
ସକଳ ସମ୍ମୁଖେ ନୃତ୍ୟ ଛନ୍ଦରେ ।
ଲପନ ଲପନ ନେତ୍ର ନେତ୍ରରେ ॥
ହସ୍ତକ ମସ୍ତକ ଅଙ୍ଗ ଭଙ୍ଗିମା ।
ମଧୁର ହାସ ଅଧର ରଙ୍ଗିମା ॥
ଅପାଙ୍ଗ ଭଙ୍ଗି ଇଙ୍ଗିତେ ଠାରିବା ।
ନାସା ଫୁଲାଇ ଭୁଲତା ଟଳିବା ॥
ତନୁ ଜମ୍ଭାଇ ରୋମ ପୁଲକାଇ ।
ପ୍ରେମ ଲୋଚନୁ ଲୋତକ ପକାଇ ॥
ନଟବର ବେଶ ରସେଣ ଢଳ ।
ଟଳ ଢଳ ପ୍ରେମେ ତରଳ ବାଳୀ ॥
ଗାଇବା ବାଇବା ତେଜି ରହିଲେ ।
ସାତ୍ତ୍ୱିକେ ସ୍ୱେଦ ସ୍ରବଣ ବହିଲେ ॥
ଶ୍ରୀପାଳ ରାଧା ଭୃଙ୍ଗବିଦ୍ୟା ବେନି ।
ଗାବନ୍ତି ଗୋବିନ୍ଦ ସ୍ୱରକୁ ଘେନି ॥
କସ୍ତୁରୀ ପଙ୍କେ ନେତ୍ର-ପକ୍ଷୀ ଲକ୍ଷି ।
ଚିତ୍ର ପ୍ରତିମା ପ୍ରାୟ ଚନ୍ଦ୍ରମୁଖୀ ॥
କୃଷ୍ଣ ନେତ୍ରଭୃଙ୍ଗ କମଳ ମୁଖେ ।
ସକଳ ଦେଖନ୍ତି କୃଷ୍ଣ ସମ୍ମୁଖେ ॥
ଏକ ଏକ ମଣେ ମୋଆଗେ ହରି ।
ମୋହରେ ଦୃଷ୍ଟି ଦେଇ ଅନୁସରି ॥
ମୋତେ ଗୁହିଁ ରକ୍ଷ ନଚଳେ ଆନେ ।
ସକଳେ ମନେ ଏହି ଅଭିମାନେ ॥
କୁଳଜ ଚନ୍ଦ୍ର ପ୍ରାୟ କୃଷ୍ଣଭ୍ରମେ ।
ବେଣୁ ଗୀତରେ ନେତ୍ର ସ୍ଥିରପ୍ରେମେ ॥
କଟାକ୍ଷ ନଖକ୍ଷତ ଚୁମ୍ବଦାନ ।
ଚତୁର୍ଭୁଜ ଚେତ ପାଇ ସନମାନ ॥
କୁଚ ନଖକ୍ଷତେ କେବୋଲେ ଉଦ୍ଧି ।
କୃଷ୍ଣ ବୋଲନ୍ତି ହୋଇଥିଲି କ୍ରୁଦ୍ଧ ॥
ପ୍ରତିପଦ ରସ ଏହୁ ଦିଶିଯାଇ ।
କୁଚ ଗିରି ଶିଖେ ଚନ୍ଦ୍ର ଉଦୟ ॥

ଶମ୍ଭୁ ଶିରରେ ଚନ୍ଦ୍ରକୁ ଚଢ଼ାଇ ।
ଯୁଗଣ୍ଡାଗଣେ ସଖୀଟୋ ବଢ଼ାଇ ॥
ଚୁମ୍ବନେ ତାମ୍ବୁଳ ରଙ୍ଗ କାହାର ।
ଗଣ୍ଡଭେଦ କୋକନଦ ବାହାର ॥
ଅନରାଗ ଫଳ ପ୍ରତ୍ୟକ୍ଷ କଏ ।
କଟାକ୍ଷେ ଜର ଜର ସବୁକାୟେ ॥
ଅନଙ୍ଗ ମଙ୍ଗୀ ଅଙ୍ଗଭଙ୍ଗି ଠାଣି ।
ମନହାସ ଭାଷ ପାଶକୁ ଟାଣି ॥
ପୁଣ ସେ ବହୁରୂପ ଆରମ୍ଭିଲେ ।
ଯୋଡ଼ ଯୋଡ଼ ହୋଇ ସୁଖ ଲଭିଲେ ॥
ବସ୍ତାଶ ବସ୍ତାର ରାସ ମଣ୍ଡଳ ।
ଗୋପୀ ଗୋବନ୍ଦ ଯୁଗଳ ଯୁଗଳ ॥
ଏକ ପ୍ରଧାନ କାଳେ କାଳେ ଥାଇ ।
କାର୍ଯ୍ୟ ବେଳେ ଏକୁଁ ଅନେକ ହୋଇ ॥
ଜଣାନୋହୁ ସବ ସମାନ ଜଣେ ।
କେବଳ ଚକ୍କଣ ରସ ଉଜ୍ଜ୍ୱଳେ ॥
ଏରୂପେ ଗୋପ ଗୋବନ୍ଦ ସଞ୍ଚାର ।
ଉପାସନା ବଇଷ୍ଣବେ ବସ୍ତୁର ॥
ଦ୍ୱିଦୁଇ ଗୋବନ୍ଦ ଦ୍ୱିଦୁଇ ଗୋପୀ ।
ମଣ୍ଡଳ ବନ୍ଧି ବୃନ୍ଦାବନ ବ୍ୟାପି ॥
ପାଶକେ କୃଷ୍ଣ ଆରପାଶେ ସଖୀ ।
ଏରୂପେ ସର୍ବେ ଏକକୃଷ୍ଣ ଦେଖି ॥
ଅନନ୍ତ ଶକ୍ତି ନଜାଣେ ଯୁବତୀ ।
ବସ୍ତୁରେ ହରି ମୋପାଶେ ଅଛନ୍ତି ॥
ବାମେ ଯୋଚ ବାମା ରାଧିକାଗଣ ।
ଦକ୍ଷିଣେ ଯୋଚ ଚନ୍ଦ୍ରାବଳୀଗଣ ॥
ଆନେ ନରସିଂ ମୋର ପୀରତି ।
କେମନ୍ତେ ଏକାନ୍ତେ ହେବ ସୁରତି ॥
ଗୋବିନ୍ଦ ସଙ୍ଗେ ଏକାମୋତେ ଦେଖି ।
ତମାଳ କହିବେ ନସହୁ ସଖୀ ॥
ଏମନ୍ତେ ସମସ୍ତେ ଶତେ ବସ୍ତୁରେ ।
ଗାଇବା ବାଇବା ନୃତ୍ୟ ପ୍ରସ୍ତୁରେ ॥
ନୀଳମଣିରେ ହେମମଣି ମିଶି ।
ଯୋଡ଼ ଯୋଡ଼ରେ ମହାଶୋଭା ଦିଶି ॥

ବୃନ୍ଦ ବନ ମଧ୍ୟେ ମୋହନ ମାଳା ।
ଆଦ୍ୟେ କାଳନ୍ଦୀ ବେଢ଼ି ହୀରାମାଳା ॥
ଦ୍ୱିତୀୟେ ମୌକ୍ତିହାର ନାରବାଳ ।
ତୃତୀୟେ ବନ ରତ୍ନଛନ୍ତ ବୁଲ ।
ଚତୁର୍ଥେ ଖଗମୃଗ ଆଭରଣ ।
ପଞ୍ଚମେ ସେବ ରହୁ ଦେବଗଣ ॥
ଷଷ୍ଠରେ ସେବ ପାରଷଦ ବୃନ୍ଦ ।
ସପତମେ ରାସ ଗୋପୀ ଗୋବନ୍ଦ ॥
ଅଷ୍ଟମେ ରାଧା ମାଧବ ଯୁଗଳ ।
ହେମ ପୀଠେ କଳ୍ପ ପାଦପମୂଳ ॥
ତନ୍ତ୍ରଯୋନ ମନୁ ତେଜିଲେ ତାପ ।
ଦେଖିଲେ ଗୋପୀନାଥ ବହୁରୂପ ॥
କରକେ ସଖୀ ଆରକରେ ହରି ।
ଏରୂପେ ପୁଣ ଧରି ନୃତ୍ୟକରି ॥
ବାହୁ ବଲ୍ଲରୀ କନ୍ଧ କନ୍ଧେଦେଇ ।
ଭ୍ରମନ୍ତି ରମନ୍ତି ଗୀତକୁ ଗାଇ ॥
ରମଣୀ ଲବଣୀ ପ୍ରାପ୍ତ ତରଳ ।
ମତ୍ତକ ଚେତ ରତ୍ତକ ସରଳ ॥
ଗୋବନ୍ଦ ଅଙ୍ଗସଙ୍ଗ ଗନ୍ଧ ଘ୍ରାଣେ ।
କନ୍ଧ ବାହୁରେ ଆକର୍ଷି ଆଘ୍ରାଣେ ॥
ନୃତ୍ୟ ଉସରେ ଶ୍ରମପାଇ ଗୋପୀ ।
କମଳ ମୁଖେ ଝାଳ ଟୋପି ଟୋପି ॥
ନିଜ ଅଞ୍ଚଳେ ପୁଛି ହରି ବଞ୍ଚେ ।
ଚୁମ୍ବନେ ଅଧର ଅମୃତ ସିଞ୍ଚେ ॥
କୁଚ ଅଞ୍ଚଳ ଗୁଳ ଧୂଳ ଝାଡ଼େ ।
ଲାବଣ୍ୟ ଗୃହ୍ଣି ପଞ୍ଚଶର ପୀଡ଼େ ॥
ସଖୀ କନ୍ଧରୁଁ ଆରକର ଆଣି ।
କୃଷ୍ଣ ଆଲିଙ୍ଗନ କଲେ ରମଣୀ ॥
ଯେ ଯାହାକାନ୍ତ ପାଶରେ ମିଳିଲେ ।
ଲତା କୁଞ୍ଜରେ ବସି ବିଳସିଲେ ॥
କାହାର କଥା ନଜାଣନ୍ତି କେହି ।
କୃଷ୍ଣ ହେଲ ଏକା ରମଇ ମୁହିଁ ॥
ସଉଭାଗ୍ୟ ଗର୍ବ ସକଳ ମନେ ।
ଉଜ୍ଜ୍ୱଳ ରାତିରେ ସେ ବନେବନେ ॥

ସେପଚେନାସ୍ତି ହରିଚିତ୍ତେ ମୂରତି ।
ଏକେକ ନିଭୃତ କୁଞ୍ଜେ ମୂରତି ॥
ଏକାନ୍ତେ ଦମ୍ପତି ବିବିଧ ବନ୍ଧେ ।
କୁସୁମବାଣ ଘନଘନ ବିନ୍ଧେ ॥
ରତି ରସରେ କିଶୋର କିଶୋରୀ ।
ପ୍ରେମଭରେ ଦେହବୁଦ୍ଧି ବିଶୋରି ॥
ଏକ ଆରକେ ରତିରଣେ [illegible] ।
କୃଷ୍ଣ ଅଙ୍ଗସଙ୍ଗ ନବ ବନିତା ॥
ଚିର ବିଚ୍ଛେଦ ଖେଦ ସ୍ୱଚ୍ଛନ୍ଦକୁ ।
ଲେଟିଲେ ବାଳୀ ଲଭି ଗୋବିନ୍ଦକୁ ॥
ମତି ଅତିଶାନ୍ତ ନୂତନ ରତିରେ ।
କାନ୍ତାକାନ୍ତ କାନ୍ତକାନ୍ତା ଗଣରେ ॥
ଚିର ମନୋରଥ ପୂର୍ଣ୍ଣ ହୋଇଲେ ।
ମନ ମଦନ ଏ ତୋଷ ନୋହିଲେ ॥
ଅନୁରାଗେ ବେଳୁଁ ବେଳ ବଢ଼ିଲେ ।
ଉରଜେ ଲଗାଇ ଭୁଜେ ଭିଡ଼ିଲେ ॥
ଏମନ୍ତେ କୁଞ୍ଜେ କୁଞ୍ଜେ ନାନାକେଳି ।
ପ୍ରିୟା ଅଧୀନ ହୋଇ ବନମାଳୀ ॥
କାମେ ରସାଇଣ ପ୍ରେମେ ଭସାଇ ।
ବେଶ କରନ୍ତି ଯାନୁରେ ବସାଇ ॥
ବଦନ-ଦର୍ପଣେ ଚାହିଁ ହସିଲେ ।
ସୁବାସ କୁସୁମ କେଶେ ଖୋସିଲେ ॥
ମୋତି ସୀମନ୍ତି ଚନ୍ଦ୍ରମା ଖଞ୍ଜି ।
ନଳିନ-ନୟନେ ଅଞ୍ଜନ ରଞ୍ଜି ॥
ଚାରୁ ଭାଲେ ଶୋଭି ଚନ୍ଦ୍ର ଚନ୍ଦନ ।
ଅବଲୋକନେ ମଦନ ବର୍ଦ୍ଧନ ॥
ଅଳକା ରେଖି ମକର ଲିହିଲେ ।
ତିଳଫୁଲ ନାସେ ମୋତି ଝିହିଲେ ॥
ବାମେଣ କମଳ କେଶର ଗୁଣ ।
ଦକ୍ଷିଣେ ଗଜମୋତି ନାକଚଣା ॥
କଣ୍ଠରେ ମଲ୍ଲିକଢ଼ି ଫୁଲଖଞ୍ଜି ।
ହୀରା ହାଟକ ତାଟଙ୍କ ବିରାଜି ॥
ଅଧର ସୁରଙ୍ଗ ତାମ୍ବୁଲ ଭୁଞ୍ଜି ।
ଚାରୁ ଚମ୍ପକ ଗଳାରେ ଖଞ୍ଜି ॥
ଲମ୍ବାଇ ନାନାବର୍ଣ୍ଣ ହାର ମାଳ ।
ପତ୍ରାବଳୀ ଲିହି କୁଚ ଯୁଗଳ ॥
ଯାହି ମନକୁ ଯେଉଁବାସ ରୁଚି ।
ପିନ୍ଧାଇ ହରି ଯେଝାବଳ ଆଞ୍ଚି ॥
କଟିମେଖଳା କିଙ୍କିଣି ଖଞ୍ଜିଲେ ।
ପୁଣିହିଁ କାମରଙ୍କୁ ସାଜିଲେ ॥
ଭୁଜରେ ତାଡ଼ଚୂଡ଼ି ରତ୍ନମୁଦି ।
ପାଦେ ନୂପୁର ରତି ଅନୁବାଦୀ ॥
ସୁନ୍ଦରେ ଅଳତା ଝୁଣ୍ଟିଆ ଦେଇ ।
ହସ ହସ ହୋଇ ବେଶକୁ ଚାହିଁ ॥
କାହାକୁ କଲ ନୃତ୍ୟକାରୀ ବେଶ ।
କୁଞ୍ଚ କାଞ୍ଚଣି କାଞ୍ଚ ଉରଦେଶ ॥
ଆଗ ଓହୋଳ ହେମରତ୍ନ ଝୁମ୍ପା ।
ପିଠି ଲମ୍ବ ବେଣୀ ମୁକୁତା ଥୋପା ॥
ମୋତି ପୁଞ୍ଜି ପୁଞ୍ଜି ବେଢ଼ି ଅନେକ ।
ମୁଖ ମଣ୍ଡଳ କୁଣ୍ଡଳ ଝଲକ ॥
ଏମନ୍ତେ ବେଶକରି ଏକେ ଏକେ ।
ଆବର ଝସକେତନ ଉଦ୍ରେକେ ॥
କୁଞ୍ଜରୁ ବାହାର ହୋଇ ମିଳିଲେ ।
ଗତ ମତରେ ମଣ୍ଡଳ ବୁଲିଲେ ॥
ପଞ୍ଚମସ୍ୱରେ ଆଳାପ ଉଠାଇଲେ ।
ପୂରଇ ସ୍ୱର୍ଗମର୍ତ୍ତ୍ୟ ପାତାଳରେ ॥
ଗନ୍ଧର୍ବ ବିଦ୍ୟାଧରୀ ଶୂନ୍ୟରେ ଜି ।
ସ୍ୱରେ ମନ୍ଥି ଗୋପେ ଗୋବିନ୍ଦ ଭଜି ॥
ନାଗ ପତ୍ନୀମାନେ ଶୁଣନ୍ତି ଧୀରେ ।
ନିଶ୍ଚଳ ଖଗମୃଗ ବନଚରେ ॥
ନୃତ୍ୟକାରୀ ବେଶ ଗୋପୀ ଗୋପାଳ ।
ଯୋଗ ମାୟାରେ ଯୁଗଳ ଯୁଗଳ ॥
ମର୍ଦ୍ଦଳ ତାଳ କଂସାର ବଜାଇ ।
ମଧୁ ରସରେ ମନକୁ ମଜାଇ ॥
କଙ୍କଣ କିଙ୍କିଣି ପାଦ ନୂପୁର ।
ତାଳମାନ ବାଜେ ଏକଇସ୍ୱର ॥
ଏମନ୍ତେ ଗୋପୀଗଣ ନୃତ୍ୟ ଦେଖି ।
ରାଧା ମାଧବ ହୋଇ ମନେସୁଖୀ ॥

ମୂର୍ତ୍ତିମନ୍ତେ ବାଳୀ ରାଗ ଉଚ୍ଚାରି ।
ଅନୁଗତେ ହରି ତାଳ ତ୍ରୁଟିରି ॥
ସଙ୍ଗ ତ ସାହିତ୍ୟ ମିତ ବିଧାନେ ।
ମହା ରାସରେ ସେହି ସନ୍ନିଧାନେ ॥
ଗୋପୀଙ୍କ ସଙ୍ଗେ ହରି ଉଚ୍ଚେ ଗାଇ ।
ସେ ରାଗ ଅନୁରାଗେ ପ୍ରତିଘାଇ ॥
କାଷ୍ଠ ପାଷାଣ ତରଳ କାତର ।
ଦେହ ଧରି ଜୀବ କେତେ ମାତର ॥
ପୁଣି ସେ ଗୋପୀ ଆନ ରାଗ କରେ ।
ସେ ରାଗହରି ମୁରଳୀରେ ଧରେ ॥
ବୀଣା ରବ ତାଳ ମାଦଳ ବାଇ ।
ବଂଶୀ ଅନୁପତ ସୁସ୍ୱରେ ଗାଇ ॥
ନବ ନବ ରାଗ ଗୀତର ତାନ ।
କେତେ କାହ୍ନୁଁ କରିଥିଲେ ଯତନ ॥
କିଙ୍କିଣୀର କର୍ଣ୍ଣରେ ହେନବା ମାତେ ।
ପୁଲକ ଆଦ ସ୍ୱେଦ ଅଶ୍ରୁ ଭାତେ ॥
ସେ ସ୍ୱର ମାଳା ବାଳା ଗଳା ଶୋଭା ।
ହୃଦସ୍ଥ ଭେଦ କୃଷ୍ଣ ମତ ଲୋଭା ॥

ଗୀତ । ରାଗ ରତ୍ନମାଳା—କେଦାର

ମାତିଲ ରାସ ରସ ବାତୁଳରେ ।
ଆତୁଲ ପ୍ରେମ ଜଳ ପାତଳରେ ॥
ଭ୍ରମିକ ସୁଧାକର ଯାମିନୀରେ ।
କାମିନୀ କାମ ପ୍ରିୟା ଭାମିନୀରେ ॥
ମାଗତ ବୃନ୍ଦାବନ ଆଗତରେ ।
ନାଗର ଅଙ୍ଗତ ସଙ୍ଗତରେ ॥
ନାଚତ ଆଞ୍ଚତ କୁଚ ଉରରେ ।
ସଙ୍କୋଚ କାଞ୍ଚଲି ମୁଞ୍ଚକରେ ॥
ଗୋପୀଭାବ ହେନ ଗୋବିନ୍ଦ ବୋଲି ।
ଶ୍ରୀଅଙ୍ଗ ଭୁଜ ଦେଇ ଉରଜେ ଗୁଲ ॥
ସେ ବନମାଳୀ ଶମ୍ଭୁଙ୍କୁ ସେବେ କ ।
ପାଣି କମଳ ଦେଇଣ ଭାବେକ ॥
ଅଙ୍ଗୁଳି ଚମ୍ପା ନଖ କଳ ପାତି ।
ଖଣ୍ଡଚନ୍ଦ୍ର ରେଖା ମଣ୍ଡନେ ପ୍ରୀତି ॥

ଚିବୁକ ଧରିବା ଚୁମ୍ବନ ଗଣ୍ଡେ ।
ନାନାରସେ ରାସମଣ୍ଡଳୀ ମଣ୍ଡେ ॥
ମଦନ ବର୍ଦ୍ଧନ ଗତି ଝଟକେ ।
ସବୁଗୋପିକା ଚରିତ ଅଟକେ ॥
ମଧ୍ୟରେ ହେମ ପୀଠ କଳ୍ପଦ୍ରୁମ ।
ମଣ୍ଡଳୀ ବେଢ଼ି ନୃତ୍ୟ ଅନୁପମ ॥
ଅଦ୍ଭୁତ ଉପମ କୃଷ୍ଣ ଚରିତ ।
ଚନ୍ଦ୍ର ଉଜ୍ଜ୍ୱଳ ଅମୃତ ପୂରିତ ॥
ଗୋପୀ ପୟୋଧର ମନ୍ଦର ଧରି ।
ମଣ୍ଡଳ ଭ୍ରମିଣ ନର୍ତ୍ତନ କରି ॥
ଏ ସୁଧା ସିନ୍ଧୁ କରନ୍ତି ମନ୍ଥନ ।
ଜାତ ଏରସ ରସ ଅକଥନ ॥
ଉଚ୍ଚସ୍ୱରେ ଧ୍ୱନି ମଣ୍ଡଳୀ ବୁଲି ।
ଅନଙ୍ଗ ରଙ୍ଗ ତରଙ୍ଗ ଉଚ୍ଛୁଳି ॥
ଏମନ୍ତ ପିୟୂଷ ସାର ରାସ ରସ ।
ଦେବତାମାନେ ନ ପାଇଲେ ଲେଶ ॥
ଗୋପୀ ପ୍ରେମଭାବେ କେ ପାରିଷଦ ।
ସେ ଭକ୍ତ ଜନେ ଏ ରାସ ସମ୍ପଦ ॥
ଏମନ୍ତେ କୃଷ୍ଣ ଅଙ୍ଗ ସଙ୍ଗ ବାଳୀ ।
କୁଞ୍ଜେ କୁଞ୍ଜେ ହେନ ବିବିଧ କେଳି ॥
ଗର୍ବ ବହିଣ ମନେ ଏକେ ଏକେ ।
କୃଷ୍ଣଙ୍କୁ ରମେ ଭାବନ୍ତି ଉତ୍ସୁକେ ॥
ହେ ନାଥ ଆଜ ପ୍ରେମ ଲୀଳା ରସ ।
ଏଥିରୁ ଆଉ କି ଅଛି ସରସ ॥
ଏହିତ ଜଗତେ ପରମ ଧନ ।
ନାହିଁ ସମ ପାଇ ନିଷ୍ଟଳ ମନ ॥
କୃଷ୍ଣ କହନ୍ତି ମଧୁର ହାସରେ ।
ଶୃଙ୍ଗାର ଉଜ୍ଜ୍ୱଳ ସର୍ବ ରସରେ ॥
ଇକ୍ଷୁ ଦୁଗ୍ଧ ବତ୍ ଏହୁ ରସ ।
ପୀଡ଼ ମନ୍ଥନରେ ରସ ସରସ ॥
ବେଲ୍ଲୁଁ ବେଳ ସାକ ସ୍ୱାଦକୁ ଲଭେ ।
ଶୃଙ୍ଗାର ସେହି ରୂପେ ବିପ୍ରଲମ୍ଭେ ॥
ନିଜ ଧନ ଯେସନେ ଦଇବେ ହଜେ ।
ଅନୁବରତେ ଚିତ୍ତ ଦେଇ ଖୋଜେ ॥

ପାଇଣ ରଖି ଅଧିକ ଯତନ ।
ନିରତେ ଦେଇଣ ମନ ନୟନ ॥
ରାସରୁ ରସ ଅଧିକ ସଜନୀ ।
ବିଳସ ଶରଦ ଚନ୍ଦ୍ର ରଜନୀ ॥
କଥାରବେ ବାଳୀ ବଳାଇ ମତି ।
ଅଧିକ ପ୍ରେମ ଯହିଁ ସେହି ପ୍ରୀତି ॥
ଏମନ୍ତେ ଏକଠୂଳ ଶ୍ୟାମଘନ ।
ରାଧାଙ୍କୁ ଘେନ ହେଲେ ଅନ୍ତର୍ଦ୍ଧାନ ॥
ନଦେଖି ପାଶେ ଚଉକତ ଲୋଡ଼ ।
ନ ପାଇ ବାଳୀ ଶୋକ ଜଳେ ବୁଡ଼ ॥
ଲୁରୁ ଲୁରୁ କାଳ କେଳ କ ମଣି ।
ଲୋଡ଼ନ୍ତି ଲତା ଅନ୍ତେ ପୁଣ ପୁଣି ॥
କାହିଁ ନପାଇ ଚକିତ ହୋଇଲେ ।
ମଦନ ଖିନ୍ତ ଆରତେ ଧାଇଁଲେ ॥
ହେ ନାଥ ଆମ୍ଭଙ୍କୁ ନବେଣି ବନେ ।
କେଣେ ଗଲ କି କି ବିଚାରି ମନେ ॥
ବିନ ଜୀବ ଧ୍ୱନି ଶୁଣି ଗହନ ।
ଭୟ କରୁଅଛୁଁ ଆସ ବହନ ॥
ନୟନ ମନ ଶ୍ୟାମଘନ ତନୁ ।
ଜୀବନ ଧରି ନପାରଇ ତନୁ ॥
ଗୋବିନ୍ଦ ଚନ୍ଦ୍ର ବଦନ.ନଦେଖି ।
କାମିନୀ ଗଣ କୁମୁଦିନୀ ଦୁଃଖୀ ॥
ଅନେକ ଦିନ ରସ ରଙ୍ଗ ବଢ଼ି ।
ଏକାବେଳେ କେତେ ଦେଇଛ ଇଡ଼ି ॥
ମହାଭୟରୁ ବେଳୁବେଳ ରଖି ।
ଏବେ ଆଣି ଘୋର ବନେ ଉପେକ୍ଷି ॥
ମଦନ-ନଦୀ ବଢ଼ିରେଣ ଭାସି ।
କଳ୍ପ ଦ୍ରୁମ ବୋଲି ଧରିଲୁଁ ଆସି ॥
କୂଳେ ନିରଖି ଗଣ୍ଡରେ ଭସାଇ ।
ନଶୁଣି କାହିଁଛି ଗଛେ ବସାଇ ॥
ହରିଣ ନୟନୀ ବେଣୁ ଗୀତରେ ।
ମତ୍ତରେ ଅଇଲୁଁ ବନ ଭିତରେ ॥
ନୀଳମଣି ତନୁ ଉଜ୍ଜ୍ୱଳ ଛବି ।
ନିଷ୍ଠୁରେ ରହିଣ ଗୁହିଁଣ ଭାବ ॥

କାମ କରୀତ ନାଗରକୁ ପେଷି ।
ଗର୍ବ ନେବ ଶୋଭ ନାହିଁ ସୁକେଶୀ ॥
ଉଜ୍ଜ୍ୱଳ ପ୍ରଦୀପ ହେଲେ ଅନ୍ତର ।
ଏହେନ ହରିଣ ନେତ୍ରୀ କାତର ॥
ଏ ରୂପେ ବିଳାପ କରି ରାଇଲେ ।
ସମସ୍ୟା ବର୍ତ୍ତି ଶୁଦ୍ଧ ନପାଇଲେ ॥
ସଭୟେ ସେଠାରୁ ଉଠି ଚଳିଲେ ।
ଯମୁନା କୂଳ ବନରେ ମିଳିଲେ ॥
କେଳି କୁଞ୍ଜେ କୁଞ୍ଜେ ଲୋଡ଼ନ୍ତି ପଶି ।
ନ ଦେଖି ଦେଖିଲ ଯତନେ ଘଷି ॥
ଯୁବତୀ ଠେଲିଲ ଯେଉଁ ପୁରୁଷ ।
ଜଗତେ ତାର କେଉଁ ପଉରୁଷ ॥
କି କି ଦୋଷ କଲୁଁ କହ ତାହାର ।
ସବୁଙ୍କୁ କମ୍ପା କାମ ହାତେ ମାର ॥
କେ ବୋଲେ ଅବିବେକ କାମରାଜା ।
ଅବଳା ପରଜାରେ ତା ତରଜା ॥
ଆମ୍ଭର ପ୍ରାୟ ହରି ହୃଦେ ଥାନ୍ତା ।
ସେ କମ୍ପା ଆମ୍ଭକୁ ତେଜି ଯାଆନ୍ତାଏ
କେବଣ ଗୋପୀ କରେଣି ତମାଳ ।
ବୋଲେ ଏହିତ ମଦନ ଗୋପାଳ ॥
ପବନେ ଶାଖା ଯା ଅବନୀ ଲୋଟେ ।
ଦେଖ ହରି ପାଦ ଧୂଳି ସାଉଣ୍ଟେ ॥
ଆମ୍ଭ ବିରହ ବିଚ୍ଛେଦେ ଆରତ ।
ହେ ସଖୀ ତୋଳି ପଚାରି ବାରତ ॥
ବଧିଲ କୁସୁମ ଅଧର ବୋଲି ।
ଚୁମ୍ବନ ଦେଇ ରୋଷେ ବୋଲେ ବାଳୀ ॥
ଗତ ମଧୁର ଅଧରେତ କାହିଁ ।
ଆମ୍ଭଙ୍କୁ ଲେଞ୍ଚୁଳାରୁ ଗଲା ଯହିଁ ॥
କେଉଁ ନାରୀ ଜଳେ କମଳ ଦେଖି ।
ହରିମୁଖ ମଣି ଦେଖାଏ ସଖୀ ॥
ଜଳରେ ଲୁଚଇ ତନୁ ରଖାଇ ।
ସଙ୍କୁଚିତେ ରହି ମୁଖ ଦେଖାଇ ॥
ଧ୍ୟାନେ ପଣନ୍ତେ କା କଣ୍ଟକ ଲାଗି ।
ହରି ଧରେକ ମଣି ଅନୁରାଗୀ ॥

ଘ୍ରୁଡ଼ ଘ୍ରୁଡ଼ ବୋଲି ମୁଖ ପାଳନ୍ତି ।
ଯାଯା ହରି ଯାହାସଙ୍ଗେ ଲମ୍ଫନ୍ତି ॥
କୃଷ୍ଣଙ୍କୁ ଦେଖିଲ ପରସ୍ପୁ ମଣି ।
କେହନ୍ତିଁ ଗତ ଅନୁରାଗ ଭଣି ॥
ରଣ୍ଡ ମାଗୁଥାଏ ପଥ ଆବୋରି ।
ବନାଇ ବଦନେ ଦେଇ ଅଙ୍ଗୁଳି ॥
ନାହିଁ ନାହିଁ କହିଲ ରୋଧି ଉଗାଳି ।
ପଣନ୍ତ ଧରି ପଦେ ଲୋଟିଗଲ ॥
ସେ ଅନୁରାଗ ଦେଖିଥାଇଁ ତେବେ ।
ଦଇବ ବିପରୀତ କଲା ଏବେ ॥
କେବାଲେ ନଶି ଦ୍ୱାରପେଣ୍ଡ ପଣ ।
ଉରେକରେ ପାଦ ଆଉଁପି ବସ ॥
ନବ୍ରାଭଙ୍ଗ ଗୋପୀ ଗୋଇଠା ଖାଅ ।
ବନେ ଆଣି ସେ ମହିମା ଦେଖାଅ ॥
ଯମୁନାଘାଟ ମଥୁରା ବାଟକୁ ।
ଜଗି ବସିଥାଅ ଆମ୍ଭ ଭେଟକୁ ॥
ଆଦର କର ପାଦର ରେଣୁକୁ ।
ଲେଟିବନେ ପୋଛିଦେଲ ତନୁକୁ ॥
କେ ବୋଲେ ଆଜିକ ପୁରକୁ ଯିବୁଁ ।
ନ ଦେଖିଲେ ବନେ ଜୀବନ ଦେବୁଁ ॥
ବାଳକ କାଳେ ବଧାଣି ପୂତନା ।
ଯୁବାକାଳେ ନାଶି ଏତେ ଅଙ୍ଗନା ॥
ନାନାମତେ ଭଷି ଲୋଡ଼ନ୍ତ ବନେ ।
ବାତୁଳମତ ହୋଇ ଜଣେ ଜଣେ ॥
କେଉଁ ଗୋପୀ କୃଷ୍ଣ ପରାପ୍ତେ ବୁଲି ।
ବୋଲଇ ଦେଖ ମୁହିଁ ବନମାଳୀ ॥
କାହାକୁ ଆଜ ଦୁଃଖ ପଡ଼ିଲେଡ଼ି ।
ମୋର ଶିରରେ କୁସୁମ ନଜଡ଼ି ॥
ତରୁତଳେ କେହୁ ତ୍ରିଭଙ୍ଗି ଛନ୍ଦେ ।
ଡାଳ ଖଣ୍ଡଧରି ମୁରଲୀ ବନ୍ଧେ ॥
ମନ୍ଦହାସ ଭାଷେ ମୁଁ ପୀତବାସ ।
କମ୍ପା ତେଜିଲ ପୂରପ୍ରତ ଆଶ ॥
ମୋ ବୋଲକରି ଗୋ ଲେଉଟି ଯାଅ ।
ନିଜ ପତିକି ସେବାକରି ଥାଅ ॥
କେ ବାସ କାଢ଼ି ବୃନ୍ଦରେ ପଦ୍ମଢ଼ ।
ହରିମୁହିଁ ବକାସୁର କଗୁଡ଼ ॥
ଲତାଧରି କେ ଚେନଫାଳ କରି ।
ବୋଲଇ ହରି ମୁଁ ବକାକୁ ଚିରି ॥
କୁଞ୍ଜେ ପଶି କେହୁ ଉପରେ ଉଠି ।
ବୋଲେ ବାହାର ଅଘାଣିର ପୁଟି ॥
ଉଚେ ରହି କେହୁ ନୃତ୍ୟକରଇ ।
ହରିମୁଁ କାଳୀ ମଉଳି ଦଳଇ ॥
ଉପରଣ ବାସ ଟୋଳି ବେକରେ ।
ବୋଲେ ମୁଁ ହରି ଗୋବର୍ଦ୍ଧନ ଧରେଁ ॥
ଏଥିତଳେ ଆସି ବହନ ଲୁଚ ।
ଇନ୍ଦ୍ର ବଜ୍ରଘାତୁଁ ବେଲେକ ବଞ୍ଚ ॥
ଏମନ୍ତେ ଗୋପୀ କୃଷ୍ଣଗୁଣ ବହି ।
ବୁଲନ୍ତେ ବନେ ଏ ମହିମା କହି ॥
ଯାନ୍ତେ ଦେଖିଲେ ମୃଗଯୂଥ ବନେ ।
ନିଶ୍ଚଳ ଚକ୍ଷୁ ବିମୃଗନ୍ତ ମନେ ॥
ଏପାନେ କୃଷ୍ଣଙ୍କୁ ଅଛନ୍ତ ଦେଖି ।
ତେଣୁ ସ୍ଥିରକରି ନିଶ୍ଚଳ ଆଖି ॥
ଏଣୁ ଗୋ ଆସ ହରିଙ୍କି ଭେଟିବା ।
ଟିକ ଟିକକରି ବଂଶୀ କାଟିବା ॥
ଆଗ ହୋଇ ଜଣେ ଗଲେ କଢ଼ାଇ ।
ଦଶବଂଶ ହୋଇ ପଛେ ଗୋଡ଼ାଇ ॥
ଏମନ୍ତ ହୋଇ ଯୂଥ ଯୂଥ ବୁଲେ ।
ତରୁ ଲତାକୁ ପୁଛନ୍ତ ଆକୁଳେ ॥
ବେଲ ବକୁଳ ରସାଳ କପିତ୍ଥ ।
ଦେଖିଥିଲକ ଆମ୍ଭ ପ୍ରାଣନାଥ ॥
ଲମ୍ବ କଦମ୍ବ ପନସ ପଳାଶ ।
କୃଷ୍ଣ କଥାକହ କରଉଲ୍ଲାସ ॥
ହେ ନାଗେଶ୍ୱର ପୁନାଗ ଅଶନ ।
ଏ ପଥେ ଗଲେକି ପୀତବସନ ॥
ଚମ୍ପକ ଅଶୋକ କନ୍ଦ ମନ୍ଦାର ।
ଅନ୍ତଃ କୁଟୀର ଗମ୍ଭୀର ଅନ୍ଧାର ॥
ଆମ୍ଭ କୃଷ୍ଣଙ୍କୁ ଲୁଚାଇ ଥୋଇଛ ।
ତେଣୁ ସେ ଏତେ ହରଷ ହୋଇଛ ॥

ଅତି ସରଧରେ ମଧ୍ୟ ବରଷ ।
କୃଷ୍ଣଙ୍କୁ ଦେଖି ଗୁପତେ ବିଳସ ॥
ମାଳତୀ ସେବତୀ ମାଧବୀ ମଲ୍ଲି ।
ମଲୁଁନା ଦେଖ ବନେ ବୁଲି ବୁଲି ॥
ଜାଣକି ତୁମ୍ଭେ ହରିଗଲେ କେଣେ ।
କହିଦିଅ ବାଟ ଭେଟିବୁଁ ଯେଣେ ॥
ହେ ଜାତି ଦେଖ ପତିକୁଳ ଏଡ଼ି ।
ଭଜିଲୁଁ ବନେ ହରିଗଲେ ଛାଡ଼ି ॥
ତୁମ୍ଭେସେ ତାଙ୍କ ନଖ ଶୋଭାହରଶ ।
କେଣେ ଗଲେହରି କହ ସନ୍ଦେଶ ॥
କୁମୁଦ କୁମୁଦ କର ଜଗତେ ।
ଜାଣିବା ଭେଟାଅ ହରି ସଙ୍ଗତେ ॥
ତୁଳସି ତୁମ୍ଭେସେ ଗୋବିନ୍ଦ ପ୍ରିୟେ ।
ଭେଟାଅ ଆମ୍ଭରେ ହୁଅ ସଦୟେ ॥
ତୁମ୍ଭକୁ ଦେଖ ମନକୁ ଶୈରଇ ।
ଆମ୍ଭକୁ ତାହାଙ୍କୁ ଦିଅ ଧରଇ ॥
ଏମନ୍ତେ ଗମନ୍ତି ବନ ଅନ୍ଧାରେ ।
ନଦୀତେଶ ପଥ ମଦନ-ଅନ୍ଧାରେ ॥
ଲେଉଟି ତହିଁ ବଟୈଳ ଗମନ୍ତେ ।
ଚରଣ ଚିହ୍ନ ଦେଖିଲେ ଯେମନ୍ତେ ॥
ଧ୍ୱଜବଜ୍ର ଯବ ରଥାଙ୍ଗ ମୀନ ।
ବୋଲନ୍ତି ଏତ କୃଷ୍ଣ ପାଦଚିହ୍ନ ॥
ପୁଣି ପାଦେକ ଉପରେ ପାଦେକ ।
ତହିଁର ଚିହ୍ନତ ଅଛି ଅନେକ ॥
କେ ବୋଲେ ଯୁବତୀ ଜନ ସଙ୍ଗରେ ।
ତେଣୁ ସେ ପାଦେକ ପାଦ ଉପରେ ॥
ଧନ୍ୟ ତରୁଣୀ ଜୀବନ ତାହାର ।
ହରି ଯେନ ଏକା କଲେ ବିହାର ॥
ଅଶେଷ ପୁଣ୍ୟ କରିଅଛି ପୂର୍ବେ ।
ଗୋବିନ୍ଦ ବଶ ଏକାତାର ସବେ ॥
ଏମନ୍ତେ ପାଦ ଅନୁସରି ଗଲେ ।
କୁନ୍ଦମାଳା ପଡ଼ିଅଛି ଦେଖିଲେ ॥
ଧାଇଁ ଧରି ଏକ ଆରେ ଦେଖାଇ ।
ଯାହାଙ୍କୁ ସଖିଗୋ ନେଲେ ଶିଖାଇ ॥

ଏଠାରେ ବସି ତା କବେଶ ଖୋସି ।
ଉଲଗି ମାଳଗୋ ପଡ଼ିଛି ଖସି ॥
ହରି ଅଙ୍ଗସଙ୍ଗେ ଗନ୍ଧ ଏହାର ।
କେମନ୍ତେ ସୁବାସ ତନୁ ତାହାର ॥
କେବୋଲେ ତାଙ୍କୁ ଜାଣିବା କେମନ୍ତେ ।
କେବୋଲେ ନାହିଁ କେ ଆମ୍ଭ ସଙ୍ଗତେ ॥
କେ ବୋଲେ ଯୂଥ ଯୂଥ ବ୍ରଜେଶ୍ୱରୀ ।
ବୃନ୍ଦାବନ ଯାକ ଅଛନ୍ତି ପୂରି ॥
କେଅବା କାହିଁ ଜାଣିବା କେମନ୍ତେ ।
ସର୍ବଶ୍ରେଷ୍ଠ ସେହୁ ଜାଣ ଏମନ୍ତେ ॥
ଲଳିତା ବିଶାଖା ରାଧା ବିଚ୍ଛେଦେ ।
ଅନୁସରି ଲେଉଡ଼ି ଖେଦ ବିଷାଦେ ॥
ରଥ ପର୍ବତ ଦେଖି ପାଦଚିହ୍ନ ।
ଜାଣି ହରଷ ହୋଇ ମନେମନ ॥
ଶ୍ରୀକୃଷ୍ଣ ସଙ୍ଗେ ଛନ୍ତି ଆମ୍ଭସଖୀ ।
ଜାଣିବା ପାଇଁ ମାଳ ଗଲେ ରଖି ॥
ମାଗିସେ ଗୋପୀଙ୍କି ମାଳ ଦେନଲେ ।
ଖଣ୍ଡଗଲା କୁନ୍ଦମାଳ ଚିହ୍ନିଲେ ॥
ଉଜ୍ଜ୍ୱଳ ରଜନୀ ନିର୍ମଳ ବେଳ ।
ଯୋଡ଼ ଯୋଡ଼ ପାଦ ଦେଖନ୍ତି ବାଳୀ ॥
ଦେଖ ଛଡ଼ାଫୁଲ ପଡ଼ିଛି କେତେ ।
ସୁଗନ୍ଧ ଲୋଭେ ଚୁମ୍ବେ ଅଳିଶତେ ॥
କୁଚ କସ୍ତୁରୀ ପତ୍ରାବଳୀ ଲହି ।
କର କର୍ଣ୍ଣି ବାରେ ପଡ଼ିଛି ମହୀ ॥
ଏଠାରେ ପାଦ ଦେଇଛି ଅଳତା ।
ଶ୍ରୀହରି ମନ ମୋହିଲା ବନିତା ॥
ବେଶକରି ପ୍ରିୟା ମନ ମନ୍ତାଇ ।
ଅଧର ରଙ୍ଗ ତାମ୍ବୁଳ ଭୁଞ୍ଜାଇ ॥
ପାନଡ଼ିକ ଦେଖ ପଡ଼ିଗୋ ଅଛି ।
ନାଗର ମୋହିଲା ଭଲ ମୃଗାକ୍ଷୀ ॥
ଏଠାରେ ବାଳୀ କରିଛି ଶୟନ ।
କୋମଳ ପଲ୍ଲବ ଶଯ୍ୟା ଆସନ ॥
କାହ୍ନୁ ଜାନୁକୁ ସୀମସ୍ଥାନେ ଦେଇ ।
ଉଠି ଏଠାରୁ ପୁଣ କେଣେଯାଇ ॥

ଏବନେ କହିବା ହେଲା ବିଚ୍ଛେଦ ।
ଏକାନ୍ତ ପଡ଼ିଛି ଗୋବିନ୍ଦ ପାଦ ॥
ଗଭୀର ପୟର ଚିହ୍ନ ନିବେଶି ।
ଚଳି ନପାରିବା କନ୍ଦରେ ବସି ॥
କେବୋଲେ ରସିକ ଶ୍ରୀବନମାଳୀ ।
ଚଳନ୍ତେ ଲାଗନ୍ତା ଅଳତା ଧୂଳି ॥
ପ୍ରିୟାସବେ ହାସରସେ ରସାଇ ।
ନେଇଅଛି ତାଙ୍କୁ କନ୍ଧେ ବସାଇ ॥
ହସ୍ତ ନପାନ୍ତେ ହରି ଡେଙ୍ଗେ ଡେଙ୍ଗେ ।
ଚରଣ ଅଗ୍ରେ ଦେଖ ଭୂମିଲାଗେ ॥
ଫୁଲ ତୋଳି ହରି ମଣ୍ଡଳ ମଣ୍ଡି ।
ଦେଖ ଏଠାରେ ପଡ଼ିଅଛି ଗୁଣ୍ଡି ॥
ଏଥି ଅନନ୍ତରେ ଶୁଣ ଚରିତ ।
ରାସ ରସ ଏ ଅମୃତ ପୂରିତ ॥
ନଳ କୁବର ପୁଚ୍ଛନ୍ତି ସେମୁନି ।
କୃଷ୍ଣ ଯେ ଗଲେ ରାଧିକାଙ୍କୁ ଘେନି ॥
କି କି ଲୀଳା କଲେ ବନେ ଏକାନ୍ତେ ।
ସକଳେ ଭେଟ ହୋଇଲେ କେମନ୍ତେ ॥
ଶୁଣିତ ମୁନି ନୁହଇ ଭଜନ ।
ମହତଙ୍କର ଅଧମ ମାର୍ଜନ ॥
ନାରଦ ଧ୍ୟାନେ ବୃନ୍ଦାଙ୍କୁ ବନ୍ଦନ ।
ବୋଲନ୍ତି ଶୁଣ କୁବେର ନନ୍ଦନ ॥
ଗୋପୀଗଣ ମଧ୍ୟୁଁ ଅନ୍ତର ହରି ।
ସଙ୍ଗରେ ଘେନି ବୃନ୍ଦାବନେଶ୍ୱରୀ ॥
ଦିବ୍ୟ ରମ୍ୟ ସ୍ଥାନେ କେଳି ଏକାନ୍ତେ ।
ପଞ୍ଚବାଣ ଅବିଶ୍ରାନ୍ତ ଆଘାତେ ॥
ଶୃଙ୍ଗାର ରସ ହୋଇ ମୂର୍ତ୍ତିମନ୍ତ ।
ବନଦେବୀ ସେ ଅଛନ୍ତି ଏକାନ୍ତ ॥
ଦୁହିଁଙ୍କ ଦୁହେଁ ସେ ଅତି ଉତ୍ତମ ।
ତରୁଣୀମଣି ସେ ପୁରୁଷୋତ୍ତମ ॥
ଭ୍ରମନ୍ତି ବନେ ରମନ୍ତି ସୁମନେ ।
କୁସୁମ ପଲଙ୍କ କୁଞ୍ଜ ଭୁବନେ ॥
ରତି-ଚରଣରେ ହେଲେ ପରିପୂର୍ଣ୍ଣ ।
ରସ ବଢ଼ାଇ ହୁଏ ହାରଜିଣ ॥

ମଳୟ ପବନ ନିର୍ମଳ ନିଶି ।
ଉଜ୍ଜ୍ୱଳ ନିର୍ମଳ ଶରଦ-ଶଶୀ ॥
କର୍ପୂର ଚନ୍ଦନ ଝୀନ ଦୁକୂଳ ।
ସୁବାସ ଶୀତଳ ଜଳ ତାମ୍ବୁଳ ॥
ସଂଯୋଗି ନିଯୋଗେ ବନଦେବତା ।
ରାଧା ମାଧବ ଶ୍ରମ କରି ଶାନ୍ତ ॥
କୁଣ୍ଡ କୂଳରେ ମାଧବୀ ମଣ୍ଡପ ।
ଚନ୍ଦ୍ରକାନ୍ତରେ ପୀଠ ଅନୁରୂପ ॥
ଖଞ୍ଜି କେତକୀ ଗୁଚ୍ଛ ଚନ୍ଦ୍ରାତପ ।
ଶେଜାଇ ଜାଣି ପାଖୁଡ଼ାରେ ତଳ୍ପ ॥
ହିଁସୁଳି ତୂଳ କେଶର ମୁରୁଳି ।
ଝୀନ ବସନ ଘନସାର ଧୂଳି ॥
ଅଗର ଧୂପ ସୁଗନ୍ଧ ଚହଟି ।
ମଳୟାନିଳ କରେ ପୁଷ୍ପ ବୃଷ୍ଟି ॥
ବିଜୟ ହରି ପ୍ରିୟାକୋଳେ ଘେନି ।
ଶୋଭାବନ ପୂର୍ଣ୍ଣଚନ୍ଦ୍ର ରଜନୀ ॥
ଷଡ଼ଋତୁ ଘେନି ମଦନ ରାଏ ।
ଅନୁସରଣ ସେବେ ପାଏ ପାଏ ॥
କାନ୍ତା କାନ୍ତ ପ୍ରେମେ ରତି ଉକଣ୍ଠ ।
ଭ୍ରମର ଯାନ୍ତେ ଦେଖାନ୍ତି ଶ୍ରୀମତୀ ॥
ଦେଖ ଦେଖ ନାଥ କୁଟିଳ ଗତି ।
ପଦ୍ମିନୀ ନିଦ୍ରା ଜାଣି ଆସନେ ମତି ॥
କୃଷ୍ଣ କହନ୍ତି ଏ ପଦ୍ମିନୀ ହୃତେ ।
ବାରଇ ବିଧୁକର ଆତପାତେ ॥
ପୁଣ କହନ୍ତି ବୃଷଭାନୁ ଯେମା ।
ହେ ନାଥ ଦେଖ ଏ ପୂର୍ଣ୍ଣଚନ୍ଦ୍ରମା ॥
ଦଶ ଦିଶ ନଭ ମଣ୍ଡଳ ଗର୍ଭା ।
ତାହା ମଧ୍ୟେ ନିଶି ପ୍ରିୟାରେ ଶୋଭା ॥
ଏତେ ସମ୍ପଦ ନିଶି ଘେନି ଶଶୀ ।
ତାଙ୍କୁ ଲେଛୁ ବନ କନ୍ଦରେ ପଶି ॥
ଚତୁର ବୋଲନ୍ତି ଶୁଣ ସଜନ ।
ଅତି ପ୍ରିୟବତୀ ଏସେ ରଜନୀ ॥
ପ୍ରାଣବନ୍ଧୁ ବଧୁ କ୍ଷିଣଙ୍କୁ ଦେଖି ।
ଚଣ୍ଡକର ତାପେ ଗୁଡ଼ ଉପେକ୍ଷି ॥

ସ୍ୱେଦେ ଶଶୀ ପଛେ ଗୋଡ଼ାଇ ମିଶି ।
ଅଧିକ ତେଜର ଗମଇ ନିଶି ॥
ହେ ନାଥ ଏଯେ ନିଶି ପତିବ୍ରତା ।
ଚନ୍ଦ୍ରର ବିନୁ ନ ଦେଖେ ସବିତା ॥
ଏ ଶଶୀ ଦିବା ରମଣେ ଲାଳସୀ ।
ଯତନେ ପଛେ ରହେ ନିଶି ତୋଷି ॥
ଦିନେଶ ଦେଖି ତାମ୍ରେ କର ଖେଦ ।
କ୍ଷୀଣ ଚନ୍ଦ୍ର ହେଲେ ଦିବାନୁବାଦୀ ॥
ଏକ ବ୍ରତ ରବି ତେଜ ବିକାଶେ ।
ବିଟପେ ବିଧୁ କ୍ଷୀଣ ହୀନ ଦିଶେ ॥
ହେସଖୀ ଦେଖ ଚମ୍ପକ ବିଟପୀ ।
ବାସ ପୁଷ୍ପ ହେମ ଗଜର ରୂପୀ ॥
ଏଡ଼େ ବିଟପୀ ବହି ଥାଇ ଲିଙ୍ଗ ।
ଲେଛଇ ଜାଣି ସେ ସୁଜାଣ ଭୃଙ୍ଗ ॥
ବିଟପୀ ପୁରୁଷ ଭ୍ରମର ମାର ।
ଏମନେ ପଦ୍ମିନୀ ରସେ ବିହର ॥
ଏମନ୍ତେ ହାସ ରସରେ ଉକତି ।
ସ୍ଥାନେସ୍ଥାନେ ବୁଲି ଶୋଭା ଦେଖନ୍ତି ॥
ପୁଷ୍ପ ପଲ୍ଲବ ଶଯ୍ୟାରଚନ୍ତି କାହିଁ ।
ଜାନୁ ସୀମସ୍ଥାନେ ଶୁଆଇ ରାଈ ॥
କେତେବେଳରେ ଗୋବିନ୍ଦ ଶୟନ ।
ରାଈ କରନ୍ତି ପାଦ ସମ୍ବାହନ ॥
ଅନୁରାଗଭରେ ଧରନ୍ତି ପାଣି ।
ଆଲିଙ୍ଗନେ କୋଳେ ଶୁଆନ୍ତି ଆଣି ॥
ରତିରଣେ ବେଶ ମଳିନ ଚାହିଁ ।
ପ୍ରିୟାଙ୍କୁ ସୁବେଶ କରନ୍ତି କାହିଁ ॥
କବରୀ ଖୋସି ସୁବାସ କୁସୁମେ ।
ଚନ୍ଦନଚିତ୍ର ମକରୀ ସୁପ୍ରେମେ ॥
ନୟନେ ଅଞ୍ଜନ ଚିବୁକେ ବିନ୍ଦୁ ।
ମୃଗଲାଞ୍ଛନ କି ବଦନ ଇନ୍ଦୁ ॥
ହେମ ବରନେ ନାନା ଆଭରଣ ।
ପ୍ରତିଅଙ୍ଗେ କୃଷ୍ଣ କଲେ ଭୂଷଣ ॥
ସର୍ବାଙ୍ଗେ ଚନ୍ଦନ କର୍ପୂର ବୋଳ ।
କୁଚରେ ଲିହି ଚିତ୍ର ପତ୍ରାବଳୀ ॥

ରସରାଜ ମୂର୍ତ୍ତି ନବ କିଶୋରୀ ।
ଛବି ଚାହିଁ ହରି ବେଶ ବିସୋରି ॥
ଝୀନ ଶୁକଳ ବସନ ପିନ୍ଧାଇ ।
କିଙ୍କିଣୀ କେଶରୀ କଟି ବନ୍ଧାଇ ॥
କୁଚ କୁମ୍ଭ କୁମ୍ଭି ନିର୍ଭୟ କରି ।
ଲମ୍ବାଇ ଫୁଲମାଳ ସରି ସରି ॥
ମାଳ ଅଳଙ୍କାର ବାସ ଖଞ୍ଜାଇ ।
ବିମ୍ବାଧରରେ ତାମ୍ବୁଳ ଭୁଞ୍ଜାଇ ॥
ଆଉ କି ବେଶ କରିବା ବିଚାରି ।
ଚରଣ ଲୁଚିଆନ୍ତେ ଜାଣି ହରି ॥
ବଳେ କର ଧରି ଜାନୁରେ ରଖି ।
କମଳ ଚରଣେ ଯାବକ ଲେଖି ॥
ବେଢାଇ ପଦ୍ମରେ ସରୁ ସୁରେଖେ ।
ବିନ୍ଦୁ ବିନ୍ଦୁ ସେ ଇନ୍ଦୁ କଳା ଲେଖେ ॥
ବୋଲେ ହରି ଏ ପଞ୍ଚବାଣ ତୂଣ ।
କରିବା କଛେ ଉଡ଼ୁ ଉତ୍ତରଣ ॥
ଭ୍ରୂଲତା କୋଦଣ୍ଡ ଅଞ୍ଜନ ଗୁଣ ।
ହାସ ଯେ ଶସ୍ତ୍ର ଅପାଙ୍ଗ ପୂରଣ ॥
ନୟନ ଶର ବିଶିଖ ପଡ଼ନ୍ତେ ।
ସାତ୍ତ୍ୱିକ୍ୟ ପୀଡ଼େ ବିବେକ ବୁଡ଼ନ୍ତେ ॥
କନ୍ଦର୍ପ ସମ୍ପଦ ଯେନୁ ଛଡ଼ାଇ ।
ଏଣୁ ଅତନୁ ପ୍ରତାପ ବଢ଼ାଇ ॥
ଅକ୍ଷୟ ତୂଣ ରତି ରଣ କଛେ ।
ଅନୁଗ୍ରହ କଲେ ଉଡ଼ୁବ କହେ ॥
ଅତିର ମନସିଜ ରାଜ ଜିଣି ।
ଅଭିଶେଖ ସଖୀ ତୁମ୍ଭଙ୍କୁ ଯେନ ॥
ଲଜ୍ଜା ହାସେ ରାଈ ମୁଖ ମଣ୍ଡନ୍ତେ ।
ଲୁଚଇ ପାଦ ଘୁଞ୍ଚାଇ ଆଣନ୍ତେ ॥
ନିଧନ ଧନ ଯେସନେ ନଗୁଡ଼ ।
ତେସନେ ହରି ରାଈ ପାଦ ଯୋଡ଼ ॥
ବୋଲନ୍ତେ ସଖୀଗୋ ନପାର ରୁଳି ।
ଚାରୁ ଅଳତାରେ ଲାଗିବ ଧୂଳି ॥
ଅଣକତେ ତୁମ୍ଭ ନଚଳେ ଦେଖା ।
ମୋର କଛେ ବସ ନେବାଇଁ ବାହା ॥

ଏ ବଚନେ ଗୋପୀ ହୋଇଛନ୍ତି ତୁଣ୍ଡ ।
ଏଣେ ଆସୁଛନ୍ତି ଶୁଭଇ ତୁଣ୍ଡ ॥
ଦେଖିଲେ ଝିଙ୍କାସ କରିବେ ସିନା ।
ଏଠାରୁ ଯିବାରେ ଘନଜଘନା ॥
ଏତେ ବୋଲି ହରି କନ୍ଧ ନୁଆଁଇ ।
ଚୋଳ ପ୍ରିୟାଙ୍କୁ ବସାଇଲେ ନେଇଁ ॥
କୃଷ୍ଣ ବାରଣ କି କମଳ ଚୋଳ ।
ସେନି ବାମ କନ୍ଧେ ଉଠିଣ ଚଳ ॥
ଉର ସୁନ୍ଦରୀ ଧରି ହରି ଶିର ।
ରାଜ୍ଞି ପାଦ ଛନ୍ଦ ଗୋବିନ୍ଦ କର ॥
ରାଧିକା ଚରଣ ପରିରମ୍ଭଣ ।
ମାଧବ ହୃଦୟ ପୃଷ୍ଠେ ଲମ୍ବନ ॥
ନୀଳ ଦେହେ କିବା କମଳମାଳା ।
କାଳିନ୍ଦୀ ନଦୀକି କଦଳୀ ଭେଳା ॥
ଧରି ହରି ପାରିବାସ ନଦୀକି ।
ନୀଳ ଶଇଳରେ ଜାମ୍ବୁ ନଦୀକି ॥
ଶ୍ୟାମଘନ ବିଦ୍ୟୁ ଚଞ୍ଚଳେ ରହି ।
ଅଳତା ଭଙ୍ଗ ଅନୁରାଗ ବହି ॥
ଲାବଣ୍ୟ ସାଗରେ ସୁବର୍ଣ୍ଣ ସେତୁ ।
ଯତନେ ବାନ୍ଧିଲେ କି କୁଶକେତୁ ॥
କନ୍ଦର୍ପ ନୃପ ଯଜ୍ଞ ଯୁପ କିଏ ।
ପାଦ ଲଭି ପ୍ରୀତି ଏକ ପଦୁଏ ॥
ଆରକ ପାଦ କିତମ୍ବ ଉପରେ ।
ପଦ୍ମ ଫଟିକ ଗିରି ଉପରେ ॥
ରାଧା ବାଧା ହରି ଚିନ୍ତିଣ ମନେ ।
ବାମ କନ୍ଧେ ବସି ଧୀର ଗମନେ ॥
ଦକ୍ଷିଣ ମୁଖେ କେତେ ଯାଇ କରି ।
ଚଳୁଁ ପଶ୍ଚିମ ମୁଖେ ଅନୁସରି ॥
ଏମନ୍ତେ ଯାନ୍ତେ ନାଗେଶ୍ୱର ତଳେ ।
କୁସୁମ ଶୋଭା ଗୁହିଁ ରାଈ ବୋଲେ ॥
କନକ ଦଣ୍ଡ ଛତ୍ର ପ୍ରାୟ ଶୋଭା ।
ଚୋଳ ମଣ୍ଡିଲେ ହରି ଚାରୁ ଗଭା ॥
ଉପରେ ମାଡ଼ି ମାଳତୀ ଲତିକା ।
କର ବଢ଼ାଇ ପକାନ୍ତି ରାଧିକା ॥
ଜାଣି ମାଧବ ଡେଙ୍ଗେ ଡେଙ୍ଗେ ରହି ।
କରେ ଧରି ଫୁଲ ତୋଳନ୍ତି ରାଈ ॥
ଗୋଟି ଗୋଟି ତୋଳ ଚୂଳରେ ମଣ୍ଡି ।
ହସ୍ତରେ ଶୋଭନ ସ୍ତବକ କେଣ୍ଡି ॥
ଭ୍ରମର କୁଳ ଫୁଲଗୁଚ୍ଛୁ ଉଡ଼ି ।
ବଦନ ପଦ୍ମ ଗନ୍ଧ ଯାଇ ବେଢ଼ି ॥
ଆରତେ କରେ ନିବାରନ୍ତେ ଖରୁ ।
ତରସ୍ତେ ଖସିପଡ଼ିଲେ କନ୍ଧରୁ ॥
ପ୍ରିୟା ପ୍ରେମ ବାଣୀ ଶୁଣିବା ପାଇଁ ।
ରସିକବର ଲତାନ୍ତରେ ରହି ॥
ପଡ଼ନ୍ତେ ଅବନୀ ଧରିଲେ ତୋଳି ।
କୃଷ୍ଣ ବିଚ୍ଛେଦରେ ମୂର୍ଚ୍ଛିତା ବାଳୀ ॥
ବନଦେବୀ ସେବା କଲେ ସଚେତ ।
ଚାରିଦିଗେ ଗୁହିଁ ନଦେଖି କାନ୍ତ ॥
ଚକିତେ ଗୁହିଁ ସଭୟେ ବନରେ ।
ଚିନ୍ତାଭରେ ଛନଛନ ମନରେ ॥
ବିଚ୍ଛେଦ ଚନ୍ଦ୍ର ଚମକି ପଡ଼ଇ ।
ଅନ୍ତେ ଦାରୁଣ ମଦନ ପୀଡ଼ଇ ॥
ନଚଳେ ଦେହ ଚଞ୍ଚଳେ ବିମୋହ ।
ନିରେଖି ଲତା ପାଦପ ସମୂହ ॥
ଖର ନିଃଶ୍ୱାସ ଚଳୁ ଝମ ଝମ ।
କ୍ଷୋଭ ଲଭିଣ ଉର ଦମଦମ ॥
ଏକାକୀ ହୋଇ ନଦିଶଇ ବୁଦ୍ଧି ।
ହରାଇ ବନେ ନୀଳମଣି ନିଧି ॥
ଶୋକ-ଜଳେ ଖେଦ-ଉଦଧି ବଢ଼ି ।
କୁଚ ଅଞ୍ଚଳ ଲୋତକରେ ଜଡ଼ି ॥
କାନ୍ଦଣ ହନ୍ଦ ବନ୍ଧଣ ଜଣାଇ ।
ଉଚିତ ବାଣୀ ମଣାଇ ଶୁଣାଇ ॥
ପ୍ରାଣନାଥ ପକାଇଗଲ କେଣିକି ।
ଏକ କି କାରଣ ଆଣି ଏଣିକି ॥
ଅନ୍ଧାର ମୋତେ ନଦିଶଇ ପଥ ।
ଛଡ଼ାଇଲ ସଙ୍ଗ ସଜନୀ ଯୂଥ ॥
ବ୍ୟାଘ୍ର ଭଲ୍ଲୁକ ମେଳରେ ରଖିଲ ।
ଘୋର ରଜନୀ ବନେ ଉପେକ୍ଷିଲ ॥

କି ଦୋଷ କଲି ନ ଯିବିଲି ବାରେ ।
ଯୁବତୀ ହତ୍ୟା ଦୋଷ କାହାପରେ ॥
ମୁହିଁ ପଛକେ ବନେ ଯାଏଁ ନାଶ ।
ଜଗତେ ତୁମ୍ଭର ବିକାଶୁ ଯଶ ॥
ନୋହୁ ନୋହୁ ତୁମ୍ଭ ଅପକାରତି ।
କେ ପୁଣ ନକରେ ତୁମ୍ଭ ପିରତି ॥
ରାସ ଉତ୍ସବକୁ କଲି ବରଣ ।
ମୋଠାରେ କଲି ଶଠ ଆଚରଣ ॥
ଅଧରୁ ଅମୃତ ଖାଇଛୁଁ ଯେଣୁ ।
ତୁମ୍ଭ ଅଭାବେ ପ୍ରାଣ ରହେ ତେଣୁ ॥
କୁଟିଳ କୁନ୍ତଳ ଶ୍ରୀମୁଖ ଦେଖି ।
ଏହି ଲୋଭେ ଅଛୁ ପ୍ରାଣକୁ ରଖି ॥
ମାନ କଲେହେଁ ନରହେ ଏତେଦିନ ।
ବଡ଼ିମା ଗରିମା ତେଜ ଦଇନ ॥
ମଧୁର ହାସ ଅଧର ରଙ୍ଗିମା ।
କଟାକ୍ଷ ଚାହିଁବା ଅଙ୍ଗ ଭଙ୍ଗିମା ॥
ଯେଉଁ ଯୁବତୀ ଦେଖିବ ଡୋଳରେ ।
ସେହି କି ରହିବ ଜାତି କୁଳରେ ॥
ଦଣ୍ଡିଲ ମୋତେ ଭଣ୍ଡିଲ ତାହାଙ୍କୁ ।
କେମନ୍ତେ ମୁଖ ଚାହିଁବ କାହାକୁ ॥
ହେ ନାଥ ଏକାକୀ ହୋଇଲି ବନେ ।
ନପୁଣ ଖେଦ ଜାତ ହୁଏ ମନେ ॥
ମୋର ବିନାଶେ ନ କରିବ ଚିନ୍ତା ।
ତୁମ୍ଭଙ୍କୁ ବନେ ବହୁତ ଅହନ୍ତା ॥
ତୁମ୍ଭେ ଥିଲେ ଅଛୁ ସବ ସମ୍ପଦ ॥
ଗୋକୁଳେ ଚଳ ଘେନ ନାରୀବୃନ୍ଦ ॥
ଲତା ଅନ୍ତେ ଥାଇ ହସନ୍ତି ହରି ।
ପ୍ରେମ ବଚନ ମରମ କତୁରି ॥
ଏମନ୍ତେ ଗୋପୀ ଅନୁସରି ଯାନ୍ତେ ।
ବେଦନ ଶୁଣି ମିଳିଲେ ତୁରିତେ ॥
ଲଳିତା ଆଦି ଯେତେ ସହଚରୀ ।
ତତକ୍ଷଣେ ଦେଖି ତୋଳିଣ ଧରି ॥
ସଖୀ ଦୁଃଖରେ ହୋଇ ଦୁଃଖ ଭାଗୀ ।
ଶୋକରେ ଗଦ ଗଦ ଅନୁରାଗୀ ॥

ଏକ ଆରକରେ ଗହଳ କୁଣ୍ଡ ।
ସକଳ କାମିନୀ ହୋଇଲେ ଜୁଣ୍ଡ ॥
ରାଣୀ ଏକା ଚାହିଁ ବିଷାଦ ପାଇ ।
ଏକା ଦେଖିଲେ କୃଷ୍ଣ ସଙ୍ଗେ ନାହିଁ ॥
ସଚେତ କରି ପଚାରିଲେ ନାରୀ ।
କେମନ୍ତେ ଏଥେ ଅଇଲ ସୁନ୍ଦରୀ ॥
ଶୋକ ସମ୍ଭାଳି କହନ୍ତି ରାଧିକା ।
ଅଇଲେ ହରି ଘେନି ମୋତେ ଏକା ॥
ଅନେକ ବନେ ସ୍ଥାନେ ସ୍ଥାନେ ବୁଲି ।
ଅଣକତରେ ନପାରିଲି ଚାଲି ॥
କନ୍ଧେ ବହି ହରି ପକାଇ ଏଥି ।
ନ ଜାଣଇ ଗଲେ କେବଣ ପଥେ ॥
ଶୋକଭରେ ଭଲେ ନପାରେ କହି ।
ଥନ ଥନ ଆଖି ଲୋତକବହି ॥
ଶୁଣି ଗୋପୀବୃନ୍ଦ ପାଇଲେ ବ୍ୟଥା ।
ଗୋଚର ନପାଇ ଗୋବିନ୍ଦ କଥା ॥
କହନ୍ତି ଦେଇଣ ଅପକାରତି ।
ଆଉକେ କରିବ କେଉଁ ପିରତି ॥
ସକଳେ ଜାଣି ରାଣୀ ପ୍ରିୟବାଣୀ ।
ଏହାଠାରେ ନଯିବେ ଏସନ ମତି ॥
ଆମ୍ଭଙ୍କୁ ଲେଛିଲକୁ କମ୍ପା ବାଛ ।
ଗଲ ପକାଇ ଏକା ସବ ମୋକ୍ଷ ॥
ନଗି ବନରେ ବଚୁର ନକରି ।
ଏତ ରାଜକେମା ଆମ୍ଭେ କଙ୍କରୀ ॥
ଏମନ୍ତ ଚିନ୍ତ ଚକିତ ହୋଇଲେ ।
ନିଃଶ୍ୱାସ ପକାଇ ଉର୍ଦ୍ଧ୍ୱେ ଚାହିଁଲେ ॥
ଲଳିତା ବିଶାଖା ଚମ୍ପକଲତା ।
ଇନ୍ଦୁରେଖା ତୁଙ୍ଗବିଦ୍ୟା ବିଚକ୍ଷା ॥
ଏ ଆଦି ସଖୀ ରାଣୀ ଅନୁବାଦେ ।
କହନ୍ତି ଏମାନେ ପାଇ ବିଷାଦେ ॥
କୁଟିଳ ଭ୍ରମର ପ୍ରାୟେ ଶ୍ରୀହରି ।
ରସ ଘେନିଣ ଫୁଲ ତେଜ୍ୟା କରି ॥
ମହାମଣ୍ଡମା ତରୁଣୀରତନ ।
ଲଭିବାକୁ କଲେ କେତେଯତନ ॥

ନିତ ଦଇନ ଯେ ଆମ୍ଭମାନଙ୍କୁ ।
ଜଗିଥାଇ ରନ୍ଧ ସେହି ସ୍ଥାନକୁ ॥
ଉଲଗ ମାଳକୁ ପାଣି ପ୍ରସାରି ।
ନଦେଲେ ଓଗାଳେ ବାହୁ ବିସ୍ତାରି ॥
ତାହାଙ୍କୁ ଏବେ ବନେ ଏକା କରି ।
ଛାଡ଼ିଗଲେ ଏଡ଼େ ଦାରୁଣ ହରି ॥
ଏହି ଆଖିରେ ଏହା ପୁଣ ଦେଖି ।
ରେ ତରୁଲତା ତୁମ୍ଭେ ଯିନା ସାକ୍ଷୀ ॥
ସର୍ବ ଶୁଦ୍ଧେ ପୁଣ ତାହା ଦେଖିବା ।
ଇଷିତେ ଅଭିମାନ ଉପେକ୍ଷିବା ॥
ନାନାମତରେ କହି ବୋଧକଲେ ।
ହରଣ ସର୍ବେ ହରି ଲବଧରେ ॥
ଶ୍ରୀମତୀ ମନେ ମାନଭର ହୋଇ ।
କୃଷ୍ଣେ ସଦା ଅନୁରାଗ ବହଇ ॥
ଏକା ହୋଇ ବନେ ଥିବେସେ କାହିଁ ।
ସଙ୍ଗେତ ସଖା ହୋଇ କେହି ନାହିଁ ॥
ଏ ମାର୍ଗେ ଗମନ୍ତେ ନ ପୁଣ ପ୍ରାଦ ।
ବ୍ୟଥାପାଇ ଚନ୍ତ ମନେ ବିଷାଦ ॥
ଆଖିରେ ଆଖିରେ ଲାଗି ସେ ରୂପ ।
ରତି ଗତାଗତ ଯେତେ ସମୀପ ॥
ମନ୍ଦ ମନ୍ଦ ହସି ମୁଖ-ପଙ୍କଜେ ।
ଚମକେ କରଜକ୍ଷତ ଉରଜେ ॥
ମନକୁ ଜାଣି ଭୃଙ୍ଗବିଦ୍ୟା ଭଣି ।
ନାଗର ରସିକ ଶେଖର ମଣି ॥
ପ୍ରେମଫଳ ବଢ଼େ ବିଚ୍ଛେଦ ଦୁଃଖେ ।
ଉପଭୋଗ ପୁଣ କରିବ ସୁଖେ ॥
ଜଗତେ ଏହୁ ମହା ବଳୀୟାର ।
ଏକାହେଲେ କି ପ୍ରମାଦ ତାହାର ॥
ଚାଲ ଆମ୍ଭେ ଏବେ ପୁଳନେ ଯିବା ।
ତହିଁ ଗୋପୀଙ୍କି ଲୋଡ଼ୁଥିବେ ଅବା ॥
ସମସ୍ତଙ୍କୁ କୃଷ୍ଣ ବିଚ୍ଛେଦ ଦୁଃଖ ।
ଏଥକୁ ସଖୀ ନ ଶୁଖାଅ ମୁଖ ॥
ସଜନୀ ବଚନେ ଦେବୀ ସୁମନ ।
ପୁଣ ପୁଳନ ବନକୁ ଗମନ ॥

ମନେ ବୋଲେ ବନେ ହୁଅସି ଯାହା ।
ଶୁଣିଥିବେ ଯହିଁ ମୋ ପ୍ରାଣନାହା ।
ଶ୍ୟାମଳା ବିମଳା ଯେ ଯୂଥେଶ୍ୱରୀ ।
ଭଦ୍ରା ଚନ୍ଦ୍ରାବଳୀ ଆଦି ସୁନ୍ଦରୀ ॥
ସୁହୃଦ ପ୍ରତିପକ୍ଷ ତଟସ୍ଥାଦି ।
ଏକମେଳରେ ରାଧା ଅନୁବାଦୀ ॥
ଏକପ୍ରାଣ ପାପୁ ପ୍ରୀତି ବହନ୍ତ ।
ସର୍ବେ ରାଧାଙ୍କୁ ପ୍ରବୋଧ କହନ୍ତି ॥
ଜାଣ ସଖୀ ସେଯେ ଶଠ ନାଗର ।
ଯେନ ଥାଇ ଥାନ୍ତି ଯାହା ସଙ୍ଗର ॥
ପାଷାଣୁଁ କଠିନ ତାହାର ଦେହୀ ।
ଦୁଃଖ ଦେଖି ଦୟା ବସଇ ନାହିଁ ॥
ବାଳକକାଳେ ବିନାଶେ ପୁତନା ।
ଯୁବାକାଳେ ନାଶି ଏତେ ଅଙ୍ଗନା ॥
ବନ୍ଧା ଦୁଷ୍ଟ ଯେହୁ ବଧକଲା ।
ଆମ୍ଭେମଲେ ତାଙ୍କ କି ଦୋଷହେଲା ॥
ଯାନ୍ତେ ଏମନ୍ତେଣ କହନ୍ତ ବାଳୀ ।
ସ୍ଥାନେ ସ୍ଥାନେ ମେଳ ପୁଳନେ ମିଳି ॥
ଗତ କେଳିସ୍ଥାନମାନକୁ ଗୃହିଁ ।
କୃଷ୍ଣଙ୍କୁ ଉଦ୍ଦେଶି ନପାଇ କାହିଁ ॥
ଅଙ୍ଗ ଉଲଗି ରଙ୍ଗରାଗ ଦେଖି ।
ପ୍ରବଳମତି ନପାରନ୍ତି ରୁଷି ॥
ପୁଣ ପୁଣ କାମ ଅଧିକେ ଗଞ୍ଜି ।
ସାତ୍ତ୍ୱିକ୍ୟ ବାଧିଣ ବିବେକ ହଜେ ॥
ଛଡ଼ା ଚନ୍ଦନ ମାଳକୁ ବହନ୍ତି ।
କେଳିସ୍ଥଳ ଧୂଳି ବୋଳିହୁଅନ୍ତି ॥
ରତି ପ୍ରବନ୍ଧ ଗତାଗତ ଯେତେ ।
ଚମକଇ ଚିତ୍ତ ଚିତ୍ରେଇ ଚିତ୍ତେ ॥
ସ୍ୱପନ ପ୍ରାୟେ ମଣି ଅପ୍ରତେ ।
କୃଷ୍ଣ ସଙ୍ଗ ତେଜ ରମିଲ୍ଲ ସତେ ॥
ଦଶନ ନଖଚିହ୍ନ ଅଙ୍ଗେ ଗୃହିଁ ।
ଅଧର ମଧୁର ପରତେ ପାଇ ॥
ହା ହା ନାଥବୋଲି ଅବନୀ ଲୋଟି ।
ଅପସ୍ମାରେ କେଶ ବସନ ଫିଟି ॥

ସେବନ କରନ୍ତି ଗାଇ ଗୁଣକୁ ।
ଗୋନାଥ ଡେଜଲ ଆଣି ବନକୁ ॥
ମୁରଲୀ ନାଦେ ଡ଼କାଇ ଭଣ୍ଡିଲ ।
କଦୋଷେ ଏତେ ଦଣ୍ଡକୁ ବଢ଼ାଇଲ ॥
ନବ ଅବଳା କୁଳରୁ ଛଡ଼ାଇ ।
ନାଶୁଅଛ କାମଜଳେ ବୁଡ଼ାଇ ॥
ବେଣୁକାଠେ ଭେଳାଗସେ ମଧ୍ୟର ।
ଏବେତ ଆସି ଉଶ୍ୱାସି ଉଦ୍ଧର ॥
ହେମକମେ ନୀଳମଣି ନାୟକ ।
ହଜଲେ ଗଞ୍ଜାଇ ଫୁଲ ସାୟକ ॥
ସେ ସେ ଅର୍ଜୁନ ଆଦ ତରୁଗଣେ ।
କଦ୍ୱଦଥ କନା ପାଇବୁଁ ଯେବଣ ॥
ମଦନ ଗଞ୍ଜନ ଅମୂଲ୍ୟ ଧନ ।
ହରାଇ ଯେଣୁ ତେଣୁ କୋପମନ ॥
କେବୋଲେ ଆମ୍ଭ ଜୀବନ ଈଶ୍ୱର ।
ନମିଷେ ମନୁଁ ନୁହଇ ବିସ୍ମର ॥
ଏତନ୍ ଯତନ କଲୁଁ ଯାହାକୁ ।
ଯେବେ ଲେଚ୍ଛଲେ ରଖିବୁଁ କାହାକୁ ॥
ତୁମ୍ଭର ପାଶେଗଲେ ହର ଗୁଡ଼ ।
ହେ ବନ ତରୁଲତା ଦଅ ଲୋଡ଼ ॥
ନୋହିଲେ ହତ୍ୟା ସେ ତୁମ୍ଭ ଉପରେ ।
ଦେଖ ଶଶୀ ବଶେ ଚନ୍ଦ୍ର ଅଙ୍ଗରେ ॥
କେହୁବୋଲେ ସେ ଶଶୀ ନଶିପ୍ରିୟା ।
ଯୁବଶଙ୍କ ସ୍ଥିର କରନ୍ତି ସୁଦୟା ।
ତୁମ୍ଭଠାରେ ଚନ୍ଦ୍ରଶୋଭା ଅନାଇ ।
ଆମ୍ଭଙ୍କୁ ବେଣୁନାଦରେ ଅଣାଇ ॥
କାଲ୍ୟକୋଳରେ ସବୁଅଛ ଦେଖି ।
ଏବେ ଆମ୍ଭଙ୍କୁ ତୁମ୍ଭରେ ଉପେକ୍ଷି ॥
ଆଶ୍ରୟ ଅଟ୍ଟେ କରଛୁଁ ତୁମ୍ଭଙ୍କୁ ।
କୃଷ୍ଣଚନ୍ଦ୍ର କାହିଁ କହ ଆମ୍ଭଙ୍କୁ ॥
ବୃନ୍ଦାବନ ତମେ ତୁମ୍ଭେ ଯେଯାନେ ।
କୃଷ୍ଣଚନ୍ଦ୍ର କନ୍ତୁ ଆମ୍ଭେ ଯେମନେ ॥
ଏମନ୍ତେ ଏକ ଏକନରେ ପଚ୍ଛଲା ।
ସମସ୍ତା ନପାଇ ତନ୍ତ୍ର ତନ୍ମଳା ॥

ହରଙ୍କି ହରନେଲ କେବା ଅନ୍ୟ ।
ସଭୟେ ଘନେ ଯେକରେ ଶଙ୍କୁନ୍ୟ ॥
ଶୁଭ ପ୍ରକାଶନ୍ତେ ହରସ ତେଜ ।
ମହାବଳୀ ସେ ମନେ ମନେ ହେଜ ॥
କଷ୍ଟରେ କଂସ ମଲ୍ଲକୁଳ ମାର ।
ମାଙ୍କୁ ପୁଣକେ ବନେ ନେବ ହର ॥
ରୂପେ ଲାବଣ୍ୟ ଅଖିଳ ବନ୍ଦନ ।
କେବଳ ପ୍ରେମରନ୍ଧ୍ରରେ ବନ୍ଧନ ॥
ଏମନ୍ତେ ଚନ୍ଦ୍ରଣ ଏକ ଆରକେ ।
ବନେସୁ ଭାବରେ ଜଣାନ୍ତି ଥୋକେ ॥
କେବୋଲେ ଜୀବ ଜୀବନ ବନ୍ଧୁଆ ।
ରସରାଜ କାମକେଳି କନ୍ଦୁଆ ॥
ଏକାନ୍ତେ ଯେତେ ଯେତେ ପୀରନ୍ତି ।
ଚେତୋଇ ଗୋନାଥ ହ୍ୱଆ କରନ୍ତି ॥
ଦାଇନ କରୁଛୁଁ ହୁଅ ପ୍ରସନ୍ନ ।
ଚନ୍ଦ୍ର ବଦନକୁ ଦଅ ଦର୍ଶନ ॥
କେବୋଲେ ନାଥ କରୁଣା-ସମୁଦ୍ର ।
ଏକାଲେ ହୋଇଲୁଁ କେଳ ଦରିଦ୍ର ॥
ଯେଉଁଦିନ ତୁମ୍ଭେ ଜନମ ଗୋପେ ।
ଜୟ ଯୁକତେ ଲକ୍ଷ୍ମୀ ଅନୁରୂପେ ॥
ନଜ ପରିଗ୍ରହ ଗୋକୁଳ ନାରୀ ।
ତୁମ୍ଭ ଯୋଗୁଁ ଜୀବ ଅଛୁଁଟି ଧରି ॥
ଗୋନାଥ ଲେଚ୍ଛଏ ବଚ୍ଛେଦ ଦୁଃଖ ।
କେଉଁଦିନେ ଅଛ ଦେଖାଅ ମୁଖ ॥
କେବୋଲେ ସୁରତନାଥ ବରଦ ।
ବରକୁ ଲଙ୍ଘି ଧାଏ ବପାଦ ।
ତୁମ୍ଭ ଅକଣା ଦାସୀଗଣ ଆମ୍ଭେ ।
ପୁଣ ପ୍ରୀତ ବନାଶ ଘରମ୍ଭେ ॥
ଶରତ ପଦ୍ମ ଶ୍ରୀହର ନୟନ ।
କଟାକ୍ଷ ଭେଦ ଧଇର୍ଯ୍ୟ ନଧାନ ॥
ଏବାଣେ ପୁଣକ ନୋହିଲୁଁ ବଧ ।
ଆଉକ କାମ ବଧିବାକୁ ସଧ ॥
କେ ଗୋପୀ ଗୁଣଗାଇ ବୋଲେ ପ୍ରଭୁ ।
ତୋଟରକ୍ଷି ସବ ବଧସ ଟଉଁ ॥

ବିଷ ଜଳପାନ ବନ ହୁତାଶ ।
ବାସବ ବଜ୍ର ବରଷା ବିନାଶ ॥
ଏହି ବନେ ଶଙ୍ଖାସୁର ହରଣ ।
ନାଶି ତାକୁ କଲ ଆମ୍ଭ ତାରଣ ॥
ଷଣ୍ମାସବ୍ୟୋମା ଆଦି ବିପଦ ଘୋରେ ।
ରଖିଛ ସାହାହୋଇ ବାରେ ବାରେ ॥
ଏବେ ଆପଣା ଇଚ୍ଛାଯେ ବିନାଶ ।
ହେଲା ନଦେଇଣ ଲେଛକ ଦୋଷ ॥
କେହୁଁ ପ୍ରିୟବର୍ଗ ବୋଲଇ ସଖେ ।
ପାଦରେଣୁ ଯେନେ ମସ୍ତକ ଶିଖେ ॥
ନକରୁ ଗୋପୀକା କନ୍ଦନ ବୃଦ୍ଧି ।
ନଷ୍ଟପ୍ରାୟ ପ୍ରାଣ ଜୀବକ ଆଉଷଧି ॥
ଭାଗ୍ୟେ ସତ୍ତ୍ୱବନ୍ତ କୁଳେ ଜନମ ।
ଗୋକୁଳ ଅଖିଳ ଜୀବ ପରମ ॥
ଅବନୀ ଭାର ଉଶ୍ୱାସ ନିମନ୍ତେ ।
ବିହି ପ୍ରାର୍ଥନା ଜଗତ ଗୋପତେ ॥
ଆଚମ୍ବିତ ନୋହୁଁ ଧରଣୀର ଭର ।
ଦର୍ଶନ ଦିଅ ବିନାଶ ନକର ॥
କେବୋଲେ ହେନାଥ ତୁମ୍ଭ ଚରଣ ।
ଜୀବନ କାରଣ ଭୟ ତାରଣ ॥
କଂସଦର୍ପ ଧ୍ୱଂସ ମାଲଯା ମାର ।
ଅଭୟ ଦେଇ ଯଦୁଙ୍କ ଉଦ୍ଧାର ॥
ମୃଦୁଳ ମଞ୍ଜୁଳ କମଳକର ।
ସର୍ବକାମ ଯେ ସର୍ବ ଦୁଃଖହର ॥
ଯେଉଁ ଶ୍ରୀକର ଆମ୍ଭଶିରେ ଲଦ ।
ଆଗ୍ରହରେ ସେ ବିପଦକୁ ଛେଦ ॥
କେବୋଲେ ବୀର ମଣ୍ଡଳମଣ୍ଡନ ।
ବ୍ରଜଜନର ଆର୍ତ୍ତ ଖଣ୍ଡନ ॥
ନିଜଜନ ଗର୍ବ ଭଞ୍ଜନ ବରଣ ।
ହାସ୍ୟ ଧ୍ୱଂସକର କି କାରଣ ॥
ଆମ୍ଭେ ଧନଲୋକ ନଶୁ ଶାରଣ ।
ରକ୍ଷାକର ପ୍ରଭୁ ସୀତା [illegible] ।
କଙ୍କର କନେ ତୁଅସି ପ୍ରସନ୍ନ ।
ନଳିନାନନ ଦିଅନ୍ତି ଦର୍ଶନ ॥

କେବୋଲେ ନାଥ ପଙ୍କଜଚରଣ ।
ଶରଣଜନ ଦୂଷଣ ହରଣ ॥
ଗାବ ଅନୁଗନ୍ତ ବନକୁ ବିଜେ ।
ଧରଣୀ ଶବ ଚକ୍ର ପଦ୍ମଧ୍ୱଜେ ॥
ଭବ ଉଶ୍ୱାସିଣ ତାପ ଖଣ୍ଡନ ।
ଶ୍ରୀନିବାସ ଫଣୀ ଫଣା ମଣ୍ଡନ ॥
ସେ ପାଦପଦ୍ମ କୁଚଯୁଗେ ଲଦ ।
ମନରୁ ମନସିଜ ତାପ ଛେଦ ॥
ବୋଲନ୍ତି ବୀର କମଳଲୋଚନ ।
ମୃଦୁ ମଧୁର ରୁଚିର ବଚନ ॥
ବର୍ତ୍ତିଧରେ ମନୋହର କାତର ।
ବାଳୀ ବାଳୀଣ ଏ କେତେ ମାତ୍ରର ॥
ବଂଶୀରେ ଭଷି ମନକୁ ବଢ଼ାଇ ।
ପଞ୍ଚଶରେ ଦେଲ ଆଣି କଢ଼ାଇ ॥
ମୂର୍ଚ୍ଛିତ ପରଜନକୁ ଜିଆଅ ।
ଏବେ ସେ ଅଧରୁ ସୁଧା ପିଆଅ ॥
କେ ବୋଲେ ହେନାଥ ମଦନାନଳ ।
ଲିଭାଇ ଆମ୍ଭଙ୍କୁ କର ଶୀତଳ ॥
ତୁମ୍ଭର କଥାମୃତ ରସାୟନ ।
ତାପିତ ଜନମାନଙ୍କ ଜୀବନ ॥
କବି ବର୍ଣ୍ଣିତ ବଚନ ହରେ ।
ଗାବନ୍ତେ ମାନସ କଳୁଷ ନାଶ ॥
ଶ୍ରବଣ ମଙ୍ଗଳ ଶ୍ରୀମତବନ୍ତ ।
ଗୁଣ ଗୁଣେ ଯେ ଜନ ମହନ୍ତ ॥
ଏତେ ଶାନ୍ତ ମନ ନୁହେ ଆମ୍ଭର ।
ଅଧିକେ ଦହେ ପୀରତି ତୁମ୍ଭର ॥
ଚପଳ ଧର୍ଚ୍ଛେ ଶୀଘ୍ର ଜଳ ପଡ଼ ।
ଯେସନେ ଜଳ ଉଠ ପୁଣ ପୋଡ଼ ।
ମନସିଜ ମନୁ ଜନମ ହେଉ ଛି ।
ଦାବାନଳ ଯେହ୍ନେ କାନନ ଦହି ॥
ଶ୍ୟାମଘନ ପ୍ରେମ ବନ ବଢ଼ାଇ ।
ଦହନ ବନ ନିର୍ବାଣ କାଳେ ॥
କେ ବୋଲେ ହେ ନାଥ କୁଞ୍ଜନାଗର ।
ନିଜ ଭ୍ରମଣେ [illegible] ॥

ସୁହାସ ବଦନେ ପ୍ରେମେ ଗୁନ୍ଥିବା ।
ନିଭୃତେ କେଳି ଭଙ୍ଗେ ଯା କହିବା ॥
ବିରହ ମଦନ ଉଦୟ କରି ।
ଧ୍ୟାନ ମଙ୍ଗଳ ସେ ସୁଖ ସୁମରି ॥
ହୃଦୟ ମଣ୍ଡଳେ କେ ପୁଣ ବସେ ।
ଅମୃତ ଖାଇଲେ ଆନକ ରୁଚେ ॥
ଏବେ ସେ ନାନା ଅମୃତ ବିସ୍ତାର ।
ଦାରୁଣ କାମ ମରଣୁ ନିସ୍ତାର ॥
ପ୍ରେମଭରେ କେ ବୋଲେ ପ୍ରାଣନାଥ ।
ଗାବ ଚରାଇ ଯାଅ ବନ ପଥ ॥
ଯେତେବେଳକୁ ଗୁଞ୍ଜ ହୁଅ ବାହାର ।
ଆନରେ ମନ ନରହେ କାହାର ॥
ବଦନ ଭ୍ରମର ଦୁଃଖ ଶ୍ରମ ଖେଦ ।
ମୃଦୁଳ ମଞ୍ଜୁଳ କମଳପଦ ॥
କଣ୍ଟକ ଶିଳା ତୃଣାଙ୍କୁର ଲାଗି ।
ନ ପୁଣ ରହେ ହୋଇ ଦୁଃଖଭାଗୀ ॥
କ୍ଷଣକ୍ଷଣକେ ପଥ ଅନୁସରି ।
ମଦନ ସୁଖ-ପୀରତି ବିସୋରି ॥
କେ ଗୋପୀ ବୋଲନ୍ତି ଗୋକୁଳ ବାରି ।
ଦିନାନ୍ତେ ବାହୁଡ଼ କୋପ ନିବାରି ॥
ଶିଙ୍ଗା ବେଣୁ ଶୁଣି ପାଉଛୁଟି ଆସୁଁ ।
ଦେଖିଣ ହୃଦୟ ବେଦନା ନାଶୁଁ ॥
ଲାବଣ୍ୟ ନଳିନ ଆନନେ ବେଢ଼ି ।
ଭାଲ କୁନ୍ତଳ ଗାବଳ ନେହେ ଚଢ଼ି ॥
ଗୋଧୂଳି ଭୂଷା ନଟବର ବେଶ ।
ପୁଣ ପୁଣି ଦେଖି ଲୋଭ ମାନସ ॥
ମନସିଜ-ଶର ଶରୀରେ ଭେଦି ।
ଏବେ ଆମ୍ଭ ଦେହୁ ବେଦନା ଛେଦ ॥
କେ ବୋଲେ ନାଥ ପଙ୍କଜଚରଣ ।
ଉତ୍ତମ ଲୋକ ପଶନ୍ତି ଶରଣ ॥
ପଦ୍ମାଦି ମଦେ ଧରଣୀ ମଣ୍ଡନ ।
ପରମ ମୋଦ ଦମନ ଶୋଭନ ॥
ଶରଣ ଜନ କାମନା କାରଣ ।
ରମଣୀ ମଙ୍ଗଳ ସ୍ତନେ ଧାରଣ ॥

ମଦନ ବେଦନା ହର ଆମ୍ଭର ।
ଦର୍ଶନ ଦିଅସେ ପାଦ ଭ୍ରମର ॥
କେ ବୋଲେ ଖରମଦନ-ମର୍ଦ୍ଦନ ।
ଅଧରାମୃତ ସୁରତ ବର୍ଦ୍ଧନ ॥
ପଞ୍ଚବାଣ-ରଣ-ଶ୍ରମ ଆସନ ।
ବିଚ୍ଛେଦ ଦୁଃଖ ସୁଖ ବିନାଶନ ॥
ବିଶେଷେ ବେଣୁ ଚୁମ୍ବିତ ସୁସ୍ୱରେ ।
ଶୁଣନ୍ତେ ଇତର ରାଗ ବିସ୍ମରେ ॥
ଏବେ ସେ ଅଧର-ସୁଧା ବରଷ ।
ବିରସ ତନୁ କରଅ ସରସ ॥
କେ ବୋଲେ ପ୍ରଭୁ ଯେବେ ଯାଅ ବନ ।
ନିମିଷେ ସଦନେ ନରହେ ମନ ॥
ତିଳକ ଯୁଗ କୋଟି କଳା ମଣୁ ।
ଖେଦଭରେ ଧରି ନପାରୁଁ ତନୁ ॥
ଯେବେ ଯମୁନା ଜଳକୁ ଯାଉଁ ।
ବନ ବାହୁଡ଼ା ଜଗି ଭେଟ ପାଉଁ ॥
କୁଟିଳ କୁନ୍ତଳ ଶ୍ରୀମୁଖ ଦେଖି ।
ଲୋଭେ ଲୋଚନ ନପାରେ ଉପେକ୍ଷି ॥
ପଲକ ପଡ଼ନ୍ତେ ନିନ୍ଦୁଲେ ରହୁଁ ।
ବିଧିକି ଜଡ଼ ବୋଲି ମନେ ଲେଖୁଁ ॥
ଏ ସୁଖ ମେତ୍ତୁ ଜଣାନ୍ତି ଯେବେ ।
କେସେ ପଲକ ଲଗାନ୍ତି ତେବେ ॥
ଏବେ ସେ ମୁଖ ଛବିକି ଦେଖାଅ ।
ଅମିୟ ତଖଇ ଜୀବ ରଖାଅ ॥
କେ ବୋଲେ ବିଦଗ୍ଧ ଶିରୋମଣି ।
କି ଛବି ହୃଦୟ ମୋହିଲ ଜାଣି ॥
ଭୁବନ ମୂରଛା ଗୀତେ ମୋହିତ ।
କନ୍ଦର୍ପ ପୁରରେ ନ ପଶୁଁ କହିତ
ପତି ସୁତ ପ୍ରିୟ ବାନ୍ଧବ ଭାଇ ।
କୁଳ ଲାଜ ଛାଡ଼ି ବନେ ଅଇଲୁଁ ଧାଇଁ ।
ତୁମ୍ଭ ସମ୍ମୋହନ ମନ୍ତ୍ର ବୋଲି
ମନ୍ତ୍ର କରିଣ ଚିତ୍ତ ହରିଲି ॥
ଅନ୍ତରେ ପୀରତି ବୃଦ୍ଧି କରାଇ ।
ଲୋଭାଇଁ ଏବେ ବାଣେ ମାରୁଛ ॥

ଏକାନ୍ତ କାନନେ ନବ କାମିନୀ ।
କେହୁ ତେଜଇକ ଏତେ ଯାମିନୀ ॥
କେ ବୋଲେ ଡକାଇ ଆଣି ଗଞ୍ଜିଲ ।
ବ୍ୟାଘ୍ର ଭଲୁଙ୍କ ମୁଖରେ ତେଜିଲ ॥
ଏତେମାନେ ମୂର୍ଚ୍ଛିତ ନୁହେ ତୁମ୍ଭଙ୍କୁ ।
ପୀରତି-ଧନେ କଣିଛ ଆମ୍ଭଙ୍କୁ ॥
ଏକାନ୍ତ ସ୍ଥଳରେ କେଳି ରଙ୍ଗରେ ।
ଚିନ୍ତିଲେ ମନେ ମନସିଜ ଡରେ ॥
ଏଘେନ ମାନ ନରହଇ ହୃଦେ ।
ଘେନିବା କେବେ କଥା ପଦେ ପଦେ ॥
ମୃଦୁହସିତ ହୋଇ ପ୍ରେମ-କଟାକ୍ଷେ ।
ମତ୍ତକ ବିକୋଶ ମାର ବିଶିଖେ ॥
ବିପୁଳ ଉର ଶ୍ରୀ ଶୁଭ ଭୁବନ ।
ବିଚକ୍ଷଣ ହେମ ରେଖା ଶୋଭନ ॥
ପୁଣ ପୁଣ ଚାହିଁ ସ୍ପୃହା ନୟନେ ।
ରତି ପ୍ରୀତିଭରେ ମଜ୍ଜଇ ମନେ ॥
କେ ବୋଲେ ଜଗନ୍ ମଙ୍ଗଳ-ଦାୟକ ।
ବ୍ରଜବାସୀ ଜନ କେଳିନାୟକ ॥
ଯେତେ ଯେତେ ଗୋପ ବିପଦ ଖଣ୍ଡି ।
ହସାଇ ରସାଇଣ ମୁଖ ମଣ୍ଡି ॥
ନ ତେଜ ଆମ୍ଭ ସୁହୃଦ ଆତ୍ମାକୁ ।
ନିଧନ ନକର ନିଜ ଜନକୁ ॥
ନିରତେ ତୁମ୍ଭ ଭାବେ ଅନୁରାଗୀ ।
ନିତି ପଡିରେ ଚିନ୍ତ ଦୁଃଖଭାଗୀ ॥
କେତେବୋଲେ ମୃଦୁଳ କୋମଳ ପାଦ ।
ବ୍ୟଥାକୁ ଚିନ୍ତ ପାଉଥାଉଁ ଖେଦ ॥
କେଳିକାଳରେ ମନେ ଭୟପାଉଁ ॥
କଠିନ ସ୍ତନେ ଶନୈଃ ଶନୈଃ ଦେଉଁ ॥
ସେ ପାଦ ପୁଣ ବନ ଗମନରେ ।
ଶିଳାଦି ବ୍ୟଥାକୁ ଭାବି ମନରେ ॥
ତୁମ୍ଭେ ଆମ୍ଭର ପରମ ଆୟୁଷ ।
ଏବେ ରଖ ଦେଇ ମୁଖ ପୀୟୂଷ ॥
ଏରୂପେ ଗୋପିକା ବିଳପ ବାଣୀ ।
ଦଶମ ଏକତ୍ରିଂଶ ଅଧ୍ୟାୟଭଣି ॥

ନାରଦ ବୋଲନ୍ତି ଶୁଣ ସୁମନ୍ତ ।
ଲତାନ୍ତରେ ଥାଇ ହରି ଶୁଣନ୍ତି ॥
ସାତ୍ତ୍ୱିକ୍ୟ ବାଢ଼ି ତନୁ ପୁଲକଇ ।
ପ୍ରେମ-ଲୋତକ ନେତ୍ରୁ ବରଷଇ ॥
କଣ୍ଠ ଗଦ ଗଦ ହୋଇ ଆସଇ ।
ରତି ପ୍ରୀତିରେ ମନ ବିଳସଇ ॥
ଧୀରେ ଧୀରେ ଲତାଡାଳ ଓଲାଇ ।
ତରତରେ ହରି ସାଦ ବଢ଼ାଇ ॥
ଲୁଚି ଲୁଚି ଗୋପୀ ସନ୍ନିଧି ମିଳି ।
ଚନ୍ଦ୍ରିକା ପ୍ରେମେ ଉର୍ଦ୍ଧ୍ୱନାକୁ ଭଳି ॥
ଜଳଦେ ବିଜୁଳି ଜ୍ୟୋତି ଝଟକେ ।
ଯୁବତୀ ମଧ୍ୟେ ବିଜୟ ଛଟକେ ॥
ସିଂହ କଟିତଟେ ପୀତ ଦୁକୂଳ ।
ଉରେ ଧରିଣ ହାର ବନମାଳ ॥
ମଧୁର ହାସ କମଳ ବଦନ ।
ସାକ୍ଷାତ ମଦନ ପରେ ମଦନ ॥
ଦେଖି ବାଳୀବୃନ୍ଦ ଆନନ୍ଦମନ ।
ପାଇଲେ ଯେମନ୍ତେ ହଜିଲା ଧନ ॥
ପୁଣ ପୁଣ ଗୋପୀ ନିରେଖି ଶୋଭା ।
ହୋଇଛନ୍ତି ଅଙ୍ଗଭଙ୍ଗିରେ ଉଭା ॥
ଦେଲେ ଯୁବତୀ ମକର ଆସନ ।
ଶେଜାଇଣ ଉପରିଣ ବସନ ॥
ପ୍ରେମଭରେ ହରି ତହିଁ ବସାଇ ।
ମାନ ଅନୁରାଗ କାମ ମିଶାଇ ॥
କ୍ଷୋଭ ତେଜିଲେ ଭାବରେ ମଜିଲେ ।
ନେତ୍ର-କମଳ ଫୁଲରେ ପୂଜିଲେ ॥
ପଲକ ନଚଳେ ଖ୍ୟାତି ବିଘନେ ।
ଚଉଚାରୁଣେ ବେଢ଼ିଣ ନିଘନେ ॥
ବିଚ୍ଛେଦ ଚିନ୍ତା ପ୍ରେମେ ମିଶି ସ୍ୱାଦ ।
ଭାପନ୍ତି ବାଳୀ ଭାବେ ଗଦ ଗଦ ॥
ଏକାନ୍ତ ବନରେ ନବ ଅବଳା ।
ମଧୁ ମତ୍ତରେ ମଦନେ ବିହ୍ୱଳା ॥
ତେଜିବା ସତ ବିକଳ କେମନ୍ତେ ।
ନାବ ବୁଡାଇ କୂଳନ୍ତି ତଡାନ୍ତେ ॥

ମନ ବଢ଼ାଇ କୁଳରୁ ଛଡ଼ାଇ ।
ବାଇ କରାଇ ମୁରଲୀ କଢ଼ାଇ ॥
ବଢି ଜଟିଳ ଗଲ ଭେଳା ବୁଡ଼ାଇ ।
ଆମ୍ଭେ ମଲେ ହୋନ୍ତା କେଉଁ ବଡ଼ାଇ ॥
ମନ୍ଦହସି କୃଷ୍ଣ ବୋଲନ୍ତି ସଖି ।
ଶରଧା ତୁମ୍ଭ ଶୋକମୁଖ ଦେଖି ॥
ପ୍ରତ୍ୟକ୍ଷେ ବାମତାରେ ବଇରାଗ ।
ବିଚ୍ଛେଦେ ଜାଣିବା କ ଅନୁରାଗ ॥
ଏଥିପାଇଁ ସଖୀ ଅନ୍ତର ହେଲୁଁ ।
ଯେଣେ ଯାଅ ତେଣେ ଗୋଡ଼ାଇଥିଲୁଁ ।
ବନରେ ପୁଚ୍ଛ ତୁମ୍ଭେ ଯେତେ ପୁଣି ।
ହାସ ଉଲ୍ଲାସ ହେଉଥାଉଁ ଶୁଣି ॥
ନିନ୍ଦା ଭର୍ତ୍ସନା ତର୍ଜ୍ଜନ ବନ୍ଦନ ।
ହେଲ ଯେସନ୍ତ ଚକ୍ଷୁଃସମ ଚନ୍ଦନ ॥
ହେ ସଖୀ ତୁମ୍ଭର ଜାଣିଲୁଁ ମନ ।
ନଦେଖି ନଗଲ ନ ତେଜ ବନ ॥
ଏତେ ଅନୁରାଗ ମୋର ବିଷୟେ ।
ଗୂଢ଼ ପ୍ରେମ ତଳେ ନାହିଁ ସଂଶୟେ ॥
ପ୍ରୀତି-ଧନରେ କିଣିଲ ଆମ୍ଭଙ୍କୁ ।
କେଦେଇ ଋଣ ଶୁଝିବା ତୁମ୍ଭଙ୍କୁ ॥
କାଲେକାଳେ ତୁମ୍ଭ ହୋଇଲୁ ଋଣୀ ।
ଅଙ୍ଗ କଣ୍ଟା ଖାଇଲା ତରୁଣୀ ॥
ଲଳିତା ବିଶାଖା ଚିତ୍ରାଦି ସଖୀ ।
କହନ୍ତି ରାଧାଙ୍କୁ ଲୁଚାଇ ରଖି ॥
ମକରଧ୍ୱଜ ମଦନ ମୋହନ ।
ଇତି ପ୍ରିୟବଞ୍ଚି ରାଧା ବିହୀନ ॥
ଶୋଭା ନଦିଶଇ ସଜନି ନାହିଁ ।
ସଙ୍ଗେ ନେଇ ଛାଡ଼ିଅଇଲ କାହିଁ ॥
ଏକା କରଣ ନିବେଶିଲ କେଣେ ।
ନଦେଖି ସଖୀଙ୍କି ଝୁରନ୍ତି ଏଣେ ॥
ଆଜନ୍ମ ସୁକୁମାରୀ ନୃପସୁତା ।
ତାଙ୍କୁ ଦେଲ ଆଣି ଏଡ଼େ ଅବସ୍ଥା ॥
କୁଟିଳ କପଟୀ ଶଠ ନାୟକ ।
କଣ୍ଠରୁ ଶିର ଖସିଲ ପ୍ରାୟକ ॥

ଫୁଲଗର୍ଭ ପ୍ରାୟେ ଯେସନେ ଥିଲ ।
ଭୋଗକରି ବାସି ପକାଇଦେଲ ॥
କାହିଁ ଛାଡ଼ିଅଛ ଦିଅସି ଲେଉ ।
ନପାଇଲେ ଭଲେ କେଦେବ ଛାଡ଼ ॥
କାମ-ରାଜାକୁ ଗୁହାରି କରିବୁଁ ।
ବନେ ବିବେକ ମହତ ସାରିବୁଁ ॥
ରସିକ ଶୁଣି ହୋଇ ହସ ହସ ।
ବୋଲନ୍ତି ସଖୀଗୋ ନପାଅ ପ୍ରାଣ ॥
ଶିର ଖସିଲେ କଣ୍ଠରୁ ଯାହାର ।
ଲୋଡ଼ିଲେ ଭେଟ କହିବ ତାହାର ॥
ତୁମ୍ଭ ପାଇଁ ସେ ଆମ୍ଭଙ୍କୁ ଛାଡ଼ିଲେ ।
କଣ୍ଠରେ ନଅଟନ୍ତେ ଖସି ପଡ଼ିଲେ ॥
ବନ ଦେଖାଅ ତୁମ୍ଭେରେ ମିଳାଇ ।
ଶିର ସ୍ଥାନ ଜନ ଉପ୍ତେ ଚଳାଇ ॥
ଶୋଭା ନୁହେ ସଖୀ ତାଙ୍କ ଅଭାବେ ।
ତାଙ୍କର ରୂପ-ଉତ୍ସବ ସ୍ୱଭାବେ ॥
ସ୍ୱରୂପ ତୁମ୍ଭ ଆଗରେ କହିଲୁଁ ।
ଯେତେକ ଭର୍ତ୍ସିଲ ତାହା ସହିଲୁଁ ॥
ଆଜ ଯା ପୁଚ୍ଛିବ ତାହା କହିବୁଁ ।
ଶଶିମୁଖୀ କ ଯେମନ୍ତ ପାଇବୁଁ ॥
ପ୍ରସନ୍ନ କରାଇ ବସାଅ କୋଳେ ।
ଅନ୍ତ ଜଳ କର ପ୍ରେମ ଯେକାଳେ ॥
ବାମା ମନମୋହି ମୃଦୁ ମଧୁରେ ।
ଅପାଙ୍ଗରେ ମନ୍ଦହାସ ଅଧରେ ॥
ଛଳିବା ପରିବା ରତି ଚତୁରୀ ।
ବଚନେ ବର୍ଣ୍ଣି ନପାରେ ଚାତୁରୀ ॥
ଏକ ଆରେକେ ମୁଖ ଚୁମ୍ବାଚୁମ୍ବି ।
ରୂପରେ ପୁଣ ହୋଇ କୁହାକୁହି ॥
ନିର୍ଭୟେ ମନରୁ ମାନ ଛାଡ଼ିଲେ ।
ପ୍ରେମ ଛନ୍ଦରେ ପ୍ରସଙ୍ଗ ବାଢ଼ିଲେ ॥
ଚତୁରୀ ବୋଲନ୍ତି ହେ ବିଦଗଧ ।
ତତ୍ତ୍ୱର କଥାର କହିବା ଭେଦ ॥
ନ ଭଜିଲେଣ କେହି ନ ଭଜନ୍ତି ।
ଭଜିଲେ ପୁଣି ସେ କେହି ଭଜନ୍ତି ॥

ଏ ଗୁଢ଼କଥା କହସି ବିସ୍ତର ।
ତୁମ୍ଭ ବଚନ ମରମ-ଚତୁର ॥
ନିହେତୁ ଏଥିରେ ଅଛଇଁ ପୁଣ ।
କହିବା ଗୋଟି ଗୋଟି କରି ଶୁଣ ॥
ସାର ଏ ରସମଧ୍ୟେ ଶୃଙ୍ଗରରସ ।
କାନ୍ତ ସଖ୍ୟ ବାତ୍ସଲ୍ୟ ଆବର ଦାସ୍ୟ ॥
କାନ୍ତ ନଭଜେ ନଭଜେ କାମିନୀ ।
ଭଜନ୍ତେ ଭଜେ ସଖା ଭାବଯେନ ॥
ନଭଜେ ସୁତ ନଭଜେ ତାତମାତ ।
ଭଜନ୍ତେ ନଭଜେ ଦାସ୍ୟେ ପ୍ରଭୃତ୍ୟ ॥
ଭଜନ୍ତି ଲୋକଙ୍କୁ ନଭଜେ ଯେବେ ।
ପ୍ରଭୁ ହୋଇଲେ କୃତଘ୍ନ ତେବେ ॥
ଶୁଣି ଈଷିତେ ବାଳୀ ମୁଖ ପୋଡ଼ି ।
ଏକ ଆରକେ ନେତ୍ର ଗତାଗତି ॥
ଶେଷେଯେ କହିଲେ ସେହିଟି ଏହି ।
ଜପ୍ରୋଧେ ଫେଡ଼ି ନକହନ୍ତି କେହି ॥
ଇଙ୍ଗିତ ଜାଣି ହରି ସଙ୍କୁଚିତ ।
ଆମୃତ ମୁଖେ କୁହାଇ ଜଟିତ ॥
ପୁଣ ସଭାରେ କଥା ଉଳୁଟାଇ ।
ଫଣପୁ ରଖି ନକହି ଫିଟାଇ ॥
ଛବ ପାବେ ଅପବାଦେ ପ୍ରମାଦେ ।
ଦେବ ବିବାଦେ ଭାବ ଅନୁବାଦେ ॥
ଏକାକୀ ରମଣୀ ତେଜିଲ ବନେ ।
କହ ଲକ୍ଷଣ କେବେ ଗୃହଜଣେ ॥
କୃଷ୍ଣ ବଦନ ଲମ୍ବାଇ ମଉନ ।
କେହି ସମସ୍ୟା ନକହି ପ୍ରମ୍ବନ ॥
ବୃନ୍ଦା ଗୃହିଁ ଶାସ୍ତ୍ରଶୁକେ ପଚାରି ।
କହ ଏଥିର ସମାଧ୍ୟା ବିସ୍ତର ॥
ଶୁକ ଭାଷନ୍ତି କଉଶିକ ଋଷି ।
ତେଜି ବନେ ମେନକାକୁ ବିଳସି ॥
ପ୍ରୀତିଯେହ ଶାପ ନଦେଲେ ଏଣୁ ।
କନିଷ୍ଠ ନିଷ୍ଠୁରେ ଗଣିତା ଯେଣୁ ॥
ଅପବାଦେ ରାମ ତେଜିଲେ ସୀତା ।
ଯଥାର୍ଥ ଯେହି ଏ ନ ପତିବ୍ରତା ॥
ପ୍ରୀତିକର ପୁଣ ତେଜିଲେ ଯାହା ।
ମଧ୍ୟମ ନିଷ୍ଠୁର ଜାନକୀ-ନାହା ॥
ଦେବ ବିବାଦେ ହେ ନଳ ନୃପତି ।
ବିନା ଦୋଷରେ ତେଜିଲେ ଦମୟନ୍ତୀ ॥
ଗରିଷ୍ଠ ନିଷ୍ଠୁର ସଙ୍ଗ ବିହୀନ ।
ଏତେ କହି ଶୁକ ହେଲେ ମଉନ ॥
ଲଳିତା ବୋଲେ କହିଲେ ତିନ ।
ଆରକୁ ନକହି ହେଲେ ଭିନ ॥
ଶାରିକା ବୋଲେ ଯେ ବସିତ ମହିଁ ।
ଏ କୃଷ୍ଣପ୍ରେମ ଅନୁବାଦେ ତେଜି ॥
ଅନୁରାଗୀ ରାଜ ବନ୍ଧଣ କନ୍ଧେ ।
ପକାଇ ତେଜିଗଲେ ବନ ମଧ୍ୟେ ॥
କନିଷ୍ଠ ମଧ୍ୟ ଗରିଷ୍ଠୁଁ ବାହାର ।
ଏତେ ନିଷ୍ଠୁର ହୃଦୟ କାହାର ॥
ଶୁଣି ଲଜ୍ଜିତ ହରି ଗୋପିକାରେ ।
ବୃନ୍ଦା ରସନା ଚିପି ଶାରିକାରେ ॥
ରାଧା ମାନ ବାଧା ହୃଦୟ ବ୍ୟଥା ।
ନକହି ମାଧବ ଲମ୍ବାଇ ମଥା ॥
ଗୋବିନ୍ଦ ନିର୍ବେଦ ଦେଖି ଶ୍ରୀମତୀ ।
ମାନ ତେଜି ରସ-ବିଳାସେ ମତି ॥
ପତିଙ୍କ ଗୃହିଁ ରତିକ ସରଳ ।
ବେଳୁଁ ବେଳ ହୁଏ କାମ-ପ୍ରବଳ ॥
କୁନ୍ଦଲତା ଧରି ରାଧିକା କର ।
ବୋଲନ୍ତି କୃଷ୍ଣ କୋଳେ ବିଜେକର ॥
କାନ୍ତ ଲଭିଲ ଆଉ କି ବିଚାର ।
ଈଧି ମହତ୍ତ୍ୱ ରସକୁ ସଞ୍ଚାର ॥
ତରୁଣୀ କୁଳ ଶିରୋମଣି ଧନୀ ।
ଅଭିଷେକ ହୁଅଂ ଗୋବିନ୍ଦ ଯେନି ॥
ରାସ ଲୀଳାରେ ନବ ନାଟୋଇ ।
କୃଷ୍ଣପକ୍ଷ ହୋଇ ମନେ ଗୃଟୋଇ ॥
ସୁହୃଦମତେ ସ୍ତୁତିଶ୍ଲୋଗ ବୋଲେ ।
ଈଷମାନ କଲେ ବସ ନୋ କୋଳେ ॥
ଏମନ୍ତେ ସଖୀ କହନ୍ତି ବଣିଛ ।
ନାହିଁ ନାହିଁ କରି ମୁଖ ହାଲଇ ॥

କେବଳ ନଜାଣି ହରାଇ ବୁଦ୍ଧି ।
ଏବେ ହରାଇବା ମହତ ନିଧି ॥
କର ଧରି ସଖୀ ନିଅନ୍ତି ବଳେ ।
ମନ ଚରଣ ଆଗହୋଇ ଚଳେ ॥
ପଦ୍ମଣ୍ଡ ଦଶ ମଣି ଶତ କୋଶ ।
ଲଜ୍ଜା ହରଷ ମିଶି କୃଷ୍ଣପାଶ ॥
ପାଉଛନ୍ତି ଆସି ହରି କୋଳେ ଧରି ।
ମକର ଆସନରେ ବିଜେକରି ॥
ନବ କାମକୋଳେ ନବ ରତିକ ।
ମୋହିଲେ ସର୍ବ ଯୁବତୀ ମସ୍ତକ ॥
ବୃନ୍ଦା ଦେଲେ ଫୁଲ କୋଦଣ୍ଡ ହାତେ ।
ଭୃଙ୍ଗ ପୁଣି ପଞ୍ଚବାଣ ସଙ୍ଗତେ ॥
ଶରଦ ଯେନ ଷଡ଼ଋତୁ ସେବି ।
ଯେଝା ସମସ୍ତ ଭାବ ଅବଲମ୍ବି ॥
ସଜନୀଗଣ ଦେଇ ହୁଳହୁଳି ।
ସଙ୍ଗତେ ଆନନ୍ଦ ସିନ୍ଧୁ ଉଚ୍ଛୁଳି ॥
ପାରୁଶେ ରହି ସେବା ଯେ ଯାହାରେ ।
ଛତ୍ର ଚାମର ଚାମର କାହାରେ ॥
ଖଡ଼୍ଗ ଆଲଟ ବଞ୍ଜଣି ଦର୍ପଣ ।
ରତ୍ନ ଝରିବାସ ବାରି ଅର୍ପଣ ॥
ହିଡ଼ପ ପାନ୍ଥ କର୍ପୂର ତାମ୍ବୂଳ ।
ଚଉର ସମଫୁଲ ଗନ୍ଧ ମାଲ୍ୟ ॥
ବସନ ଆଭରଣ ଅଳଙ୍କାର ।
ରାଜ ଉପଚାର ଯେତେ ପ୍ରକାର ॥
ଫଳରେ ବୃନ୍ଦା କଲେ ଅଭିଷେକ ।
ଦେଖିଣ ସକଳେ ଭାବେ ପୁଲକ ॥
ବିବିଧ ବାଦ୍ୟ ନୃତ୍ୟ ଗୀତରଙ୍ଗେ ।
ବେଢ଼ି ମଣ୍ଡନ୍ତି ବୃନ୍ଦା ଯେଝାସଙ୍ଗେ ॥
ବୃନ୍ଦା ଜଣାନ୍ତି ଶ୍ରୀଦେବ ମହିମା ।
ନୃତ୍ୟକୁ ସାବଧାନ ନୃପ ଜେମା ॥
ଶ୍ୟାମ ଅଙ୍ଗେ ହେମ ଗଉରୀ ଛଳି ।
ନବଘନେ ଯେସନ୍ଥି ସ୍ଥିର ବିଜୁଳି ॥
ଏକ ଆର ନୃତ୍ୟ ଦେଖି ପ୍ରଶଂସେ ।
ପ୍ରସାଦ ଶାଢ଼ୀ ଚନ୍ଦନ ବିତରେ ।

ରାଜକନ୍ୟା ତା ନାମ ଚନ୍ଦ୍ରକଳା ।
ନବାଙ୍କଶୋଭୀ ନୃତ୍ୟରେ କୁଶଳା ॥
ରୂପ ଗୁଣରେ ହରି ମନ ମୋହି ।
ପ୍ରେମଭରେ ହାସ କଟାକ୍ଷେ ଚାହିଁ ॥
ଦକ୍ଷିଣପାଶେ ଭୃଙ୍ଗବିଦ୍ୟା ଥିଲେ ।
ପ୍ରଭୁ ତାହାଙ୍କୁ ଚାହିଁ ଆଜ୍ଞା ଦେଲେ ॥
ଭୂମ୍ବର କରି ଆଣିଛ ତାହାକୁ ।
ନିତି ଏ ସେବା କରିବେ ଏହାଙ୍କୁ ॥
ଆଜ୍ଞା ଘେନ ସଖୀ ତାଙ୍କରେ ମିଳେ ।
ନିଜ ଶୋଭା ବାଁସ ଭୂଷଣ ଦେଲେ ।
ବୀଣା ବାଦ୍ୟକୁ ଦେଇ ତାଙ୍କ ହସ୍ତେ ।
ସମର୍ପିଲେ ରାସେଶ୍ୱରୀ ଅଗ୍ରତେ ॥
ଏମନ୍ତେ ସେହୁ ଅବଧାନ କରି ।
ଦେଖାଇ ଶିଖାଇ ନୃତ୍ୟ ପ୍ରଚୁର ॥
ଗଉଁ ଶତେଗୁଣ ପ୍ରେମ ବଢ଼ିଲେ ।
ଅନଙ୍ଗ ଅନୁରାଗରେ ବୁଡ଼ିଲେ ॥
ଅଧିମହତ ରାସ ଆରମ୍ଭରେ ।
ରାଧା କୃଷ୍ଣ ଏକ ପରିରମ୍ଭରେ ॥
ଅଙ୍ଗେ ଅଙ୍ଗ ଲଗ୍ନ ମୁଖେ ମୁଖକୁ ।
ଚିନ୍ତି ବିଚ୍ଛେଦ ଦାରୁଣ ଦୁଃଖକୁ ॥
ଏକେ ବେଣୁ କରେ କରେ ପ୍ରଚୁରେ ।
ଅଧରେ ଅଧରେ ଗୀତ ଉଚ୍ଚାରେ ॥
ବେଢ଼ି ଯୁବତୀ ଗାବନ୍ତି ହରଷେ ।
ବାଆନ୍ତି ତାଳ ଭାବନ୍ତି ହରଷେ ॥

ଯଥା ରାଗେଣ ଗୀୟତେ ।

ଯମୁନା କୂଳରେ ପୁଳିନ ବନରେ ମାନିନୀ ମାନରେ
ଗୋପିକା ନାୟକ କୁସୁମ ସାୟକ ମକର ଯାନରେ ।
। ଘୋଷା ।

ଦେଖ ଦେଖ ଶୋଭାରେ ନବୀନ ମଦନ ।
ରାଧାକୃଷ୍ଣ ଦୁହିଁ ଏକାଠି ମୁରଲୀ ବଦନ ।
ହାଇ ହାଇ ।
ଉର ଉଲ୍ଲସଇ, ମନ ବିଳସଇ, ମଧୁର ବଚନ,
କଟାକ୍ଷ ବାନ୍ଧିଛ, ମରମ ଭେଦଇ କମଳ ଲୋଚନ ।

ହାଇ ହାଇ । ସୁରଶ୍ରି ଦୋହନ, ଆଭରଣ ମୋହନ,
ପୀରତି ବଶରେ ।
ରସ ଉଚ୍ଛବରେ, ବିବିଧ ଭାବରେ,
ସୁରତି ରସରେ । ମୁରଲୀ ନାଦରେ, ବୋଲନ୍ତି
ସଧୀରେ, ରାଧିକା ରାଧିକା । ଅଙ୍ଗନା ରତନ
ରଙ୍ଗିମା ଯତନ, ମୋପ୍ରାଣ ଅଧିକା ।
ତା ଥେଇ ତା ଥେଇ ତାଳ ମାନରେ ।
ହସ୍ତ ନେତ୍ର ଗତି ଆଳୁ ଆନରେ ॥
ଅଙ୍ଗ ଭଙ୍ଗିମା ରଙ୍ଗିମା ଅଧରେ ।
ମନ୍ଦ ଇଷିତ ସଙ୍ଗୀତ ବନ୍ଧରେ ॥
କୃଷ୍ଣା କୁଣ୍ଡଳ କାଞ୍ଚନ ଜଡ଼ାଉ ।
ହେମ ମେଖଳା ରତ୍ନ ଦାଉ ଦାଉ ॥
ହୀର ହାର ମାଳ ଗତି ଛଟକେ ।
ହାଟକ ତାଟଙ୍କ ଜ୍ୟୋତି ଝଟକେ ॥
କଙ୍କଣ କିଙ୍କିଣୀ ନୂପୁର ନାଦେ ।
ମୃଦୁ ମଞ୍ଜୁଳ ତାଳ ଅନୁବାଦେ ॥
ଶ୍ରମ-ଜଳ-କଣା ଶୋଭେ ଶ୍ରୀଅଙ୍ଗେ ।
କୁଙ୍କୁମ ଚନ୍ଦନ କସ୍ତୁରୀ ସଙ୍ଗେ ॥
କୁସୁମ-ଗନ୍ଧ ମାଳ ଉର ତଟେ ।
ଅଙ୍ଗ ସୁଗନ୍ଧ ଚେନ୍ଦଣ ଚହଟେ ॥
ନବ ବୟସୀ ଏକୁ ଆରେ ଶୋଭା ।
ହରି ସନ୍ଧିରେ ମନ ମୋହ ଲୋଭା ॥
ବୃନ୍ଦା ବିଧାନେ ମକର ଖେଳଇ ।
ତାଳମାନ ଭଙ୍ଗ ରଙ୍ଗେ ଚଳଇ ॥
ରାଧା ଗୋବିନ୍ଦ ଅଙ୍ଗ ଅବଲମ୍ବେ ।
ଚନ୍ଦ୍ର ଗତି ପ୍ରାୟେ ମକର ଭ୍ରମେ ॥
ଜୟ ଜୟ ଧ୍ୱନି ସକଳ ସ୍ଥାନେ ।
କୁସୁମ ବରଷି ମଙ୍ଗଳ ଗାନେ ॥
ମଣ୍ଡଳୀ ବେଢ଼ିଣ ନୃତ୍ୟରେ ବାଳୀ ।
ଗତି ମତି ସଙ୍ଗେ ଗୋବିନ୍ଦ ମିଳି ॥
ମନ ବଳୁଚ୍ଚ କରେ ଏକେ ଏକେ ।
ମୋହରେ ମାଧବ ସ୍ନେହ ଅଧିକେ ॥
ରାଇ କାନ୍ତିରେ ଶ୍ୟାମ ଜ୍ୟୋତି ମିଶି ।
ଭ୍ରମେ ଗଉର ବର୍ଣ୍ଣ ଏକ ମିଶି ॥
ପ୍ରେମଭରରେ ମଣେ ମନ ଉଲ୍ଲାସେ ।
ରାଈ ତେଜ ହରି ମୋ ପାଶେ ଆସେ ॥
ସ୍ୱରେ ସ୍ୱରେ ମିଳି କରେ ଗାୟନ ।
ଢାଳ ମୃଦଙ୍ଗ ଦୁନ୍ଦୁଭି ବାୟନ ॥
ବୃନ୍ଦାବନ ବାସୀ ଅବଲୋକନ୍ତି ।
ନିଶି ଶଶୀ ସଙ୍ଗ ନଭେ ସ୍ତମ୍ଭନ୍ତି ॥
ପ୍ରେମରେ ଗୋପୀଙ୍କି ଯେତେ ଗଞ୍ଜିଲେ ।
ତେତେରୂପେ ମହାଭାବେ ଭଜିଲେ ॥
କୃଷ୍ଣ ଅଙ୍ଗ ସଙ୍ଗ ଲଭି ଅଙ୍ଗନା ।
ପୂର୍ଣ୍ଣ କଲେ ଯେଝା ମନସ୍କାମନା ॥
ଯେ ଶଙ୍କର ବ୍ରହ୍ମା ଯେହୁ ଦୁର୍ଲ୍ଲଭ ।
ଭବେ ଗୋପୀଙ୍କି ହୋଇଲେ ସୁଲଭ ॥
ଏମନ୍ତେ ରସ-ଉତ୍ସବ ବଢ଼ାଇ ।
ବିବିଧ ବାଜଣା କରି ଛଡ଼ାଇ ॥
ବହୁ ରୂପ କୃଷ୍ଣ ଏକଇ ଅଙ୍ଗ ।
ବରଷା ଜଳ ଯେହ୍ନେ ସିନ୍ଧୁ ସଙ୍ଗ ॥
ସୁରସ ବାରିଧି ରସ-ଲମ୍ପଟ ।
ଶ୍ୟାମ ଘନ ସେହୁ ରସ ଉଦ୍ଧରି ॥
ବରଷି ତାପ ନାଶି ଗୋପୀକୁଳ ।
ପୁଣ ବହୁ ସେହୁ ସଙ୍ଗରେ ମୂଳ ॥
ଘନରସେ ଗୋପୀ ଗାତ୍ର ଶୀତଳେ ।
ଭାବେ ମଜ୍ଜି ମହା ଆନନ୍ଦ-ଜଳେ ॥
କୃଷ୍ଣଙ୍କୁ ବେଢ଼ି ମଣ୍ଡଳୀ ବସିଲେ ।
ମଳୟ-ପବନେ ଶ୍ରମ ନାଶିଲେ ॥
ଗୋବିନ୍ଦ ବୋଲନ୍ତି ଗୋପୀଙ୍କି ରାହି ।
ନୃତ୍ୟରଙ୍ଗରେ ଅଛ ଶ୍ରମପାଇ ॥
ଏବେ ଚାଲ ଜଳକେଳି କରିବା ।
ଶୀତଳ ହୋଇଣ ଶ୍ରମ ହରିବା ॥
ରାଧା ସଙ୍ଗରେ ମକର ବାହାନେ ।
ଚଳନ୍ତି ସକଳ ଗୋପୀ ଗହଣେ ॥
କାଳିନ୍ଦୀ ପଶି ଜଳରେ ପଶିଲେ ।
ନଉକା ପ୍ରାୟେ ମକର ଭାସିଲେ ॥
ଚଉପାଖରେ ବେଢ଼ିଣ ବାଳୀ ।
କର କମଳରେ ଜଳକୁ ଟେକି ॥

କରନ୍ତି ରାଧ କୃଷ୍ଣ ଅଭିଷେକ ।
ଜଳ କେଳିରଙ୍ଗେ ଅତି ଉତ୍ସୁକ ॥
ମଦନ-ସଙ୍ଗେ ପୂର୍ଣ୍ଣେ ମଧୁପାନ ।
କଲେ ଯମୁନା ଅଦଭୁତ ସ୍ନାନ ॥
ଏକ ଆରକେ ଜଳ ମାରାମାରି ।
ବୁଡ଼ି ରହନ୍ତି ହୋଇ ଧରାଧରି ॥
ଲୀଳାରେ ପଦ୍ମକୁମୁଦ ଉପାଡ଼ି ।
କୁତୁହଳେ ଏକ ଆରକେ ତାଡ଼ି ॥
ଉତ୍ପଳକୁଳ ଭ୍ରମନ୍ତି ଅବା ସେ ।
ବସନ୍ତି ବଦନ ପଦ୍ମ ସୁବାସେ ॥
ନିବାରେ ଖିରୁ ଉପ୍ସେ କରପଦ୍ମେ ।
ବୃନ୍ଦ କଙ୍କଣ ରଣଝୁଣ ନାଦେ ॥
ଉପରାଣ ବାସ ଖସିଣ ପଡ଼ି ।
ଉରଜ ଯୁଗ ହସେ ଜଳେ ଜଡ଼ି ॥
ଅବସ୍ଥା ଦେଖିଣ ହସନ୍ତି ହରି ।
ଅସମ୍ଭାଳରେ ସଖୀ କୋଳକରି ॥
ମକରୁଁ ଉତ୍ତୁରି ଆରତେ ହରି ।
ଗୋପୀଙ୍କି ସମ୍ଭାଳି ଭୁଙ୍ଗ ନିବାରି ॥
ଝୀନ ବସନେ ଅଙ୍ଗ ଶୋଭାହସେ ।
ରସିକବର ଦେଖି ମନରସେ ॥
ଶୀତଳ ପାଟଳ ସୁଗନ୍ଧ ଜଳ ।
ଝଲଝଲ ବାଲି ହସଇ ତଳ ॥
ଯୁବତୀ ହେନ କରନ୍ତି ବିହାର ।
କରଣୀ ଯୂଥେ ଯେହ୍ନେ କରିବର ॥
ଏକ ଏକପରେ ଜଳ ଢାଳନ୍ତି ।
ମରମକୁ ଜଳ ବାଣ ମାରନ୍ତି ॥
ଦଶବାଶ ମେଳ ହୋଇଣ ଗୋପୀ ।
ରସିକ ଉପରକୁ ଜଳ କ୍ଷେପି ॥
କୃଷ୍ଣସଙ୍ଗେ ରଙ୍ଗେ ଜଳ ଯୁଦ୍ଧରେ ।
କଙ୍କଣ ରଣ ଝୁଣିତ ନାଦରେ ॥
ସମ୍ମୁଖେ ହରି ରହିଣ ବଞ୍ଚାଇ ।
ଜଳ ପେଲଇ ବାଳୀଙ୍କି ଯୁଝାଇ ॥
ପଳାନ୍ତେ ଉରଦେଶ କରେ ଜୁରି ।
ହିଳୋଳିତ ବାସ ଚନ୍ଦନ ହାରି ॥

ଜଙ୍ଘ ନଖରେଖା ହୃଦ୍ୟମାନରେ ।
ସ୍ଥିରିକରି ନାସା ଚୁମ୍ବ ଦାନରେ ॥
ରାଧା ଚନ୍ଦ୍ରାବଳୀ ଆଦି ସୁନ୍ଦରୀ ।
କୃଷ୍ଣର ସଙ୍ଗେ ଜଳକେଳି କରି ॥
ହସ୍ତ ଧରାଧରି ମଣ୍ଡଳୀ ହୋଇ ।
ଧୀରେ ଧୀରେ ମାରି ଜଳ ଉଠାଇ ॥
ବୋଲେ ହରି ସଖୀ ଦେଖ ନାଟକ ।
କାଳନ୍ଦୀ କୁଚ ଦେଖାଇ ଛଟକ ॥
ତୁମ୍ଭରେ ପୁଣ ସେ ପଶେ ଶରଣ ।
କୁଚ ସହସ୍ର କୁମ୍ଭରେ ବରଣ ॥
କୁମୁଦ ପଦ୍ମ ଆଦି ଫୁଲେ ରଞ୍ଜି ।
ନିର୍ମଳ ହୋଇଣ ତୁମ୍ଭରେ ଭଜି ॥
ତରଙ୍ଗ ଦେଖିଏ ଭ୍ରମର ଶ୍ରେଣୀ ।
ଦ୍ୱିଜକୁଳ କରେ ମଙ୍ଗଳ ଧ୍ୱନି ॥
ବଧୂ ପ୍ରତିବିମ୍ବ ଦର୍ପଣ ଧରେ ।
ତୁମ୍ଭ ମୁଖ ଶୋଭା ଉଦ୍ଦେଶ୍ୟ କରେ ॥
ନିଯୋଗିଣ ଆଭରଣ ଅନେକ ।
ମତ୍ସ୍ୟ ଅବତାର ଆଦି ପଦକ ॥
କୁସୁମ ସୁଗନ୍ଧ ଶୀତ ଅନଳେ ।
ପାତଳ ନିର୍ମଳ ସ୍ୱାଦୁ ସଲିଳେ ॥
କରୁଛି ଯମୁନା ଏତେ ସେବାକୁ ।
ନିତି ତୁମ୍ଭ ପାଦ ଧୋଇ ପିବାକୁ ॥
ଚତୁଷ୍ଟ ବୋଲନ୍ତି ଶୁଣ ଶ୍ରୀହରି ।
ସେହି ତୁମ୍ଭଙ୍କୁ ରୂପଗୁଣ ଧରି ॥
ନିତି ବିହାର କରି ଏଥି ତୁମ୍ଭେ ।
ଏହେନ ସପତଣଗଣୀ ଆମ୍ଭେ ॥
ତାଙ୍କ ସନ୍ନିଧି ନିତି ଆମ୍ଭେ ସେବୁଁ ।
ଏହାଙ୍କୁ ହେନ ସେ ତୁମ୍ଭଙ୍କୁ ଲଭୁ ॥
ନୀଳମଣି ହେନ କରୁଛୁ ପୂଜା ।
ଆମ୍ଭରେ ହିଂସାକୁ କରିବେ ତେଜ୍ୟା ॥
କୃଷ୍ଣ ବୋଲନ୍ତି ତୁମ୍ଭର ବଚନେ ।
ଗଉର କୁଚ କୁଙ୍କୁମ ଚନ୍ଦନେ ॥
ଦେଖିଏ ଆମ୍ଭର କାନ୍ତି ତେଜିଲେ ।
ତୁମ୍ଭର ରୂପ ଗୁଣରେ ମଜିଲେ ॥

ଜଳକେଳି ରଙ୍ଗେ ପ୍ରଭୁ ଜଗକନ୍ତି ।
ମୁନି ବୋଲନ୍ତି ଶୁଣ ଧନପତି ॥
ଗୋପୀ ଗୋବିନ୍ଦ କେଳି ସମାଧାନେ ।
ତପନ ତନୟା ସେବ ବିଧାନେ ॥
ସର୍ବତୀର୍ଥ କନ୍ୟା ଯେତେକ ସଙ୍ଗେ ।
ଜଳ କେଳିରେ ପୂଜ ହରି ରଙ୍ଗେ ॥
ପୁଣ୍ୟନଦୀ ନବନାସୀ କୁଞ୍ଜର ।
କାବେରୀ ଗୋମତୀ ବେନ ପଞ୍ଜର ॥
ସ୍ବର ଚରଣ ଗୋଦାବରୀ ଆଦି ।
ସମ୍ପୂର୍ଣ୍ଣ ପୂର୍ଣ୍ଣ ରେବା କୃଷ୍ଣ ନଦୀ ॥
ସପତ କୁଣ୍ଡ ବ୍ରହ୍ମା କୃଷ୍ଣ ବେଣୀ ।
ପୃଷ୍ଟ ପୁଚ୍ଛଦେଶ ବଇତରଣୀ ॥
ବିଜେ ହରି ନବନାସୀ ବାରଣେ ।
ଆପ୍ଲୁତ କରି ଲବଣୀ ଆରଣେ ॥
ଯମୁନା ପାଶେ ଭ୍ରମର ଝଟନ୍ତି ।
ଗୋବିନ୍ଦର ସଙ୍ଗଭାଗୀ ଅଟନ୍ତି ॥
ଗୋବିନ୍ଦ ଅନୁ ରୂପରେ ଭଜିଲେ ।
ରାଧାଙ୍କୁ କମଳ ଫୁଲ ପୂଜିଲେ ॥
ଚନ୍ଦ୍ରାବଳୀ ଆରାଧିଲେ କୁମୁଦେ ।
ମଙ୍ଗଳା ଯୂଥେଶ୍ବରୀ କୋକନଦେ ॥
ଶ୍ୟାମା ପାଳାବେଳ ଭଦ୍ରା ପୁଣ୍ଡରୀକେ ।
ଏରୂପେ ପୂଜାକଲେ ଏକେ ଏକେ ॥
ଯମୁନା ସ୍ତବେ ସର୍ବେ ତୋଷମନେ ।
ବ୍ରଜେନ୍ଦ୍ର ବିଜୟ ଗଜ ବାହାନେ ॥
ସକଳ ଉପରେ ଜଳ ବରଷେ ।
ଗଜେନ୍ଦ୍ର ପଦ୍ମିନୀବନେ ବିଳସେ ॥
ଗୋବିନ୍ଦ ଗୋପୀ କାଳିନ୍ଦୀ ବିହାର ।
କହି ପାରିବାକୁ ଶକ୍ତି କାହାର ॥
ମଦନ ମତ୍ତେ ଶୀତ ଭୟେଥରେ ।
ବାହାର ଜରଜର ସରସରେ ।
କୂଳେ ଆସି କେଶ ବାସ ଶୁଖାଇ ।
ଯାଇଥିଲେ ଯେଉଁବାସ ରଖାଇ ॥
ପିନ୍ଧଣି ସୁନ୍ଦରୀ ସୁବେଶ ହେଲେ ।
ମନେ ନିଉଛାଳି ଗୋପେନ୍ଦ୍ର କଲେ ॥

ହୋଇଛନ୍ତି ରଙ୍ଗ ଉତ୍ସୁକ ବାଳୀ ।
ନ ଚେତନ୍ତି ହରି ଯମୁନା କେଳି ॥
ଜଳେ ଗୋବିନ୍ଦ ବିଳମ୍ବକୁ ଦେଖି ।
ଏକ ଆରକରେ ବିଚାରରେ ସଖୀ ॥
ଆମ୍ଭଙ୍କୁ ହରି ଗୋ ଲୁଚିଲେ ବନେ ।
ଆମ୍ଭେ ଲୁଚିବା ଲୋଡ଼ିବେ କେସନେ ॥
ବୋଲନ୍ତି ହରି ମୋର ଅଙ୍ଗ ବିନୁ ।
ବନେ ଲୁଚଇ ନପାରିବ ତନୁ ॥
ଜାଣିବା ହରି ଆମ୍ଭ ଅନୁରାଗ ।
ଲୋଡ଼ିଣ କୁଞ୍ଜେ କୁଞ୍ଜେ ହେବେ ସଙ୍ଗ ॥
ଯେ ଯାହା ମତେ ବିଚାରି ଚତୁରେ ।
ରସିକ ବଶ ମୋହର ପ୍ରୀତିରେ ॥
ଯଦ୍ବି ଥିଲେ ଏକା ହୋଇବ ଭେଟ ।
ସବୁରି ସଙ୍ଗେ ଥିଲେ ହେବ ନଷ୍ଟ ॥
ଯେ ଯାହା ମନରେ ବିଚାର କଲେ ।
କୃଷ୍ଣ ବନେ ଅନୁରାଗ ବହିଲେ ॥
ମନେ ବିଚାର କଲେ ସର୍ବ ସଖୀ ।
ଏହି ସମୟରେ ଏକଇ ସଖୀ ॥
ବୋଲେ ବିଚାର କରୁଛ କିସ ।
ତୁମ୍ଭ ମନ ଜାଣି ମିଳିଲି ପାଶ ॥
ତୁମ୍ଭେ ଯେ ବିଚାର କରୁଛ ଯାହା ।
ମୋତେ କହିବ ନ ଲୁଚାଇଁ ତାହା ॥
କି ରୂପେ କୃଷ୍ଣ ଗୋ ହେଲେ ଅନ୍ତର ।
ମୋତେ କହିବ ଗୋପାଙ୍ଗନା ବର ॥
ଏହି ରୂପେ ପଚାରିଲା ମୁଁ ଯେତେ ।
ତେଣୁ କହିଲେ ବୃନ୍ଦାଦେବୀ ମୋତେ ॥
ଶୁଣ ହେ ଧନପତିର କୁମର ।
ସେ ବୃନ୍ଦାବନ ଚରିତ ବେଭାର ॥
ଏମନ୍ତେ ଯେତେକ ତରୁଣୀମାନେ ।
ବିଚାର କରି ହୋଇଲେ ସୁମନେ ॥
ସୁମରି କୃଷ୍ଣ ଚରଣ ବିଶ୍ବାସ ।
ମନେ ରଖି କୃଷ୍ଣ ପାଦ ଲାଳସ ॥
ସେବିଲେ ସେ ବୃନ୍ଦାଦେବୀର ମାରଣ ।
କହିଲେ ଅନ୍ତ କରଣ ବିଶ୍ବାସେ ॥

ରାଧିକା ଚନ୍ଦ୍ରାବଳୀ ବୃନ୍ଦା ଆଦ୍ଦ ।
ଭୂଗୋଳ କମଳ ଭୂଅ ସମ୍ବାଦ ॥
ବେଷ୍ଟରେ ସହସ୍ର ଦଳ ଗହନ ।
ସପତ ଦ୍ୱାର ସପ୍ତ ଆବରଣ ॥
ଯମୁନାରୁ ସେ କମଳ ବାହାର ।
ସର୍ବଦା ରାଧା ମାଧବ ବିହାର ॥
ଚିନ୍ତାମଣି ସେ ଭୂମି ଅକଳିତ ।
ଦେବ ଦାନବେ ନପାରେ କଳିତ ॥
ସପତ ଦ୍ୱାର ଜଗତ ଦୁଆରୀ ।
ପ୍ରଥମେ ଅଚ୍ଛନ୍ତି ରବିକୁମାରୀ ॥
ଦ୍ୱିତୀୟ ଦ୍ୱାରେ ଛନ୍ତି ବୃନ୍ଦାବତୀ ।
ଜଗତେ ଯାର ନାମେ ବନ ଖ୍ୟାତି ॥
ତୃତୀୟ ଦ୍ୱାରେ କକ୍‌ଖଟୀ ବାନରୀ ।
ରଙ୍ଗିମା ହରଣୀ ଚତୁର୍ଥେ ଦ୍ୱାରୀ ॥
ପଞ୍ଚମ ଦ୍ୱାରେ ତାଣ୍ଡବୀ ମୟୂରୀ ।
ଯାହାରେ ନୃତ୍ୟ ତୋଷ ରାଧା ହରି ॥
ଦକ୍ଷନାମେ ଶୁକ ଷଷ୍ଠରେ ଦ୍ୱାରୀ ।
ସପତମ ଦ୍ୱାରେ ସୂକ୍ଷ୍ମଧୀ ସାରୀ ॥
ଅଷ୍ଟଦଳ ପଦ୍ମ ତହିଁ ମଧ୍ୟରେ ।
ଅଷ୍ଟ ସଜନୀ କୁଞ୍ଜ ପ୍ରସିଦ୍ଧରେ ॥
ଉତ୍ତରେ ଲଳିତା ଆନନ୍ଦା ନାମେ ।
କୁଞ୍ଜ ମଞ୍ଜୁଳ ଅତି ଅନୁପମେ ॥
ମୂଳ ପ୍ରକୃତି କେଶର ଦେବତା ।
ଆରାଧନା କରନ୍ତେ କରେ ଲଳିତା ॥
ଐଶାନ୍ୟେ ବିଶାଖା ନନ୍ଦଦା କୁଞ୍ଜେ ।
ସଖୀ ସର୍ବେଶ୍ୱରୀ ଦେବତା ପୂଜେ ॥
ପୂର୍ବରେ ଚିତ୍ରା ନନ୍ଦଦା ଉଦ୍ୟାନ ।
ରାଧା ଦେବତା କରେ ଆରାଧନ ॥
ଅନଳେ ଚନ୍ଦ୍ରରେଖା ବନ ଜାତି ।
କୃଷ୍ଣପ୍ରିୟା ନାମେ କରନ୍ତି ସ୍ତୁତି ॥
ଦକ୍ଷିଣେ ଚମ୍ପକଲତା ନନ୍ଦଦା ।
କୁଞ୍ଜେ ରସେଶ୍ୱରୀ ସେବେ ସର୍ବଦା ॥
ନୈଋତରେ ରଙ୍ଗଦେବୀର ବନ ।
ଗୋପେଶ୍ୱରୀ ପାଦେ କରେ ସେବନ ॥
ପଶ୍ଚିମରେ ତୁଙ୍ଗବିଦ୍ୟା ନନ୍ଦଦା ।
କୁଞ୍ଜ ମଞ୍ଜୁଳ ସୁଖ ପୁଞ୍ଜ ସଦା ॥
ବାୟବ୍ୟେ ସୁଦେବୀ ପ୍ରମୋଦା ବନ ।
କୃଷ୍ଣ ପୂଜିବା ହୋଇ ତୋଷମନ ॥
ଏରୂପେ ଅଷ୍ଟସଖୀ ଅଷ୍ଟକୁଞ୍ଜେ ।
ଇଷ୍ଟ ନାମକୁ ଇଷ୍ଟକରି ଭଜେ ॥
ମଧ୍ୟେ ଶ୍ରୀକୃଷ୍ଣ ଅଛି ଶୋଭାବନ ।
ସୁବର୍ଣ୍ଣ ପୀଠ ରତ୍ନ ସିଂହାସନ ॥
ଚିନ୍ତାମଣି ମୋଦ ହେମେ ନିର୍ମିତ ।
କଳ୍ପ ପାଦପ ଛାୟାରେ ଆବୃତ ॥
କାମ ସଙ୍ଗ୍ରାମେ ଏହି ପଦ୍ମଭୂଅ ।
ଗୋବିନ୍ଦ ଭେଦ ଆନରେ ଅଜୟ ॥
ରାଧା ଚନ୍ଦ୍ରାବଳୀ ଆଦ୍ଦ ସୁନ୍ଦରୀ ।
ଚଣିଲେ ଦ୍ୱାରେ ଜଗିଲେ ଦୁଆରୀ ॥
ପ୍ରଥମ ଆବରଣରେ ଶ୍ୟାମଳା ।
ଦ୍ୱିତୀୟ ଆବରଣରେ ମଙ୍ଗଳା ॥
ତୃତୀୟ ଆବରଣେ ରହେ ଭଦ୍ରା ।
ଚତୁର୍ଥ ଆବରଣେ ଧନ୍ୟାସଦା ॥
ପଞ୍ଚ ଆବରଣେ ମଦନାବତୀ ।
ଷଷ୍ଠ ଆବରଣରେ ମଧୁମତୀ ॥
ସପତ ଦଳ କଞ୍ଜ ଆବରଣ ।
ଚନ୍ଦ୍ରାବଳୀ ଯେଣେ ସଜନୀ ଗଣ ॥
କେଶର ମଧ୍ୟରେ ରାଧିକା ସ୍ଥାନ ।
ଯେଣେ ସଙ୍ଗରେ ସଜନୀଗଣ ॥
ଏରୂପେ ମୂଳ ଅଷ୍ଟ ଯୂଥେଶ୍ୱରୀ ।
ଏକେ ସହସ୍ରେ ଯୂଥ ଅନୁସରି ॥
ଯେ ଯାହା ମନରେ ଯେ ଯାହା କୁଞ୍ଜେ ।
ପାଖୁଡ଼ା ଗୋଟି ଗୋଟିକରେ ଭଜେ ॥
ମଧ୍ୟେ ଶ୍ରୀକୃଷ୍ଣ ଅଛି ଶୋଭାବନ ।
ସୁବର୍ଣ୍ଣ ପୀଠ ରତ୍ନ ସିଂହାସନ ॥
ଚିନ୍ତାମଣି ମୋଦ ହେମେ ନିର୍ମିତ ।
କଳ୍ପ ପାଦପ ଛାୟାରେ ଆବୃତ ॥
କାମ ସଙ୍ଗ୍ରାମେ ଏହି ପଦ୍ମଭୂଅ ।
ଗୋବିନ୍ଦ ଭେଦେ ଅନ୍ୟରେ ଅଜୟ ॥

ରାଧା ଚନ୍ଦ୍ରାବଳୀ ଆଦି ସୁନ୍ଦରୀ ।
ପଶିଲେ ଦ୍ୱାରେ ରହିଲେ ଦୁଆରୀ ॥
ବହୁତ ଉପବନ ଏ ପୁଷ୍କରିଣୀ ।
ଏକାନ୍ତ ସ୍ଥାନରେ ଅଛଇ ନିର୍ମାଣି ॥
ଏରୂପେ ପାଖୁଡ଼ା ଗୋଟି ଗୋଟିକେ ।
ସହସ୍ର ସହସ୍ର ଯୂଥ ଯୂଥକେ ॥
ଯେତେ ଯୁବତୀ ତେତେକ କୁଟୀରେ ।
ସର୍ବେ ବୃନ୍ଦାବନେଶ୍ୱରୀ ମୂର୍ତ୍ତିରେ ।
ରହିଲେ ସକଳେ ଯେ ଯାହା କୁଞ୍ଜେ ।
କୃଷ୍ଣ ଆଗମ ପଥ ଚାହିଁ ଭଜେ ॥
ଏମନ୍ତେ ଗୋବିନ୍ଦ ଯମୁନା କେଳି ।
ନଦେଖି ପାଶେ ରାଧା ଚନ୍ଦ୍ରାବଳୀ ॥
କାଳିନ୍ଦୀ କର ଧରଣ ବାହାର ।
ବୋଲନ୍ତି ପଛେ କରିବା ବିହାର ॥
ଏକ ଅରେ ଲୁଚି ଗୋପ ଯୁବତୀ ।
ଏକାନ୍ତ ରତିକି ଉତ୍ସୁକ ମତି ॥
ପ୍ରଥମ ଦ୍ୱାରେ ରକ୍ଷିତାଙ୍କୁ ବୋଧି ।
ଭିତରେ ପଶି ପଦ୍ମଭୂଅ ଭେଦ ॥
ଏକ ଏକରେ ହୋଇଲେ ମିଳନ ।
ବ୍ରଜ ନାୟକ ପ୍ରେମର ଅଧୀନ ॥
ସପତ ଦ୍ୱାର ସାତ ଆବରଣ ।
କାମିନୀ ଲଙ୍ଘଣ ପ୍ରାଣ ରମଣ ॥
କେଶର ମଧ୍ୟେ ଅଷ୍ଟଦଳ କୁଞ୍ଜେ ।
ରାଧା ସଜନୀ ସଙ୍ଗେ ରଙ୍ଗେ ମଜ୍ଜେ ॥
ଶ୍ରୀକୃଷ୍ଣ ଶ୍ରେଷ୍ଠେ ରାଧା ସଙ୍ଗେ ମିଳି ।
ଏକାନ୍ତ ସ୍ଥାନରେ ସୁରତ କେଳି ॥
ସେବାପର ରୂପମଞ୍ଜରୀ ଆଦି ।
ଖଟିଛନ୍ତି ଉପସ୍ୱର ସମ୍ବାଦ ॥
ଚନ୍ଦ୍ରାବଳୀ ଆଦି ଏ ଅନୁଗତେ ।
ସୁରତି ଆରମ୍ଭେ ହରି ସଙ୍ଗତେ ॥
ଯେତେ କୁଞ୍ଜ ତହିଁ ତେତେ ଯୁବତୀ ।
ଯେତେ ନାରୀ ହରି ତେତେ ମୂରତି ॥
ଏକେ ଏକେ ହରି ରମି ଆନନ୍ଦ ।
ନଜାଣି କୃଷ୍ଣ ବହୁରୂପ ଭେଦ ॥

ବହୁରେ କଲି ପୂର୍ବେ କେଉଁ ଭାଗ୍ୟ ।
ଏକା ମୁଁ ହରି କରଯେନ ଭୋଗ ॥
ବିବିଧ ରଙ୍ଗେ କେଳି ଆନେ ଆନେ ।
ଏକ ନଜାଣଇ ଆରେକ କାନେ ॥
କୃଷ୍ଣଙ୍କୁ କେହୁ କରନ୍ତି ସୁବେଶ ।
ପିନ୍ଧାଇ ବହୁତ ଝୀନ ପୀତବାସ ॥
ହିମଣ୍ଡି ଖଞ୍ଜି ଜାତି ଫୁଲଗଭା ।
ବାମଭର ଚୂଳ ଚନ୍ଦ୍ରିକା ଶୋଭା ॥
କସ୍ୱଠ ମୁକୁଟ ଅଳକାବଳୀ ।
ଶୋଭା ଚାହିଁକର କମ୍ପଇ ବାଳୀ ॥
ଚନ୍ଦନ ତିଳକ ବହୁତ କପୋଳେ ।
କୁଳବତୀ ଯହିଁ ମତି ଆକୁଳେ ॥
ମକର କୁଣ୍ଡଳ ଗଣ୍ଡ ଯୁଗଳେ ।
ଖେଳନ୍ତି ଗଣ୍ଡି ଲବଣ୍ୟ ସଲଲେ ॥
ନାସାପୁଟେ ଗଜ ମୁକୁତା ଖଞ୍ଜି ।
ସୁରଙ୍ଗ ଅଧରେ ତାମ୍ବୂଳ ଭୁଞ୍ଜି ॥
କଣ୍ଠେ ମେଡ଼ର ହେମକଣ୍ଠି ମାଳ ।
ହୃଦେ ବରମାଳ ମଣି ମଞ୍ଜୁଳ ॥
ବାହାରେ ବାହୁଟି କରେ କଙ୍କଣ ।
ଦଶ ଅଙ୍ଗୁଳରେ ମୁଦ୍ରିକା ଗଣ ॥
କଟି କିଙ୍କିଣୀ ମେଖଳା ବନ୍ଧନ ।
ସର୍ବାଙ୍ଗେ ଲେପି କର୍ପୂର ଚନ୍ଦନ ॥
ଚରଣେ ନୂପୁର ଖଞ୍ଜିଣ ବାଳୀ ।
ବେଶ ବଢ଼ାଇ ଦେଇ ହୁଳହୁଳି ॥
କେବଣ କୁଞ୍ଜରେ ଭୋଜନ ଲୀଳା ।
କାହାର ସଙ୍ଗେ କୁଞ୍ଜେ ପଶାଖେଳା ॥
କେଉଁ କୁଞ୍ଜେ ଉପବନ ଭ୍ରମଣ ।
କାହା ସଙ୍ଗେ ନାନାରଙ୍ଗେ ରମଣ ॥
ଚୂଆ ଚନ୍ଦନ ଗନ୍ଧ ଆଦି ବୋଳ ।
କାହା କୁଚରେ ଲିଖି ପତ୍ରାବଳୀ ॥
ସୁବେଶ କରଣ କେଉଁ ନାୟିକା ।
ରତି କରିବାରେ ମତି ଉତ୍ସୁକା ॥
ଶକଟା କାହିଁ ଖେଳନ୍ତି ଦମ୍ପତି ।
ହୋଇ ଉତ୍କଣ୍ଠା ବିପରୀତ ରତି ॥

କାହାର ସଙ୍ଗେ ଖେଳେ ଦେଶାଇ ।
ଗୋପୀଙ୍କବେ ଜ୍ଞାନ ଯୋଗ ବୁଝାଇ ॥
କେବଣ କୁଞ୍ଜେ ବସି ଦୋଳାଖେଳ ।
ମନ୍ଦ ସମୀରେ ଧୀରେ ଧୀରେ ଚଳ ॥
କାହାର ଉପରେ ଅପସର ଦେଇ ।
ଛଳ କହନ୍ତ ଶଶୀଙ୍କି ଅନାଇ ॥
ଯେତେ ତାରକା ଏ ନଭସ୍ଥଳେ ଉଦେ ।
ଶ୍ୟାମେ ଲାଞ୍ଛନ ଏକା ତୁମ୍ଭ ହୃଦେ ॥
ଲୋକ ନିନ୍ଦିତ କଳଙ୍କକୁ ଲେଛ ।
ଉଜ୍ଜ୍ୱଳ ହୋଇ ନିଜପୁରେ ଗଛ ॥
ଗୋପୀ ବୋଲେ ଚନ୍ଦ୍ର ନୁହେ ଲାଞ୍ଛନ ।
ଶ୍ୟାମ ମୃଗ ମଦେ ତନୁ ଶୋଭନ ॥
ନବ ନୀରଦ ତନୁ ଅନୁରାଗ ।
ଅନ୍ତଃ ଫୁଟି ଘୋଟି ବାହାର ଅଙ୍ଗ ॥
ଯାହାରେ କରୁଣା ସେହି ସେ ପାଇ ।
ଆନ ଲୋଡ଼ିଲେ ତା ପାଇବ କାହିଁ ॥
ଏମନ୍ତ ଅଙ୍ଗ ଭୂଷଣକୁ ଲେଛୁ ।
ନିଜପୁରେ କିବୁଁ କି କାର୍ଯ୍ୟ ଅଛୁ ॥
ବଥାଇଲେ ପିଠି କଠିନ କୁଚେ ।
ଅଲଗା ହୁଅ ବାସ ଦେବା ଉଚେ ॥
ଶୁଣି ରସିକ ପ୍ରେମେ କମ୍ପମାନ ।
ମୁଖ ଲେଉଟାଇ ଦେଇ ଚୁମ୍ବନ ॥
ଦକ୍ଷନାୟକ ସକଳ ସମାନେ ।
ଏମନ୍ତେ ନିଶି ଅଷ୍ଟଦଣ୍ଡ ମାନେ ।
ଶୃଙ୍ଗାର ରସେ ସର୍ବ ମନ ତୋଷି ।
ପରିଶ୍ରମରେ ଅନିଦ୍ରା ଆଳସୀ ॥
ନିଦ୍ରା ଆଶାକଲା କଞ୍ଜ ନୟନେ ।
ପ୍ରିୟାକୋଳେ ପୃଷ୍ଠ ଶେଯେ ଶୟନେ ॥
ଲକ୍ଷଣ ତନୁ ଲପନେ ଲପନେ ।
ଶୟନେ ବାଳୀ ଦେଖନ୍ତି ସ୍ୱପନେ ॥
ଗୋବିନ୍ଦ ସଙ୍ଗେ ଲୀଳା ଯେତେ ଯେତେ ।
ଦେଖନ୍ତି ସେହିରୂପେ ନିଦ୍ରାଗତେ ॥
ଏମନ୍ତେ ଶେଷ ହୋଇଲା ରଜନୀ ।
ବାୟସ ତାମ୍ରଚୂଡ଼ କଲେ ଧ୍ୱନି ॥

ଦ୍ୱିଜଗଣ ଯହିଁ ଦାନ୍ତ୍ରଣ ଭଜ ।
ଦେଖି ଦେଖିଣ ନିଜତେଜ ହଜ ॥
ତାରକାଗଣ ହସିଲେ ମଳିନ ।
କାନ୍ତି ନୀରସ ଦେଖି ଶଶୀକ୍ଷୀଣ ॥
ବିଚ୍ଛେଦ ଚିନ୍ତ ବିରସ ଆକାଶ ।
ପୂର୍ବରେ ଅରୁଣ ଛବି ପ୍ରକାଶ ॥
ଦେଖିଣ ବୃନ୍ଦା ତରସ୍ତ ହୋଇଲେ ।
ଶୁକ ସାରୀକି ପଢ଼ ଆଜ୍ଞା ଦେଲେ ॥
ଶୁକ ସ୍ତବଇ ଗୋକୁଳ ନାୟକ ।
ମହୀମଣ୍ଡନ ମଣ୍ଡନ ତିଳକ ॥
ଜଗମୋହନ ରାଧା ପ୍ରାଣବନ୍ଧୁ ।
ଧଇର୍ଯ୍ୟେ ମେରୁ ମର୍ଯ୍ୟାଦାରେ ସିନ୍ଧୁ ॥
ନିଶି ପାହିଲା ପୁରେ ବିଜେକର ।
ଅଳସ ତେଜ ପଥ ଅନୁସର ॥
ଶାରୀ ସ୍ତବଇ ସେ ନୃପ ନନ୍ଦନ ।
କୃଷ୍ଣ ପ୍ରାଣଧନ ଜଗଦ୍‌ବନ୍ଦନ ॥
ଅବନୀ ଅଳଙ୍କାର ରାସେଶ୍ୱରୀ ।
ରାତି ପାହିଲା ଚଳ ନିଜପୁରୀ ॥
ବିଳମ୍ବ ଆଉ ନକର ଏଥିରେ ।
ଲୋକ ଗହଳ ହୋଇବେ ପଥରେ ॥
ଶୁଣି ରାଧାକୃଷ୍ଣ ନିଦ୍ରା ଭାଙ୍ଗିଲେ ।
ସଭୟେ ଉଠିଣ ଶଯ୍ୟା ତେଜିଲେ ॥
ବିଚ୍ଛେଦ ଚିନ୍ତା ବେନି ଖେଦ ମନ ।
ସଜନୀ ମଞ୍ଜରୀ ହେଲେ ମିଳନ ॥
କକ୍‌ଖଟୀ ବାନରୀ ବୃକ୍ଷରେ ଡ଼ାକେ ।
ଜଟିଳା ଆସିବା ଶୁଣି ଆତଙ୍କେ ॥
ମନ ପାଲଟାଇ ସେନିଣ ଗଲେ ।
ଯେ ଯାହାପୁରେ ପଲଙ୍କେ ଶୁତିଲେ ॥
ହରଷ ବିରସେ ଗୋପ ତରୁଣୀ ।
ମନ୍ଦିରେ ପ୍ରବେଶ କେହି ନଜାଣି ॥
ନିତ ମତରେ ପ୍ରାତଃ କୃତ୍ୟକଲେ ।
ଗୋବିନ୍ଦ ଲୀଳା ସୁମରି ଗାଇଲେ ॥
ପ୍ରାତଃକାଳେ ଉଠି ଯଶୋଦାଦେବୀ ।
କୃଷ୍ଣ ମୁଖଚନ୍ଦ୍ରି ଆନନ୍ଦ ଲଭି ॥

ନଳ କୁବେରେ କହନ୍ତି ନାରଦ ।
ଏମନ୍ତେ ସମ୍ପୂର୍ଣ୍ଣ ହେଲ ଶରଦ ॥
ରାଣ୍ଡି ଦାମୋଦର ରାସ ଉତ୍ସବ ।
କଥନେ ଯୋଗ୍ୟହୋଇ ଭୁମ୍ଭଭାବ ॥
ସେ ହେଜ ପାଦ ଅରବିନ୍ଦ ଯୁଗେ ।
ପ୍ରାତଃ ସେବାରେ ଦାସ ଅନୁରାଗେ ॥
ମଧୁମଙ୍ଗଳ ସୁବଳ ସଙ୍ଗରେ ।
ହାସ ପରିହାସ ରଙ୍ଗ ରାଗରେ ॥
ଅଇଲୁ ଦାମ ସୁଦାମ କୋକିଳ ।
ବସୁଦାମ ସ୍ତୋକ କୃଷ୍ଣ ଉଜ୍ଜ୍ୱଳ ॥
ବସନ୍ତ ସୁବାହୁ କଙ୍କିଣି ଆଦି ।
ଅର୍ଜୁନ ଗନ୍ଧର୍ବ କୃଷ୍ଣାନୁବାଦି ॥
ମିଳିଲେ କୃଷ୍ଣ ଶୟନ ସଦନେ ।
ଦର୍ଶନେ ଆନନ୍ଦ ହାସ ବଦନେ ॥
ଯୁବତୀ ମତ୍ତ ଗୋବିନ୍ଦ ପୀରତି ।
ଚଞ୍ଚଳେ ନ କଲେ ପୂର୍ବ ଭାରତି ॥
ଯତନେ ଜସବତିସ ଲେଉଡ଼ି ଯାଇ ।
ନନ୍ଦପୁରେ କୃଷ୍ଣ ଦର୍ଶନ ପାଇଁ ॥
ସଖୀ ସେବକ ସେବ ସନ୍ନିଧାନେ ।
ଏମନ୍ତ ଗୋବିନ୍ଦ ବିଧି ବିଧାନେ ॥
ଗୋଷ୍ଠ ଲୀଳାରଙ୍ଗେ ଗାବ ଦୁହାଁଇ ।
ଘରେ ଆସେ ପୁଣ ଦୁଗ୍ଧ ବୁହାଇ ॥
ସ୍ନାନ ସୁବେଶ ସଖାଙ୍କ ସଙ୍ଗରେ ।
ଫଳ ଚନ୍ଦନ ସକଳ ଅଙ୍ଗରେ ॥
ଭୋଜନ ବିବିଧ ସ୍ୱାଦୁ ସରସେ ।
ରୋହିଣୀ ଜନନୀ ତୋଷେ ପରଶେ ॥
ଆଚମନ କରି ତାମ୍ବୁଳ ଭୁଞ୍ଜି ।
କ୍ଷଣେକ ବିଶ୍ରାମକୁଳ ଆଉଜି ॥
ଗୋଧନ ଚରାଇ ବନ ଗମନେ ।
ବ୍ରଜବାସୀ ଖେଦଭର ବିମନେ ॥
ଗୋବିନ୍ଦ ବିଚ୍ଛେଦେ ନସରେ ହିନ ।
ଚନ୍ଦ୍ର ନଦେଖି ଚକୋର ଯେସନ ॥
ଏକ ଆରକ ଦେଖିଲେ ପଶୁରି ।
ଦଶ ବଂଶମେଳ ହୋଇ ବିସ୍ମରି ॥

ଗୋବିନ୍ଦ ବନ୍ଦ ବିହାର ଚରିତ ।
ବର୍ଣ୍ଣନ୍ତି ହିନ ଗାୟନ କରିତ ॥
ଯେବଣ କାଳରେ ଯେବଣ ଲୀଳା ।
ଏକ ଆରକେ ଭାଷନ୍ତି ଅବଳା ॥
ପ୍ରାତଃକାଳେ ସଖୀ ଗୋଷ୍ଠକୁ ଯାଇ ।
ଗାବ ନାମଧରି ବେଣୁ ବଜାଇ ॥
ବାମ ବାହୁ ବାମ କପୋଳ ବନ୍ଧେ ।
ଭ୍ରୂଲତା ଗଣ୍ଡରେ ତ୍ରିଭଙ୍ଗଛନ୍ଦେ ॥
ଯେ ଯାହା ମତେ ଚରୁଥିଲେ ଗାଈ ।
ଶୁଣିଣ ସୁରଭି ଅଇଲେ ଧାଇଁ ॥
ଗୋପାଳ ପୁଏ ପ୍ରବେଶ ଭରିତ ।
ମୁରଲୀ ଧ୍ୱନି ଜଗତେ ପୂରିତ ॥
ଦେବ ବନିତା ଗଣ କାନ୍ତ ସଙ୍ଗେ ।
ଶୂନ୍ୟେ ଶୁଣି ମନ ମଦନ ମାର୍ଗେ ॥
କେଶ ବାସ ଫିଟି ଲୋଟଇ ନୀବୀ ।
ହାର ମାଳ ଖସି ପଡ଼ଇ ଭୂବି ॥
ସେ ସିଦ୍ଧ ସ୍ତ୍ରୀଙ୍କ ହୁଅନ୍ତେ କାତର ।
ଆମ୍ଭେ ଗୋପନାରୀ କେତେ ମାତର ॥
ଗାବ ପଶୁ ଶୁଣି ମୋହ ହୁଅନ୍ତି ।
ଚୀରରୁ କ୍ଷୀର ସ୍ରବଣ ବହନ୍ତି ॥
ଏଣୁ ଇଚ୍ଛା ମତେ ଧେନୁ ଦୁହାଁଇ ।
କ୍ଷଣକେ ଚଳନ୍ତି ଘର ବୁହାଇ ॥
ସ୍ନାନ ସୁବେଶ ଭୋଜନ ବଢ଼ାଇ ।
ବେଗେ ବନେ ଗଲେ ଗାବ ଅଡ଼ାଇ ॥
ପୂର୍ବାହ୍ଣ ଲୀଳା କହେ କେଉଁ ନାରୀ ।
ଦେଖିଛନ୍ତି ଯା ଅନୁଭବ କରି ॥
ବନେ ପ୍ରବେଶ ଗୋଧନ ଚଳାଇ ।
ନବୀନ ତୃଣ ପଲ୍ଲବ ଚରାଇ ॥
ବଂଶୀ ନାଦରେ ସୁମେଳ କରିତ ।
ପାଣି ପିଆଇ ଯମୁନା ସରିତ ॥
ନଦୀ ନବନ୍ତ ସ୍ଥଳକତେ ରହିଲେ ।
କଳକୁ ମାଡ଼ି ପାଳଟି ବହିଲେ ॥
ହଂସ ସାରସ ଆଦି ବନଜୀବେ ।
ବେଣୁ ଧ୍ୱନି ଶୁଣି ନିଶ୍ଚଳ ସବେ ॥

ମୁଖେ ମୃଣାଳ ଧରି ମୁଖେ ଗୁହ୍ନିଁ ।
କୃଷ୍ଣ ଲାବଣ୍ୟ ଅମୃତକୁ ପିଇଁ ॥
ପକ୍ଷୀ ଜୀବ ଯନ୍ତ୍ରେଁ ହେଲେ ପ୍ରମତ୍ତ ।
କେଉଁ ଶବ ହେଲା ଅମ୍ଭ ମୋହିତ ॥
ଗେରୁ ଘୋଶ ଯେନ ଲଲାଟ ପାଟି ।
ଅଙ୍ଗେ ନାନାରଙ୍ଗେ ଶତା ଉକୁଟି ॥
ରଙ୍ଗ ଯାମୁଡ଼ାଳ ସ୍ତବକ କେଣ୍ଡି ।
ବରହିପୁଚ୍ଛରେ ମଉଳ ମଣ୍ଡି ॥
ପୀତ ବସନ ପରିଧାନ କାଛୁ ।
ମଲ୍ଲ ବେଶ ନନ୍ଦ ମନ ମୋହୁଛୁ ॥
ସୁସଙ୍ଗରେ ବାହୁ ରଣ ରଙ୍ଗରେ ।
ହାର ଜଣା ଛଳ ବଳ ଭଙ୍ଗିରେ ॥
ଦେଲେ ବନ ଜୀବ ନେତ୍ର ସୁଖକୁ ।
ଆମ୍ଭ ନେତ୍ରକୁ ବିଚ୍ଛେଦ ଦୁଃଖକୁ ॥
କୃଷ୍ଣ ବନ ଯାନ୍ତେ ଯଶୋଦା ଦେବୀ ।
ଛନ ଛନ ମନ ବିଷାଦ ଲଭି ॥
ଆରତେ ପୁଚ୍ଛନ୍ତି ଏକ ଆରକେ ।
ବନକୁ ଗଲେ ଯେ ମୋର ବାଳକେ ॥
ନବୀନ କୋମଳ ପାତଳ ତନୁ ।
ଏତେ ବେଳ ଯାଏ ନଆସେ ବନୁ ॥
ଦୁଷ୍ଟ ପାପିଷ୍ଠ ଧାଡ଼ିକ ଡ଼ରଇ ।
ନ ସରଇ ଦିନ ଦୁଃଖେ ଝୁରଇ ॥
ଯେତେ ନାହିଁ କଲେ ଗୋଧନ ରଖି ।
ବୋଲେ ମାଏ ଏଣେ ହୋଇବେ ଦୋଷି ॥
ଏକଇ ବଚ୍ଛୁ ହିଡା ନୁହେ ସଙ୍ଗି ।
ଦେଖିଲ କି କାହିଁ ମେଲ ବଉଗୀ ॥
କହନ୍ତି ଗୋପୀ ଲାଳସ ବିଳାସେ ।
ଯଶୋଦା ଦେବୀ ମାନସ ହୁଲ୍ଲାସେ ॥
ଯମୁନା ଯାଇଥିଲୁଁ ଆଗୋ ମାଏ ।
ଶୁଣିଲୁଁ ତୁମ୍ଭ କୃଷ୍ଣ ବେଣୁ ବାଏ ॥
ପାଣି ପୂରଇ ନ ପାରୁଁ କୁମ୍ଭରେ ।
ରହିଣ କୂଳେ ନପାରୁଁ ଦମ୍ଭରେ ॥
ଶ୍ରଦ୍ଧାରେ ଧାଇଲୁଁ ଦେଖିବା ପାଇଁ ।
ମଧ୍ୟାହ୍ନ ସମୟେ ଭେଟିଲୁଁ ଯାଇ ॥

ତୁମ୍ଭ ସୁତ ଗୋପସୁତ ମଧ୍ୟରେ ।
ଆଦି ପୁରୁଷ କି ସୁର ସିଦ୍ଧରେ ॥
ତରୁ ତଳରେ ତ୍ରିଭଙ୍ଗ ଛନ୍ଦରେ ।
ମୋହନ ମୁରଳୀ ବିମ୍ବ ଅଧରେ ॥
କୋମଳାଙ୍ଗୁଳି ସପତ ରନ୍ଧ୍ରରେ ।
ଧୀରେ ଧୀରେ ଗୁଳି ବାଏ ମନ୍ଦରେ ॥
ମଧୁର ସୁସ୍ୱରେ ବଜାଇ ବେଣୁ ।
ତୃଣ ମୁଖେ ଶୁଣି ଧାମନ୍ତି ଧେନୁ ॥
ଖଗ ମୃଗାଦି ବନଚର ଜୀବେ ।
ବଇର ତେଜି ସୁଖେ ପ୍ରିୟ ଭାବେ ॥
ତରୁ ଲତା ମଧୁ ଧାର ସମୂହେ ।
ବେଣୁ ଗୀତରେ କି ଲୋତକ ବହେ ॥
ଫଳ ଭରଣେ ନମନ୍ତି ଚରଣେ ।
ଯେସନେ ଦେବ ମାଧବ ଶରଣେ ॥
ଅଚେତ ପ୍ରାଣୀ ଏଧନ ଚରିତ ।
ସଚେତ ମୋହିତ କି ଆଚମ୍ବିତ ॥
ନୃତ୍ୟ ଲୀଳାରଙ୍ଗେ ଶ୍ରମକୁ ପାଇ ।
ଛାଇ ତଳେ ବସି ମଣ୍ଡଳୀ ହୋଇ ॥
ଗୋପାଳ ପୁଏ ପଲ୍ଲବ ବିଞ୍ଚିତ ।
ଶୀତଳ ଜଳ ବଦନେ ସିଞ୍ଚିତ ॥
ଜ୍ୟେଷ୍ଠ ଭ୍ରାତା ବଦନକୁ ଚାହିଁଲେ ।
ଭୋଗ କଲା କି ଖାଇବା ବୋଇଲେ ॥
ଅନୁଜ ବଚନ ଶୁଣି ଆଶ୍ୱାସି ।
ଗୋପସୁତଙ୍କୁ ପୁଚ୍ଛନ୍ତି ବିଶ୍ୱାସି ॥
କେ କସ ପୂରୁଁ ଆଣିଅଛ କହ ।
କ୍ଷୁଧାରେ ଆକୁଳ କହାଇ ଦେହ ॥
କେ ବୋଲେ ଆଣିଛ ସର ଶାକର ।
କେ ବୋଲେ ଦଧି ତ୍ରିଗୁଣି ତଗର ॥
କେ ବୋଲେ ଆଣିଅଛୁ ଶିଖରଣୀ ।
କେ ବୋଲେ ଗୋଟିକା ବର୍ଣ୍ଣା ଲବଣୀ ॥
କେ ବୋଲେ ଖଣ୍ଡଲଡ଼ୁ ଚାଳ ମୁଆଁ ।
କେ ଆଣିଅଛୁ ଖଇ ଘିଅପୂଆ ॥
କେ ବୋଲେ ଆଣିଛୁ ରୁଟି ପାପୁଡ଼ ।
କେହୁ ଆଣିଅଛୁ ଛେନା ଖରଡ଼ ॥

କେ ବୋଇଲେ ଆଣିଅଛୁ ଧୂଆମୁଗ ।
ଖଣ୍ଡି ଖଣ୍ଡି ଅଦା ନଡ଼ିଆ ସଙ୍ଗ ॥
କେ ବୋଲେ ଇକ୍ଷୁ ପଶଡ଼ ଆଣିଛୁ ।
ଗୋବିନ୍ଦ ମନ ଆଗହୁଁ ଜାଣିଛୁ ॥
କେ ବୋଲେ ଆଣିଛୁ ଅମୃତ ପାନ ।
ଶ୍ୱେତ ଶକର କେ ଅଛଇ ଆଣି ॥
କେ ବୋଲେ ଆଣିଛୁ ଅମୃତ ଲଡ଼ୁ ।
କେ ଆଣିଅଛୁ ବାସପାଣି ଗଡ଼ୁ ॥
ଏମନ୍ତେ ଯେହୁ ଯାହା ଆଣିଥିଲେ ।
ମଧ୍ୟେ ଏକଠୁଳ କରି ଥୋଇଲେ ॥
ବୋଲନ୍ତି ବଟୁକ ଆଣିଛ ରଖ ।
ବଟୁ ବୋଲେ ଆଣିଛୁ ଭେକ ॥
ଆଗ ହୋଇ ପଙ୍କ ପାନ୍ତି ବସିଲେ ।
ଏକକୁ ଆରେକ ଦେଖି ହସିଲେ ॥
ମଣ୍ଡଳୀ ବସି ପାଣି ପଙ୍କ ଦେଇ ।
ପରଶଇ ସବୁ ସୁବଳ ନେଇ ॥
ମଧ୍ୟେ ବସି ଭୁଞ୍ଜନ୍ତି ବେନି ଭାଇ ।
ଯେତେ ପରଶିଲେ ସରଇ ନାହିଁ ॥
ସୁସ୍ୱାଦୁ ଫଳ ବନ କନ୍ଦମୂଳ ।
ସବୁ ନେଇଣ କରିଥିଲେ ଠୁଳ ॥
ଭୁଞ୍ଜିଣ ସକଳେ ପିଣ୍ଡ ତୋଷିଲେ ।
କୃଷ୍ଣଙ୍କ ପଛେ ସୁବଳ ବସିଲେ ॥
ଆଚମନ କଲେ ସୁବାସ ଜଳେ ।
ମୁଖ ବାସ ପକ୍ୱ ହରିଡ଼ା ଫଳେ ॥
କୋମଳ ପଲ୍ଲବ ଶଯ୍ୟା ରଞ୍ଚାଇ ।
ଦୋଷଡ଼ା ବସନ ତହିଁ ବିଛାଇ ॥
ନନ୍ଦବାଳସେ ତହି ଶୁଆଇ ହରି ।
ଗୋପାଳ ପୁଏ ପାଦ ସେବା କରି ॥
ସହୋଦର ଜଗି ସନ୍ନିଧେ ବସି ।
ସ୍ନେହଭରେ ତନୁକରେ ଆଉଁସି ॥
ସୁରଭିଚର ଗିରିତଟୁଁ ଖସି ।
ଗୋବିନ୍ଦଙ୍କୁ ବେଢ଼ି ବସିଲେ ଆସି ॥
ଲକ୍ଷ୍ମୀ ଉହାଡ଼େ ଦେଖୁଥିଲା ରହି ।
ଅଳକ୍ଷି ମୋତେ ନଦେଖିଲେ କେହି ॥

କି କହିବା ତୁମ୍ଭ ପୁଣ୍ୟ ମହିମା ।
ଜଗତେ ସମାନ ନାହିଁ ଉପମା ॥
ଜନଦୁର୍ଗମେ ଯହିଁ ଗଲେ ପୂଜା ।
ରାଜା ଆରାଧନେ ଯେହ୍ନେ ପରଜା ॥
ଏଥକୁ ଚିନ୍ତା ନକର ଭ୍ରମାନ୍ତ ।
ଜଗମୋହନ ଏ ତୁମ୍ଭର ସୁତ ॥
ଗୋପୀଗଣୁ ଶୁଣି ଯଶୋଦା ଦେବୀ ।
ନୟନ ଥନ ଥନ ସ୍ତନ ସ୍ରବି ॥
ପୁଣ ପୁଣ ଶୁଣେ ଗୋପୀଙ୍କି ପୁଚ୍ଛି ।
ଓଷ୍ଠ ଧରିଣ ବୋଲେ ଯାଇ ଲୁଚି ॥
ଆଜକେ କସ ଜାଣିଅଛ କହ ।
ଅମୃତ ସିଞ୍ଚିଲ ଦହିଲ ଦେହ ॥
ଆରକ ଗୋପୀ ବୋଲଇ ଭେରୁଣୀ ।
ମୁହିଁ କୃଷ୍ଣ ଦେଖି ଅଇଲି ଜାଣି ॥
ଅପରାହ୍ନକାଳେ ତୁମ୍ଭ କୁମର ।
ଗୋଷ୍ଠକୁ ଆସିବାକୁ ତତ୍ପର ॥
କୁସୁମ ଫଳ ତୋଳି ସଖାରଙ୍ଗେ ।
ସୁରଭି ଚରୁଥିଲେ ତଡ଼ାଗେ ॥
ନାମ ଧରିଣ ବଂଶୀରେ ଗାଇଲେ ।
ଶୁଣନ୍ତେ ଗାବ ଗୋପାଳେ ଧାଇଁଲେ ॥
ତୃଣ କବଳ ଧରି କର୍ଣ୍ଣ ଡେରି ।
କୃଷ୍ଣଙ୍କୁ ବେଢ଼ି ଶତେ ସୁର କରି ॥
ଫଳ ଫୁଲ ଡାଳି ଗୋପାଳ ହସ୍ତେ ।
ମୁରଲୀ ରବରେ ମିଳି ଭରତେ ॥
ବୋଲନ୍ତି ହରି ଶୁଣ ମିତ୍ରଗଣେ ।
ସୁରଭି ପେଟ ପୂରାଇଲେ ତୃଣେ ॥
ଭେକରେ ସବୁରି ଶୁଖିଛୁ ମୁଖ ।
ଗୋଠକୁ ଯିବା ଗୋଧନ ସଲଖ ॥
ପଥ ବହୁତ ଦିନ ଅବସାନେ ।
ଜନନୀ ଦୁଃଖ କରୁଥିବେ ମନେ ॥
କ୍ଷୁଧା ଆକୁଳେ ରବୁଥିବେ ବଚ୍ଛା ।
ଶୁଣି ଗୋପାଳେ ବୋଲନ୍ତି ଯେ ଇଚ୍ଛା ॥
ବନ ଗିରିଙ୍କି ଓଲଗ ମେଲାଇ ।
ଉତ୍ତର ଗୋଷ୍ଠେ ଗୋଧନ ଚରାଇ ॥

ତୁମ୍ଭ ନନ୍ଦନ ଗୋପସୁତ ମଧ୍ୟେ ।
ତାରା ଗଣେକ ପୂର୍ଣ୍ଣ ଇନ୍ଦୁ ଉଦେ ॥
ଧୀରେ ଧୀରେ ଆସେ ଗାଈ ବଳାଇ ।
କୋମଳ ତୃଣ ଦେଖିଲେ ଚରାଇ ॥
ନବ ପ୍ରବାଳ ଫୁଲ ମାଳ ମାଳ ।
ଦୋଳ ପୁଞ୍ଜିଣ ଘେନ ବ୍ରଜବାଳ ॥
କାଇଁସି କଙ୍କଣ ମୟୂର ପକ୍ଷୀ ।
ବସନ୍ତ ଡାଳ ମାଟି ଅଙ୍ଗେ ମାଖି ॥
ରଙ୍ଗ ଜାମୁ ଡାଳ ସ୍ତବକ ଗୁଚ୍ଛ ।
ଘଣ୍ଟି ଘାଗୁଡ଼ି ଆଗ ଦଛ କାଛ ॥
ଥୋପି ଥୋପିରେ ଫୁଲ ଗୋଟି ଗୋଟି ।
ଗୁଞ୍ଜ ଗୁଞ୍ଜ ମାଳ ଗୁଞ୍ଜରି ପାଟି ॥
କଣ୍ଠେ କଣ୍ଠିକାର ଚାଳୁଚୂଳିଆ ।
ନଟବର ବେଶ ବନମାଳିଆ ॥
ନାଚନ୍ତି ଗାଆନ୍ତି ଢମାଳଗୀତ ।
ଚରାମାଣେ ଆନନ୍ଦ ଉପତ ॥
କଉତୁକେ ପରିହାସ ହସନ୍ତି ।
ନୀଳମଣିକି ବେଢ଼ିଣ ଆସନ୍ତି ॥
ସୁମେଳ କରି ସୁରଭି ଅଡ଼ାଇ ।
ବନଜୀବ ଲୋଭେ ପଛେ ଗୋଡ଼ାଇ ॥
ସୁନନ୍ଦ ସୁବଳ ଓଗାଳ ବାଟ ।
ଠାବେ ଠାବେ ଜଗି ଦେଖନ୍ତି ନାଟ ॥
ଅନୁଚରେ ବନଚର ସଙ୍ଗରେ ।
ପାଛୋଟି ଆସନ୍ତି ଅନୁରାଗରେ ॥
ମଧୁର ମୂରତି ଜଗମୋହନ ।
ଧନ୍ୟ ଧନ୍ୟ ମାଏ ତୁମ୍ଭ ଉଦର ॥
ମେଲାଣି ଦେଲେ ନଯାନ୍ତି ମୂରୁଛି ।
ବୋଲନ୍ତି ଦେଖନ୍ତେ ପେଟପୂରୁଛି ॥
ସେମାନେ ଯେବେ ଦେଖି ହେ ନ୍ତମୋହ ।
ବେଭାରେ ବ୍ରଜବାସୀ ନିଜଦେହ ॥
ଆମ୍ଭେମାନେତ ନପାରୁଁ ପାସୋରି ।
ତୁମ୍ଭେତ ପୁଣି ଅଟ ଗର୍ଭଧାରୀ ॥
ନଦେଖି ଜୀବନ ରହଇ ଯାହା ।
ଆଶ୍ଚର୍ଯ୍ୟମନେ ମଣୁଅଛୁଁ ତାହା ॥

ମନ ଯାଇଥାଇ ଆଖି ରଖାଇ ।
ଘେନିଣ ଆଗତ ପଥ ଦେଖାଇ ॥
ପୁରମହିମା କହି ମାତା ଆଗେ ।
ପ୍ରବୋଧନା କରି ବହୁତ ବାଗେ ॥
ଶୋକଭର ହୋଇ ବୋଲନ୍ତି ମାଏ ।
ଆସୁ ଆସୁ ପୂର୍ଣ୍ଣରସ ଉଦୟେ ॥
ଏ ସ୍ନାନପଞ୍ଚ ଦେବୀଙ୍କି ଜଣାଅ ।
ସର୍ବଶୁଭରେ ଭୁବନେ ଅଣାଅ ॥
ଏତେବେଳଯାକେ ନନ୍ଦନେ ଗାଈ ।
ବେଳ ଉଚ୍ଛୁର ଶିଙ୍ଗା ଶୁଭୁନାହିଁ ॥
ତାର ବିଳମ୍ବେ ମୋହର ଗଞ୍ଜଣା ।
କେତେବେଳେ ଆସି ହେବ ମାଜଣା ॥
ଏସନସମୟେ ସାୟଂ ପ୍ରବେଶ ।
ଦିନଶେଷ ରବିତାପଂ ନୀରସ ॥
ପଞ୍ଚକାହାଳ ଶିଙ୍ଗା ବେଣୁଧ୍ୱନି ।
ଶୁଣନ୍ତେ ଉଚାଟ ଗୋପକାମିନୀ ॥
ଦେଖିବା ଲୋଭେ ପଥକୁ ଧାଇଁଲେ ।
ଏକ ଆରକେ ବାରତା ପାଇଲେ ॥
ମୁରଲୀ ମୁରଲୀ ଡାକ ଉଚ୍ଛୁଳ ।
ଲଗାଇ ବଧାଇ ଶଧାଇ ବାଳୀ ॥
କେବୋଲେ ଗୋବିନ୍ଦ ବଂଶୀ ମୋହନ୍ତି ।
ଗୋଧନ ଦେଖ ଗୋଷ୍ଠକୁ ଗମନ୍ତି ॥
ଧୂଳି ଉଡ଼ଣି ନନ୍ଦନେ ଆକାଶେ ।
ଲାବଣ୍ୟଚନ୍ଦ୍ର ଗୋକୁଳେ ପ୍ରକାଶେ ॥
ଦେଖିବା ଗୋଧନ ବାହୁଡ଼ା ବେଶ ।
ନଟବରଛବି ଶୋଭା ଅଶେଷ ॥
ମୁରଲୀନାଦେ ଗଉଣୀ ଗାଆନ୍ତି ।
କୋଟି ଗଉଣୀ ଚରଣେ ସେବନ୍ତି ॥
ଗୋପସୁତମେଳେ ଶ୍ରୀବନମାଳୀ ।
ଆସୁ ସେ ଥିବେ ନାଚ ଢଳ ଢଳ ॥
ତ୍ରିଭଙ୍ଗି ଛନ୍ଦେ ମୁରଲୀ ଅଧରେ ।
ଢମାଳଗୀତ ପଦ ପଦକରେ ॥
ସର୍ବାଙ୍ଗରେ ପଡ଼ିଥିବ ଗୋଧୂଳି ।
ଉଜ୍ଜ୍ୱଳ ନୀଳମଣି ତନୁଝଳି ॥

କୋଟିଶିଜିତା ଆଗଭାଗ ଚୂଳ ।
ସୁନ୍ଦର ଶୋଭା କୁନ୍ଦ ଗଭାଫୁଲ ।।
ଭୂଲତା କମ୍ପାଇ କଟାକ୍ଷ ସନ୍ଧି ।
ମନ୍ଦ ମନ୍ଦହାସେ ମରମ ଭେଦି ।।
ଗୋପସୁତ ପରେ ଚଳିବା ଶୋଭା ।
ଅଙ୍ଗ ଭଙ୍ଗୀ ଦେଖି ମୋହନ ଲୋଭା ।।
ଖେମଟା ନାଟ ହୋଇ ମଲୁଆଳି ।
ଗୋପପୁଏ ହସି ଧରନ୍ତି ତାଳି ।।
ଆଗେ ଆସୁଥିବେ ସୁରଭୀ ଯୂଥ ।
କେତେ ରଙ୍ଗରେ ଚାଲୁଥିବେ ପଥେ ।।
କାଲି ସେ ସୁଖ ଦେଇଛନ୍ତି ଯାହା ।
ମନକୁ ରହଇ ସୁମରି ତାହା ।।
ଦେଖନ୍ତେ ଦୃହପିତରେ ରହିଁଲେ ।
ଆଜ ବା କ କ ସଙ୍କେତ କହିଲେ ।।
ଏମନ୍ତେ ଗୋପୀ ଉତ୍ସୁକେ ଧାଇଁଲେ ।
କେତେ ଦୂରେ ଯାଇ ଭେଟ ପାଇଲେ ।।
ଦିନ ବଞ୍ଚଣ ବିଚ୍ଛେଦ ଦୁଃଖରେ ।
ନୟନ ପୂରେଇ ଦେଖିଲେ ସୁଖରେ ।।
କୁମୁଦ ଦିନକର ତାପେ ଦୁଃଖୀ ।
ଯେସନେ ପ୍ରଫୁଲ୍ଲ ଚନ୍ଦ୍ରକୁ ଦେଖି ।।
କୃଷ୍ଣ ଚନ୍ଦ୍ର ପ୍ରିୟା ଆହ୍ଲାଦରେ ।
ଅପାଙ୍ଗ ଭଙ୍ଗି ପ୍ରହାସ ଅଧରେ ।।
ସୁମରି ଗତରାତ୍ର ରତି ଦାନ ।
ଏକା ବେଳେକେ କରି ସନମାନ ।।
ମୁରଲୀନାଦେ ସଙ୍କେତ ଜଣାଇ ।
ଏକ ଏକରେ ଶ୍ରବଣେ ଶୁଣାଇ ।।
କାହାକୁ ବୋଲନ୍ତି ପ୍ରାଣ ସଜନୀ ।
ତୁମ୍ଭ ପୁରେ ଆଜ ଯିବା ରଜନୀ ।।
କାହାକୁ ସଙ୍କେତ ନୀପ ମୂଳକୁ ।
କାହାକୁ କହି କାଳନ୍ଦୀ କୂଳକୁ ।।
କାହାକୁ ବୋଲନ୍ତି ଗୋ ପ୍ରାଣସଖି ।
କାଲି ବନ ବୁଲି ହୋଇଛ ଦୁଃଖୀ ।।
ଆଜ ହାର ଫେଡ଼ ଥିବଟି ବସି ।
ମିଳିବଇଁ ଦେଢ଼ପହର ନିଶି ।।

କାହାକୁ ବୋଲନ୍ତି ଯାଅ କୁଞ୍ଜକୁ ।
ମଣ୍ଡାଇ ଥିବ କୁସୁମଶେଯକୁ ।।
କାହା ସଙ୍ଗେ ନିଶି ପ୍ରଥମେ କହି ।
କୁମୁଦ ବନରେ ହୋଇବା ଭେଟ ।।
କାହାକୁ କହି ଗଜଗାର୍ଥକୁ ।
ଯିବ ବେଗ ଗୃହୁଁ ଥିବ ପଥକୁ ।।
କାହାକୁ କହି ଶ୍ରୀକୁଣ୍ଡ ତଟକୁ ।
ଜଗିଥିବ ତୁମ୍ଭ ଯିବା ବାଟକୁ ।।
ଏମନ୍ତେ ସମସ୍ତେ ସଙ୍କେତ ପାଇ ।
ପୁଲକ ତନୁ ଉର ଉଲ୍ଲସଇ ।।
ଏମନ୍ତେ ହରି ମନ୍ଦିରେ ପ୍ରବେଶ ।
ତାତ ଜନନୀ ମନ କରି ତୋଷ ।।
ଜନନୀ ସ୍ନାନ ସୁବେଶ ଭୋଜନେ ।
ରାଧିକା ପକ୍ୱ ଦ୍ରବ୍ୟ ନିଯୋଜନେ ।।
ଗୋଦୋହନ କରି ଗାବ ସମ୍ଭାଳି ।
ଦୁଧ ଚଳାଇ ପୁରେ ପୁଣି ମିଳି ।।
ପିତା ସଙ୍ଗରେ କରନ୍ତି ଭୋଜନ ।
ସ୍ୱାଦ ସୁପାକରେ ଅନ୍ନ ବ୍ୟଞ୍ଜନ ।।
ପ୍ରଦୋଷରେ ବିଜେ ଗୋପ ସଭାକୁ ।
ପ୍ରକାଶଇ ନିଶି ହସି ଶୋଭାକୁ ।।
ନିଦ୍ରା ଅଳସେ ମନ୍ଦିରେ ଶୟନ ।
ଯେ ଯହିଁ ସଙ୍କେତ ତହିଁ ମିଳନ ।।
ହରି ଲଭି ସୁଖେ ରମେ ତରୁଣୀ ।
କାହାରି ବିହାର କେହି ନଜାଣି ।।
ଏହି ରୂପରେ ଗୋବିନ୍ଦର ଲୀଳା ।
ସୁଜନ ଜନ ଗଳେ କରେ ମାଳା ।।
ଭାଗବତ-ସୁଧା-ସିନ୍ଧୁ ବାହାର ।
ସାର ରସ ବୋଲି ବ୍ରଜବିହାର ।।
ବାସ ବୃଢ଼ା ତହିଁ ନପାଇ ସ୍ଥଳ ।
ଉଦ୍ଧରି କହୁ ରସ କଲ ଠୁଳ ।।
ସୁଜନେ କର୍ଣ୍ଣେ ପୀରତିରେ ପିଅ ।
ଦୀନ ଦାସକୁ ପାରି କରି ନିଅ ।।
ନଳକୂବରେ କହନ୍ତି ନାରଦ ।
ଏଥି ଉତ୍ତାରୁ ଶୁଣ କେଶୀ ବଧ ।।

ମଥୁରା କଟକେ କଂସ ରାଜନ ।
ଗୋପକୁ ଅଂଘି ନୁହଇ ଭାଜନ ॥
ଗୋବିନ୍ଦ ମନ୍ଦ ଶତ୍ରୁ ମଲ୍ଲ ପେଶି ।
ବେଳେ ବେଳେ ହରି କଞ୍ଚେ ନାଶି ॥
ଆଶେ ପାଶେ ଥିଲେ ଯେ ପୃଥ୍ୱୀ ଶଲ ।
ସବୁ ନାଶିଲେ ସଙ୍ଗେ ହୋଇ ବଳ ॥
ମରଣେ କଂସ ମନେ ଭୟ କରି ।
କେଶୀ ପେଷିଲା ଗୋପ ଶିଶୁ ହରି ॥
ଅଶ୍ୱ ରୂପରେ ହ୍ରେଷା ରବକରେ ।
ଖୁରେ ଅବନୀ ଖୋଳେ କ୍ରୋଧ ଭରେ ॥
କଳା ମେଘ ପ୍ରାୟ ଦିଶଇ କାଏ ।
ତରୁ ଉପୁଡ଼େ କନ୍ଧ କେଶ ବାଏ ॥
ପୁଚ୍ଛ ବୁଲନ୍ତେ ଅଚଳ ଚଳନ୍ତି ।
ଦେବେ ଦେଖି ନଭେ ଭୟେ କମ୍ପନ୍ତି ॥
ଚଣ୍ଡ ଗର୍ତ୍ତ ଭୂମି ହୁଅଇ ଖାଡ଼ ।
କାଷ୍ଠ ପାଷାଣ ଗଗନରେ ଉଡ଼େ ।
ଧୂଳି ଉଚ୍ଛୁଳି ନଦିଶଇ ଦିଶ ।
ଗୋପ ଲୋକେ ଦେଖି ବୋଲନ୍ତି କସ ॥
ନଷ୍ଟ କରଇ ପର୍ବତ ପର୍ବତ ।
ମୂସ ଘାତରେ କ୍ଷିତି ଖାତ ଖାତ ॥
ଘୋର ଗର୍ଜ୍ଜନ ନାଦେ ମହୀ ପୂରି ।
ପଳାନ୍ତି ଲୋକ ଦେଖି ଭୟଙ୍କର ॥
ଆସୁଅଛି ବୀର ବସ୍ତାରି ପାଟି ।
ପ୍ରଚଣ୍ଡ ମେଘ ଆସେ କବା ଘୋଟି ॥
ରାମ କୃଷ୍ଣରେ ପଶନ୍ତି ଶରଣ ।
ଗୋପାଳେ ଡାକନ୍ତି କର ତାରଣ ॥
ଗୋକୁଳ ଆରତ ଦେଖିଣ ହରି ।
ଆଗ ହୋଇଲେ ଲୋକ ପଛ କରି ॥
ବାହୁ କର ମାରି ଡାକନ୍ତି ଆରେ ।
ମୋହର ସଙ୍ଗେ ଯୁଦ୍ଧ କରି ବାରେ ॥
ଅଶ୍ୱ ରୂପ ଧରି ଲୋକ ଡରାଉ ।
ଦାନ୍ତ ନକୁଟିଣ ଭୟ କରାଉ ॥
ଜନ ବାହନ ହୋଇ ଏତେ ଆଣ୍ଠ ।
ଆଜ ଖଣ୍ଡା ସଙ୍ଗେ ହୋଇବ ଭେଟ ॥

ଶୁଣି କେଶୀ ବୀର ଧାଇଁଲା ବେଗେ ।
ମାରିଲା ବେନି ନାତ କୃଷ୍ଣ ଅଙ୍ଗେ ॥
ଦେହେ ନବାଜନ୍ତୁଣୁ ଧରିଲେ ହରି ।
ବୁଲାଇ ଊର୍ଦ୍ଧ୍ୱେ ଚକ୍ର ପ୍ରାୟ କରି ॥
କେଶୀ ମୁଖରୁ ରୁଧିର ବାହାର ।
ବକ୍ଷଣ ପଡ଼ଇ ବହୁତ ଦୂର ॥
କଂସ ଆସ୍ଥାନରେ ପଡ଼ିଲା ଯାଇ ।
ଭୟେଣ କଂସ ଉଠିଣ ପଳାଇ ॥
ଗୋକୁଳ ଲୋକେ ଦେଖିଣ ତରସ୍ତ ।
ରୁଧିର ପାତେ ହୁଅନ୍ତି ଆରତ ॥
ବୁଲାଇ ହରି ଫିଙ୍ଗି ଦେଲେ କେଶୀ ।
ଶତେ ଉଡ଼ାରେ ପଡ଼ ମଲା ଆସି ॥
ଗରୁଡ଼ ଯେସନେ ଉରଗ ଫିଙ୍ଗି ।
ନିଶ୍ଚଳ ହୋଇଣ ରହଇ ଚରି ॥
ଇନ୍ଦ୍ର ଧ୍ୱଜ ପ୍ରାୟ ପଡ଼ିଲା ବୀର ।
ଧରଣୀ ଦୁଲୁକ ସାଗର ସ୍ଥିର ॥
ଧାଇଁଲା ପୁଣି କେଶୀ ମହାବଳୀ ।
ମୁଖବିସ୍ତାରିଲା ଗିଳିବ ବୋଲି ॥
ମହାଗମ୍ଭୀର ଦେଖି ତାରତୁଣ୍ଡ ।
ପ୍ରବେଶ ହରି କଲେ ଭୁଜଦଣ୍ଡ ॥
ବମ୍ବରେ ଯେସନେ ପଶଇ ଅହି ।
ଲୋକେ ଶୋକେ କୃଷ୍ଣ ଗିଳିଲା ବୁଝି ।
ହାହା କୃଷ୍ଣ ବୋଲି ଧରଣୀ ଲୋଟି ।
କେଶ ବାସ ଫିଟି ଧୂଳିସାଉଣ୍ଟି ॥
ଗୁଣବାହୁନ କରନ୍ତି ରୋଦନ ।
କାହିଁ ଥିଲା ଏହି କାଳଦମନ ॥
ମୃଦୁଳ ମଞ୍ଜୁଳ କୋମଳ ପାଣି ।
ଗିଳିଲା ଗଜ କଞ୍ଜଳତା ଜଣି ॥
ଗୋକୁଳ ଆକୁଳ ଜାଣି ପ୍ରଚଣ୍ଡ ।
ତପତଲୌହ ଶୁଣ୍ଡ ଭୁଜଦଣ୍ଡ ॥
ଦନ୍ତ ପନ୍ତେ ସବୁ ପଡ଼ିଲା ଝଡ଼ ।
ଚଡଚଡ଼ ହୋଇ ରସନା ପୋଡ଼ ॥
ପାଟି ଫାଟି ରହେ ଆଖି ତରଟି ।
ଅନ୍ତ ଭିତର ମନ୍ଥି ଭୁଜମୁଠି ॥

ଜୀବନ ଥକଲେ ଖୁବ୍ର ମାରଇ ।
ହର ମୁଖରୁହିଁ ପ୍ରାଣ ଗୁଡ଼ଇ ॥
ଝାଳ ବହ୍ନଣ ମଳମୂତ୍ର କଲ ।
ପୃଷ୍ଠି କାକୁଡ଼ ପବସ୍ପେ ପଡ଼ଲ ॥
ପଞ୍ଚପ୍ରାଣ କୃଷ୍ଣ ଅଙ୍ଗରେ ମିଶି ।
ଶାପରୁ ମୁକତ ଲଭିଲ କେଶୀ ॥
ଭୁଜ ବାହାର କଲେ କେଶୀନାଶି ।
ଆକାଶେ ଦେବେ କୁସୁମ ବରଷି ॥
କେଶବ ନାମ ଦେଇ ଶୂନ୍ୟେଡ଼ାକେ ।
ଅମୃତ ନଜଡ଼ଲେ ଅଭିଷେକେ ॥
ଗୋପୀ ଗୋପାଳେ ସନ୍ନିଧି ମିଳଲେ ।
ସୁବାସ ଜଳେ ବାହୁ ପଖାଳଲେ ॥
କୃଷ୍ଣଙ୍କୁବେଢ଼ି ଆନନ୍ଦ ଉଦ୍ରେକେ ।
ପ୍ରଶଂସା ସ୍ତୁତିକଲେ ଏକେଏକେ ॥
ମନମୋହନ ଉଥିର ପ୍ରଶ୍ନ ବାଞ୍ଛାବନ୍ତ ।
ଚିନ୍ତାମଣିମୟୁ ଫେଡ଼ ଶଙ୍କଟ ॥
ବିପଦ ଛେଦନ ମହିମା ମେରୁ ।
କରୁଣା ସମୁଦ୍ର କଳପତରୁ ॥
ଗୋକୁଳ ମଣ୍ଡଳ ତୋର ରକ୍ଷିତ ।
ଆଶ୍ଚର୍ଯ୍ୟ ଆଜ ଚରିତ ଦେଖିତ ॥
ନନ୍ଦ ଗୃଜନ ଧର୍ମଯେଣୁ ପାଳ ।
ଗିଳ ନପାରି ମଲ ମହାବଳୀ ॥
ଦେଖନ୍ତି କେଶୀ ମଳପିଣ୍ଡ ବେଢ଼ି ।
କଅଇ ବୋଲ ନଜଡ଼ ଚହୁଡ଼ ॥
କୃଷ୍ଣ ବାମଭୁଜ ଧରିଣ ଗୋପୀ ।
ସ୍ନେହ ଭରେଣ ଆଉଁସି କରେପି ॥
ବୋଲନ୍ତି କେଶୀ ଦେଇଥିଲ ଗିଳ ।
କହୁତ କ୍ଷତ ନାହିଁ ପୁଣବୋଲ ॥
କୃଷ୍ଣକୁ ଘେନ ଗୋପକୁ ଚଳଲେ ।
ଶୁଭ ବଧାନେ ଭୁବନେ ମିଳଲେ ॥
ସ୍ନେହ ଭରେଣ ଜନନୀ ପାଳନ୍ତ ।
ସ୍ନାନ ସୁବେଶ ଭୋଜନ ଲଳନ୍ତ ॥
ଏମନ୍ତେ ପ୍ରବେଶ ହୋଇଲ ନିଶି ।
ରାଧାଙ୍କ ସନ୍ନିଧିକ ଦୂତ ପେଶି ॥

କେଶୀ ବିନାଶ ବାରତା ଜଣାଅ ।
କଶୋଗଙ୍କି ସବକଥା ଶୁଣାଅ ॥
କୃଷ୍ଣ ସନ୍ଦେଶ ଘେନ ଚଳେ ଦୂତ ।
ପ୍ରବେଶ ବୃଷଭାନୁ ସୁତାକନ୍ତ ॥
କେଶୀ ବିନାଶ ବାରତା କହିଲେ ।
ଅଙ୍ଗ ଭୂଷଣ ବଧାଇ ପାଇଲେ ॥
ସଙ୍କେତ କୁଞ୍ଜକୁ ଚଳଗୋ ରାଧେ ।
କେଶୀ ମନ୍ଥନକୁ ମଦନ ବାଧେ ॥
ମୋତେ ପେଶି ହରି ଗଲେ କୁଞ୍ଜକୁ ।
ଶେଯାଉଣ ଥିବେ ଫୁଲ ଶେଯକୁ ॥
ମାନନ ମାନ ନକର ଚଳସି ।
କେଶୀରିପୁ ତୋଷି କେଳିକରସି ॥
ଶୁଣି ଶ୍ରୀମତୀ ଉଦବେଗ ମନ ।
ସୁବେଶ ହୋଇଣ କରେ ଗମନ ॥
ସଖୀଗଣ ଘେନ ଏଣେ ପ୍ରବେଶ ।
କୃଷ୍ଣଙ୍କୁ ଦେଖି ମନ୍ଦମନ୍ଦ ହାସ ॥
କେଶୀ ନାଶନ ସୁକେଶୀ ମୋହନ ।
ଆଜତ କୁଞ୍ଜ ଅଇଲ ବହନ ॥
କୃଷ୍ଣ ବୋଲନ୍ତି ତୁମ୍ଭଙ୍କୁ ନଦେଖି ।
ମନ୍ଦିରେ ମନ ନରହଇ ସଖି ॥
ବସନ ଭୂଷଣ ଟଳୁ ଅଙ୍ଗକୁ ।
ନୋହିଥାଇ ଯେବେ ତୁମ୍ଭ ସଙ୍ଗକୁ ॥
ତୁମ୍ଭର କର ସ୍ପର୍ଶ ଅଶନ ।
ଭୋଜନେ ରୁଚି ନରୁଚଇ ଆନ ॥
ଏ ଘେନ ଆମ୍ଭେ ଯେବଢ଼ ସମର୍ଥ ।
ତୁମ୍ଭଙ୍କୁ ସଖୀ କହିଲୁଁ ଯଥାର୍ଥ ॥
କର୍ପୂର ଚନ୍ଦନ ସୁଖ ନୁହଇ ।
ତୁମ୍ଭ ତନୁରେ ଶୀତଳ ହୁଅଇ ॥
ନବ ବନରେ ନବ ରସବନ୍ତ ।
ନବ ନବ ଲୀଳା ପୀରତି କନ୍ତ ॥
ବିବିଧ ବିନୋଦ ଆନ ଆନରେ ।
ଦୋଳା ମକର କୁଞ୍ଜର ଯାନରେ ॥
ମନୋରଥ ଆଜ ରଥ ଲୀଳାକୁ ।
ପୂର୍ଣ୍ଣକର ମନୋରଥ କଳାକୁ ॥

ଶୁଣି ରାଧା ବୃନ୍ଦା ବଦନ ଚୁମ୍ବି ।
କରତଳେ ଦେବ କୃଷ୍ଣ ଯାହା କହି ॥
ଜାଣିତା ବୃନ୍ଦା ହୋଇଲେ ମଉନ ।
ବଦନ ପୋତି ଲୋଚନ ନୟନ ॥
ହୃଦସ୍ଥ ତରଳ ମନ ହକଲେ ।
ପ୍ରଭୁ ପ୍ରବଳେ ପ୍ରକାଶ ନକଲେ ॥
ଜାଣିତା ମାଧବ ବୃନ୍ଦାକୁ ଚୁମ୍ବି ।
ମୋହନ ବଂଶୀ କରେ ଦେଇ କହି ॥
ବଂଶୀ ଶୁଣିହେବେ ସକଳେ ଭଙ୍ଗ ।
କେମନ୍ତେ ହେବ ଅଙ୍ଗନା ରଥାଙ୍ଗ ॥
ଏମନ୍ତ ଚିନ୍ତ୍ୟା ବରସ ହୁଅ ।
ବଂଶୀକି ନେଇ ଏବେ ଥୋଇଥାଅ ॥
ସଲଖେ ମାନସୀ ମାନ ବନ୍ଧକୁ ।
ବଳରେ ଏହାର କୁଚ ଚନ୍ଦକୁ ॥
ଯତ୍ନକରି ଏ ବଂଶୀ ରଖିଥିବ ।
ଲୋଡ଼ିଲେ ଆମ୍ଭ କାଢ଼ି ପୁଣ ଦେବ ॥
ଧରିବା କରେ ଶତାଙ୍ଗ ଅଙ୍ଗକୁ ।
ଅଙ୍ଗନା ଅଙ୍ଗ ଉରଜ ଯୁଗକୁ ॥
ରତି-ରଣରେ ଏହାଙ୍କୁ ଧରିବା ।
ଧରଣ ତରୁଣୀ ପୀଡ଼ା ହରିବା ॥
ହେ ରସମଞ୍ଜି ବେଗେ ଦିଅ ଆଜ୍ଞା ।
ଯେମନ୍ତେ ବୃନ୍ଦା ନକରେ ଅବଜ୍ଞା ॥
ଶୁଣି ଶ୍ରୀମତୀ ବୃନ୍ଦାଙ୍କୁ ଚୁମ୍ବିଲେ ।
ଯାହା ଆଜ୍ଞାଦେଲେ କର ବୋଇଲେ ॥
ଦେବୀ ଆଜ୍ଞାପାଇ ସେ ବୃନ୍ଦାବତୀ ।
ସଙ୍ଗେ ବନଦେବୀ ନବ ଯୁବତୀ ॥
କେଳି ନାଟକରେ ଛନ୍ଦ ସଧାଇ ।
ପାଇଣ ପରମ ପଦ ବଧାଇ ॥
ଷୋଳ ଅଙ୍ଗନା ସେ ହୋଇଲେ ଚକ୍ର ।
ପାଦ ଅଙ୍ଗୁଳି ଧରି ଅଙ୍ଗବକ୍ର ॥
ଷୋଳବାଳୀ ଅଖ କନ୍ଧେ ରହିଲେ ।
ଷୋଳ ନାୟିକା ସ୍ତମ୍ଭରେ ରହିଲେ ॥
ପୀତ ପଦ୍ମପୃଷ୍ଠ ଆସନ ପ୍ରଭା ।
ଷୋଳ ଯୁବତୀରେ ଅତ୍ୟନ୍ତ ଶୋଭା ॥
ଚଉଦ୍ୱାରେ ଶୋଣା ପ୍ରଭାମକର ।
ବେଦ ଗୁଣରେ ଯୁବତୀ ନିକର ॥
ତନ ଭୂମିରେ ସ୍ୱର ସ୍ୱର ସ୍ୱର ।
ପଟଳ କଳସେ ଅଷ୍ଟସୁନ୍ଦରୀ ॥
ଏମନ୍ତେ ଶତେ ଅଙ୍ଗରେ ରଥାଙ୍ଗ ।
ଶକୁର ଚାମର ନେତ୍ର ଅପାଙ୍ଗ ॥
ମଣ୍ଡିତ ବାସ କୁସୁମ ଭୂଷଣେ ।
ଘଣ୍ଟି ଘାଗୁଡ଼ି କଙ୍କିଣୀ ଘୋଷଣେ ॥
ଭାଗ ବିଭାଗେ ଅଙ୍ଗେ ଅଙ୍ଗ ଜଗି ।
ବିଶ୍ୱକର୍ମାହିଁ ନଜାଣିବ ଲାଗି ॥
ରତି ମନମଥ ରଥକୁ ପାଇ ।
ବୃନ୍ଦାଙ୍କୁ ମାଧବ ପ୍ରସଙ୍ଗେ ଚୁମ୍ବି ॥
ନାସା ଗଜମୋତି ମୟୂର ଚୂଳ ।
ଦେଲେ ସେ ବୃନ୍ଦାଙ୍ଗବେ ହୋଇ ଭୋଳ ॥
ପ୍ରସାଦ ପାଇ ହରଷ ବରସ ।
ଘଟନା କରଣ କେଳି ସୁରସ ॥
ମକରଧ୍ୱଜ ରଥବର ନାମ ।
ମୀନକେତନ ବାନା ଅନୁପମ ।
ମତ୍ତ ମାତଙ୍ଗ ଗତିରେ ଚଳଇ ।
ଯହିଁ ମନଜାଣି ତହିଁ ମିଳଇ ॥
ରଥ ବାହଇ ମଦନ ସାରଥି ।
ବୃନ୍ଦାବନଚନ୍ଦ୍ର ତହିଁରେ ରଥୀ ॥
ଯାନୁରେ ବସାଇ ନିଜ ରମଣୀ ।
ଧରି ଉରଜ କଞ୍ଜ ଚକ୍ରପାଣି ॥
ପୀତ ବସନ ବନମାଳା ସାଜେ ।
କୁସୁମ ଚୂଳ ମୁକୁଟ ବିରାଜେ ॥
ହେମ କଷଟି ବଦନ ମଣ୍ଡଳ ।
ଗଣ୍ଡେ ମଣ୍ଡିତ ମକର କୁଣ୍ଡଳ ॥
ଉରେ ଶ୍ରୀବତ୍ସ କଉସ୍ତୁଭ ମଣି ।
ନିର୍ମଳ ବସ୍ତ୍ର ପଦକ ତରୁଣୀ ॥
ବାହେ ବାହୁଟି କରେଣ କଙ୍କଣ ।
ଅଙ୍ଗୁଳିରେ ଶୋହେ ମୁଦ୍ରିକାଗଣ ॥
କଟିରେ ମେଖଳା ରତ୍ନ ବେଢ଼ିର ।
ଚରଣରେ ବୀରବର ତୋଡ଼ର ॥

ବାହେଣ ଉଡ଼େ ଖାର ନେତବାନା ।
ପଶଧାପନ କାନ୍ତାକାନ୍ତ ଯୋହ୍ଲା ॥
ନୟନ ନଳନ କଟାକ୍ଷ ବାଣ ।
ଭ୍ରୂଭଙ୍ଗି ଗୃପ ମରମେ ସନ୍ଧାନ ॥
ଅଦ୍ଭୁତ କନ୍ଦର୍ପେ ଯେ ରଥେ ବଜେ ।
ପ୍ରିୟବର୍ଗ ମଣ୍ଡ ମୋହନ୍ତ ସାଜେ ॥
ବଜସୂକଲେ ବୃନ୍ଦାବନ ରାଜା ।
ଜଣ ଜଣକେ କଲେ ବାଳୀପୂଜା ॥
ବବଧ ବନୋଦ ରଥ ପାଟରେ ।
କନ୍ୟାପାଶେ ରହଚନ୍ତ ଚିତ୍ତରେ ॥
କାନ୍ତଙ୍କୁ ଜଣାଇ ଚଳକୁ ଖସି ।
ଏକା ହୋଇ କୃଷ୍ଣ ଅଛନ୍ତ ବସି ॥
କନ୍ୟାଙ୍କୁ ଗୃହିଁ ରଜ ବୋଲେ ମାଗ ।
ତୁମ୍ଭର ପର୍ହିଁରେ ଗୋ ଅନୁରାଗ ॥
କନ୍ୟା ବୋଲନ୍ତ କ ମାଗିବୁଁ ଆଉ ।
ଏହ୍ବ ଅନୁଗ୍ରହ ସବଦା ଥାଉ ॥
କୃଷ୍ଣ ବଚ୍ଛେଦ କଷ୍ଟେ କଷ୍ଟେ ସହୁଁ ।
ତୁମ ବଚ୍ଛେଦ ନମିଷେ ନସହୁଁ ॥
ତୁମ୍ଭ ପାଦଧୂଳ ସବଦା ଧରୁ ।
ଏ ବରଦେବା ବୃନ୍ଦାବନେଶ୍ୱରୁ ॥
ହସିଣ ରଣ ହଉହଉ ବୋଲ ।
ଏମନ୍ତେ କୃଷ୍ଣ ଓହ୍ଲାଇଣ ମିଳ ॥
ରଥ ବଢ ଫିଟି ପାଦେ ଓଳଗି ।
ରାଧା ମାଧବ ଭାବେ ଅନୁରାଗୀ ॥
ଏମନ୍ତେ ବହାର ବବଧରଙ୍ଗେ ।
କୁଞ୍ଜେ ଶୟନ କଲେ ଏକସଙ୍ଗେ ॥
ଜାଣି ସଜନୀ ଗହଳ ଭାଜଲେ ।
ଯେ ଯାହା କୁଞ୍ଜରେ ରହ୍ବ ଜାଗିଲେ ॥
ଯୋଗମାୟା ନଦ୍ରାଦାରେ ନୟନ ।
ଗୋବନ୍ଦ ଦୋଳେ ନର୍ଣ୍ଣିନ୍ତ ଶୟନ ॥
ଅଚେତଣ କର ପାଲଟି ସ୍ମୃତ ।
ଏମନ୍ତ ରଜନୀ ହେଲ ପାହାନ୍ତ ॥
ନଦ୍ରାରେ ଦେବୀ ଦେଖିଲେ ସ୍ୱପନ ।
କୃଷ୍ଣ ବଚ୍ଛେଦରେ କଲେ ରୋଦନ ॥

କୋଳ ଅଣ୍ଡାଳ ନପାଇଲେ ଯେଣୁ ।
ସତ ପ୍ରାୟମଣି କାରୁଣ୍ୟ ତେଣୁ ॥
ହେ ନାଥ ତେଜ ପୀରତ ବଢ଼ାଇ ।
ଏକାବେଳକରେ ଦେଲ ଏଡ଼ାଇ ॥
ଛାଡ଼ିଣ ଗଲ ମୋତେ ଏକାକର ।
କେଉଁ ଅପରାଧ ମନରେ ଧର ॥
ଭଲେକ ଆଉ ରଖିବ ମଦନ ।
କାହିଁ ଗୃହିଁବ ସେ ନୀଳବଦନ ॥
ଆଘ୍ରାଣେ ଅଙ୍ଗ ସୁଗନ୍ଧ ନପାଇ ।
ଜୀବନ ଆଉ ଧରବ କପାଇଁ ॥
ନପାଇ ସୁରଙ୍ଗ ଅଧର-ସୁଧା ।
କ୍ଷଣେକ କ ବଞ୍ଚପାରବ ରାଧା ॥
କୃଷ୍ଣ ଆଲିଙ୍ଗନ ନପାଇ ଦେହ୍ମ ।
ଦାରୁଣ ମଦନ ବେଗେଣ ଦହ୍ବ ॥
ନଟବର ବେଶ ଛବ ନଦେଖି ।
ଉପୁଡ଼ ପଡ଼ବ ଏ ବେନ ଆଖି ॥
ଏମନ୍ତେ ସଖୀ ଶୁଣି ସେ ରୋଦନ ।
ବେଗେଣ ଆସି ମିଳ ସନ୍ନିଧାନ ॥
ଦେଖିଲେ ସଖୀ ଧରଛନ୍ତ କୋଳେ ।
ଶୋକ କଲେ ରାଈପ୍ରେମ ବହ୍ଲେ ॥
ମନେ ବଗ୍ଭର ସେ କରନ୍ତ ସଖୀ ।
ରୋଦନ କରଇ ସ୍ୱପନ ଦେଖି ॥
ବୋଲନ୍ତ ସଜନ ! ହେଲୁ ବିଭୋଳ ।
ଦେଖ କୃଷ୍ଣତ କରଛନ୍ତ କୋଳ ॥
ବଅର୍ଥେ ବଚ୍ଛେଦ କାରୁଣ୍ୟ ବାଣୀ ।
ସ୍ୱପନ ଦେଖି ସତ୍ୟପ୍ରାୟ ମଣି ॥
ସଜନୀ ବଚନେ ଚେତ ଅନାଇ ।
ଗୋବନ୍ଦ ବଦନେ ନରେପି ଗୃହିଁ ॥
ଲଜ୍ଜାଭରେ କଛୁ ନକହ୍ବ ତୁନ ।
ପୁଛନ୍ତ ନକହେ ପ୍ରେମ ମାନନୀ ॥
ପ୍ରିୟାମାନ ଦେଖି କଞ୍ଜ ଲୋଚନ ।
ଗଦଗଦ କହେ ଗୃଟୁବଚନ ॥
କୋକିଲବଚନୀ କଟକ ମଣ୍ଡନ ।
ନଦ୍ରାରେ କବା ଦେଖିଲ ସ୍ୱପନ ॥

ମଧ୍ୟରେ ଅନ୍ତର ହୋଇବ ବୋଲି ।
ଚନ୍ଦନ ବସନକୁ ଦୂର କଲି ॥
ନିବିଡ଼ରେ ଜଡ଼ି ଅଙ୍ଗରେ ଅଙ୍ଗ ।
ଏଥିରେ କାହିଁ ସେ ହେଲା ବିଯୋଗ ॥
ଦୁଃଖ ମିଳନ ଏଡ଼େ ସୁଖଖଣ୍ଡି ।
ବିନା ଅପରାଧେ କେତେହେଁ ଦଣ୍ଡି ॥
ପ୍ରସନ୍ନ ହୋଇଣ କର ସଦୟେ ।
ସଦ୍ୟନୃତ୍ୟ କରୁ ମୋ ହୃଦୟେ ॥
ମନକୁ ହର ଚରଣେ ଖଟାଇ ।
ଏଥିରେ ବିଚ୍ଛେଦ ହୋଇବା କାହିଁ ॥
ହେ ସଖି ! ଯୋଗେ ବିନୋଦ ଗମନେ ।
ନକରିବ ବିନ୍ତ ଖେଦ ବିମନେ ॥
କଥା ଛଟକେ ପ୍ରିୟାକୁ ମନାଇଁ ।
ପୁଣ ପୁଣ ବଦନକୁ ଅନାଇଁ ॥
ମନ୍ଦହସି କୃଷ୍ଣମୁଖକୁ ଗୃହିଁ ।
ପ୍ରେମଭରେ କହି ନପାରେ ରାଈ ॥
ଏମନ୍ତେ ଅରୁଣ ଜ୍ୟୋତି ପ୍ରକାଶେ ।
ଲୋକଭୟେ ଉଦବେଗରେ ଆସେ ॥
ଭୁଜ ଧରି ଧରି କୁଞ୍ଜୁ ବାହାର ।
ପୁରକୁ ଗଲେ ପ୍ରାତେ ଯେ ଯାହାର ॥
ସ୍ୱପନ ବିଧାନ ସଖୀଗଣଙ୍କୁ ।
କହନ୍ତେ ବୃନ୍ଦା ଚେତିଲେ ମୁନଙ୍କୁ ॥
ସ୍ୱପନକଥା ସତନକ ହୁଏ ।
ଦେଖି ମନେ ଥାଇ ଯେ ଯାହା ଭୟେ ॥
କଥା ଭୁଲଇ ପ୍ରକାଶ ନକଲେ ।
ଏମନ୍ତ ପୁରେ ପ୍ରବେଶ ହୋଇଲେ ॥
ପ୍ରାତଃକୃତ୍ୟକୁ କଲେ ନିତମତେ ।
ନାରଦ କହେ ଧନପତି ସୁତେ ॥
ସମ୍ପୂର୍ଣ୍ଣ ଏଠାରୁ ବ୍ରଜବିହାର ।
ଶୁଣି ସଦା କର ଗଳାର ହାର ॥
ମୂଚନା ଆଦି କେଶୀ ପରିଯନ୍ତେ ।
ରାମ କୃଷ୍ଣ ଗୋପେ ନାଶିଲେ ଯେତେ ॥
ଭାଗ୍ୟ ଭୋଗ୍ୟବାର ଭୋଗ୍ୟ ଗୋକୁଳେ ।
ନର ଲୀଳାରେ ମୋହିତ ସକଳେ ॥

ଶୂର ବୀର ଧୀରେ ଧାର୍ମିକ ଗୁଣେ ।
ମଦନ ମୋହନ ସୁନ୍ଦର ପଣେ ॥
ଏଣେ ସେ ବ୍ରଜ ଯୁବତୀ ନମିଲେ ।
ସବୁ ଭେଜ ହରି ରସେ ମଜ୍ଜିଲେ ॥
ଭକତ ଜନେ ଅନୁଗ୍ରହ କରି ।
ଶ୍ରୀକୃଷ୍ଣ ମନୁଷ୍ୟ ଦେହକୁ ଧରି ॥
ଏହି ମନୁଷ୍ୟ ବିହାର ଆଗ୍ରର ।
ଶୁଣନ୍ତେ ପ୍ରେମ ଲଭେ ତତପର ॥

ତଥାହି ଶ୍ରୀମଦ୍ଭାଗବତେ

ଅନୁଗ୍ରହାୟ ଭକ୍ତାନାଂ ମାନୁଷଂ ଦେହମାଶ୍ରିତ ।
ଭଜତେ ତାଦୃଶୀଃ କ୍ରୀଡ଼ା ଯାଃ ଶ୍ରୁତ୍ୱା ତତ୍ପରୋ ଭବେତ୍ ।

ନଳକୁବର ପୁଛନ୍ତି ନାରଦେ ।
ଅଶ୍ରୁ ପୁଲକ ଶୋକ ଗଦଗଦେ ॥
ହେ ମୁନି ବୃନ୍ଦା କି ପାଇଁ ବିରସେ ।
ମୁରଲୀ ସେନ ପୁଣ କଲେ କିସ ॥
ବୃନ୍ଦାଙ୍କୁ ରାଧା କହିଲେ ସ୍ୱପନ ।
ନକହି ଏହାତ କଲି ଗୋପନ ॥
ବିସ୍ତାର କରିଣ କହିବା ହେଉ ।
ଶୁଣି ମୋ ମନରୁ ସଂଶୟ ଯାଉ ॥
ମୁନି ବୋଲନ୍ତି ଶୁଣ ହେ ଶ୍ରୀମନ ।
ବୃନ୍ଦାଙ୍କୁ ଆମ୍ଭେ କଲୁଁ ଦରଶନ ॥
ସେ ଦେବୀ ପ୍ରସନ୍ନ ହୋଇ କହିଲେ ।
ବ୍ରଜେ ମନୁଷ୍ୟ ଲୀଳା ପୂର୍ଣ୍ଣହେଲେ ॥
ଷଡ଼ମାସ ଏକାଦଶ ବରଷ ।
ନରବିହାରକୁ କଲେ ପ୍ରକାଶ ॥
ଗୁପତ ମହାପ୍ରେମ ପରକାଶ୍ୟା ।
ଏଣିକି ଭୋଗ ହୋଇବ ସ୍ୱକୀୟା ॥
ମଥୁରା ତେର ବରଷ ଛମାସ ।
ଏମନ୍ତେ କୃଷ୍ଣ ପଚିଶବରଷ ॥
ଦ୍ୱାରକା ବିହାର ବରଷ ଶତ ।
ମାନବ ଲୀଳା ବିହାର ଏମନ୍ତ ॥
ପୂର୍ଣ୍ଣତମ ପୂର୍ଣ୍ଣତର ପୂର୍ଣ୍ଣରେ ।
ଗୋକୁଳେ ମଧୁପୁରେ ଦ୍ୱାରକାରେ ॥

ଗୋପୀକା କୁବୁଜା ପଟ୍ଟମହିଷୀ ।
ସମର୍ଥା ସାଧାରଣୀ ସମଞ୍ଜସୀ ॥
ମଧୁରସମ ଅଇଶ୍ୱର୍ଯ୍ୟଖେଳା ।
ଏ ତିନସ୍ଥାନରେ ଗୋବିନ୍ଦ ଲୀଳା ॥
ଗୋପକନ୍ୟା କୃଷ୍ଣ କଲେ ମେଳ ।
ଏବେ ତୁମ୍ଭ ମନୋରଥରେ ଚଳ ॥
ଏମନ୍ତ ଶୁଣି ପୁଚ୍ଛିଲୁଁ ବୃନ୍ଦାକୁ ।
କହିବା ହେଲେ ବେଦବିଦ୍ୟାକୁ ॥
ଏଠାରୁ ଲୀଳା ମଥୁରା ହୋଇବ ।
କେମନ୍ତେ ଜାଣିଲ ମୋତେ କହିବ ॥
ବନଦେବୀ କହେ କାଲି ମିଳନେ ।
ଅଇଶ୍ୱର୍ଯ୍ୟଲୀଳା ଗୋବିନ୍ଦ ମନେ ॥
ଆଗେହୋଇବ ସେ ଯେତେ ବିଧାନ ।
ଶୟନେ ରାଧା ଦେଖିଲେ ସ୍ୱପନ ॥
ଏକାନ୍ତେ ମୋତେ କହିଲେ ଗୁପତେ ।
କହିଲୁଁ ତେଣୁ ସେ ହୋଇବ ଯେତେ ॥
ଦେବୀ ସ୍ୱପନରେ ଦେଖିଲେ ଯାହା ।
ଆନ କେ କରିପାରିବଟି ତାହା ॥
ତୁମ୍ଭରଆଗେ କହିଲୁଁ ବିଶ୍ୱାସ ।
ଅବନୀଭାର କରିଅ ଉଶ୍ୱାସ ॥
ନିମିଷେ ନିରବି କର ଗମନ ।
ଉଚ୍ଚାଟ କରିଅ ତୁ କଂସମନ ॥
ସେ ବନଦେବୀ ଆଜ୍ଞାଦେନ ଚଳ ।
ଶୟନସ୍ଥାନେ କୃଷ୍ଣପାଶେ ମିଳ ।୧୭୯୦।
ଗୁପତେ ଆମ୍ଭେ ନମସ୍କାର କଲୁଁ ।
ଗୋବିନ୍ଦ ଆଦରେ ପୂଜା ପାଇଲୁଁ ॥
ବହୁତ କହିଲୁଁ ସ୍ତୁତି ବଚନ ।
ପ୍ରସନ୍ନହେଲେ କମଳଲୋଚନ ॥
ଜଣାଇଲୁଁ ସେ ବର୍ତ୍ତମାନ କଥା ।
କେଶୀବଧ ଦେଖି ଛାଡ଼ିଲୁଁ ବ୍ୟଥା ॥
ସ୍ୱପନେ ରାଧା ଦେଖିଲେ ଯାହା ।
ଭବିଷ୍ୟ ପ୍ରକାଶି କହିଲୁଁ ତାହା ॥
ଧନୁଯାତ୍ରା କାଲି କଂସ ପେଶିବ ।
ରଥେ ଅକ୍ରୂର ଗୋକୁଳେ ଆସିବ ॥
ବେନିଭାଇ ସେ ରଥେ ଯିବେ ବସି ।
ଦ୍ୱାରେଣ କୁବଳୟା ଗଜ ନାଶି ॥
ଚାଣୁର ମୁଷ୍ଟିକ ଆଦି ଯେ ମଲ୍ଲ ।
ମାରିବ ସରିବ ପୃଥ୍ୱୀର ଶଲ ॥
ତୁମ୍ଭଙ୍କୁ ଦେଖିଲେ କଂସ ଡରିବ ।
ଜଗତିଉପରୁ ପଡ଼ି ମରିବ ॥
ଯଦୁବଂଶକୁ କରିବ ସମ୍ମାନ ।
ଉଗ୍ରସେନକୁ କରିବ ରାଜନ ॥
ଏଥି ଦେଖିଲୁଁ ଏତେ ଦୁଷ୍ଟନାଶ ।
ତହିଁରେ ଏତେ ଦେଖି ହେବୁଁ ତୋଷ ॥
ତହିଁରୁ ଯାଇ ରଚିବ ଦ୍ୱାରକା ।
ବିଭାହେବ ଏବେ ଅଷ୍ଟନାୟିକା ॥
ଷୋଳସହସ୍ର ଏ ରାଜକୁମାରୀ ।
ଦ୍ୱାରକାପୁର ଥିବ ଠୁଳକରି ॥
ତାଙ୍କୁ ବିଭାଶି ପୁଣ ତାହା ନେବ ।
ଗୃହଆଶ୍ରମେ ସୁଖେ ବିଳସିବ ॥
ହୋଇବ ଅନେକ ପୁତ୍ର ଦୁହିତା ।
ସକଳ ଭୁବନେ ହୋଇବ ଜିତା ॥
ଦନ୍ତବକ୍ର ଶାଲୁ ଶିଶୁପାଳକୁ ।
ଜାରାମାରି ତାରି ରାଜାମାନଙ୍କୁ ॥
ଅବନୀସ୍ଥିର କରିବ ଏମନ୍ତେ ।
ତେବେ ସେ ଦେବେ ରହିବେ ନିଶ୍ଚିନ୍ତେ ॥
କଂସକୁ ଆଜ କରିବୁଁ ଉଚ୍ଚାଟ ।
କାଲିଉତରେ ଭାଙ୍ଗିବୁଁ ତା ଆଣ୍ଟ ॥
ମନ ଇଛିତରେ ସମ୍ମତ ଜାଣି ।
ଏତେ ଜଣାଇଁ ହୋଇଲୁଁ ମେଲାଣି ॥
କଂସ ଭୁବନେ ମିଳିଲୁଁ ଏକାନ୍ତେ ।
ବିଶ୍ୱାସେ ତାଙ୍କୁ କହିଲୁଁ ଗୁପତେ ॥
ଅଁଚନ୍ତାହୋଇ ଅଛୁ ଭୋଜପତି ।
ମରଣଆସି ହୋଇଲାକ କତି ॥
ମାରଣେ ପେଶିଲୁ ଯେତେ ମଲ୍ଲଙ୍କୁ ।
ସେହିକ ରାମଗୋବିନ୍ଦ ବଳକୁ ॥
କେଶୀସେ ପେଶିଲୁ ଅତି ପ୍ରଚଣ୍ଡେ ।
ଉଦର ତାର ମନ୍ଥି ବାହୁଦଣ୍ଡେ ॥

ଦେଖଯା ପଡ଼ନ୍ତି ପର୍ବତ ପ୍ରଦେଶ ।
ନିଶ୍ଚିନ୍ତ ହୋଇ ବସିଅଛୁ ରାଏ ॥
ତୋହର ଦୁଃଖ ନପାରିଲୁଁ ସହି ।
ଦେବଙ୍କୁ ବଞ୍ଚଣ ଅଇଲୁଁ କହି ॥
ଏବେ ତାହାଙ୍କୁ ଅଣାଅ ବିଶ୍ବାସି ।
ମଲ୍ଲଙ୍କ ସଙ୍ଗେ ଯୁଝାଇବ ନାଶି ॥
ଶୁଣି ସେ କଂସ ହତ ପ୍ରାୟ ମଣି ।
ଆମ୍ଭଙ୍କୁ ପୂଜାକଲେ ପୁନପୁଣି ॥
ତାକୁ ଉଚାଟ ଲଗାଇଣ ଚଲୁଁ ।
ପିତାଙ୍କ ଛାମୁରେ ସବୁ କହିଲୁଁ ॥
ଶୁଣି ପରମେଷ୍ଠୀ ହରଷ ହେଲେ ।
ଆମ୍ଭଙ୍କୁ ବହୁତ ପ୍ରଶଂସା କଲେ ॥
ଏବେ ତୁମ୍ଭଙ୍କୁ ହେଲ ସୁମରଣ ।
ଧନ୍ୟ ସେ ତୁମ୍ଭେ ବ୍ରଜପରିପୂର୍ଣ ॥
ବ୍ରଜବିହାର ଚରିତ ଅଶେଷ
ତୁମ୍ଭଭାବେ ହୃଦେ ହେଲେ ପ୍ରକାଶ ॥
ଦଶଦିବସ କହିଲୁଁ ତୁମ୍ଭରେ ।
ସନ୍ତୋଷେ ମେଲାଣି ଦିଅ ଆମ୍ଭରେ ॥
ଶୁଣି ଧନପତିସୁତ ସନ୍ତୋଷେ ।
ନାରଦଙ୍କୁ ପୁଣ ପୁଚ୍ଛେ ବିଶ୍ବାସେ ॥
ହେ ! ମୁନି କୃଷ୍ଣ ପରମକାରଣ ।
ନାହିଁ ଆଦି ଯାର ଜନ୍ମମରଣ ॥
ବ୍ରହ୍ମ ଆନନ୍ଦ ଯାର ଲେଶ ମାତ୍ର ।
ସେ କିମ୍ପା କଲେ କୁତ୍ସିତ ଚରିତ ॥
ନିଜ ରମଣୀ ଯେଉଁ ରାଧାପ୍ରିୟା ।
ସ୍ବକୀୟା ତେଜିଲେ ପରକୀୟା ॥
ଅଜ୍ଞାନ ଜନ ଗୁପ୍ତ ଆଚରଣ ।
ବେଶ ରତିକି କରେ ଗୋଷ୍ଠରଣ ॥
କେତେହେଁ ବନିତ ଦୂତ ଜନରେ ।
ନିଶି ଘୋରଗମେ ଏକା ବନରେ ॥
ରାଧିକା ସନ୍ନିଧି ମନକୁ ପେଶି ।
କୁଞ୍ଜେବସି ପଥେ ନେତ୍ର ନିବେଶି ॥
ବିବିଧ ଉଦଯୋଗେ ଉଦବେଗ ।
କେବେ ମିଳନ କେବେ ଆଶାଭଙ୍ଗ ॥

କେତେ ଅବସ୍ଥା ଦିଏ ଭକ୍ତଙ୍କୁ ।
କହ ହେ ମୁନି କେବଣ ଏହିକୁ ॥
କହନ୍ତି ନାରଦ ଶୁଣ ସୁମତି ।
ବହୁତ ହେତୁ କୃଷ୍ଣ ନରଗତି ॥
ଏକ ଏକ ସବୁ କହି ବିସ୍ତାରି ।
ହେତୁ ବୁଝିଣ ହେନସି ବିଚାରି ॥
ଶ୍ରୀବୃନ୍ଦାବନ ନିତ୍ୟମୂଳ ଭୂମି ।
ଅଗ୍ରଭାଗ ନାମ ଗୋଲୋକ ଧାମ ॥
ଅନନ୍ତ ବଇକୁଣ୍ଠ ଡାଳ ଡାଳ ।
କୃଷ୍ଣ ସ୍ବରୂପ ନାମ ଆଦିମୂଳ ॥
କାଳେହେଁ ନୁହଇ ମୂଳ ବିନାଶ ।
ଅନନ୍ତ ବ୍ରହ୍ମାଣ୍ଡ କରେ ପ୍ରକାଶ ॥
ଅନନ୍ତ ବଇକୁଣ୍ଠ ଉତପତ୍ତି ।
ମହା ପ୍ରଳୟ ହେଲେ ମୂଳସ୍ଥିତି ॥
ରାଧାକୃଷ୍ଣ ନିତ୍ୟ ପରମ ଧାମ ।
ଲୀଳା ସକଳେ ସଖା ଅନୁପମ ॥
ସର୍ବ ଲୀଳା ମଧ୍ୟେ ମନୁଷ୍ୟ ସାର ।
ମୂଳ ବିନୁ ଆନେ ନାହିଁ ପ୍ରସାର ॥
ଦିବ୍ୟ ଦେହରେ ଗୋଲୋକ ମଣ୍ଡଳେ ।
ରାଧାକୃଷ୍ଣ ଅଇଶ୍ବର୍ଯ୍ୟ ଯୁଗଳେ ॥
ଏକଦିନେ କୃଷ୍ଣ ବିରଜା ପୁରେ ।
ପଶିଲେ ସୁଦାମ ଜଗାଇ ଦ୍ବାରେ ॥
ସଜନୀଗଣ କହିଲେ ରାଧାଙ୍କୁ ।
ଶୁଣି ସୁଦଶା ପାଇଲେ ବାଧାକୁ ॥
କ୍ରୋଧଭରେ ଗଲେ ବିରଜାପୁରେ ।
ସୁଦାମ ଦେଖି ନିରୋଧିଲେ ଦ୍ବାରେ ॥
କୋପଭରେ ଦେବୀ ଦେଲେକ ଶାପ ।
ଯା ଯା ଧର ନର କନ୍ୟାର ରୂପ ॥
ବିରଜା ଏଥି ନଦୀ ହୋଇ ବହୁ ॥
ଏହି ନାମାନ୍ତରେ ବିରଜା ହେଉ ॥
ସୁଦାମ ସକୋପେ ଦେଲେକ ଶାପ ।
ତୁମ୍ଭେ ହେ ଦେବୀ ଧର ନର ରୂପ ॥
ନପୁଂସକ ପତି ଲଭି ଦୁର୍ବାଦ ।
ପାଇବ ହୋଇବ କୃଷ୍ଣ ବିଚ୍ଛେଦ ॥

ଏମନ୍ତେ ଶାପଦେଇ ପରସ୍ପରେ ।
ବିରଜା ନଦୀ ବନ୍ଧ ଗୋଲୋକରେ ॥
ଭକ୍ତ ବଚନ କୃଷ୍ଣ ଅଙ୍ଗୀକାର ।
ବୋଇଲେ ମୁଁ ହେବ ନରଶରୀର ॥
ବିରଜା ତିର ନଦେଖିବ କ୍ଷଣେ ।
ପରକୀୟା ରସେ ରାଧାରମଣେ ॥
ଭକ୍ତଙ୍କୁ ଅବତରଣ ତାରିବ ।
ମଧୁର ରସଲୀଳା ବିସ୍ତାରିବ ॥
ଏମନ୍ତ ଶାପ ଦେଇଥିଲେ ପୂର୍ବେ ।
ମାନବ ରୂପରେ ପ୍ରକଟ ଏବେ ॥
ପୁଣ ପୂର୍ବେ ରାଧାକୃଷ୍ଣ ଯୁଗଳେ ।
ମହା ଆନନ୍ଦ ସୁଖ ପ୍ରେମଭୋଳେ ॥
ରାଧା ଜଣାଇଲେ ପୁରୁଷୋତ୍ତମ ।
ଏଥିରୁ ଅଧିକ ଅଛିକି ପ୍ରେମ ॥
ଶୃଙ୍ଗାର ଉଜ୍ଜ୍ୱଳ ରସରେ ସାର ।
ଆଉ ଉତ୍କଣ୍ଠା ଅଛିକି ଆର ॥
କୃଷ୍ଣ କହନ୍ତି ଶୁଣ ପ୍ରାଣପ୍ରିୟେ ।
ଶୃଙ୍ଗାରରସ ଲୀଳା ପ୍ରେମମୟେ ॥
ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ବେନି ପ୍ରକାର ।
ଐଶ୍ୱର୍ଯ୍ୟରେ ସ୍ୱକୀୟ ବିହାର ॥
ପରକୀୟାରେ ମାଧୁର୍ଯ୍ୟ ବିଶେଷ ।
ଉତ୍କଣ୍ଠା ପ୍ରେମଭାବ ଅଶେଷ ॥
ଜ୍ଞାନଶୂନ୍ୟ ହେଲେ ସେ ପ୍ରେମପାଇ ।
ସେ ରସ ସଖୀ ଅଛି ଗୁପ୍ତହୋଇ ॥
ଦେବୀ ବୋଇଲେ ସେ ଏଡ଼େ ଉତ୍ତମ ।
ଗୁପତ କରିଛ ପୁରୁଷୋତ୍ତମ ॥
ସେ ଗାଢ଼ ପ୍ରେମ ଆମ୍ଭରେ ବର୍ଣ୍ଣିବ ।
ତେବେ ତମୋହଠାରେ ଦୟା ବହିବ ॥
କୃଷ୍ଣ ବୋଲନ୍ତି ଆମ୍ଭରେ ନୁହଇ ।
ଭକତ କୃପାକଲେ ସେ ହୁଅଇ ॥
ବିପ୍ରଲମ୍ଭେ ଅବଲମ୍ବ ପଥକୁ ।
ଗୋଲୋକ ସୁଖକ ଲବ ମାନକୁ ॥
ପୂର୍ବେଣ ହେଥୁଏ ଥିଲା ବିଚାର ।
ସୁଦାମ ଦ୍ୱାରେଣ କଲେ ପ୍ରଚାର ॥

ଆହୁରି ପୂର୍ବେଣ ବୈକୁଣ୍ଠ ବାସୀ ।
ବିପୁରଙ୍କୁ ବନ୍ଧ ଭିତରେ ପଶି ॥
ନିତ୍ୟସ୍ଥାନେ ଦେଖି ନୃତ୍ୟ ତରୁଣୀ ।
ମୋହ ମାନହେଲେ ସାରଙ୍ଗପାଣି ॥
ଜାଣି ସେ ଶାପ ଦେଲେ ରାସେଶ୍ୱରୀ ।
ମର୍ତ୍ତ୍ୟରେ ଜନ୍ମ ନରଦେହ ଧରି ॥
ବିପୁରଙ୍କୁ ସେ ବୋଲେ କୋପଭରେ ।
ପୁରୁଷ ମିଳାଇଲୁ ଏକାନ୍ତରେ ॥
ମର୍ତ୍ତ୍ୟ ଭୁବନେ ତିନିଜନ୍ମ ହେବୁ ।
ଜଗତ ବଇରି ପଦ ପାଇବୁ ॥
ଶୁଣି ସେ ହେଲେ ବେନି ପ୍ରଣିପତ୍ୟ ।
ଉଠିଣ କରଯୋଡ଼ି କୃତକୃତ୍ୟ ॥
ବହୁତ ସମୀତ ହୋଇ ଜଣାଇ ।
ପ୍ରଭୁ କହିଲେ ପ୍ରିୟାଙ୍କୁ ମନାଇ ॥
ବଇକୁଣ୍ଠନାଥ ନକର ଚିନ୍ତା ।
ରାସେଶ୍ୱରୀ ଶାପ ନୁହେ ଅନ୍ୟଥା ॥
ଚତୁର୍ବ ବଦନ ପ୍ରାର୍ଥନା କାଲେ ।
ଦୁଷ୍ଟ ନାଶନେ ଜାତ ଯଦୁକୁଳେ ॥
ବସୁଦେବ ପିତା ଦେବକୀ ମାତ ।
ମଥୁରା ବନ୍ଧ ମନ୍ଦିରେଣ ଜାତ ॥
ଗୋପରେ ଆମ୍ଭେ ହୋଇଥିବୁଁ ଜାତ ।
ଯଶୋଦା ଦେବୀ ମାତା ନନ୍ଦତାତ ॥
ବିପୁର ଜନମ ଆମ୍ଭ ସଙ୍ଗରେ ।
ତୁମ୍ଭେ ଆସିମିଶି ଆମ୍ଭ ସଙ୍ଗରେ ॥
ପିତା ଥୋଇ ସୁତା ପାଲଟ ନେବେ ।
କଂସ ହସ୍ତରୁ ସେ ଶୂନ୍ୟରୁ ଯିବେ ॥
ଆମ୍ଭସଙ୍ଗେ ଥାଇ ଦୁଷ୍ଟଙ୍କୁ ନାଶ ।
ରୁକ୍‌ମଣୀ ଆଦି ଦ୍ୱାରକା ବିଳାସ ॥
ଭାର ଉଶ୍ୱାସିଣ ବୈକୁଣ୍ଠ ଯିବ ।
ମନୁଷ୍ୟ ଲୀଳା ଅପ୍ରକଟ ହେବ ॥
ଏମନ୍ତ ଆଜ୍ଞାଦେଇଥିବେ ଯେଣୁ ।
ସେହି ପ୍ରକାରେ ଅବତାର ତେଣୁ ॥
ଗୋପୀ ଭାବକୁ ହୋଇ ଅନୁଗତ ।
ଭଜନ୍ତି ଯେ ଥିଲେ ବହୁତ ଭକତ ॥

ଏମନ୍ତେ ବହୁକାଳ ବହିଗଲେ ।
ଐଶ୍ୱର୍ଯ୍ୟରେ କୃଷ୍ଣ ନପାଇଲେ ॥
ଯେବେ କୃଷ୍ଣ ନରଦେହ ଧରିବେ ।
ତେବେ ଗୋପକନ୍ୟା ହୋଇ ବରିବେ ॥
ଭଗତଗଣେ ଅନୁଗ୍ରହ କରି ।
ପ୍ରକାଶି ମନୁଷ୍ୟ ଦେହକୁ ଧରି ॥
ଚତୁରାନନ ଭାବ ଅନୁରୂପେ ।
ଦ୍ୱିଶାସ୍ତ୍ରରେ ଶ୍ୱେତ ବାରାହ କଳ୍ପେ ॥
ବର୍ତ୍ତମାନରେ ପ୍ରଥମ ଦିବସ ।
ତେରଦଣ୍ଡ ଲତା ଚଉଦ୍ଦଶପ ॥
ବୈବସତମନୁ ଅଠର ଯୁଗ ।
ଦ୍ୱାପର ଶେଷରେ ସବ ସଂଯୋଗ ॥
ପରମ ନିତ୍ୟମୂଳ ବୃନ୍ଦାବନ ।
ସଦା ରାଧାକୃଷ୍ଣ କେଳି ଭୁବନ ॥
ଅନନ୍ତ ବଇକୁଣ୍ଠେ ଯେତେ ମୂର୍ତ୍ତି ।
ସକଳେମିଳି ମୂଳେ କୃଷ୍ଣେସ୍ଥିତି ॥
ଯେସନେ କୁନ୍ଦଲତା ମାଡ଼ିଥାଇ ।
ମୂଳ କେବଳ ସ୍ୱାଦୁରସ ଦେଇ ॥
ମନୁଷ୍ୟ ପରମଲୀଳା ଗୋକୁଳ ।
ପରକୀୟାରସ ଅତି ଉଜ୍ଜ୍ୱଳ ॥
ପ୍ରେମସେବାକୁ ଅନୁଗତ ଯେତେ ।
ଅବତାର ହୋଇଥିଲେ ସଙ୍ଗତେ ॥
ଏହିସମୟେ କୃଷ୍ଣକୁ ଲଭିଲେ ।
ସିଦ୍ଧଦେହପାଇ ବ୍ରଜ ସେବିଲେ ॥
ସହସ୍ରକଳା ପୂର୍ଣ୍ଣ କୃଷ୍ଣ ମୂର୍ତ୍ତି ।
ତେଣୁ ପୂର୍ଣ୍ଣତମ ଗୋକୁଳ ପତି ॥
ନାହିଁ ଆଦିଅନ୍ତ ସ୍ୱୟଂ ନିର୍ମାଣ ।
ଏରୂପେ ବେଦ ଆଗମ ପ୍ରମାଣ ॥
କୃଷ୍ଣ ବ୍ରଜଲୀଳା ଶୁଣିଲ ଯେତେ ।
ହୋଇଛନ୍ତି ସେହି ରୂପେ ନିତ୍ୟେ ନିତ୍ୟ ॥
ଗୋଚାରଣ ଆଦି ରାସ ବିଳାସ ।
କେବଳ ନାହିଁ ଅସୁର ବିନାଶ ॥
ଉପରାଗ ଧର୍ମ୍ମ କାଳେ ଯେସନେ ।
ସ୍ନାନେ ଦାନେ ପୁଣ୍ୟ ଚରନ୍ତି ଜନେ ॥

ସେହି ରୂପେ କୃଷ୍ଣ ପ୍ରକାଶି ଦେଖି ।
ଭଗତ ତାର ନିଜଭାବେ ରହି ॥
ନଳ କୁବର ପଚ୍ଛରନ୍ତି ପୁଣି ।
କୃଷ୍ଣ ସ୍ୱରୂପ ତଉଲୀଳା ପୁଣି ॥
ଏବେ କହ ଠାକୁରାଣୀ ଚରିତ ।
ଅଭିମନ୍ୟୁ କି କି ରୂପେ ବରିତ ॥
କେଉଁ ଭାଗ ଯେନି ଅବତରିଲେ ।
କିରୂପେ ବଞ୍ଚଣ ଦିନ ହରିଲେ ॥
ତୁମ୍ଭ ତହୁଁ ଶୁଣି ସଂଶୟ ଯାଉ ।
ସେ ଦେବୀ ଚରଣ ଚିତ୍ତ ମୋ ରହୁ ॥
ନାରଦ ବୋଲନ୍ତି ଶୁଣ ସୁବୁଦ୍ଧି ।
ତୁମ୍ଭେ ସେ ପୁଚ୍ଛି ପାର ଏତେ ସନ୍ଧି ॥
କୃଷ୍ଣ ଗୋକୁଳରେ ପ୍ରକଟ ଯହୁଁ ।
ରାଧା ଠାକୁରାଣୀ ଉଚାଟ ତହୁଁ ॥
ନିତ୍ୟ ସିଦ୍ଧା ଗଣ ଯେନି ଜନମ ।
ଆହ୍ଲାଦିନୀ ଶକ୍ତି ଅବଲମ୍ବନ ॥
ବୃଷଭାନୁ ତାତ କୀର୍ତ୍ତିଦା ମାତ ।
ରାଧା ନାମ ବହି ଜଗତେ ଖ୍ୟାତ ॥
ଅଭିମନ୍ୟୁ ପତି ବରିଣ କେମନ୍ତେ ।
ତାହା କହିବା ଶୁଣ ଏକଚିତ୍ତେ ॥
ସୁଦାମା ମଞ୍ଜେ ଶାପେ ଜାତ ହେଲେ ।
ଶଙ୍ଖଚୂଡ଼ନାମ କିନ୍ନର କୁଳେ ॥
ତିନିପୁରରେ କେହି ନପାରେ ଜିଣି ।
ବିପୁର ଜନମି ହେଲେ ଘରଣୀ ॥
ସତୀ ସାଧ୍ୱୀ ସେହୁ ପତିବ୍ରତା ।
ତେଣୁ ସେ ସଂଗ୍ରାମେ ନାହିଁ ଜିଣନ୍ତା ॥
ଲକ୍ଷ୍ମୀ ସମାନ ହୋଇବେ ଯାହାକୁ ।
କପଟେ ହରି ରମିଲେ ତାହାକୁ ॥
ଜାଣି ସେ ଦେହ ତେଜିଲେ ସୁନ୍ଦରୀ ।
ଶଙ୍ଖଚୂଡ଼ ତେବେ ପ୍ରାଣକୁ ହାରି ।
ଶାପୁଁ ନିସ୍ତରି ଗୋଲୋକେ ଚଳିଲେ ।
ଗୋବିନ୍ଦ ନିଜ ସେବାରେ ମିଳିଲେ ॥
ପୁଣି ସେ ପୁରା ସ୍ୱୟମ୍ଭୁବ କୂଳେ ।
କେଦାର ସେନ ରଜା ସଞ୍ଜ କାଳେ ॥

ହୋମ କୁଣ୍ଡରୁ ହେଲେ ଉତପତ୍ତି ।
ରୂପଗୁଣେ ଜଣେ ଋଷି ଚାବଶ୍ଚ ॥
ରାଜା ନନ୍ଦନା ପାଇଣ ହରଷ ।
ଯତନେ ପାଳିଲେ କେତେ ବରଷ ॥
ବହୁତ ବରଷ ହେଲେ ଉପଗତ ।
ନକଲେ ସେହୁ ବିଭା ସନମତ ॥
ଗତ ହେଲୁ ଚିନ୍ତା ଭାବଇ ମନେ ।
କୃଷ୍ଣ ମୋ ପତି ପାଇବ କେସନେ ॥
ଏମନ୍ତେ ପିତା ସନ୍ନିଧି ଜଣାଇ ।
କୃଷ୍ଣଙ୍କୁ ଲଭିବ ତପେ ମଣାଇ ॥
ଯମୁନା କୂଳେ ଆଶ୍ରମି ବ ଯୋଗ ।
କୃଷ୍ଣଙ୍କୁ ମୋହନ ହୋଇବ ଭୋଗ ॥
ପିତାଙ୍କ ସମ୍ମତେ ଚଳିଲେ ବାଳୀ ।
ଯମୁନା କୂଳେ ବୃନ୍ଦାବନେ ମିଳି ॥
ଧ୍ୟାନେଣ ବସି କୃଷ୍ଣଚନ୍ଦ୍ର ଚିନ୍ତି ।
ମାନସରେ ସେବି ନିଶ୍ଚଳ ମତି ॥
କାନ୍ତାଭାବେ ଭାବ ତନୁ ନିବେଦି ।
ସେହିଦିନୁ ବୃନ୍ଦାବନ ପ୍ରସିଦ୍ଧି ॥
ଖଗ ମୃଗ ତରୁତୃଣ ଲତାଦି ।
ସେବନ୍ତି ବନଭୂମି ଲତା ଆଦି ॥
ସତୀ ସାଧ୍ୱୀ ମହା ପତିବ୍ରତା ।
ସ୍ୱର୍ଗେ ବସିରେ ବ୍ରହ୍ମାଦି ଦେବତା ॥
କେଦାର କନ୍ୟା କଠପ ଆଚରେ ।
ନକରେ ବିଧି ବିଧାନ ବିଚାରେ ॥
ନବୀନ ତରୁଣୀ ଜଗନ୍ମୋହିନୀ ।
ଯମୁନା ତୀର ବନେ ଏକାକିନୀ ॥
ସୁବେଶତନୁ ସାଜି ଦିବ୍ୟ ଭୋଗେ ।
କାୟା କ୍ଲେଶତନୁ କରଇ ଯୋଗେ ॥
ଧର୍ମଙ୍କୁ ଅନାଇ ବୋଲନ୍ତି ତାତ ।
ବୁଝ କେଦାର କନ୍ୟା ଦୃଢ଼ବ୍ରତ ॥
କାହାକୁ ଇଚ୍ଛା କରିଛି ସୁନ୍ଦରୀ ।
ଯାଅସି ବ୍ରାହ୍ମଣ ମୂରତି ଧରି ॥
ସଙ୍ଗରେ ବସନ୍ତ ମଦନ ନିଅ ।
ବିଚଳିତ ହେଲେ ଦୂଷଣ ଦିଅ ॥

ବିଧବା ଆଦେଶେ ଚଳିଲେ ଧର୍ମ ।
ପ୍ରବେଶ ହେଲେ ନିଶି ଉତ୍ତମ ॥
ଦେଖିଲେ ନୃପାଙ୍ଗରେ ବନଶୋଭା ।
ଦଶେ ଉଜ୍ଜ୍ୱଳ ଦ୍ୱିଜରାଜ ପ୍ରଭା ॥
ତରୁ ଲତିକା ବନ ପଲ୍ଲବିତ ।
ଷଡ଼ଋତୁ ସେହି ସଦା ବସନ୍ତ ।
ଶୁକ କୋକିଳ ଆଦି କୋଳାହଳ ।
ମନ୍ଦ ସୁଗନ୍ଧ ଶୀତଳ ଅନିଳ ॥
ନିର୍ମଳ ପାତଳ ଯମୁନା ଜଳ ।
ପଦ୍ମ କୁମୁଦେ କୁସୁମେ ମଞ୍ଜୁଳ ॥
ଅତି ପରିମଳ କାନନ ଭୂମି ।
ସଫଳ କୁସୁମେ ଶାଖା ମହୀଲମ୍ବି ॥
ଦିବ୍ୟ ସ୍ଥଳରେ ମାଧବୀ ମଣ୍ଡିତେ ।
ମଣ୍ଡିତ ପୀତାମ୍ବର ଚନ୍ଦ୍ରାତପେ ॥
ରତ୍ନ ପଲଙ୍କେ ହଁସୂଳି ତୋଳି ।
କୁସୁମ ପାଖୁଡ଼ା କର୍ପୂର ଧୂଳି ॥
କେଦାର କନ୍ୟା ତଥିପୁରେ ବିଜେ ।
ବିବିଧ ସୁବେଶରେ ତନୁ ସାଜେ ॥
ହୃଦୟ-ପଦ୍ମ କରେ ସୁମରଣ ।
ମନ ନିବେଶି ଶ୍ରୀକୃଷ୍ଣ ଚରଣ ॥
ବସନ୍ତେ ବସନ୍ତ ସେବି ରହିଲେ ।
ମଦନ ଚାହିଁ ମୋହିତ ହୋଇଲେ ॥
ଦେଖି ଧୈର୍ଯ୍ୟ ଧୃତି ଧରି ନପାରି ।
ବିଶ୍ୱରେ ନାରୀ ଆମ୍ଭଙ୍କୁ କବରି ॥
ଏମନ୍ତ ଚିନ୍ତି ସନ୍ନିଧିକି ଯାଇ ।
କୋମଳ କରୁଣ ବଚନ କହି ॥
ସୁନ୍ଦରୀ ଏକେ ଏକାନ୍ତ କାନନେ ।
ଚନ୍ଦ୍ର ନିନ୍ଦା ପାଉଅଛୁ ଆନନେ ॥
କାହାକନ୍ୟା ତୁମ୍ଭେ କେ ତୁମ୍ଭ କାନ୍ତ ।
କି ତପକର କାହିଁ ତୁମ୍ଭ ଚିତ୍ତ ॥
ଦୁଷ୍ଟ ଦାନବ ଦେଖିଲେ ହରିବେ ।
ଦୂଷଣେ କୁଳୁଁ ବାହାର କରିବେ ॥
ଧର୍ମ ଦେବଙ୍କ ମୃଦୁବାଣୀ ଶୁଣି ।
ନୟନ ଫେଡ଼ି ଚାହିଁଲେ ତରୁଣୀ ॥

ବ୍ରାହ୍ମଣ ଜାଣି ଓଳଗି ହୋଇଲେ ।
ଜଳ ଆସନ ଫଳମୂଳ ଦେଲେ ॥
ଅତିଥି ସେବନ କଲେକ ପୂଜା ।
ପୁଚ୍ଛିଣ ଥିଲେ ଯେତେ ଧର୍ମରାଜା ॥
ପ୍ରତି ବଚନ କହିଲେ ସୁନ୍ଦରୀ ।
ଯକ୍ଷଜାତ ମୁଁ କେଦାର କୁମାରୀ ॥
ମାନସ ସେବାରେ ଯାବଇଁ ନିତି ।
କୃଷ୍ଣ ସେ ପତି ଆନେ ନାହିଁ ମତି ॥
ଏମନ୍ତ ଶୁଣି ଧର୍ମ ପୁଣି କହେ ।
ସୁନ୍ଦରୀ ଏକଥା କେବେହେଁ ନୁହେଁ ॥
ସେ କୃଷ୍ଣ ରାଧାଭାବେ ଏକାବଶ ।
ଏ ଜନ୍ମ ନପାନ୍ତି କାହାର ପାଶ ॥
ସିଦ୍ଧ ଯୋଗୀନ୍ଦ୍ର ଜନଙ୍କୁ ଅଗମ୍ୟ ॥
ଗୋଲକ ପତି ସେ ଅତି ଦୁର୍ଗମ ॥
ଅଷ୍ଟାଙ୍ଗ ଯୋଗେ ଯେ ନହୁନ୍ତି ବଶ୍ୟ ।
ପତିକର ତାଙ୍କୁ କରିଛ ଆଶ ॥
ଯୁବତୀର ମତି ଏତେ ଅସାର ।
ବଅର୍ଥେ ଯୁବା ଅବସ୍ଥା ନସାର ॥
ହେ କନ୍ୟା ଆନବର ବର ଏବେ ॥
ଚନ୍ଦ୍ର ଆଦିହୋଇ ଅଛନ୍ତି ଦେବେ ॥
ଏଥିରେ ମନ ହୋଇବ ଯାହାକୁ ।
ଆମ୍ଭେ ବିଭାକରାଇବା ତାହାକୁ ॥
ଶୁଣି ସୁନ୍ଦରୀ କରକର୍ଣ୍ଣେ ସ୍ଥାପି ।
କକହିଲ ବୋଲି ରସନା ଚାପି ॥
ସେ କୃଷ୍ଣ ଆଦି ପରମ ପୁରୁଷ ।
ଭବଙ୍କୁ ବନ୍ଦ୍ୟ ଅଭାବେ ଅଦୃଶ ॥
ଛନମନ ଅହର୍ନିଶି ଭଜଇ ।
ନପାଇଲେଣ ଦେହକୁ ତେଜଇ ॥
ଏହିରୂପେ ଶତ ସହସ୍ର ଜନ୍ମ ।
କୃଷ୍ଣ ସେ ପତି ଆନେ ନାହିଁ ଭ୍ରମ ॥
ଶୁଣି ସେ ଧର୍ମ କହେ ଆରବାଳା ।
ଏତେ ନ ଜାଣିବା ଅଛୁଗୋ ବାଳା ॥
ପରମ ସୁନ୍ଦରୀ ରାଧାଙ୍କୁ ଛାଡ଼ି ।
ସେ କୃଷ୍ଣ ପୁଣ କି ତୁମ୍ଭଙ୍କୁ ଭଜ ॥

ଆମ୍ଭ ଧର୍ମସାକ୍ଷୀ ଆମ୍ଭଙ୍କୁ ବର ।
ଯକ୍ଷୀ ମନଇଚ୍ଛା ସୁଖେ ବିହର ॥
ବ୍ରହ୍ମାଣ୍ଡ ମଧ୍ୟେ ଯେତେ ରମ୍ୟସ୍ଥାନ ।
ସୁଖେଣ ବିହର ହରିବୁ ଧନ ॥
କହୁ କହୁ ଧର୍ମ ମଦନ ମତ୍ତେ ।
କୋଳ କରିବାକୁ ମିଳେ ସୁରତେ ॥
ଦେଖିଣ ସୁନ୍ଦରୀ ସମ୍ଭ୍ରମେ ଉଠି ।
କୋପ ମୁଖେ ଆଜ୍ଞା ଦେଲେ ବଚୋଷ୍ଠୀ ॥
ଯେବେ ମୁଁ ନିଷ୍ଠ କୃଷ୍ଣ ପତିବ୍ରତା ।
କ୍ଷୀଣ ତନୁ ହୁଅ ଧର୍ମ ଦେବତା ॥
କାମ ନପୀଡ଼ୁ ନପୁଂସକ ହୁଅ ।
ଯାଅ ଯା ଧର୍ମ ନରଯୋନି ପାଅ ॥
ଶାପ ପାଇ ଧର୍ମ ହୋଇଲେ କ୍ଷୀଣ ।
ନିବଣ ଦେଖିଣ ଆନଙ୍କ ମନ ॥
ବ୍ରହ୍ମା ଆଦି ଏବେ ମିଳିଲେ ଆସି ।
ପତିବ୍ରତା ଶାପେ ଧର୍ମ ବିନାଶି ॥
ବସ୍ତ୍ର ହ୍ରିଁ ଆସି ହୋଇଲେ ପ୍ରବେଶ ।
ଧର୍ମଙ୍କ ଭରଯା ମୂର୍ତ୍ତି ହରସ ॥
ଶୋକେ ଜଣାଇ ନାରାୟଣ ପାଦେ ।
ପତିଦାନ ମୋତେ ଦଅସି ହାଦେ ॥
ଏ ଯେବେ ପତିଙ୍କି ହିଂସିଲେ ଶାପେ ।
ଏ ତେବେ ପତ୍ନୀ ହେଉ ଅନରୂପେ ।
ଜନ ମୁଖରେ ଦୋଗୃଣୀ ବୋଲଉ ।
ଧର୍ମ ରକ୍ଷଣ କଲେ କୃଷ୍ଣ ପାଉ ॥
ଉଭୟେ ଶାପ ଶୁଣି ଦେବେ ଉରେ ।
ବୃନ୍ଦାଙ୍କୁ ପ୍ରବୋଧି କହନ୍ତି ସୁରେ ॥
ଧର୍ମ ରକ୍ଷାକର ଜଗତ ରହୁ ।
ଶାପକୁ ପ୍ରତି ଉଦ୍ଧାରଣ ହେଉ ॥
ଦେବଙ୍କ ବିନୟ ଦେଖିଣ କହେ ।
ଯାହା ବୋଇଲୁଁ ସେହୁ ଅନନୁହେ ॥
କଳିଯୁଗେ ଏବେ ପାଦକେ ରହୁ ।
ଯୁଗ କ୍ରମରେ ପୂର୍ଣ ପୂର୍ଣ୍ଣ ହେଉ ॥
ପତିବ୍ରତା କ୍ରୋଧ ତେଜିଲେ ମନେ ।
ଅଜ୍ଞାନ ନପୁଂସକ ନର ଜନ୍ମେ ॥

କୃଷ୍ଣ ପଣ୍ଡକର ପାଳନ୍ତି ଯେବେ ।
ଶାପରୁ ଧର୍ମ ନିସ୍ତରିବେ ତେବେ ॥
ଉଭୟ ମତରେ ବିଧାତା କହି ।
କୃଷ୍ଣ ହେବେ ଯେବେ ମନୁଷ୍ୟ ଦେହୀ ॥
ସେକାଳେ ବେନିଶାପ ହେବ ଭୋଗ ।
ପଶଳାପ୍ସା ରସାସ୍ୱାଦେ ସଂଯୋଗ ॥
ଏମନ୍ତ ଶାପ ଥିଲା ଯେଣୁ ପୂର୍ବେ ।
ଧର୍ମ ଆଦି ସେ ଅବତାର ତେବେ ॥
ବୃନ୍ଦାଙ୍କ ଶାପେ ଯା କୋଟି ଲିଧର୍ମେ ।
ତେଣୁ ଅଭିମନ୍ୟୁ ନାମ ଏଜନ୍ମେ ॥
ଚନ୍ଦ୍ରପ୍ରାୟେ ଯେଣୁ ହୋଇଲେ କ୍ଷୀଣ ।
ବହିଲେ ତେଣୁ ନାମ ଚନ୍ଦ୍ରସେନ ॥
ଗୋକୁଳେ ଗର୍ଭସ୍ଥ କୁଳପ୍ରମାଣ ।
ଏହେନ ନାମ ଲୋକେ ବଖାଣ ॥
ଦେଖିଣ ଶ୍ରୀମନ୍ତ ଗୁଣ ସମାନ ।
ବୃଷଭାନୁ ସୁତା କଲେ ପ୍ରଦାନ ॥
ସହଚରୀ ଭାବେ ବୃନ୍ଦା ସମୀପେ ।
ଚନ୍ଦ୍ରସେନଙ୍କୁ ସେବ ଗୁପ୍ତରୂପେ ॥
ମନୁଷ୍ୟ ଦେହେ ଧର୍ମ ନପୁଂସକ ।
ପତିବ୍ରତା ଶାପେ ଏଜନ୍ମ ତାଙ୍କ ॥
ରାଧାଙ୍କ ଅଙ୍ଗ ପରଶତା ନାହିଁ ।
ଲୋକେ ଜାଣନ୍ତି ପତିପତ୍ନୀ ଏହି ॥
ଏହିହେତୁ କୃଷ୍ଣ ସ୍ୱୟଂ ପ୍ରକାଶ ।
ରାଧିକା ପ୍ରେମରେ ସଦା ଲାଳସ ॥
ନର ଲୀଳାରେ ଭଗତ ତାରଣ ।
ଅଂଶ ଅଂଶକେ ଅସୁର ମାରଣ ॥
ପୂର୍ବେ ନାରାୟଣ କହିଲେ ଯାହା ।
ଫଟାଇ ତୁମ୍ଭରେ କହିଲୁଁ ତାହା ॥

ବ୍ରହ୍ମ ବୈବର୍ତ୍ତ ପୁରାଣ ବାଣୀ ।
ସଂଶୟ ମନରୁ ତେଜିଲେ ଶୁଣି ॥
ନାରଦ ପାଦପଦ୍ମ ପୂଜାକରି ।
ବ୍ରଜବିହାର ଶୁଣି ହୃଦେ ଧରି ॥
ନଳ କୁବର ମଣିଗ୍ରୀବ ବେନି ।
ନାରଦ ପ୍ରସାଦେ [illegible] ॥
ବାସନା ବଳେ ବ୍ରଜ ପରିପୂର୍ଣ୍ଣ ।
ସେ ବ୍ରଜମାନି ମୋର ସ୍ମରଣ ॥
ଉପଦେଶ କହି ନାରଦ ବୀଜ ।
ଗୋବିନ୍ଦ ନାମଗୁଣେ ବୀଣାବାଜେ ॥
ଶ୍ରୀ ବ୍ରଜବିହାର ଦଶମବୋଲି ।
ଶ୍ରୀଗୁରୁ କୃପାରୁ ସମ୍ପୂର୍ଣ୍ଣ ହେଲି ॥
ଶ୍ରୀଭାଗବତ ସର୍ବ ରସଫଳ ।
ଭକତ ଜନଭାବ ପହିଁ ମୂଳ ॥
ସେ ରସ ଶୁକ ମୁଖରେ ସ୍ରବିଲେ ।
ପାନ କରନ୍ତି ସକଳେ ଦ୍ରବିଲେ ॥
ମଧୁର ରସସ୍ୱାଦ ଆଶା ଯେବେ ।
ଏ ବୋଲି ଶୁଣିଲେ ଜାଣିବ ତେବେ ॥
ଗୁରୁ ସହସ୍ର ଆଠଶ ବତିଶ ।
କଳିଯୁଗ ଭୋଗ ଏତେ ବରଷ ॥
ଶକାବ୍ଦ ଜାଣ ଷୋଳଶ ତେପନ ।
ରାମଚନ୍ଦ୍ର ଦେବ ମହାରାଜନ ॥
ଆଠଅଙ୍କ କୁମାର ପୂର୍ଣ୍ଣିମୀରେ ।
ବ୍ରଜବିହାର ଗ୍ରନ୍ଥ ସମ୍ପୂର୍ଣ୍ଣରେ ॥
କ୍ଷେତ୍ରବର ରାଜ ପୁରୁଷୋତ୍ତମ ।
ଜଗନ୍ନାଥ ଦରଶନେ ବିଶ୍ରାମ ॥
ରଣପୁର ମଣ୍ଡଳେ ମୋର ବାସ ।
ନାମ ବଦିତ ଦାଶରଥି ଦାଶ ॥

ସମାପ୍ତ



ମୁଦ୍ରଣ—ଶ୍ରୀ ହରସଙ୍କୀର୍ତ୍ତନ ପ୍ରେସ, ଓଡ଼ିଆବଜାର, କଟକ-୧

# ଗ୍ରନ୍ଥ ତାଲିକା

## ବୈଦିକ ସାହିତ୍ୟ

| | | |
|---|---|---|
| ୧ । | ପୁରୁଷବୋଧିନୀ ଶ୍ରୁତିଃ | ଟ ୨-୫୦ |
| ୨ । | ବୈଷ୍ଣବ ଶ୍ରାଦ୍ଧ ପଦ୍ଧତି | ଟ ୧-୦୦ |

## ପୌରାଣିକ

| | | |
|---|---|---|
| ୩ । | ଶ୍ରୀ ଗୌରାଙ୍ଗ ଭାଗବତ—ଶ୍ରୀ ଭଗବାନ ଦାସ | ଟ ୪-୦୦ |
| ୪ । | ମନଃଶିକ୍ଷା—ଶ୍ରୀ ଭକ୍ତ ଚରଣ ଦାସ | ଟ ୫-୦୦ |
| ୫ । | ମହାଭାବ ପ୍ରକାଶ—ଶ୍ରୀ କହ୍ନାଇ ଖୁଣ୍ଟିଆ | ଟ ୨-୨୫ |

## ଭଜନ, କୀର୍ତ୍ତନ ଓ କାବ୍ୟ ଓ କବିତା

| | | |
|---|---|---|
| ୬ । | ମାନଗୋବିନ୍ଦ ପଦାବଳୀ—ଭକ୍ତକବି ମାନଗୋବିନ୍ଦ ଓଝା | ଟ ୨-୭୫ |
| ୭ । | ବନମାଳୀ ପଦାବଳୀ—ଭକ୍ତକବି ବନମାଳୀ ଦାସ | ଟ ୬-୫୦ |
| ୮ । | କଲ୍ୟାଣ କଳ୍ପତରୁ—ଶ୍ରୀଳ ସଚ୍ଚିଦାନନ୍ଦ ଭକ୍ତିବିନୋଦ ଠାକୁର | ଟ ୨-୫୦ |
| ୯ । | ବ୍ରଜବିହାର—ଶ୍ରୀଦାଶରଥି ଦାସ | ଟ ୯-୦୦ |

## ଜୀବନୀ ଓ ସମାଲୋଚନା

| | | |
|---|---|---|
| ୧୦ । | ଶ୍ରୀଚୈତନ୍ୟ ଶିକ୍ଷାମୃତ—ଶ୍ରୀ ଭକ୍ତିବିନୋଦ ଠାକୁର | ଟ୧୦-୦୦ |
| ୧୧ । | ଭକ୍ତକବି ଗୋପାଳକୃଷ୍ଣ | ଟ ୨-୦୦ |
| ୧୨ । | ଭକ୍ତଚରଣ ଦାସ ଓ ତଦୀୟ ରଚନାବଳୀ | ଟ ୩-୦୦ |
| ୧୩ । | ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା ଆଦିବାସୀ, ବୌଦ୍ଧ ଜୈନଧର୍ମ | ଟ ୮-୦୦ |
| ୧୪ । | ପ୍ରମେୟ ରତ୍ନାବଳୀ ସଂସ୍କୃତ ଅନୁବାଦ ଶ୍ରୀ ବଳଦେବ ବିଦ୍ୟାଭୂଷଣ | ଟ ୫.୦୦ |
| ୧୫ । | ପ୍ରୟୁକ୍ତାଖ୍ୟାତମଞ୍ଜରୀ (ସଂସ୍କୃତ କ୍ରିୟା ଅଭିଧାନ ଶ୍ରୀଳ ରୂପଗୋସ୍ୱାମୀ | ଟ ୧-୫୦ |
| ୧୬ । | ଶ୍ରୀ ଚୈତନ୍ୟ ଚନ୍ଦ୍ରାମୃତ—ଶ୍ରୀଳ ପ୍ରବୋଧାନନ୍ଦ ସରସ୍ୱତୀ | ଟ ୨-୨୫ |
| ୧୭ । | ଜୈବଧର୍ମ—ଶ୍ରୀଳ ସଚ୍ଚିଦାନନ୍ଦ ଭକ୍ତିବିନୋଦ ଠାକୁର | ଟ ୮-୦୦ |
| ୧୮ । | ମନଃଶିକ୍ଷା—ଶ୍ରୀଳ ରଘୁନାଥ ଦାସ ଗୋସ୍ୱାମୀ | ଟ ୧-୦୦ |
| ୧୯ । | ସିଦ୍ଧାନ୍ତ ଦର୍ପଣମ୍ -ଶ୍ରୀଳ ବଳଦେବ ବିଦ୍ୟାଭୂଷଣ | ଟ ୧-୦୦ |
| ୨୦ । | ଶ୍ରୀଶ୍ରୀଗୋଦ୍ରୁମଚନ୍ଦ୍ର ଭଜନୋପଦେଶଃ--ଶ୍ରୀଳସଚ୍ଚିଦାନନ୍ଦଭକ୍ତିବିନୋଦଠାକୁର | ଟ ୧-୦୦ |
| ୨୧ । | ନାମାପରାଧ କଥା—ଶ୍ରୀଳ ଗୋକୁଳାନନ୍ଦ ଗୋସ୍ୱାମୀପାଦ | ଟ ୩-୦୦ |

ପ୍ରାପ୍ତିସ୍ଥାନ— **ଶ୍ରୀ ହରିସଂକୀର୍ତ୍ତନ ପ୍ରେସ**

ଓଡ଼ିଆ ବଜାର, କଟକ-୧

Printed at Shri Hari Sankirtana Press, Cuttack-1